## ଲେଖକଙ୍କ ଜୀବନାଭୂତିରୁ...

- ଜନ୍ମ ଓ ମୃତ୍ୟୁର ଚନ୍ଦ୍ରବନ୍ଧନୀ ଭିତରେ ଜୀବନ ଏକ ଦୁର୍ବୋଧ୍ୟ କବିତା । ଏହି କବିତା ବୁଝିବା କଷ୍ଟସାଧ୍ୟ; କିନ୍ତୁ ଶେଷ ପର୍ଯ୍ୟନ୍ତ ଆମକୁ ପଢ଼ିବାକୁ ହୁଏ !

- ଗଛଟିଏ ରୋପଣ କରି 'ସେଥିରେ ନିଶ୍ଚୟ ଫଳ ଧରିବ' ଭାବିବା ଏକ ସୁଖଦ ଅଭିଳାଷ; କିନ୍ତୁ ସେ ଫଳ ନିଶ୍ଚୟ ମୋତେ ହିଁ ମିଳିବ, ଏହା ଦୁଃଖଦ କାମନା ।

- ଆଖି ବନ୍ଦ ଥିବା ଅବସ୍ଥାରେ ଆମେ ସ୍ୱପ୍ନ ଦେଖୁ । ସ୍ୱପ୍ନର ସୁଖ-ଦୁଃଖ ସହିତ ସାମିଲ୍ ହୋଇ ଆମେ ନିଦରେ ବେଳେ ବେଳେ ହସୁ ଅଥବା କାନ୍ଦୁ । ଜୀବନ ଠିକ୍ ସେମିତି ଗୋଟେ ସ୍ୱପ୍ନ, ଯାହା ଆମେ ଆଖି ଖୋଲାଥାଇ ଦେଖୁଛେ । ଆଖି ବନ୍ଦ୍ ତ ସ୍ୱପ୍ନ ଶେଷ !!

- ଜୀବନର ଶେଷ ଇଚ୍ଛା ନିର୍ବାଣ କିମ୍ବା ମୋକ୍ଷ ପ୍ରାପ୍ତି ନ ହୋଇ ସୃଷ୍ଟିର କଲ୍ୟାଣ ନିମନ୍ତେ ବାରମ୍ବାର ଜନ୍ମ ଗ୍ରହଣ କରିବା ହେଉ !

# ସମୟର ତିନି ପାଦ

(ଗଳ୍ପ: କାଲି, ଆଜି ଓ ଆସନ୍ତାକାଲିର)

ଗାଳ୍ପିକ : **ସୁରେନ୍ଦ୍ରନାଥ ସାହୁ**

ପ୍ରଥମ ପ୍ରକାଶ- ୧୫ ଅଗଷ୍ଟ ୨୦୨୨

ପ୍ରକାଶକ : **ସୁରେନ୍ଦ୍ରନାଥ ସାହୁ**
ପ୍ଲଟ ନଂ- ୭୨୧(ସ୍ୱସ୍ତି ହୋମସ୍) ଜି.ଏ କଲୋନୀ, ଭରତପୁର
ପୋଷ୍ଟ- ମହାଲକ୍ଷ୍ମୀ ବିହାର
ଭୁବନେଶ୍ୱର-୭୫୧୦୨୯
ଦୂରଭାଷ: ୯୯୩୭୨୪୧୯୭୭

ମୁଦ୍ରଣ : **ଜଗନ୍ନାଥ ପ୍ରୋସେସ୍**, ଡଗରପଡ଼ା କଟକ

ପ୍ରଚ୍ଛଦ : **ପ୍ରଜ୍ଞାପ୍ରକାଶ**

ମୂଲ୍ୟ : **ଟ.୨୫୦/-**



**SAMAYARA TINI PADA**

(Stories of Yesterday, To-day and Tomorrow)

Author : **Surendranath Sahoo**

First Edition- Aug.15th 2022

Published by : **Surendranath Sahoo**
Plot No 721 (Swosti Homes)
G.A Colony-Bharatpur, P:O: Mahalaxmi Vihar
Bhubaneswar-751029
Phone : 9937241977

Printed at **Jagannath Process**
Dagarapara, Cuttack
ISBN - 978-93-5679-998-1

Cover Design : Prajna Prakash

Price : **Rs.250.00**

# ଉତ୍ସର୍ଗ

ଯୁଦ୍ଧବିମୁଖ ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ କର୍ମଯୋଗର ଉପଦେଶ ଦେଇ ଯୁଦ୍ଧାଭିମୁଖୀ କରାଇବା ଭଳି ଯିଏ ମୋତେ ବାରମ୍ବାର ପ୍ରୋତ୍ସାହନ ଦେଇ ମୋ' ଲକ୍ଷ୍ୟପ୍ରାପ୍ତିରେ ସହାୟକ ହୋଇଛନ୍ତି ଏବଂ ଯାହାଙ୍କ ଅନୁପ୍ରେରଣାରେ ମୋର ଏ ଗଳ୍ପ ସଙ୍କଳନ **'ସମୟର ତିନିପାଦ'** ଆଜି ଆତ୍ମପ୍ରକାଶ କରୁଛି, ସେହି ବହୁମୁଖୀ ସାରସ୍ୱତ ପ୍ରତିଭାର ଅଧିକାରୀ ତଥା ମୋର ପରମ ବନ୍ଧୁ ବିଶିଷ୍ଟ କଥାକାର ଶ୍ରୀଯୁକ୍ତ ଆନଂଦ ଚଂଦ୍ର ପହିଙ୍କ କରକମଳରେ !

**ସୁରେନ୍ଦ୍ରନାଥ ସାହୁ**

# ଲେଖକୀୟ ସ୍ୱୀକାରୋକ୍ତି

ପୌରାଣିକ ଆଖ୍ୟାନ ଅନୁସାରେ ବାମନାବତାରୀ ଭଗବାନ ବିଷ୍ଣୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳକୁ ତିନି ପାଦରେ ଅଧିକାର କରିଥିଲେ । ସେହିଭଳି ମହାକାଳର ତିନି ପାଦ ତଳେ ଅଧିକୃତ ହୋଇ ରହିଛି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ । ସମୟର ଏହି ତିନି ପାଦ ପରିବ୍ୟାପ୍ତ କରି ରଖିଛି ସଚରାଚର ଜଗତକୁ । ବେଗମତୀ ନଦୀର କ୍ଷୀପ୍ର ଜଳଧାର ଭଳି ସମୟର ସ୍ରୋତ ନିରନ୍ତର ପ୍ରବାହିତ ହୋଇ ଚାଲିଛି ଅନାଦିରୁ ଅନନ୍ତ ଆଡ଼କୁ । ଭବିଷ୍ୟତରୁ ପ୍ରତିକ୍ଷଣ ଆସି ସମାହିତ ହେଉଛି ବର୍ତ୍ତମାନରେ ଏବଂ ବର୍ତ୍ତମାନରୁ ପ୍ରତିଟି ମୁହୂର୍ତ୍ତ ଖସି ହଜିଯାଉଛି ଅତୀତର ଅନନ୍ତ ଗହ୍ୱର ଭିତରେ ।

ସମୟର ଏହି ତ୍ରିପଦି (ଟ୍ରାଏପଡ୍) ଉପରେ ସଚରାଚର ଜଗତ ତିଷ୍ଠି ରହିଛି ସୃଷ୍ଟି ଆରମ୍ଭରୁ । ବସ୍ତୁବାଦୀ ମଣିଷ କେବଳ ବର୍ତ୍ତମାନକୁ ନେଇ ବଂଚିଛି ସତ; କିନ୍ତୁ ଏହା ଅସତ୍ୟ ନୁହେଁ ଯେ, ଆଜିର ଚାରାଗଛଟି ଗତକାଲିର ରୂପାନ୍ତରିତ ଏକ କ୍ଷୁଦ୍ର ବୀଜ ଏବଂ ଆସନ୍ତାକାଲିର ଏକ ସମ୍ଭାବିତ ମହାଦ୍ରୁମ । ଆଜିର ଯୁବକ ଗତକାଲିର ଶିଶୁ ଓ ଅଗାମୀକାଲିର ବୃଦ୍ଧ ! ଗତକାଲିକୁ ବାଦ୍ ଦେଲେ ଆଜି କିମ୍ବା ଆଜିକୁ ବାଦ୍ ଦେଲେ ଆସନ୍ତାକାଲିର ଅସ୍ତିତ୍ୱକୁ ସ୍ୱୀକାର କରାଯାଇ ପାରିବନାହିଁ ।

ଉପରୋକ୍ତ ଦର୍ଶନତତ୍ତ୍ୱ ଉପରେ ଆଧାରିତ ଏହି ଗଳ୍ପସଙ୍କଳନଟିର ଶୀର୍ଷକ ରଖାଯାଇଛି 'ସମୟର ତିନିପାଦ' । ସମୟର ତିନି ପରିସରରୁ ସଂଗୃହିତ ଏବଂ ଭିନ୍ନ ଭିନ୍ନ ବୀଜରୁ ଅଙ୍କୁରିତ ଏକୋଇଶି ଗୋଟି ଗଳ୍ପଚାରାକୁ 'କାଲି, ଆଜି ଓ ଆସନ୍ତାକାଲିରଗଳ୍ପ' କ୍ରମରେ ରୋପଣ କରାଯାଇଛି ଏହି ଗଳ୍ପୋଦ୍ୟାନରେ ।

କାଲିର ଗଳ୍ପ ଭାବରେ ଆମେ 'ରାମାୟଣ' ଅଥବା 'ମହାଭାରତ' କାହାଣୀଠାରୁ ଅଧିକ ରୋଚକ ଓ ରୋମାଂଚକର ଘଟଣା କିଛି ପାଇବା ନାହିଁ । ମହାଭାରତ ଯୁଦ୍ଧ ପରବର୍ତ୍ତୀ ସମୟର ଏକ ଗମ୍ଭୀର ସମସ୍ୟାକୁ ନେଇ ଏଠାରେ ପ୍ରସ୍ତୁତ କରାଯାଇଛି 'କୃଷ୍ଣକମଳ କାହାଣୀ' ! ଏହି ଗଳ୍ପରେ 'କୃଷ୍ଣକମଳ' ନାମକ ଏକ କାଳ୍ପନିକ ଚରିତ୍ରକୁ ଏଭଳି ଉପସ୍ଥାପନା କରାଯାଇଛି, ଯିଏ ପାଠକମାନଙ୍କୁ ଭରପୂର ଆମୋଦ ଦେବା ସହିତ ସେମାନଙ୍କ ମନରେ ଉଙ୍କିମାରୁଥିବା କିଛି ପ୍ରଶ୍ନିଳ ଜିଜ୍ଞାସାକୁ ମଧ୍ୟ ପ୍ରଶମିତ କରିବାରେ ସମର୍ଥ ହେବ ବୋଲି ଆଶା ।

ସମୟର ଦୈର୍ଘ୍ୟ-ପ୍ରସ୍ଥ ମାପି ଦେଖିଲେ ଜାଣିପାରିବା, ଆମକୁ 'ପ୍ରସ୍ତରଯୁଗ'ରୁ ଆସି 'ଇନ୍‌ଟେରନେଟ୍ ଯୁଗ'ରେ ପହଂଚିବାକୁ ଲାଗିଗଲା ପ୍ରାୟ ସତର ହଜାର ବର୍ଷରୁ ଅଧିକ

କାଳ । ଏଠାରୁ ପୁଣି ଭବିଷ୍ୟତ ଆଡ଼କୁ ନିରୀକ୍ଷଣ କଲେ ଦେଖାଯାଏ ବୈଜ୍ଞାନିକ ଚମତ୍କାରିତାରେ ଭରପୂର, ଭିନ୍ନ ଏକ ଯୁଗ ! ପ୍ରଖ୍ୟାତ ବୈଜ୍ଞାନିକ 'ରବର୍ଟ ଗଡାର୍ଡ଼' ଯଥାର୍ଥରେ କହିଥିଲେ, 'ଗତକାଲିର ସ୍ୱପ୍ନ, ଆଜିର ପରିକଳ୍ପନା, ଆଗାମୀ କାଲିର ବାସ୍ତବତାକୁ ରୂପାୟିତ କରେ !' ଏହି ବୈଜ୍ଞାନିକ ଚିନ୍ତନ ଅନୁସାରେ ଆଜିର ସ୍ୱପ୍ନ ଓ ପରିକଳ୍ପନା ବାସ୍ତବତାରେ ପରିଣତ ହେଲେ ଆଗାମୀ କାଲି ହେବ ଆମପାଇଁ ମହାବିଜ୍ଞାନର ଯୁଗ !

ବିଜ୍ଞାନର ଚମତ୍କାରିତାକୁ ନେଇ କଳ୍ପନାମୂଳକ ଫିକ୍ସନ୍‌ଧର୍ମୀ କାହାଣୀ ଓଡ଼ିଆରେ ଖୁବ୍ କମ୍ ଲେଖାଯାଉଛି; କିନ୍ତୁ ଆମ ଆଗାମୀ ପିଢ଼ିର ପାଠକ ମହଲରେ ଏହାର ଆଦୃତି ଯଥେଷ୍ଟ ଅଧିକ ହେବାର ଆଶା କରାଯାଏ ! ମୋ' ଦ୍ୱାରା ପ୍ରସୂତ ଏଭଳି ଅନେକ କାହାଣୀ 'ବିଜ୍ଞାନଦିଗନ୍ତ'ଭଳି କିଛି ଉଚ୍ଚମାନର ବିଜ୍ଞାନ ପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ଶ୍ରଦ୍ଧା ଓ ସ୍ୱୀକୃତି ପାଇ ଆସୁଛି । ଏହି ବହିରେ ପ୍ରକାଶ ପାଇଥିବା 'ଅଲୌକିକ ସମୟଯାତ୍ରୀ' କାହାଣୀଟି 'ଅଜଣା ଗ୍ରହର ମଣିଷଚୋର' ଶୀର୍ଷକରେ 'ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ-ଇଣ୍ଡିଆ'ଙ୍କ ସୌଜନ୍ୟରୁ 'ବିଜ୍ଞାନ କାହାଣୀ' ପୁସ୍ତକରେ ପ୍ରକାଶ ପାଇ ଉଚ୍ଚ ପ୍ରଶଂସିତ ହୋଇଛି । ସେହିଭଳି ତିନିଗୋଟି ରୋମାଂଚକର ବିଜ୍ଞାନ କାହାଣୀ ଏହି ବହିରେ 'ଆସନ୍ତାକାଲିର ଗଳ୍ପ' କ୍ରମରେ ପରିବେଷଣ କରାଯାଇଛି । ଆଜି ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ଅଙ୍ଗ ପ୍ରତିରୋପଣ ଏକ ସାଧାରଣ ଘଟଣା । 'ମସ୍ତିଷ୍କ ପ୍ରତିରୋପଣ' ଦୂରନ୍ତ ସମ୍ଭାବନା ଭଳି ପ୍ରତୀୟମାନ ହେଲେ ମଧ୍ୟ ଆଜିର ବିଜ୍ଞାନୀ ସେହି ସ୍ୱପ୍ନ ବି ଦେଖିଲାଣି ।

ରୋବଟ୍ ବା ଯନ୍ତ୍ରମାନବ ! ଯେଉଁ ରୋବଟ୍‌କୁ ମଣିଷ ଆଜି ବିଜ୍ଞାନାଗାରରେ ନିର୍ମାଣ କରୁଛି, ଆଗାମୀ ସମୟରେ ସେହି ଯନ୍ତ୍ରମଣିଷଟି ଯଦି ଆମ ବିଶୃଙ୍ଖଳ ମଣିଷ ସମାଜକୁ ସଜାଡ଼ିବାକୁ ଚେଷ୍ଟା କରେ ! କ'ଣ ହେବ ପରିଣତି ? ମଣିଷ ଆଲୋକବେଗରେ ଗତି କରିବା ଆଜିପାଇଁ ନିଶ୍ଚୟ ଅସମ୍ଭବ ବ୍ୟାପାର, କିନ୍ତୁ ଭବିଷ୍ୟତରେ ଯଦି ସେଭଳି କିଛି ଘଟେ, ତା'ହେଲେ କେଉଁ ପରିସ୍ଥିତିର ସାମନା କରିବାକୁ ପଡ଼ିବ ମଣିଷକୁ ! ଏଭଳି କିଛି ଉଦ୍ଭଟ ପରିକଳ୍ପନା ଓ ବୈଜ୍ଞାନିକ ଜିଜ୍ଞାସାକୁ କେନ୍ଦ୍ର କରି ସୃଷ୍ଟି ହୋଇଛି ଏହି କଳ୍ପବିଜ୍ଞାନ କାହାଣୀଗୁଡ଼ିକ । ଏଭଳି ଗଳ୍ପ ଆଜିର ପାଠକଙ୍କୁ ଅବାନ୍ତର ଓ ଉଦ୍ଭଟ ଲାଗିପାରେ; କିନ୍ତୁ ଆଗାମୀ କାଲି ପାଇଁ ଏଥିରେ ରହିଛି ବୈଜ୍ଞାନିକ ସଫଳତାର ଅପରିମିତ ସମ୍ଭାବନା ।

ଉପରୋକ୍ତ ଦୁଇ ବିଭାଗକୁ ବାଦ୍ ଦେଲେ 'ଆଜିର ଗଳ୍ପ' କ୍ରମରେ ସନ୍ନିବେଶିତ ହୋଇଛି ଏଥିରେ ସତରଗୋଟି ଅଧୁନାତନ ସମୟର ଗଳ୍ପ । ଏହି ଗଳ୍ପଗୁଡ଼ିକ ବିଭିନ୍ନ ସମୟରେ ଲେଖାଯାଇଛି ଏବଂ ଏଥିରୁ ଅଧିକାଂଶ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ଅଶାନ୍ତ ଆତ୍ମା, ଗୋଟିଏ କାନ୍ଥଘଣ୍ଟା ଓ ଦୁଇଟି କଣ୍ଢାର କାହାଣୀ, ମିସ୍ ମିରାକଲ୍ ଏବଂ ନିରବ ଆଳାପ, ଏହି ଚାରିଗୋଟି ଗଳ୍ପ ବେତାର ନାଟକରେ ରୂପାନ୍ତରିତ ହୋଇ 'ଆକାଶବାଣୀ-

କଟକ' ଏବଂ 'ଆକାଶବାଣୀ-ଜୟପୁର' ଦ୍ୱାରା ପ୍ରସାରିତ ମଧ୍ୟ ହୋଇଛି । ଆଜି ସେହି ମୂଳ ଗଳ୍ପଗୁଡ଼ିକ ପୁସ୍ତକାକାରରେ ପ୍ରକାଶ ପାଇବା ଅବସରରେ ମୁଁ ସଂପୃକ୍ତ ପତ୍ରିକାଗୁଡ଼ିକର ସଂପାଦକ ଏବଂ ଉଭୟ ଅକାଶବାଣୀର ନିର୍ଦ୍ଦେଶକଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

ଏହି ଗଳ୍ପଶୃଙ୍ଖଳରେ ଥିବା ପ୍ରଥମ ଗଳ୍ପ 'ଶେଷରୁ ଆରମ୍ଭ' ମୋ' ପାଇଁ କିଛିଟା ବିଶେଷତ୍ୱ ବହନ କରେ । ଏକଦା ଏହି ଗଳ୍ପଟି 'ଗୋପବନ୍ଧୁଙ୍କ ସତ୍ୟବାଦୀ'ରେ ପ୍ରକାଶ ପାଇଥିଲା ଏବଂ ତା' ଉପରେ ଅନେକ ପାଠକୀୟ ପ୍ରତିକ୍ରିୟା ମଧ୍ୟ ମିଳିଥିଲା । ଗଳ୍ପ ଶେଷଭାଗର ଘଟଣା ଥିଲା ଅତ୍ୟନ୍ତ ମର୍ମନ୍ତୁଦ ଓ ହୃଦୟବିଦାରକ । ମୋ'ର ଜଣେ ଶୁଭେଚ୍ଛୁ ତଥା ବାଲ୍ୟବନ୍ଧୁ, ପ୍ରାବନ୍ଧିକ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି, (ପୂର୍ବତନ ଅଧ୍ୟକ୍ଷ, ଗଞ୍ଜାମ କଲେଜ) ଲେଖାଟକୁ ପଢ଼ି କିଛିଟା ନୈରାଶ୍ୟମୂଳକ ମନ୍ତବ୍ୟ ଦେଲେ । ଲେଖାରେ କିଛି ସକାରାତ୍ମକ ପରିବର୍ତ୍ତନ ଆଣିବା ପାଇଁ ପରାମର୍ଶ ମଧ୍ୟ ଦେଲେ । ତାଙ୍କ ପ୍ରରୋଚନାରେ ମୁଁ ଗପଟିକୁ ପୁନର୍ବାର ଅନୁଧ୍ୟାନ କରି କିଛିଟା ପରିବର୍ତ୍ତନ ଆଣିଲି ଏବଂ ଏଥିରେ ମୋତେ ପର୍ଯ୍ୟାପ୍ତ ସନ୍ତୁଷ୍ଟି ମଧ୍ୟ ମିଳିଲା । ଗପଟିର ଏହି ପରିବର୍ତ୍ତିତ ପ୍ରସ୍ତୁତି ଯଦି ପାଠକମାନଙ୍କ ଦ୍ୱାରା ଆଦୃତ ହୁଏ, ତା'ହେଲେ ଏହାର ସଫଳତାର ଶ୍ରେୟ ମୁଁ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କୁ ଦେବାରେ ତିଳେ ବି କାର୍ପଣ୍ୟ କରିବିନାହିଁ । ଏ' ଅବସରରେ ମୁଁ କେବଳ ଏତିକି କହିବି, ଜଣେ ଲେଖକ ପାଇଁ ପାଠକଙ୍କ ଗଠନମୂଳକ ପ୍ରତିକ୍ରିୟା ଓ ଦିଗଦର୍ଶନ ଅତ୍ୟନ୍ତ ଜରୁରୀ ।

'ଆଜିର ଗଳ୍ପ' ଶୃଙ୍ଖଳରେ ଥିବା ପ୍ରତ୍ୟେକଟି ଗଳ୍ପର ସ୍ୱାଦ ଭିନ୍ନ ଏବଂ ଲେଖାର ଶୈଳୀ ମଧ୍ୟ ଭିନ୍ନ । ଏହି ଭିନ୍ନତା ହିଁ ଗଳ୍ପଗୁଡ଼ିକର ବିଶେଷତ୍ୱ । ତେବେ 'ଡାଏରିର ଶେଷପୃଷ୍ଠା' ଗଳ୍ପଟି ଗୋଟିଏ ଅଲଗା ସିଦ୍ଧାନ୍ତ ଉପରେ ଅଧାରିତ । ମାର୍ଚ୍ଚ ୯, ୨୦୧୮ ମସିହାରେ ଭାରତର ଉଚ୍ଚ ନ୍ୟାୟାଳୟ 'ସ୍ୱେଚ୍ଛାମୃତ୍ୟୁ'କୁ ଆଇନ୍‌ଗତ ସ୍ୱୀକୃତି ପ୍ରଦାନ କରିବା ପରେ ଉକ୍ତ ଗଳ୍ପଟି ପ୍ରସ୍ତୁତ କରାଯାଇଛି ଅନେକ ସକାରାତ୍ମକ ଚିନ୍ତନ ସହିତ ।

ଏହା ପୂର୍ବରୁ ମୋ'ର ଚାରିଖଣ୍ଡ କଳ୍ପବିଜ୍ଞାନ ଭିତ୍ତିକ ଗଳ୍ପବହି ଏବଂ ଅନ୍ୟାନ୍ୟ ବିଭାଗର ଆଉ ଚାରିଖଣ୍ଡ ବହି ପ୍ରକାଶିତ ହୋଇଛି । ସେହି କ୍ରମରେ ଦେଖିଲେ ଏହା ମୋ'ର ନବମ ଉଦ୍ୟମ । ମୋ'ର ଶୁଭାକାଙ୍କ୍ଷୀ ତଥା ସମଧର୍ମୀ ଲେଖକ ବନ୍ଧୁ ଶ୍ରୀ ଆନଂଦ ଚଂଦ୍ର ପହିଙ୍କ ପ୍ରେରଣା ଓ ସହଯୋଗ ବିନା ଏହି ଗଳ୍ପସଙ୍କଳନ ହୁଏତ ଆତ୍ମପ୍ରକାଶ କରିପାରିନଥାନ୍ତା । ତେଣୁ ପୁସ୍ତକଟିର ପ୍ରକାଶନ ଅବସରରେ ଶ୍ରୀ ପହି ମହୋଦୟଙ୍କୁ ମୋ'ର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

'ସମୟର ତିନିପାଦ' ପାଠକମାନଙ୍କ ହୃଦୟକୁ ସ୍ପର୍ଶ କଲେ ଲେଖକର ଶ୍ରମ ସାର୍ଥକ ହେବ ।

**ସୁରେନ୍ଦ୍ରନାଥ ସାହୁ**

# ସୂଚୀପତ୍ରଃ

## ଗଳ୍ପ : ଗତକାଲିର

# କୃଷ୍ଣକମଳ କାହାଣୀ

ଦୃଶ୍ୟଟି ଥିଲା ଅଦ୍ଭୁତ ! ଅବିଶ୍ୱସନୀୟ ! !

ମହାକାଶର ନୀଳାଭ ଶୂନ୍ୟତା ! ସେ ଅନନ୍ତ ମହାଶୂନ୍ୟ ମଧ୍ୟରେ ଘୂର୍ଣ୍ଣାୟମାନ ଏକ ଘନ-ବର୍ତ୍ତୁଳାକାର ପିଣ୍ଡ ! ହୋଇପାରେ ତାହା ଗ୍ରହାଣୁ ଅଥବା ଉଲ୍‌କା ! ପିଣ୍ଡଟି କ୍ରମେ ନିକଟତର ଏବଂ ଉଜ୍ଜ୍ୱଳତର ହେବାକୁ ଲାଗିଲା । ସହସା ତା' ପୃଷ୍ଠଭୂମି ଉପରେ ପ୍ରତୀୟମାନ ହେଲା କିଛି ଅଲୌକିକ ଦୃଶ୍ୟ ! ମହାଶୂନ୍ୟରେ ଉଦ୍ଭାସିତ ସେ ଦୃଶ୍ୟାବଳୀ ଇନ୍ଦ୍ରସଭାର ଭ୍ରମ ସୃଷ୍ଟି କରୁଥିଲା ! ମଂଚନାଟକ ସଦୃଶ୍ୟ କିଛି ଆକର୍ଷଣୀୟ କାର୍ଯ୍ୟକ୍ରମ ଆରମ୍ଭ ହେବାକୁ ଯାଉଥିଲା ସେହି ମହାକାଶୀୟ ପିଣ୍ଡ ଉପରେ । ସମଗ୍ର ସୌରଜଗତ ତଟସ୍ଥ ! ସମସ୍ତ ଭୌତିକ ଜଗତ ଉତ୍କଣ୍ଠିତ ଭାବେ ଅପେକ୍ଷାରତ ଘଟଣା ସମ୍ପର୍କରେ ଜାଣିବା ପାଇଁ ! !

ସଭାରେ ମଂଚାସୀନ ଥିଲେ ମହାଭାରତ ଯୁଗର ବହୁ ବିଶିଷ୍ଟ ଓ ଅତିବିଶିଷ୍ଟ ଚରିତ୍ର, ଭଗବାନ୍ ଶ୍ରୀକୃଷ୍ଣଙ୍କ ସମେତ । ଉପସ୍ଥିତ ଥିଲେ ମହାଭାରତର ଗ୍ରନ୍ଥକାର ମହର୍ଷି ବେଦବ୍ୟାସଙ୍କ ଠାରୁ ଆରମ୍ଭ କରି ସେ ଯୁଗର କୁଖ୍ୟାତ ଖଳନାୟକ ଶକୁନିଙ୍କ ପର୍ଯ୍ୟନ୍ତ । ମହାରାଣୀ ସତ୍ୟବତୀଙ୍କ ଠାରୁ ଆରମ୍ଭ କରି ଯାଜ୍ଞସେନୀ ଦ୍ରୌପଦୀଙ୍କ ପର୍ଯ୍ୟନ୍ତ । ମହାରାଜା ଶାନ୍ତନୁ, ଗଙ୍ଗାପୁତ୍ର ଭୀଷ୍ମ, ଗୁରୁ ଦ୍ରୋଣାଚାର୍ଯ୍ୟ, କୁରୁରାଜ ଧୃତରାଷ୍ଟ୍ର, ମହାରଥୀ କର୍ଣ୍ଣ, ଅର୍ଜୁନ, ଯୁଧିଷ୍ଠିରାଦି ପଂଚପାଣ୍ଡବ । ଦୁର୍ଯ୍ୟୋଧନ, ଦୁଃଶାସନ ଆଦି କୁରୁବଂଶି ମହାବୀରମାନେ । ମହାକାଶୀୟ ଭାସମାନ ମଣ୍ଡପ ଉପରେ ଅର୍ଦ୍ଧଚନ୍ଦ୍ରାକାର ଭାବେ ସଜ୍ଜିତ ମହାର୍ଘ ଆସନଗୁଡ଼ିକୁ ଅଳଂକୃତ କରିଥିଲେ ମହାଭାରତର ଏହି ମହାନାୟକଗଣ । ସର୍ବାଗ୍ରେ ବିଦ୍ୟମାନ ବାସୁଦେବ ଶ୍ରୀକୃଷ୍ଣ ! ସମ୍ମୁଖରେ ଏକ ରତ୍ନଖଚିତ ସୁଉଚ୍ଚ ସିଂହାସନ । ତା' ଉପରେ ଅଧିରୁଢ଼ ଜଣେ ଉଜ୍ଜ୍ୱଳ କାନ୍ତିମୟ ଦେବପୁରୁଷ । ମଣ୍ଡପର କେନ୍ଦ୍ରସ୍ଥଳରେ ବଡ଼ ଏକ ଜଳପୂର୍ଣ୍ଣ ରୌପ୍ୟପାତ୍ର । ପାତ୍ରର ମଧ୍ୟଭାଗରେ ଶୋଭା ପାଉଥିଲା କୃଷ୍ଣବର୍ଣ୍ଣର ଅଷ୍ଟଦଳ ପଦ୍ମପୁଷ୍ପଟିଏ । ମଂଚରେ ଉପସ୍ଥିତ ସଭାଜନଙ୍କ ବିସ୍ମିତ ଦୃଷ୍ଟି ସେହି ଅଦ୍ଭୁତ 'କୃଷ୍ଣକମଳ' ଉପରେ । ସମସ୍ତଙ୍କ ମୁଖମଣ୍ଡଳରେ ଅଦମ୍ୟ କୌତୂହଳ, ଅସୀମ ଉତ୍ସୁକତା, ଆଖିରେ ପ୍ରଶ୍ନବାଚୀ, କେବଳ ଶ୍ରୀକୃଷ୍ଣଙ୍କୁ ବାଦ ଦେଇ । ଚିରାଚରିତ ଧାରେ ରହସ୍ୟମୟ ହସ ତରଙ୍ଗାୟିତ ହେଉଥିଲା ଶ୍ରୀକୃଷ୍ଣଙ୍କ ଅଧର ଉପକୂଳରେ । ସଭାଗୃହରେ ବିରାଜମାନ କରୁଥିଲା ସୂଚୀଭେଦ୍ୟ ନିରବତା ।

*ସୁରେନ୍ଦ୍ର ନାଥ ସାହୁ*

ପ୍ରମୁଖ ଆସନରେ ବସିଥିବା ଦେବପୁରୁଷ ନିଜ ଆସନରୁ ଉଠିଲେ । ଶ୍ରୀବାସୁଦେବଙ୍କୁ ଯୋଡ଼ହସ୍ତରେ ପ୍ରଣାମ କରି ନିଜ ବକ୍ତବ୍ୟ ଆରମ୍ଭ କଲେ, "ମୁଁ ଆଦିତ୍ୟନନ୍ଦନ ଧର୍ମଦେବ ! ପ୍ରଥମେ ବାସୁଦେବ ଶ୍ରୀକୃଷ୍ଣଙ୍କୁ ପ୍ରଣିପାତ କରୁଛି । ମୋ' ଆମନ୍ତ୍ରଣ ରକ୍ଷା କରି ଧର୍ମସଭାରେ ଯୋଗଦାନ କରିଥିବା ସମସ୍ତ ଅତିଥିଙ୍କୁ ଅଭିବାଦନ ଜଣାଉଛି । ଆପଣମାନଙ୍କ ମନରେ ନିଶ୍ଚୟ ପ୍ରଶ୍ନ ଉଠୁଥିବ, ଆଜି ଏ ଧର୍ମସଦନରେ ଆପଣମାନଙ୍କ ସମାଗମର ହେତୁ କ'ଣ ? ଦ୍ୱାପର ଯୁଗରେ ସଂଘଟିତ ମହାଭାରତ ଯୁଦ୍ଧର ମହାନାୟକମାନେ ଆଜି ଧର୍ମଦେବଙ୍କ ବିଚାରାଳୟରେ ଉପସ୍ଥିତ କାହିଁକି ? ପ୍ରଥମେ ମୁଁ ଆପଣମାନଙ୍କ ଜିଜ୍ଞାସା ପ୍ରଶମନ କରିବାକୁ ପ୍ରୟାସ କରୁଛି ।

ଜଳପୂର୍ଣ୍ଣ ପାତ୍ର ମଧ୍ୟରେ ଆପଣମାନେ ଯେଉଁ ପ୍ରସ୍ଫୁଟିତ 'କୃଷ୍ଣକମଳ' ଦେଖୁଛନ୍ତି, ସେ କୌଣସି ସାଧାରଣ ପୁଷ୍ପ ନୁହେଁ । ସିଏ ହେଉଛି ଦ୍ୱାପର ଯୁଗରେ ମୃତ୍ୟୁ ଲଭିଥିବା ଲକ୍ଷାଧିକ ଅଶାନ୍ତ ଆତ୍ମାଙ୍କର ସ୍ଥୁଳସ୍ୱରୂପ ! ଆଉ ସେ ଆତ୍ମାମାନେ, ମହାଭାରତ ଯୁଦ୍ଧରେ ପ୍ରାଣବଳି ଦେଇଥିବା ସୈନିକମାନଙ୍କର ନୁହନ୍ତି, ବରଂ ସେମାନଙ୍କ ମୃତ ପତ୍ନୀ ଏବଂ ଆତ୍ମୀୟ ସ୍ୱଜନଙ୍କର ।

ଆପଣମାନେ ଜାଣନ୍ତି, ମହାଭାରତ ଯୁଦ୍ଧରେ ଅନେକ ରଥୀ, ମହାରଥୀଙ୍କ ସମେତ ଲକ୍ଷଲକ୍ଷ ସାଧାରଣ ସୈନିକ ପ୍ରାଣବଳି ଦେଇଥିଲେ । ଅଷ୍ଟାଦଶ ଦିବସର ଯୁଦ୍ଧ ମଧ୍ୟରେ ଏତେ ସଂଖ୍ୟକ ସୈନ୍ୟଙ୍କ ବିୟୋଗ ହେତୁ ଦେଶର ସଂଖ୍ୟାଧିକ ସଧବାଙ୍କ ସୀମନ୍ତ ଶୂନ୍ୟ ହୋଇଗଲା । ସେମାନଙ୍କ ଉପରେ ନିର୍ଭରଶୀଳ ପରିବାରଗୁଡ଼ିକ ଉଜୁଡ଼ିଗଲା । ଅକାଳ ବୈଧବ୍ୟ ବରଣ କରି ସୈନ୍ୟପତ୍ନୀମାନେ ଦୁଃଖ ଓ ଦୁଃସ୍ଥିତି ଭିତରେ ଅତିବାହିତ କରିଥିଲେ ଅବଶିଷ୍ଟ ଜୀବନ । ଯୁବାବସ୍ଥାରେ ବୈଧବ୍ୟ ସେମାନଙ୍କ ପାଇଁ ଥିଲା ଅଭିଶାପ ସଦୃଶ୍ୟ ! ପ୍ରଶ୍ନ ଉଠିଲା, ହସ୍ତିନାପୁର ରାଜସିଂହାସନ ଓ କ୍ଷମତା ଅଧିକାର ପାଇଁ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଭ୍ରାତୃବିବାଦ ହେଲା ! ଏଭଳି ଗୋଟିଏ ପାରିବାରିକ କନ୍ଦଳ ପାଇଁ ଭାରତର ବିଭିନ୍ନ ରାଜ୍ୟରୁ ଆସି ଏତେ ସଂଖ୍ୟକ ସୈନ୍ୟ ନିହତ ହେବା ଏବଂ ସେମାନଙ୍କ ପତ୍ନୀମାନେ ଅକାଳ ବୈଧବ୍ୟ ବରଣ କରିବା କେତେଦୂର ସମିଚୀନ ? ଧର୍ମବିଚାର ଅନୁସାରେ ଏହା ଯଦି ପ୍ରଜାଙ୍କ ପ୍ରତି ଅନ୍ୟାୟ ହୋଇଛି, ତା'ହେଲେ ମହାଭାରତ ଯୁଦ୍ଧ ପାଇଁ ଯେଉଁ ରାଜପୁରୁଷମାନେ ମୁଖ୍ୟତଃ ଦାୟୀ, ସେମାନେ ଆଜିର ଏହି ଧର୍ମ ଦରବାରରେ ନିଜନିଜ ଦୋଷ ସ୍ୱୀକାର ପୂର୍ବକ କ୍ଷମା ଯାଚନା କରିବା ହୁଅନ୍ତୁ ।

ହେ ମହାରଥୀଗଣ ! ଏହା ମୋ'ର ନୁହେଁ, ବରଂ ସେହି ପତିହରା ନାରୀମାନଙ୍କର ବିକ୍ଷୁବ୍ଧ ମନର ବେଦନା । ଅଶାନ୍ତ ହୃଦୟର ପ୍ରତିଧ୍ୱନି ! ପୁଞ୍ଜିଭୂତ ଦୁଃଖ ଓ ଅଶାନ୍ତିର ଉଦ୍‌ବେଳନ ମଧ୍ୟରେ ସେମାନଙ୍କର ଦେହାନ୍ତ ହୋଇଥିଲା । ତେଣୁ ମୃତ୍ୟୁପରେ ମଧ୍ୟ ସେମାନଙ୍କ ବିକ୍ଷୁବ୍ଧ

ଆତ୍ମାମାନେ ଅଶାନ୍ତ ଭାବେ ବିଚରଣ କରୁଛନ୍ତି ! ଆଜି ବି ! ସେ ଯୁଗରୁ ଅଦ୍ୟାବଧି ସେମାନେ ଏହି ଧର୍ମ ଦରବାରରେ ଅପେକ୍ଷାରତ ନ୍ୟାୟୋଚିତ ବିଚାର ପାଇବା ଆଶାରେ । ଆପଣମାନଙ୍କ ମୁଖରୁ ଦୋଷ ସ୍ୱୀକାର ପୂର୍ବକ ସାନ୍ତ୍ୱନାଭରା କଥା ପଦେ ଶୁଣିଲେ ହୁଏତ ସେମାନେ ଶାନ୍ତ ହୋଇଯିବେ । ମୁକ୍ତ ହୋଇଯିବେ । ଏହି ଘନକୃଷ୍ଣ ବର୍ଣ୍ଣର ଅଷ୍ଟଦଳ 'କୃଷ୍ଣକମଳ' ହେଉଛନ୍ତି ସେହି ଅଶାନ୍ତ ଆତ୍ମା ସମୂହର ଏକକ ପ୍ରତିନିଧି ! ସେ ଆଜି ଆପଣମାନଙ୍କ ସମ୍ମୁଖରେ ଉପସ୍ଥିତ । ସେମାନଙ୍କ ମନରେ ଯେଉଁ କ୍ଷୋଭ ରହିଛି, ଯେଉଁ ଦୁଃଖ ଭରା ଅଭିଯୋଗମାନ ରହିଛି, ତାହାକୁ 'କୃଷ୍ଣକମଳ' ଆପଣମାନଙ୍କ ଆଗରେ ପ୍ରକାଶ କରିବେ, ଧ୍ୟାନ ସହକାରେ ଶୁଣନ୍ତୁ ! ଉଚିତ ମନେକଲେ ନିଜର ଦୋଷ ସ୍ୱୀକାର କରି ସେ ଅଶାନ୍ତ ଆତ୍ମାମାନଙ୍କୁ ଶାନ୍ତି ପ୍ରଦାନ କରନ୍ତୁ ।"

ଏତିକିରେ ଧର୍ମଦେବ ନିଜ ବକ୍ତବ୍ୟ ଶେଷ କରି କୃଷ୍ଣକମଳଙ୍କ ଆଡ଼କୁ ସହାନୁଭୂତିପୂର୍ଣ୍ଣ ହୃଦୟରେ ଅନାଇଲେ । ସମଗ୍ର ସଭାଜନଙ୍କ କୌତୂହଳୀ ଦୃଷ୍ଟି ଏବେ କୃଷ୍ଣକମଳ ଉପରେ । ମଧ୍ୟେମଧ୍ୟେ କ୍ଷୀଣ ଗୁଞ୍ଜରଣ ଖେଳିଯାଉଥିଲା ସଭାକକ୍ଷ ମଧ୍ୟରେ । ସମସ୍ତେ ବିସ୍ମୟାଭିଭୂତ ! କେବଳ ବାସୁଦେବଙ୍କ ମୁଖମଣ୍ଡଳରେ ଖେଳୁଥିଲା ସ୍ମିତ ହସର ମୃଦୁ ସମୀରଣ !

ସହସା କୃଷ୍ଣକମଳର କୋମଳ ଦଳଗୁଡ଼ିକ ଉତ୍ପୀଡ଼ିତା ନାରୀର ସ୍ଫୁରିତ ଓଷ୍ଠଯୁଗଳ ଭଳି ଅଳ୍ପ ଥରିଉଠିଲା ଏବଂ ତା' ଭିତରୁ ଭାସିଆସିଲା ଏକ ଉଦାତ୍ତ କଣ୍ଠସ୍ୱର, "ହେ ବୀର ପୁରୁଷଗଣ ! ଆପଣମାନଙ୍କ ମଧ୍ୟରୁ ଅଧିକାଂଶ ଯୋଦ୍ଧା ମହାଭାରତଯୁଦ୍ଧରେ ପ୍ରତ୍ୟକ୍ଷ ଅଥବା ପରୋକ୍ଷ ଭାବରେ ଅଂଶଗ୍ରହଣ କରିଛନ୍ତି । ସମୟର ଆହ୍ୱାନକ୍ରମେ ଏହି ଯୁଦ୍ଧ ସଂଘଟିତ ହୋଇଥିଲା ଅଧର୍ମର ବିନାଶ ଓ ଧର୍ମର ପୁନଃପ୍ରତିଷ୍ଠା ନିମନ୍ତେ । ଦ୍ୱାପର ଶେଷାର୍ଦ୍ଧରେ ଘଟିତ ସେ ମହାଯୁଦ୍ଧର ପ୍ରତିଟି ଘଟଣା ମହାକାଳର ଯୁଗପଞ୍ଜିକାରେ ଲିପିବଦ୍ଧ ହୋଇ ରହିଅଛି । ସେଥିରେ ଏହା ମଧ୍ୟ ଉଲ୍ଲେଖ ଅଛି ଯେ, ଆପଣମାନଙ୍କ ଭଳି ରଥୀ, ମହାରଥୀ ଓ ଅତିରଥୀଙ୍କ ବ୍ୟତୀତ ସଂଖ୍ୟାଧିକ  ସାଧାରଣ ସୈନିକ ଭାଗ ନେଇଥିଲେ ସେ ମହାଯୁଦ୍ଧରେ । ଉଭୟଙ୍କ ପକ୍ଷରୁ ଅଠର ଅକ୍ଷୌହିଣୀ, ଅର୍ଥାତ୍ ପ୍ରାୟ ଚାଳିଶି ଲକ୍ଷରୁ ଅଧିକ ସଶସ୍ତ୍ର ସୈନିକ ଯୁଦ୍ଧ କରିଥିଲେ । ଅଷ୍ଟାଦଶ ଦିବସର ଯୁଦ୍ଧ ମଧ୍ୟରେ ସତର ଅକ୍ଷୌହଣୀରୁ ଅଧିକ ସୈନ୍ୟ ପ୍ରାଣବଳି ଦେଲେ । ଜୀବନ ଧରି ଯୁଦ୍ଧଭୂମିରୁ ଫେରିଥିଲେ ମାତ୍ର ଅଳ୍ପସଂଖ୍ୟକ କ୍ଷତବିକ୍ଷତ ଯୋଦ୍ଧା । ଏଠାରେ ପ୍ରଶ୍ନ ଉଠୁଛି, ଯେଉଁ ସୈନିକମାନେ ନିଜର କିଛି ସ୍ୱାର୍ଥ ନଥାଇ ମଧ୍ୟ ଦୁଇଟି ରାଜପରିବାରର ସ୍ୱାର୍ଥରକ୍ଷା ପାଇଁ ଯୁଦ୍ଧ-ଯଜ୍ଞରେ ନିଜ ଜୀବନକୁ ଆହୂତି ଦେଲେ, ସେମାନଙ୍କ ପତ୍ନୀମାନଙ୍କ ବୈଧବ୍ୟ ଦୁଃଖ, ପରିବାରର ଦୁଃସ୍ଥିତି ଓ ସେମାନଙ୍କ ପରବର୍ତ୍ତୀ ପିଢ଼ିର ଦୁରବସ୍ଥା ପାଇଁ ଦାୟୀ କିଏ ହେବେ ? ଅଧର୍ମର ବିନାଶ ଓ ଧର୍ମ ସଂସ୍ଥାପନା ପାଇଁ ଯଦି ଏ ଯୁଦ୍ଧ ଅନିବାର୍ଯ୍ୟ ଥିଲା, ତା'ହେଲେ ଅଠର ଅକ୍ଷୌହଣୀ ନିରୀହ ସୈନିକ ଓ ସେମାନଙ୍କ ପରିବାରବର୍ଗ

କି ଅଧର୍ମ କରିଥିଲେ ଯେ ଏଭଳି ଦୁଃଖଦ ପରିଣାମ ଭୋଗିଲେ ? ପ୍ରଜାଙ୍କ ଦୁଃଖ ରାଜ୍ୟର ପ୍ରଶାସନ ବୁଝନ୍ତି; କିନ୍ତୁ ଏ ମହାଯୁଦ୍ଧ ପରେ ସମଗ୍ର ଭାରତର ସ୍ଥିତି ଦୋହଲି ଯାଇଥିଲା । ଯୁଦ୍ଧାକ୍ରାନ୍ତ ରାଜ୍ୟମାନଙ୍କରେ ଦୁର୍ଭିକ୍ଷ, ଅକାଳ ଓ ଅରାଜକତା ବ୍ୟାପିବା ସ୍ୱାଭାବିକ କଥା । ଏଭଳି ପରିସ୍ଥିତିରେ ଏହି ଅସହାୟା ସ୍ୱାମୀହରା ରମଣୀମାନଙ୍କ ଦୁଃଖ କିଏ ବୁଝିଥାନ୍ତା ?

ହେ ମହାବୀରଗଣ ! ଯୁଦ୍ଧ ଯଦି ରାଜ୍ୟର ଆଭ୍ୟନ୍ତରୀଣ ସୁରକ୍ଷା ଅଥବା ବାହ୍ୟ ପ୍ରତିରକ୍ଷା ପାଇଁ ହୋଇଥାନ୍ତା, ତା'ହେଲେ କଥା ଥିଲା ଭିନ୍ନ । ଏଠାରେ କିନ୍ତୁ ସିଂହାସନ ଓ କ୍ଷମତାପ୍ରାପ୍ତି ପାଇଁ ଭାଇଭାଇ ମଧ୍ୟରେ ଲଢ଼େଇ ହୋଇଥିଲା । ଆପଣମାନେ ଚାହିଥିଲେ ସେ ମହାବିନାଶକାରୀ ସଂଗ୍ରାମକୁ ରୋକି ପାରିଥାନ୍ତେ କିମ୍ବା ଯୁଦ୍ଧର ମୋଡ଼ ବଦଳାଇ ଶାନ୍ତି ପ୍ରତିଷ୍ଠା କରି ପାରିଥାନ୍ତେ । ତା' ଦ୍ୱାରା ଅନ୍ତତଃ ନିରୀହ ସୈନ୍ୟସାମନ୍ତଙ୍କ ଜୀବନ ରକ୍ଷା କରାଯାଇ ପାରିଥାନ୍ତା । ଆମ୍ଭେ ଜାଣିଛୁ, ସମଗ୍ର ଭାରତବର୍ଷର କୋଣ ଅନୁକୋଣରୁ, ଉଭୟ କୁରୁ ଓ ପାଣ୍ଡବ ପକ୍ଷର ମିତ୍ରରାଜାମାନେ ଲକ୍ଷଲକ୍ଷ ଯୋଦ୍ଧାଙ୍କୁ ଏହି ଯୁଦ୍ଧରେ ଭାଗ ନେବାପାଇଁ ପ୍ରେରଣ କରିଥିଲେ । ଧର୍ମ ସପକ୍ଷରେ ଏବଂ ବିପକ୍ଷରେ ଲଢୁଥିବା ପ୍ରାୟ ସମସ୍ତ ଯୋଦ୍ଧା ବୀରଗତିକୁ ପ୍ରାପ୍ତ କଲେ । ଅନ୍ତତଃ ଏହି ଧର୍ମଯୁଦ୍ଧରେ ଅଧର୍ମିମାନେ ନିହତ ହେଲେ । ଧର୍ମବନ୍ତମାନେ ବିଜୟ ଲାଭ କରି ସୁଖଶାନ୍ତିରେ ରାଜ୍ୟ ଶାସନ କଲେ । ଉଭୟ ପକ୍ଷ ପାଇଁ ଯୁଦ୍ଧକରି ପ୍ରାଣବଳି ଦେଇଥିବା ସୈନିକମାନେ ସ୍ୱର୍ଗପ୍ରାପ୍ତ କଲେ । ପୁନଶ୍ଚ ଏଠାରେ ପ୍ରଶ୍ନ ଉଠୁଛି, ଯେଉଁ ସୈନିକମାନେ ପ୍ରାଣବଳି ଦେଲେ, ସେମାନଙ୍କ ପତ୍ନୀ, ସନ୍ତାନସନ୍ତତି, ପିତାମାତା ତଥା ସେମାନଙ୍କ ଉପରେ ନିର୍ଭରଶୀଳ ଓ ଆଶ୍ରିତ ପ୍ରାଣୀମାନଙ୍କ ଦୁରବସ୍ଥା ପାଇଁ ଦାୟୀ କିଏ ହେବେ ?

ହେ ମହାନ୍ ଯୋଦ୍ଧାଗଣ ! ଆପଣମାନଙ୍କ ଜ୍ଞାତ ଥିବ, ପ୍ରତିଦିନ ସୂର୍ଯ୍ୟାସ୍ତର ଯୁଦ୍ଧବିରାମ ପରେ ମୃତ ସୈନିକମାନଙ୍କର ଦାହ ସଂସ୍କାର କରାଯାଉଥିଲା । ସେତେବେଳେ ବହୁ ସୈନିକଙ୍କ ବିଧବା ପତ୍ନୀ, ନିଜନିଜ ପତିମାନଙ୍କ ଚିତାଗ୍ନିରେ ଝାସଦେଇ ସତୀ ହୋଇସାରିଛନ୍ତି । ଆହୁରି ଅନେକ ବିଧବା, ମହର୍ଷି ବ୍ୟାସଦେବଙ୍କ ପରାମର୍ଶକ୍ରମେ ଗଙ୍ଗାନଦୀରେ ପ୍ରାଣ ବିସର୍ଜ୍ଜନ କରି ସ୍ୱର୍ଗଲାଭ କରିସାରିଛନ୍ତି । ଏ ଉଭୟ କାର୍ଯ୍ୟରୁ ନିରସ୍ତ ରହି ଅନେକ ବିଧବା ନିଜ ସନ୍ତାନମାନଙ୍କ ଭବିଷ୍ୟତକୁ ଚାହିଁ ସାରାଜୀବନ ଦୁଃଖରେ ଅତିବାହିତ କଲେ ଏବଂ ଅତୃପ୍ତ ଓ ଅଶାନ୍ତ ଅବସ୍ଥାରେ ମୃତ୍ୟୁ ବରଣ କଲେ । ମୁଁ ସେହି ଲକ୍ଷାଧିକ ଅଶାନ୍ତ ଆତ୍ମାଙ୍କର ପ୍ରତିନିଧ ଭାବରେ ଆପଣମାନଙ୍କୁ ଅନୁଯୋଗ କରୁଛି, ଯେଉଁ ରାଜପୁରୁଷମାନେ ଏ ଯୁଗାନ୍ତକାରୀ ମହାଯୁଦ୍ଧର ନିର୍ଣ୍ଣାୟକ ଅଥବା ଯେଉଁମାନେ ଏଥିପାଇଁ ନିଜକୁ ଦାୟୀ ବୋଲି ଭାବୁଛନ୍ତି, ସେମାନେ ଆଜିର ଏ ଧର୍ମସଭାରେ ନିଜର ସ୍ପଷ୍ଟ ବକ୍ତବ୍ୟ ରଖି କ୍ଷମା ଯାଚନା କରନ୍ତୁ । ହୋମାଗ୍ନିର ଦୀର୍ଘ ପ୍ରଜ୍ୱଳନ ପରେ ଗଣ୍ଡୁଷେମାତ୍ର ଜଳରେ ଅଗ୍ନି ପ୍ରଶମନ ହେବାଭଳି, ଦୀର୍ଘକାଳ ଧରି ଅଶାନ୍ତି ଅଗ୍ନିରେ ଯନ୍ତ୍ରଣା ଭୋଗୁଥିବା ଆତ୍ମାମାନେ ଆପଣମାନଙ୍କ ମୁଖରୁ

ପଦେ ସହାନୁଭୂତିର କଥା ଶୁଣିଲେ ହୁଏତ ଶାନ୍ତ ହୋଇଯିବେ । ମୁକ୍ତ ହୋଇଯିବେ । ମୁଁ ଆପଣମାନଙ୍କ ନିକଟରୁ କେବଳ ଏତିକି ସହଯୋଗ କାମନା କରୁଛି ।" କୃଷ୍ଣକମଳ ଉପସ୍ଥିତ ସଭାଜନଙ୍କୁ ଏହିଭଳି ଅନୁରୋଧ କରି ନିରବିଗଲେ ।

ସଭାଗାର ମଧ୍ୟରେ ବେଶ୍ କିଛି ସମୟ ଧରି ଛାଇଗଲା ନିବିଡ଼ ନିରବତା । ଅଳ୍ପ ସମୟ ଅନ୍ତରାଳରେ ସଭା ମଧ୍ୟରୁ ଉଠିଲେ ଜଣେ ଦୀର୍ଘଦେହି ରାଜପୁରୁଷ ! କୃଷ୍ଣକମଳ ନିକଟକୁ ସେ ଆସିଲେ । ବାସୁଦେବ ଶ୍ରୀକୃଷ୍ଣ ଏବଂ ଧର୍ମଦେବଙ୍କୁ ପ୍ରଣାମ କରି କହିଲେ, "ହେ କୃଷ୍ଣକମଳ ! ମୁଁ କୁରୁରାଜ ପ୍ରତୀପଙ୍କ ପୁତ୍ର ମହାରାଜା ଶାନ୍ତନୁ । ମୁଁ ନିଜକୁ ମହାଭାରତ ଯୁଦ୍ଧ ପାଇଁ ମହାଦୋଷୀ ଭାବେ ସ୍ୱୀକାର କରୁଛି ଏବଂ ଏ ଧର୍ମସଭା ସମକ୍ଷରେ କ୍ଷମା ଯାଚନା କରୁଛି ।"

କୃଷ୍ଣକମଳର ସ୍ଫୁରିତ ଦଳ ମଧ୍ୟରୁ ପ୍ରଶ୍ନହେଲା, "ହେ ରାଜନ୍ ! ମହାଭାରତ ଯୁଦ୍ଧ ସମୟରେ ତ ଆପଣ ସ୍ୱର୍ଗବାସୀ ହୋଇ ସାରିଥିଲେ, ଆପଣ କେମିତି ଦୋଷୀ ହୋଇପାରିବେ ଏ ଘଟଣା ପାଇଁ ?"

ମହାରାଜା ଶାନ୍ତନୁ କହିଲେ, "ହେ ପୁଷ୍ପରାଜ ! କ୍ଷୁଦ୍ର ବୀଜ ମଧ୍ୟରେ ଯେମିତି ଏକ ବିଶାଳ ବୃକ୍ଷର ସମ୍ଭାବନା ରହିଥାଏ, ଠିକ୍ ସେମିତି ମୋ' ଅବାଞ୍ଛିତ କାମନା ରୂପକ ବୀଜ ମଧ୍ୟରେ ମହାଭାରତ ଯୁଦ୍ଧ ଭଳି ଏକ ବିଶାଳ ବିଷବୃକ୍ଷର ସମ୍ଭାବନା ଲୁଚି ରହିଥିଲା । ଧୀବରକନ୍ୟା ସତ୍ୟବତୀଙ୍କ ସଂଦର୍ଶନରେ ମୋ' ଦୁର୍ବଳ ମନ ଭିତରେ ଯେଉଁ କାମନାର ବୀଜ ଅଙ୍କୁରିତ ହୋଇଥିଲା, ତାହାହିଁ ଥିଲା ମୋ'ର ପ୍ରଥମ ଭୁଲ୍ ! ମୋ' ଜ୍ୟେଷ୍ଠପୁତ୍ର ଦେବବ୍ରତ ମୋ'ର ଏହି ସଂଗୁପ୍ତ ଇଚ୍ଛାକୁ ସମ୍ମାନ ଦେବାକୁ ଯାଇ ଦ୍ୱିତୀୟ ଭୁଲ୍ କରିବସିଲେ । ତାଙ୍କ ଭୀଷଣ ପ୍ରତିଜ୍ଞା ସହିତ କୁରୁ ରାଜବଂଶର ଇତିହାସ ହିଁ ବଦଳାଇଦେଲେ ସେ । ମୋ' ପାଇଁ ପ୍ରତିଜ୍ଞାବଦ୍ଧ ହେବା କାରଣରୁ ସେ ପାଳନ କଲେ ଆଜୀବନ ବ୍ରହ୍ମଚର୍ଯ୍ୟ । ମୋ' ଅନ୍ତେ ଯଦି ଭୀଷ୍ମ ଏବଂ ସମୟାନ୍ତରରେ ତାଙ୍କ ଔରସଜାତ ସନ୍ତାନମାନେ ବସିଥାନ୍ତେ ହସ୍ତିନାପୁର ସିଂହାସନରେ, ତା'ହେଲେ ଏହି ମହାବିନାଶକାରୀ ମହାଯୁଦ୍ଧର ଅବକାଶ ହିଁ ନଥିଲା । ତେଣୁ ମୁଁ ନିଜକୁ ମହାଭାରତ ଯୁଦ୍ଧପାଇଁ ପ୍ରଥମ ଅପରାଧୀ ବୋଲି ସର୍ବସମକ୍ଷରେ ସ୍ୱୀକାର କରୁଛି । ଆପଣମାନେ ମୋତେ କ୍ଷମା କରନ୍ତୁ ଏବଂ ଶାନ୍ତ ହୁଅନ୍ତୁ !"

ମହାରାଜା ଶାନ୍ତନୁଙ୍କ ବକ୍ତବ୍ୟ ଶେଷ ହେବାବେଳକୁ ଆଶ୍ଚର୍ଯ୍ୟର କଥା, କୃଷ୍ଣକମଳର ଆଠଗୋଟି କୃଷ୍ଣ ପାଖୁଡ଼ା ମଧ୍ୟରୁ ଗୋଟିଏ ଶ୍ୱେତବର୍ଣ୍ଣ ଧାରଣ କରିସାରିଥାଏ । ଏତିକିବେଳେ ମହାଶୂନ୍ୟର ଅଦୃଶ୍ୟ ଇଲାକାରୁ ଭାସି ଆସିଲା ସାମୁହିକ ସ୍ୱସ୍ତିବାଣୀ ସାଧୁ.. ସାଧୁ..ସାଧୁ..ସାଧୁ.. ! ! ଧର୍ମଦେବ କରଦ୍ୱୟ ଉତ୍ତୋଳନ କରି ରାଜା ଶାନ୍ତନୁଙ୍କୁ ନିଜ ଆସନ ଗ୍ରହଣ କରିବାକୁ ଇଙ୍ଗିତ କଲେ ।

ତତ୍‌ପରେ ଆସନ ତ୍ୟାଗକରି କୃଷକମଳ ନିକଟକୁ ଆସିଲେ ଜଣେ ବରିଷ୍ଠ ବୀରପୁରୁଷ ! ବୟସ୍କ ହେଲେ ବି ବଳିଷ୍ଠ ଓ ତେଜସ୍ୱୀ ! ଦୀର୍ଘ ଶରୀର । ଆଜାନୁଲମ୍ବିତ ବାହୁ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ମୁଖମଣ୍ଡଳରେ ତାଙ୍କର ଆଚ୍ଛାଦିତ ହୋଇ ରହିଥିଲା ଘନଶୁଭ୍ର ଶ୍ମଶ୍ରୁଗୁଚ୍ଛ ! କଟିରେ ଦୀର୍ଘ କୃପାଣ । ସ୍କନ୍ଧରେ ତୀର ଭରା ତୁଣୀର ଏବଂ ବିଶାଳଧନୁ 'ବାୟବ୍ୟ' ।

'କୃଷକମଳ' ଉଦ୍ଦେଶ୍ୟରେ ମଥାନତ କଲେ ସେ । ଶ୍ରୀଗୋବିନ୍ଦ ଏବଂ ଧର୍ମଦେବଙ୍କୁ ପ୍ରଣିପାତ କରି ଗୁରୁଗମ୍ଭୀର କଣ୍ଠରେ କହିଲେ, "ମୁଁ ଗଙ୍ଗାପୁତ୍ର ଭୀଷ୍ମ ! ମୋ' ପିତା ମହାରାଜା ଶାନ୍ତନୁଙ୍କ ହୃଦୟର ଭାଷାକୁ ମୁଁ ସମ୍ମାନ ଜଣାଉଛି । ତତ୍‌ସଙ୍ଗେସଙ୍ଗେ ମହାଭାରତ ମହାସମରର ମୁଖ୍ୟ ପୁରୋଧା ତଥା ପ୍ରଧାନ ଅପରାଧୀ ରୂପେ ନିଜକୁ ମୁଁ ସ୍ୱୀକାର କରୁଛି । ତେଣୁ ହେ କୃଷକମଳ ! ଏହି ଧର୍ମ ଦରବାରରେ ମୁଁ ତୁମ ନିକଟରେ କ୍ଷମାପ୍ରାର୍ଥୀ !"

କୃଷକମଳ ପ୍ରଶ୍ନକଲେ, "ହେ ମହାମହିମ ! ଆପଣ କୁରୁ ରାଜବଂଶର ସର୍ବମାନ୍ୟ ତଥା ବରିଷ୍ଠ ବ୍ୟକ୍ତିତ୍ୱ ! କୌରବ ଓ ପାଣ୍ଡବ, ଉଭୟ ପକ୍ଷର ଆପଣ ଶୁଭାକାଙ୍‌କ୍ଷୀ ଓ ପିତାମହ ଅଟନ୍ତି । ହସ୍ତିନାପୁର ରାଜ୍ୟର ବିକାଶ ଓ ଉନ୍ନତି କେବଳ ଆପଣଙ୍କ ସାମର୍ଥ୍ୟ ଓ ସମର୍ପଣ ଯୋଗୁଁ ସମ୍ଭବ ହୋଇ ପାରିଛି । ଆମ୍ଭେ ଶୁଣିଛୁ, କୌରବ ଓ ପାଣ୍ଡବ ଭାଇଭାଇ ମଧ୍ୟରେ ଶାନ୍ତି, ସୌହାର୍ଦ୍ଦ୍ୟ ସ୍ଥାପନ କରିବା ପାଇଁ ଆପଣ ଆଜୀବନ ପ୍ରୟାସ କରିଛନ୍ତି, ଯଦିଓ ଶେଷସୁଦ୍ଧା ସଫଳ ହୋଇପାରି ନଥିଲେ । ତେବେ ମହାଭାରତ ଯୁଦ୍ଧ ପାଇଁ ଆପଣ ନିଜକୁ ଦୋଷୀଭାବେ ସ୍ୱୀକାର କରିବାର ଯଥାର୍ଥତା କ'ଣ ?"

ଭୀଷ୍ମ ଦୃଢ଼ କଣ୍ଠରେ କହିଲେ, "ହେ କୃଷକମଳ ! କୃଷକ ତା' ଜମିରେ ଯେଉଁ ବୀଜ ବପନ କରିଥାଏ, ସେଇ ବୀଜରୁ ଉତ୍ପାଦିତ ଫସଲ ହିଁ ସେ ଅମଳ କରେ । ସେହି ନ୍ୟାୟରେ, ହସ୍ତିନାପୁର ଜମିରେ ମୁଁ ଅହଂକାରର ବୀଜ ବୁଣି ଅନାଚାରର ଫସଲ ଅମଳ କରିଛି । ମୋ' ଅପରିଣାମଦର୍ଶୀ ପ୍ରତିଜ୍ଞାର ଭୟଙ୍କର ପରିଣତି ହିଁ ମହାଭାରତ ଯୁଦ୍ଧ ! ଯେଉଁ ଭୀଷ୍ମପ୍ରତିଜ୍ଞା ପାଇଁ ମୁଁ ଜଗତ ବିଖ୍ୟାତ, ସେହି ପ୍ରତିଜ୍ଞା ହିଁ ରସାତଳଗାମୀ କରିଛି ମୋ' ଜୀବନକୁ । ଗୋଟିଏ ନାଗୁଣୀ ତା' ଗର୍ଭରୁ ଅନେକ ବିଷଧରଙ୍କୁ ଜନ୍ମ ଦେବାଭଳି ମୋ' ପ୍ରତିଜ୍ଞାରୁ ଜନ୍ମ ନେଇଛି ଅନେକ ଦୋଷଯୁକ୍ତ ନିର୍ଣ୍ଣୟ । ମଣିଷ ଗୋଟିଏ ପାପ କରି ସଚେତ ନହେଲେ ପଛକୁ ପଛ ଅନେକ ପାପର ଭାଗିଦାର ହୋଇଥାଏ । ଠିକ୍ ସେମିତି ମୋ' ଜୀବନର ପ୍ରଥମ ଭୁଲ୍, ମୋ' ଭୀଷ୍ମପ୍ରତିଜ୍ଞା ! ସେହି ପ୍ରତିଜ୍ଞା ଯୋଗୁଁ ମୋତେ ପଛକୁ ପଛ ଅନେକ ଭୁଲ ସିଦ୍ଧାନ୍ତ ନେବାକୁ ପଡ଼ିଥିଲା । କୃପଣ ନିଜେ ଭୋଗ ନକରି ଧନକୁ କେବଳ ଜଗିରହିବା ଭଳି ମୁଁ ହସ୍ତିନାପୁର ସିଂହାସନ ଅଧିକାର ନକରି ମଧ୍ୟ ଆଜୀବନ ତା' ସୁରକ୍ଷା ଦାୟିତ୍ୱରେ ରହିଲି । ବିଚିତ୍ରବିର୍ଯ୍ୟକୁ ସିଂହାସନରେ ବସାଇ ମୁଁ ହେଲି ତା'ର ପ୍ରତିନିଧି । ସେହି ଭାଇ ପାଇଁ ଅମ୍ବା, ଅମ୍ବିକା ଓ ଅମ୍ବାଳିକାଙ୍କୁ ସ୍ୱୟମ୍ବର ସଭାରୁ ଅପହରଣ କରି ଆଣିବା ଥିଲା ମୋ'ର ଦ୍ୱିତୀୟ

ଭୁଲ୍ ! ବ୍ରହ୍ମଚର୍ଯ୍ୟ ପାଳନ କରୁଥିବା ଜଣେ ବରିଷ୍ଠ ବ୍ୟକ୍ତି ପକ୍ଷେ ଏଭଳି ଅପରାଧ ନିଶ୍ଚୟ ଅକ୍ଷମଣୀୟ ! ପ୍ରତିଜ୍ଞାବଦ୍ଧ ଥିବା ହେତୁ ମୁଁ ଅମ୍ବାଙ୍କୁ ପତ୍ନୀଭାବେ ସ୍ୱୀକାର ମଧ୍ୟ କରି ପାରିଲିନାହିଁ । ତେଣୁ ଅପମାନିତା ଓ ପ୍ରତ୍ୟାଖ୍ୟାତା ଅମ୍ବାଙ୍କ ଅଭିଶାପ ହେଲା ମୋ' ମୃତ୍ୟୁର କାରଣ ।

ମୋ'ର ତୃତୀୟ ଭୁଲ , ଅମ୍ବିକାପୁତ୍ର ଧୃତରାଷ୍ଟ୍ରଙ୍କ ପାଇଁ ଗାନ୍ଧାରୀଙ୍କୁ ଚୟନ କରିବା । ଗାନ୍ଧାରରାଜ ସୁବଳ । ଜଣେ ଦୃଷ୍ଟିହୀନ ରାଜା ହାତରେ ନିଜ ସୁନ୍ଦରୀ କନ୍ୟାଙ୍କୁ ସମର୍ପଣ କରିବା ସପକ୍ଷରେ ନଥିଲେ ସେ । ତାହା ଥିଲା ମୋ' ପୌରୁଷ ପ୍ରତି ଏକ ଆହ୍ୱାନ୍ ! ତେଣୁ ବଳ ପ୍ରୟୋଗ ପୂର୍ବକ ହାସଲ କରିବାକୁ ପଡ଼ିଥାନ୍ତା ଗାନ୍ଧାରୀଙ୍କୁ । କିନ୍ତୁ ପରିସ୍ଥିତି ଦେଖି ଗାନ୍ଧାରୀ ସ୍ୱେଚ୍ଛାରେ ବରଣ କରିନେଇଥିଲେ ଧୃତରାଷ୍ଟ୍ରଙ୍କୁ । ବିବାହ ପରେ ଧୃତରାଷ୍ଟ୍ର ଜାଣିପାରିଥିଲେ ଯେ, ଗାନ୍ଧାରୀଙ୍କର ପ୍ରଥମ ବିବାହ ଗୋଟେ ଛାଗଳ ସହିତ ସମ୍ପନ୍ନ ହୋଇସାରିଛି, ଯାହା ତାଙ୍କୁ ଗୋପନ ରଖାଯାଇଥିଲା । ହସ୍ତିନାପୁର ସମ୍ରାଟଙ୍କ ପାଇଁ ଏହା ଥିଲା ଘୋର ଅପମାନର ବିଷୟ, ତେଣୁ ରାଜାଙ୍କ ଆଦେଶାନୁସାରେ ଗାନ୍ଧାର ରାଜ୍ୟ ଉପରେ ଆକ୍ରମଣ କରାଗଲା । ବନ୍ଦି କରିବାକୁ ପଡ଼ିଲା ରାଜା ସୁବଳଙ୍କ ସମେତ ଗାନ୍ଧାର ରାଜପରିବାରକୁ । ଯୋଜନା ଥିଲା, ସେମାନଙ୍କୁ କ୍ଷୁଧାତୃଷାରେ ନିଃଶେଷ କରି ଦିଆଯିବ । ଅବଶ୍ୟ ସେ ଯୋଜନା ସଫଳ ବି ହୋଇଥିଲା; କିନ୍ତୁ ବିଡ଼ମ୍ବନାର ବିଷୟ, ଗାନ୍ଧାର ପରିବାରର ଅଗ୍ନିକୁଣ୍ଡରୁ ଛିଟିକି ପଡ଼ିଥିଲା 'ଶକୁନି' ନାମଧାରୀ ଗୋଟେ ଅଗ୍ନିକଣିକା । ସେହି ଅଗ୍ନିକଣିକା ଛଳନାର ମୁଖା ପିନ୍ଧି କୁରୁବଂଶ ନିପାତ କରିବାର ଯୋଜନା କରିଥିଲା । ସେଥିରେ ସେ ସଫଳ ମଧ୍ୟ ହୋଇଥିଲା । ମୁଁ ସଚେତ ହେବାବେଳକୁ ବିଧ୍ୱଂଶ ହୋଇ ସାରିଥିଲା କୁରୁ ବଂଶବୃକ୍ଷରୁ ବିକଶିତ ଅନେଶତଟି ବିଷାକ୍ତ ବୀଜ ଏବଂ ମୃତ୍ୟୁର ପ୍ରତୀକ୍ଷା କରିଥିଲି ମୁଁ ଶରଶଯ୍ୟା ଉପରେ ।

ହେ କୃଷ୍ଣକମଳ ! ବିଶାଳକାୟ ହସ୍ତି ଖଣ୍ଡେ ଶିକୁଳିରେ ବନ୍ଧାହୋଇ ମାହୁନ୍ତପ୍ରତି ସମର୍ପିତ ରହିବାଭଳି ମୁଁ ନିଜ ପ୍ରତିଜ୍ଞାର ଶୃଙ୍ଖଳରେ ବନ୍ଧା ହୋଇ ସାରା ଜୀବନ ସମର୍ପିତ ହୋଇ ରହିଥିଲି ହସ୍ତିନାପୁର ସିଂହାସନ ପ୍ରତି । କୁରୁସଭାରେ ଦ୍ୟୁତକ୍ରୀଡ଼ା ଓ କୁଳବଧୂର ବସ୍ତ୍ରହରଣ ଭଳି ଭୟଙ୍କର ଦୁଷ୍କର୍ମମାନ ମୋ' ଚକ୍ଷୁ ସମ୍ମୁଖରେ ଘଟିଗଲା । ମୋ' ଧନୁର ଗୋଟିଏ ଟଙ୍କାର ସମଗ୍ର ଆର୍ଯ୍ୟାବର୍ତ୍ତକୁ ବିଦୀର୍ଣ୍ଣ କରିଦେବାର ସାମର୍ଥ୍ୟ ରଖୁଥିବା ସତ୍ତ୍ୱେ ମୁଁ ଥିଲି ସେ ଜଘନ୍ୟ ଦୃଶ୍ୟର ନିରବ ଦ୍ରଷ୍ଟା । ରାଜା ଧୃତରାଷ୍ଟ୍ର ତ କେବଳ ପୁତ୍ରମୋହରେ ଅନ୍ଧ ଥିଲେ; କିନ୍ତୁ ମୋ' ପ୍ରତିଜ୍ଞା ଓ ସମର୍ପଣଭାବ ଏକାଧାରରେ ମୋତେ ଅନ୍ଧ, ମୂକ ଓ ବଧୀର କରିଦେଇଥିଲା । କଦଳୀ ଓ ଧାନଗଛ ଛେଦନ ହେବା ପୂର୍ବରୁ ଯେମିତି ଫଳ ଧାରଣ କରିଥାନ୍ତି, ଠିକ୍ ସେମିତି କୁରୁବଂଶର ପତନ ସମୟ ନିକଟତର ହେବାରୁ ମୋ' ପୌତ୍ରମାନେ ଦ୍ୟୁତ, ମଦ୍ୟ, ନାରୀ ଅତ୍ୟାଚାର ଭଳି ଅନେକ ଦୁଷ୍କର୍ମ ଫଳରେ ଫଳବାନ୍ ହୋଇଥିଲେ ।

ମୋ' ପ୍ରତିନିଧିତ୍ୱ କାଳରେ ଅସ୍ତିନାପୁର ରାଜ୍ୟରେ ଯାହାସବୁ ଅନ୍ୟାୟ ଓ ଅନାଚାର

ଘଟିଥିଲା ସେଥିପାଇଁ ଦୁର୍ଯ୍ୟୋଧନ ନୁହେଁ ବରଂ ମୁଁ ନିଜକୁ ହିଁ ଦାୟୀ କରୁଛି । ମୋ'ର ଆଜି ବି ମନେ ପଡୁଛି, କୁରୁକ୍ଷେତ୍ର ଯୁଦ୍ଧଭୂମିରେ ବାସୁଦେବ ମୋତେ ଧିକ୍କାର କରି କହିଥିଲେ, 'ହେ ମହାରଥୀ ଭୀଷ୍ମ ! ଧିକ୍ ତୁମ ପ୍ରତିଜ୍ଞା ! ଶତଧିକ୍ ତୁମ ସାମର୍ଥ୍ୟକୁ । ଯେଉଁ ପ୍ରତିଜ୍ଞା ଜଣେ ଅସହାୟା ନାରୀର ଲଜ୍ଜା ନିବାରଣ କରିବାକୁ ଅକ୍ଷମ, ଯେଉଁ ବାହୁବଳ ନିଜ ଚକ୍ଷୁ ସମ୍ମୁଖରେ ଘଟୁଥିବା ଅନ୍ୟାୟ, ଅନାଚାର ବିରୋଧରେ ଅସ୍ତ୍ର ଉତ୍ତୋଳନ କରିବାରେ ଅସମର୍ଥ, ସେଭଳି ପ୍ରତିଜ୍ଞା, ସେଭଳି ଶକ୍ତି କେବଳ ଶୁଣିବା ପାଇଁ ମହାନ୍ ଲାଗିପାରେ; କିନ୍ତୁ ସମାଜପାଇଁ ଅର୍ଥହୀନ !'

ତେଣୁ ହେ କୃଷ୍ଣକମଳ ! ଜଣେ ଚକ୍ଷୁହୀନ ପିତାର ଦୁରାଚାରୀ ପୁତ୍ରମାନଙ୍କ ଅନ୍ନରେ ପ୍ରତିପାଳିତ ହୋଇ, ଅନ୍ୟାୟକୁ ସହନ କରିଚାଲିଥିବା ମୁଁ ଜଣେ ଅଯୋଗ୍ୟ ଓ ଅପାରଗ ପିତାମହ । ମହାଭାରତ ଯୁଦ୍ଧର ମୁଁ ପ୍ରଥମ ପୃଷ୍ଠପୋଷକ ! ସେଥିପାଇଁ ତୁମ ନିକଟରେ ମୁଁ କ୍ଷମାପ୍ରାର୍ଥୀ !"

'ଧନ୍ୟ..ଗଙ୍ଗାପୁତ୍ର ଭୀଷ୍ମ ! ଧନ୍ୟ.. ! ଏଭଳି ସ୍ୱଷ୍ଟ ତଥା ନିର୍ଭିକ ବିଚାର ରଖିଥିବାରୁ ଶତଧନ୍ୟ ତୁମ ବକ୍ତବ୍ୟକୁ ! !' ଏଭଳି ମୁହୁର୍ମୁହୁଃ ପ୍ରତିଧ୍ୱନିତ ହେବାକୁ ଲାଗିଲା ଗଗନ ପବନ ! ଇତିମଧ୍ୟରେ ଅଷ୍ଟଦଳ କୃଷ୍ଣକମଳର ଦ୍ୱିତୀୟ ପାଖୁଡ଼ାଟି ଶ୍ୱେତବର୍ଣ୍ଣ ଧାରଣ କରିସାରିଥାଏ ।

ଧର୍ମଦେବଙ୍କ ଅନୁରୋଧକ୍ରମେ ମହାମହିମ ଭୀଷ୍ମ ନିଜ ଆସନ ଗ୍ରହଣ କରିବା ପରେ ସଭା ମଧ୍ୟରୁ ଉଠିଆସିଲେ ଜଣେ ବିଶିଷ୍ଟ ଚକ୍ଷୁହୀନ ପ୍ରୌଢ଼ ! ତାଙ୍କ ହାତ ଧରି ବାଟ କଢ଼ାଇ ଆଣୁଥିଲେ ଜଣେ ରାଜକର୍ମଚାରୀ । ସେ କୃଷ୍ଣକମଳ ନିକଟକୁ ଆସି ମଥାନତ କରି ଦଣ୍ଡାୟମାନ ହେଲେ । ଦୁଇହାତ ଯୋଡ଼ି ପ୍ରଣାମ କଲେ ଶ୍ରୀକୃଷ୍ଣ ଏବଂ ଧର୍ମଦେବଙ୍କ ଉଦ୍ଦେଶ୍ୟରେ ଏବଂ ନିଜ ବ୍ୟକ୍ତବ୍ୟ ରଖିଲେ, "ହେ କୃଷ୍ଣକମଳ ! ମୁଁ ମହାରାଜା ବିଚିତ୍ରବିର୍ଯ୍ୟଙ୍କ ପୁତ୍ର 'ଧୃତରାଷ୍ଟ୍ର' ! ମହର୍ଷି ବ୍ୟାସଦେବଙ୍କ ଆଶୀର୍ବାଦରୁ ମୋ'ର ଜନ୍ମ । ଆଉ କେହି କେତେଦୂର ଦାୟୀ ମୁଁ ଜାଣେନା, କିନ୍ତୁ ମହାଭାରତ ଯୁଦ୍ଧ ପାଇଁ ମୁଁ ନିଜକୁ ପୂର୍ଣ୍ଣରୂପେ ଦାୟୀ ବୋଲି ବିବେଚନା କରୁଛି ଏବଂ ସେଥିପାଇଁ ଏ ଧର୍ମଦରବାରରେ କ୍ଷମା ଯାଚନା କରୁଛି !"

କୃଷ୍ଣକମଳ ପ୍ରଶ୍ନକଲେ, "ହେ ରାଜା ! ଆପଣ ଆଜନ୍ମ ଦୃଷ୍ଟିହୀନ ! ଶାସକ ହୋଇ ମଧ୍ୟ ଆପଣ ପ୍ରତି କ୍ଷେତ୍ରରେ ଲୋଡୁଥିଲେ ଅନ୍ୟମାନଙ୍କର ସହାୟତା । ମହାଭାରତ ଯୁଦ୍ଧରେ ଆପଣ ପ୍ରତ୍ୟକ୍ଷଭାବେ ଭାଗ ନେଇନଥିଲେ ମଧ୍ୟ ନିଜକୁ କେମିତି ଓ କାହିଁକି ଅପରାଧୀ ମନେ କରୁଛନ୍ତି ?"

ଧୃତରାଷ୍ଟ୍ର ନିଃସଂକୋଚରେ କହିଲେ, "ହେ କୃଷ୍ଣକମଳ ! ହତ୍ୟାକାରୀ ରାତ୍ରିର ଅନ୍ଧକାର ମଧ୍ୟରେ ହତ୍ୟା କଲେ ମଧ୍ୟ ସେ ଅପରାଧୀ ଭାବରେ ହିଁ ଗଣ୍ୟ । ମୁଁ ଦୃଷ୍ଟିହୀନ ହେଲେ ବି ଦୁଷ୍କର୍ମ ଓ ଦୁରାଚାରକୁ ମୌନସ୍ୱୀକୃତି ଦେଉଥିଲି, ଯାହାର ପରିଣାମରେ ମହାଭାରତ

ଯୁଦ୍ଧର ସୂତ୍ରପାତ ହୋଇଥିଲା । ତେଣୁ ସେହି ଭୟାନକ ଯୁଦ୍ଧରେ ଅଂଶଗ୍ରହଣ କରିନଥିଲେ ମଧ୍ୟ ମୁଁ ନିଜକୁ ଦୋଷୀ ମନେ କରୁଛି ।

ହେ ପୁଷ୍କରାଜ ! ନିୟତି ସିନା ମୋତେ ଅନ୍ଧ କରି ଜନ୍ମ ଦେଇଥିଲା, ହେଲେ ମୋ' ଭିତରେ ଥିବା ବିବେକ 'ପୁତ୍ରମୋହ'ର କୃଷ୍ଣପଟଳ ବାନ୍ଧି ନିଜେ ବି ଅନ୍ଧ ହୋଇଗଲା । ଜଣେ ସ୍ୱେଚ୍ଛାଚାରୀ ପୁତ୍ରର ପ୍ରତିଟି ଇଚ୍ଛାକୁ ସମର୍ଥନ ଦେଉଥିବା ଅସହାୟ ପିତାଟିଏ ହୋଇ ବସିଥିଲି ମୁଁ ସିଂହାସନରେ । 'ସିଂହାସନ' ଓ 'ଦୁର୍ଯ୍ୟୋଧନ' ଏ ଦୁଇଟି ଥିଲା ମୋ'ଜୀବନର ଶ୍ରେଷ୍ଠ ବୈଭବ ଏବଂ ତା' ସହିତ ବଡ଼ ଦୁର୍ବଳତା ମଧ୍ୟ । ବିଦୁରଙ୍କ ସହାୟତାରେ ମୁଁ ହସ୍ତିନାପୁରର ଶାସନ କାର୍ଯ୍ୟ ଚଳାଉଥିଲି ଏବଂ ଭୀଷ୍ମଙ୍କ ସେନାପତିତ୍ୱରେ ରାଜ୍ୟ ସମ୍ଭାଳିଥିଲି । ଗୋଟିଏ ପାଖରେ ପିତୃବ୍ୟମାନଙ୍କ ନୈତିକ ବିଚାର ଓ ଅନ୍ୟପାଖେ ଦୁର୍ଯ୍ୟୋଧନର ଅନୈତିକ ଚାପ । ସାପୁଆକେଳା ପେଡ଼ିରେ ବିଷଦନ୍ତହୀନ ସର୍ପ ଭଳି ମୁଁ ବଞ୍ଚିଥିଲି କେବଳ ବିବଶତାର ବନ୍ଧନ ଭିତରେ । ଛାତିରେ ମୋ'ର ଗୁନ୍ଧି ହୋଇ ରହିଥିଲା ନିଜ ପୁତ୍ରମାନଙ୍କ ପ୍ରତି ଅଶେଷ ମୋହ ଏବଂ ପଣ୍ଡୁପୁତ୍ରମାନଙ୍କ ପ୍ରତି ଘୋର ଅସୂୟା ଓ ବିଦ୍ୱେଷଭାବ । ଦୁର୍ଯ୍ୟୋଧନ ସମେତ ମୋ' ନିଜର ସନ୍ତାନମାନେ ସମଗ୍ର ଆର୍ଯ୍ୟାବର୍ତ୍ତକୁ ଶାସନ କରନ୍ତୁ, ଏଭଳି ଏକ ହୀନକାମନା କୁମାରୀର ଗୁପ୍ତଗର୍ଭ ଭଳି ମୋ' ଭିତରେ ବୃଦ୍ଧିପାଇ ଚାଲିଥିଲା । ପଣ୍ଡୁପୁତ୍ରମାନଙ୍କ ବିରୁଦ୍ଧରେ ଦୁର୍ଯ୍ୟୋଧନ ଯେତେ ଷଡ଼ଯନ୍ତ୍ର କରିଛି, ତା' ମଧ୍ୟରୁ ଅଧିକାଂଶ ଯୋଜନାର ନିରବ ଦ୍ରଷ୍ଟା ତଥା ମୌନ ସମର୍ଥକ ଥିଲି ମୁଁ । ଅପରପକ୍ଷରେ ପଣ୍ଡୁପୁତ୍ରମାନେ ଯେତେବେଳେ ମୋ' ପାଦ ସ୍ପର୍ଶକରି ଆଶୀର୍ବାଦ ଭିକ୍ଷା କରନ୍ତି, ମୁଁ ହସିହସି ଅଜାଡ଼ି ଦିଏ ସେମାନଙ୍କ ଉପରେ ଆଶିଷ, କିନ୍ତୁ ମୋ' ଛଳନାଭରା ହସ ତଳେ ଲୁଚି ରହିଥାଏ ଘୃଣା ଓ ଅସୂୟାର ଭୀଷଣ ହଳାହଳ । ଏହାର ସତ୍ୟତା ସମଗ୍ର ସଂସାର ସେତେବେଳ ଜାଣିଲା, ଯେତେବେଳେ ଅଜ୍ଞତା ବଶତଃ ଭୀମର ଲୌହପ୍ରତିମାକୁ ମୁଁ ଆଲିଙ୍ଗନ କରିବା ବାହାନାରେ ଚୂର୍ଣ୍ଣିଭୂତ କରିଦେଇଥିଲି ।

ଭରପୂର ରାଜସଭା ଭିତରେ ଅନୀତିପୂର୍ଣ୍ଣ ଦ୍ୟୁତକ୍ରୀଡ଼ା ଏବଂ କୁଳବଧୂର ବସ୍ତ୍ରହରଣ ଭଳି ଯେଉଁ ଭୟାନକ ଦୁଷ୍କର୍ମମାନ ଘଟିଗଲା, ସେଥିପାଇଁ ମୁଁ ନିଜକୁ ହିଁ ପୂର୍ଣ୍ଣରୂପେ ଦାୟୀ କରୁଛି । ପିତୃବ୍ୟ ଭୀଷ୍ମ ଯଦି ଏହାର ପ୍ରତିବାଦରେ ଅସ୍ତ୍ର ଉତ୍ତୋଳନ କରିଥାନ୍ତେ, ତା'ହେଲେ ତାଙ୍କର ପ୍ରତିଜ୍ଞାଭଙ୍ଗ ହୋଇଥାନ୍ତା । ତେଣୁ ସେ ନିରବ ରହିଲେ । ହସ୍ତିନାପୁରର ରାଜା ଭାବରେ ମୁଁ ଅବଶ୍ୟ ଏ ଘଟଣାକୁ ରୋକି ପାରିଥାନ୍ତି, କିନ୍ତୁ ତାହା ମୁଁ କରିପାରିଲି ନାହିଁ । ଏହାର ଦୁଇଟି କାରଣ ଥିଲା । 'ସିଂହାସନ'ପ୍ରତି ଲୋଭ ଏବଂ 'ଦୁର୍ଯ୍ୟୋଧନ'ପ୍ରତି ମୋହ !

ପାହାଡ଼ରୁ ଅନେକ କ୍ଷୀଣ ଜଳଧାର ବହି ଆସି ବିଶାଳ ନଦୀଟିଏ ସୃଷ୍ଟି ହେବା ଭଳି ପାଣ୍ଡବମାନଙ୍କପ୍ରତି ଦୁର୍ଯ୍ୟୋଧନର ଅନେକ ଦୌରାତ୍ମ୍ୟ ଶେଷରେ ମହାଭାରତ ଯୁଦ୍ଧର ରୂପ

ଧାରଣ କଲା ଏବଂ ଏଥିପାଇଁ ପରୋକ୍ଷଭାବେ ମୁଁ ନିଜକୁ ହିଁ ଦାୟୀ କରି ଏହି ଧର୍ମସଭାରେ କ୍ଷମା ଯାଚନା କରୁଛି ।"

ମହାରାଜା ଧୃତରାଷ୍ଟ୍ର ଏତିକିରେ ନିଜ ବକ୍ତବ୍ୟ ସମାପନ କରିବାମାତ୍ରେ ମହାକାଶର ଏକ ଅଦୃଶ୍ୟ ଇଲାକାରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ଇତିମଧ୍ୟରେ କୃଷ୍ଣକମଳର ତୃତୀୟ ପାଖୁଡ଼ାଟି ଶ୍ୱେତବର୍ଣ୍ଣ ଧାରଣ କରିସାରିଥାଏ ।

ଧର୍ମଦେବଙ୍କ ଇଙ୍ଗିତରେ ପୂର୍ବୋକ୍ତ ରାଜକର୍ମଚାରି ପୁନଶ୍ଚ ପ୍ରବେଶକଲେ ମଂଚ ଉପରେ ଏବଂ ଧୃତରାଷ୍ଟ୍ରଙ୍କୁ ବାଟ କଢ଼ାଇ ନେଇଗଲେ ତାଙ୍କ ଆସନ ନିକଟକୁ । ଆସନ ଗ୍ରହଣ କଲେ ମହାରାଜା ।

ଏବେ ମହାକାଶୀୟ ମଞ୍ଚ ଉପରେ ଅକସ୍ମାତ୍ ଭୂକମ୍ପର ଭ୍ରମ ସୃଷ୍ଟିକଲା ଯାହାର ପଦପାତ, ସେ ଥିଲେ ଜଣେ ପ୍ରଚଣ୍ଡ ଯୁବକ ! ଆସନ ତ୍ୟାଗ କରି ଶିକାରୀଶାର୍ଦ୍ଦୁଳ ପ୍ରାୟ ସେ ମାଡ଼ି ଆସୁଥିଲେ ମଞ୍ଚ ମଧ୍ୟଭାଗକୁ । ଚଳନ୍ତମାନ ପାହାଡ଼ ସଦୃଶ୍ୟ ବିରାଟ ତାଙ୍କ ବପୁ ! ଲୌହସ୍ତମ୍ଭ ଭଳି ବଳିଷ୍ଠ ବାହୁଯୁଗଳ । ବିଶାଳ ବାମ କାନ୍ଧ ଉପରେ ଭୀଷଣାକାର ଲୌହମୁଦ୍ଗର ! ପ୍ରତୀୟମାନ ହେଉଥିଲେ ସେ ପ୍ରଜ୍ୱଳିତ ଅଗ୍ନିପୁରୁଷ ସଦୃଶ୍ୟ । କୃଷ୍ଣକମଳ ନିକଟରେ ଅଟକିଲେ ସେ । କାନ୍ଧରୁ ଗଦାବତରଣ କରି ପ୍ରଣାମ କଲେ ଧର୍ମଦେବ ଏବଂ ଶ୍ରୀକୃଷ୍ଣଙ୍କୁ । ଗୁରୁଗମ୍ଭୀର କଣ୍ଠରେ କହିଲେ, "ହେ କୃଷ୍ଣକମଳ ! ମୁଁ ମହାରାଜା ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠପୁତ୍ର । ଅଧର୍ମୀ, ଅହଙ୍କାରୀ, ଦୁଷ୍ଟ ଓ ଦୁରାଚାରୀ ଭାବରେ ମୋ'ର ଅନେକ ଦୁର୍ନାମ ଅଛି ମହାଭାରତରେ । ଏ ଧର୍ମଦରବାରରେ ମୁଁ ଆଜି ମୁକ୍ତକଣ୍ଠରେ ସ୍ୱୀକାର କରୁଛି ଯେ, ଏକାଧାରରେ ଏ ସବୁ ଦୁର୍ଗୁଣର ଅଧିକାରୀ ହେଉଛି ମୁଁ, ମହାମାନୀ ଦୁର୍ଯ୍ୟୋଧନ । ମହାଭାରତ ଯୁଦ୍ଧର ଉତ୍ତରଦାୟୀ ଭାବରେ ଯେଉଁମାନେ କୃଷ୍ଣକମଳ ନିକଟରେ ନିଜନିଜ ଦୋଷ ସ୍ୱୀକାର କରି ଗଲେ, ମୋ' ମତରେ ସେମାନଙ୍କ ସ୍ୱୀକାରୋକ୍ତି ପୂର୍ଣ୍ଣସତ୍ୟ ନୁହେଁ, ଅର୍ଦ୍ଧସତ୍ୟ । ବାସ୍ତବରେ ଯେ ଯୁଗାନ୍ତକାରୀ ଯୁଦ୍ଧର ମୂଳକାରଣ ହେଉଛି ମୁଁ, କାରଣ ଯୁଦ୍ଧ ମୋ'ଠାରୁ ଆରମ୍ଭ ହୋଇ ମୋ'ଠାରେ ହିଁ ସମାପ୍ତ ହୋଇଥିଲା । ଏ ଯୁଦ୍ଧରେ ଅନେକ ନିରୀହ ପ୍ରଜା ଓ ସାଧାରଣ ସୈନିକ ଆତ୍ମବଳି ଦେଇଛନ୍ତି, ଏହା ସତ୍ୟର ଅପଳାପ ନୁହେଁ । ସେଥିପାଇଁ ମୁଁ ନିଜକୁ ଦାୟୀ କରି ତୁମ ନିକଟରେ କ୍ଷମା ପ୍ରାର୍ଥନା କରୁଛି ।"

ମହାମାନୀ ଦୁର୍ଯ୍ୟୋଧନଙ୍କ ଭଳି ଜଣେ ଅହଙ୍କାରୀ ରାଜପୁତ୍ରଙ୍କ ମୁଖରେ 'କ୍ଷମା ପ୍ରାର୍ଥନା' ଭଳି ଶବ୍ଦ ମରୁ ରାଜ୍ୟରେ ବଜ୍ରନିନାଦ ଭଳି ଶୁଭିଲା । ସମଗ୍ର ସଭାମଣ୍ଡଳୀ ବିସ୍ମୟରେ ସ୍ତମ୍ଭୀଭୂତ ! ! ସଭାରେ କିଛିକ୍ଷଣ ଅସ୍ପଷ୍ଟ ଗୁଞ୍ଜରଣ ପରେ ଛାଇଗଲା ନିରବତା ।

ନିରବତା ଭଙ୍ଗ କରି କୃଷ୍ଣକମଳଙ୍କ ସ୍ଫୁରିତ ଦଳ ମଧ୍ୟରୁ ଭାସି ଆସିଲା ପ୍ରଶ୍ନ, "ହେ ମହାମାନୀ ଦୁର୍ଯ୍ୟୋଧନ ! ଉତ୍ତାପ ବିନା ଯେମିତି ଅଗ୍ନିର ଏବଂ ଶୀତଳତା ବିନା ଚନ୍ଦ୍ରର

ପରିକଳ୍ପନା କରାଯାଇ ପାରେନା, ସେମିତି ଆପଣଙ୍କ ବିନା ମହାଭାରତ ଯୁଦ୍ଧର ପରିକଳ୍ପନା ଅବାନ୍ତର ! ତେବେ ଆମର ପ୍ରଶ୍ନ, ଶାନ୍ତିଦୂତ ଶ୍ରୀକୃଷ୍ଣ ଯୁଦ୍ଧ ପୂର୍ବରୁ ଆପଣଙ୍କୁ ଗୋଟେ ସୁନ୍ଦର ପ୍ରସ୍ତାବ ଦେଇଥିଲେ । ମାତ୍ର ପାଞ୍ଚଖଣ୍ଡ ପଡ଼ା ବଦଳରେ ଆପଣଙ୍କର ସାତଖୁଣ୍ ମାଫ୍ ହୋଇ ପାରିଥାନ୍ତା ! ଏଭଳି ସୁନ୍ଦର ପ୍ରସ୍ତାବକୁ ଆପଣ ପ୍ରତ୍ୟାଖ୍ୟାନ କରି ମହାବିନାଶକାରୀ ଯୁଦ୍ଧକୁ କାହିଁକି ଆମନ୍ତ୍ରଣ କରୁଥିଲେ ?”

“ହେ କୃଷ୍ଣକମଳ ! ମହାଚକ୍ରୀ ଶ୍ରୀକୃଷ୍ଣଙ୍କ ପ୍ରତ୍ୟେକ ଯୋଜନା ତାଙ୍କ ଓଠର ମୃଦୁ ହସ ଭଳି ରହସ୍ୟମୟ ! ତାଙ୍କ ଶାନ୍ତିପ୍ରସ୍ତାବ ମଧ୍ୟ ଗୋଟେ ଅଭିସନ୍ଧି ମୂଳକ ଯୋଜନା ବୋଲି ମୁଁ ଜାଣିଥିଲି । ଶ୍ରୀକୃଷ୍ଣ ପୂର୍ବରୁ ହିଁ ନିଶ୍ଚିତ ଥିଲେ ଯେ, ଏ ପ୍ରସ୍ତାବକୁ ମୁଁ ପ୍ରତ୍ୟାଖ୍ୟାନ କରିବି । କାରଣ ଗୋଟିଏ ଆବର୍ତ୍ତ ଭିତରେ ଆଲୋକ ଏବଂ ଅନ୍ଧକାରର ସହଅସ୍ତିତ୍ୱ ଯେଉଁଭଳି ସମ୍ଭବ ନୁହେଁ, ଗୋଟିଏ ରାଜ୍ୟରେ ଧର୍ମ ଓ ଅଧର୍ମର ସହାବସ୍ଥାନ ମଧ୍ୟ ସେଭଳି ଅସମ୍ଭବ । ପାଣ୍ଡବମାନେ ଧର୍ମବନ୍ତ ବୋଲି ସଂସାରରେ ଖ୍ୟାତି ଲାଭ କରିଛନ୍ତି ଏବଂ ମୁଁ ଅଧର୍ମୀ ଭାବରେ ! ସେମାନେ ସମସ୍ତେ ଦେବଅଂଶରୁ ଜାତ; କିନ୍ତୁ ମୁଁ ଗୋଟେ ଅବାଞ୍ଛିତ ମାଂସପିଣ୍ଡୁଳାରୁ ସୃଷ୍ଟି ହୋଇଛି ।

ମାତା ଗାନ୍ଧାରୀଙ୍କ ଗର୍ଭଜାତ ମାଂସପିଣ୍ଡୁଳାରୁ ମୁଁ ଯେତେବେଳ ପ୍ରଥମେ ବିକଶିତ ହେଲି, ମୋ’ ସଂପର୍କରେ ଅତି ଭୟାନକ ଭବିଷ୍ୟବାଣୀ କରିଥିଲେ ଭବିଷ୍ୟଦ୍ରଷ୍ଟା ପଣ୍ଡିତମାନେ । ମହାମନ୍ତ୍ରୀ ବିଦୁର ରାଜାଙ୍କୁ ଉପଦେଶ ଦେଇ କହିଥିଲେ, ‘ହେ ରାଜନ୍ ! ଜଙ୍ଗଲରେ ଶୁଷ୍କକାଷ୍ଠର ଘର୍ଷଣରୁ ଜାତ ଗୋଟିଏ କ୍ଷୁଦ୍ର ଅଗ୍ନିକଣିକା ଭୀଷଣ ବନାଗ୍ନିର କାରଣ ହେବା ଭଳି ମାଂସ ପିଣ୍ଡୁଳାରୁ ଜନ୍ମିତ ଏହି ଶିଶୁଟି ଭବିଷ୍ୟତରେ କୁରୁବଂଶ ବିନାଶର କାରଣ ହୋଇପାରେ । ଏହି ଶିଶୁକୁ ତୁରନ୍ତ ପରିତ୍ୟାଗ କରାଯିବା ଉଚିତ ।’ ମୋ’ ପିତା କିନ୍ତୁ ବିଦୁରଙ୍କ ଏହି ଉପଦେଶ ଉପରେ ପ୍ରାଧାନ୍ୟ ନଦେଇ ପୁତ୍ର ମୋହରେ ମୋତେ ଆପଣେଇ ନେଇଥିଲେ ।

ଏହି ଘଟଣାରୁ ମନେହୁଏ, ମୁଁ ସଂସାରକୁ ଆସିଥିଲି ଗୋଟେ ଅଶୁଭ ସଙ୍କେତ ବହନ କରି ଏବଂ ଜଣେ ଅଧର୍ମୀର ପରିଚୟ ନେଇ । ତଥାପି ପିତା ଧୃତରାଷ୍ଟ୍ର ଥିଲେ ମୋ’ ପ୍ରତି ଅତିମାତ୍ରାରେ ଆସକ୍ତ ! ପିତାଙ୍କର ଏହି ଦୁର୍ବଳତା ମୋତେ ଜଣେ ସ୍ୱେଚ୍ଛାଚାରୀ ରାଜପୁତ୍ର କରି ଗଢ଼ି ତୋଳିବାରେ ଢ଼େର୍ ସହାୟତା କରିଥିଲା ।

‘ନିଶାମୋଦକ’ର ସଙ୍ଗ ଲାଭକଲେ ‘ମଦିରା’ ଯେମିତି ଅଧିକ ପ୍ରଭାବଶାଳୀ ହୋଇଯାଏ, ଠିକ୍ ସେମିତି ଶକୁନିମାମୁଙ୍କ ସାହଚର୍ଯ୍ୟ ମୋ’ ଅଧର୍ମପଥକୁ ଅଧିକ ସୁଗମ କରିଚାଲିଲା । କୈଶୋରରେ ଭୀମଙ୍କୁ ବିଷଲଡୁ ଦେଇ ହତ୍ୟା କରିବା ଭଳି ପରାମର୍ଶ ଠାରୁ ଆରମ୍ଭ କରି ଜତୁଗୃହ ନିର୍ମାଣରେ ଦିଗଦର୍ଶନ ଦେବା ପର୍ଯ୍ୟନ୍ତ, ସମଗ୍ର ଚକ୍ରାନ୍ତ ମୋ’ ଶକୁନିମାମୁଙ୍କର । ଅଙ୍ଗରାଜ କର୍ଣ୍ଣ ନିଜେ ଅଧର୍ମୀ ନଥିଲେ ଏହା ସତ୍ୟ; କିନ୍ତୁ ମୋ’ ପ୍ରତି

କୃତଜ୍ଞତା ବଶତଃ ଅଧର୍ମ ପଥରେ ମୋତେ ନିରନ୍ତର ସହାୟତା କରୁଥିଲେ । ଏ ଦୁଇ ସହଚରଙ୍କ ସାହଚର୍ଯ୍ୟରେ ପାଣ୍ଡବମାନଙ୍କ ଉପରେ ମୁଁ ଅନେକ ଅନ୍ୟାୟ କରିଛି । ହେଲେ ଭରା ଦରବରାରେ, ଗୁରୁ ଓ ଗୁରୁଜନଙ୍କ ସମ୍ମୁଖରେ, ଦ୍ରୌପଦୀଙ୍କ ବସ୍ତ୍ରହରଣ ଭଳି ଧୃଷ୍ଟତା କରିବା ଦ୍ୱାରା ମୋ' କୁକର୍ମର କଳସୀ ପାପରେ ପରିପୂର୍ଣ୍ଣ ହୋଇଗଲା ।

ହେ କୃଷ୍ଣକମଳ ! ଯେଉଁଦିନ ମୁଁ ଶ୍ରୀକୃଷ୍ଣଙ୍କ ଆଗରେ ସଦର୍ପେ ଘୋଷଣା କରିଥିଲି, 'ବିନାଯୁଦ୍ଧେ ଦେବିନାହିଁ ପାଣ୍ଡବଙ୍କୁ ସୂଚ୍ୟଗ୍ର ମେଦିନୀ' ସେହି ମୁହୂର୍ତ୍ତରୁ ହିଁ ମହାଭାରତ ଯୁଦ୍ଧର ରଣଭେରୀ ନିନାଦିତ ହୋଇ ଉଠିଥିଲା, ଯାହାପାଇଁ ଦାୟୀ କେବଳ ମୁଁ । ସେଥପାଇଁ ମୁଁ କ୍ଷମାପ୍ରାର୍ଥୀ ତୁମ୍ଭ ନିକଟରେ !"

ଏତିକିବେଳେ ଦଶଦିଗରୁ ପ୍ରତିଧ୍ୱନିତ ହେଲା, ଧନ୍ୟ.. ଧନ୍ୟ.. ଯୁବରାଜ ଦୁର୍ଯ୍ୟୋଧନ ! ଧନ୍ୟ.. ! ! ଆପଣଙ୍କ ସ୍ୱଷ୍ଟୋକ୍ତି ଓ କ୍ଷମାଯାଚନା ପ୍ରିତ କଲା ଆମକୁ ! ଧନ୍ୟ !

ଇତି ମଧ୍ୟରେ କୃଷ୍ଣକମଳର ଚତୁର୍ଥ ପାଖୁଡ଼ା ଶ୍ୱେତବର୍ଣ୍ଣ ଧାରଣ କରିସାରିଥିଲା । ଦୁର୍ଯ୍ୟୋଧନ ଦମ୍ଭଭରା ପଦପାତରେ ପୁନଃ ପ୍ରତ୍ୟାବର୍ତ୍ତନ କଲେ ନିଜ ଆସନକୁ ।

ସଭାଗାରରେ ଛାଇଗଲା ପୁନଶ୍ଚ ନିରବତା ! ସ୍ୱଳ୍ପ ସମୟର ବ୍ୟବଧାନ ପରେ ସଭାଜନଙ୍କ ଉତ୍କଣ୍ଠା ପ୍ରଶମନ କରି ନିଜ ଆସନରୁ ଉଠିଲେ ଆଉଜଣେ ବଳିଷ୍ଠ ଦିପ୍ତିବାନ୍ ଯୁବକ ! ବୈଦୂର୍ଯ୍ୟମଣ୍ଡିତ ନୀଳ ଉତ୍ତରୀୟ ତଳୁ ତାଙ୍କ ଶରୀର ଦୃଶ୍ୟ ହେଉଥିଲା ମେଘ ଫାଙ୍କରେ ମଧ୍ୟାହ୍ନ ସୂର୍ଯ୍ୟଙ୍କ ଭଳି ତେଜୋମୟ । ସୂର୍ଯ୍ୟତିଳକ ଶୋଭିତ ପ୍ରଶସ୍ତ ଲଲାଟ ଉପରେ ଶୋଭା ପାଉଥିଲା ମଣିମୁକ୍ତା ଖଚିତ ରାଜମୁକୁଟ । ଦୁଇ କର୍ଣ୍ଣରେ ସୂର୍ଯ୍ୟ-ଚନ୍ଦ୍ର ଭଳି ପ୍ରତୀତ ହେଉଥିଲା ଦିବ୍ୟକୁଣ୍ଡଳ ଦ୍ୱୟ । ସ୍କନ୍ଧରେ ଗୁରୁ ପର୍ଶୁରାମଙ୍କ ପ୍ରଦତ୍ତ ବିଜୟ କାର୍ମୁକ ! ଯୁବକ ମଣ୍ଡପ ମଧ୍ୟଭାଗକୁ ଆସି କୃଷ୍ଣକମଳଙ୍କ ନିକଟରେ ବିନମ୍ରତାର ସହିତ ଦଣ୍ଡାୟମାନ ହେଲେ । ଶ୍ରୀକୃଷ୍ଣ ଏବଂ ଧର୍ମଦେବଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କରି କହିଲେ, "ହେ କୃଷ୍ଣକମଳ ! ମୁଁ ନିଜକୁ ଅଙ୍ଗରାଜ କର୍ଣ୍ଣର ପରିଚୟ ଦେଇ ପାରିବିନାହିଁ । କାରଣ ଅଙ୍ଗରାଜ୍ୟ ମୋ' ପୈତୃକ ସମ୍ପତ୍ତି ନଥିଲା କିମ୍ବା ମୁଁ ତାକୁ ନିଜ ବାହୁବଳରେ ହାସଲ କରିନଥିଲି । ତାହା ଥିଲା ମୋ' ମିତ୍ର ଦୁର୍ଯ୍ୟୋଧନଙ୍କ ସୌଜନ୍ୟରୁ ପ୍ରାପ୍ତ ଉପହାର ମାତ୍ର ! ଅନ୍ୟଠାରୁ ପ୍ରାପ୍ତ ବସ୍ତୁକୁ ନେଇ କେବଳ ଦାନଗ୍ରାହୀ ବ୍ରହ୍ମଣମାନେ ଗୌରବାନ୍ୱିତ ହୋଇପାରନ୍ତି, କଦାଚିତ ଜଣେ ମହାରଥୀ ପକ୍ଷେ ଏହା ଶୋଭନୀୟ ନୁହେଁ । ପୁନଶ୍ଚ ମୁଁ ନିଜକୁ 'ସୂତପୁତ୍ର' ଅଥବା 'ରାଧେୟ'ର ପରିଚୟ ଦେଇପାରିବି ନାହିଁ, କାରଣ ମୋ' ସମ୍ମୁଖରେ ଉପସ୍ଥିତ ଅଛନ୍ତି ମୋ' ଜନ୍ମଦାତ୍ରୀ ମାତା କୁନ୍ତି ! ରାଧେୟ ପରିଚୟ ଦେଇ ମାତାକୁନ୍ତିଙ୍କ ମନରେ ଆଘାତ ଦେବାକୁ ମୁଁ ଚାହେଁନାହିଁ । ତେଣୁ 'କର୍ଣ୍ଣ' ନାମରେ ହିଁ ସୀମିତ ରଖିଛି ମୋ' ପରିଚୟ ।

ହେ କୃଷ୍ଣକମଳ ! ଦୁର୍ଗନ୍ଧ କିମ୍ବା ସୁଗନ୍ଧକୁ ବାୟୁ ନିଜେ ସୃଷ୍ଟି କରେ ନାହିଁ, ସେ

କେବଳ ବହନ କରିଥାଏ ମାତ୍ର । ତଥାପି ଲୋକେ ଗନ୍ଧପାଇଁ ପ୍ରବାହିତ ବାୟୁକୁ ହିଁ ଦାୟୀ କରିଥାନ୍ତି । ଠିକ୍ ସେମିତି, କୌରବ ଓ ପାଣ୍ଡବଙ୍କ ଭ୍ରାତୃବିବାଦରେ ମୋ'ର ଲେଶମାତ୍ର ସଂପୃକ୍ତି ନଥାଇ ମଧ୍ୟ ମହାଭାରତ ଯୁଦ୍ଧରେ ମୁଁ ଅନ୍ୟାୟର ପକ୍ଷଧର ରୂପେ ଗଣା ହେଉଛି । ମହାଭାରତ ଯୁଦ୍ଧର ଏକ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇ ମୁଁ ସ୍ୱୟଂ ଅନୁଭବ କରିଛି, ଏଥିରେ ସାଧାରଣ ପ୍ରଜା ଓ ସୈନିକବର୍ଗ ଅନେକ କ୍ଷତିଗ୍ରସ୍ତ ହୋଇଛନ୍ତି । ତେଣୁ ଏହି ଯୁଦ୍ଧର ଜଣେ ଅଭିଯୁକ୍ତ ପକ୍ଷଧର ଭାବରେ ମୁଁ ଏହି ଧର୍ମସଭାରେ କ୍ଷମାଯାଚନା କରୁଛି !"

କୃଷ୍ଣକମଳ ପ୍ରଶ୍ନ କଲେ, "ହେ ମହାରଥୀ କର୍ଣ୍ଣ ! ଆପଣ ସୂର୍ଯ୍ୟଦେବଙ୍କ ପୁତ୍ର । ପିତାଙ୍କ ଆଶୀର୍ବାଦରୁ ଦିବ୍ୟ କବଚ କୁଣ୍ଡଳ ପ୍ରାପ୍ତ ! 'ମହାଦାନୀ' ଭାବେ ତିନିଲୋକରେ ଯଶ ରହିଛି ଆପଣଙ୍କର । ଆପଣଙ୍କ ଭଳି ଦେବଅଂଶୀ, ଯଶସ୍ୱୀ ମହାବୀର ଅନ୍ୟାୟର ପକ୍ଷଧର ହୋଇ କୌରବଙ୍କ ଅଧର୍ମ ରୂପକ ଜାହଜରେ କାହିଁକି ସାଜିଥିଲେ କପ୍ତାନ ? ପାଣ୍ଡବଙ୍କ ଜ୍ୟେଷ୍ଠଭ୍ରାତା ବୋଲି ପରିଚୟ ପାଇବା ପରେ ମଧ୍ୟ ଆପଣ ଧର୍ମପକ୍ଷରେ ଯୋଗ ଦେଲେନାହିଁ ! ଦୟାକରି ଏ ସମ୍ପର୍କରେ ଆପଣ ସ୍ୱଷ୍ଟତା ପ୍ରଦାନ ପୂର୍ବକ ଆମ ସନ୍ଦେହ ମୋଚନ କରନ୍ତୁ ?"

କୃଷ୍ଣକମଳଙ୍କ ପ୍ରଶ୍ନରେ କର୍ଣ୍ଣଙ୍କ ଉଜ୍ଜ୍ୱଳ ମୁଖମଣ୍ଡଳରେ ଖେଳିଗଲା ସ୍ମିତ ହାସର ତରଙ୍ଗ । ସେ କହିଲେ,"ହେ ପୁଷ୍ପରାଜ ! ବସ୍ତ୍ର ରଙ୍ଗାଉଥିବା ରଙ୍ଗଣୀ ବିଭିନ୍ନ ରଙ୍ଗରେ ବସ୍ତ୍ରଗୁଡ଼ିକୁ ରଙ୍ଗାଏ । ତା' ରଙ୍ଗକୁଣ୍ଡ ନିକଟରେ ଥିବା ଶ୍ୱେତବସ୍ତ୍ରଟି କଦାଚିତ୍ ଜାଣିନଥାଏ, ସେ କେଉଁ ରଙ୍ଗରେ ରଙ୍ଗେଇ ହେବାକୁ ଯାଉଛି । ରଙ୍ଗଣୀ ତାକୁ ଯେଉଁ ରଙ୍ଗରେ ବୁଡ଼ାଏ ବସ୍ତ୍ର ସେହି ରଙ୍ଗ ଧାରଣ କରେ । ରଙ୍ଗ ଯାହା ବି ହେଉ, କେତେ ନିଷ୍ଠାର ସହିତ ବସ୍ତ୍ର ନିଜ ଭିତରେ ରଙ୍ଗକୁ ଧରି ରଖୁଛି, ତାହା ହିଁ ବସ୍ତ୍ରର ଭବିତବ୍ୟ ବୋଲି ଧରିନେବାକୁ ହେବ ! ତେଣୁ ମୁଁ ମଣିଷ କାହା ଔରସରୁ, କାହା ଗର୍ଭରୁ ଅଥବା କେଉଁ କୁଳରେ ଜନ୍ମ ନେବ, ତାହା କେବଳ ଦୈବର ଅଧୀନ, କିନ୍ତୁ ପୁରୁଷକାର ମଣିଷର ଅଧୀନ ହେବା ଉଚିତ ।

ହେ କୃଷ୍ଣକମଳ ! ରଙ୍ଗଦିଆ ବସ୍ତ୍ର ଭଳି ମୋ' ଜୀବନ ମହାଭାରତର ଗୋଟେ ବିଡ଼ମ୍ବିତ ଅଧ୍ୟାୟ ! ନିୟତି ମୋତେ 'ସୂର୍ଯ୍ୟପୁତ୍ର' ରୂପେ ଜନ୍ମ ଦେଇଥିଲା, କିନ୍ତୁ 'ସୂତପୁତ୍ର'ର ପରିଚୟ ନେଇ ବଂଚିଥିଲି ମୁଁ । ମାତା କୁନ୍ତି କୁମାରୀ ଅବସ୍ଥାରେ ମୋତେ ଜନ୍ମ ଦେଇଥିଲେ ସୂର୍ଯ୍ୟଦେବଙ୍କ ଆଶୀର୍ବାଦରୁ, କିନ୍ତୁ ଲୋକଲଜ୍ଜା ଭୟରେ ପରିତ୍ୟାଗ କଲେ ନଦୀଗର୍ଭରେ ! ନଦୀଜଳରୁ ଉଦ୍ଧାର କରି ମୋତେ ନିଜ କୋଳରେ ସ୍ଥାନ ଦେଇଥିଲେ ସାରଥି ଅଧିରଥଙ୍କ ପତ୍ନୀ 'ରାଧା' ! ସିଏ ଥିଲେ ମୋ' ଜୀବନଦାତ୍ରୀ ମାଆ ! ମୋ' ରାଧାମାତା ଥିଲେ ଅପୁତ୍ରକ ! ତେଣୁ 'କୌନ୍ତେୟ'ରୁ ମୁଁ ପାଲଟି ଯାଇଥିଲି 'ରାଧେୟ' ! ଜଣେ ମାତା ଲୋକଲଜ୍ଜା ଭୟରେ ମୋତେ ଦୂରେଇଦେଲେ, ଆଉଜଣେ ମାତା ଲୋକଲଜ୍ଜାରୁ ରକ୍ଷା ପାଇବା ପାଇଁ ଆପଣେଇ ନେଲେ ମୋତେ ! ଯା'ଠାରୁ ବଡ଼ ବିଡ଼ମ୍ବନା ଆଉ କ'ଣ ହୋଇପାରେ ଜୀବନରେ ! !

*ସୁରେନ୍ଦ୍ର ନାଥ ସାହୁ*

ଅସ୍ତ୍ରଶିକ୍ଷା ପାଇଁ ମୋ' ଭିତରେ ଥିଲା ପ୍ରବଳ ଆଗ୍ରହ, କିନ୍ତୁ କପାଳରେ ମୋ'ର 'ସୂତପୁତ୍ର'ର ମୋହର ଲାଗିଥିବା କାରଣରୁ ଦ୍ରୋଣାଚାର୍ଯ୍ୟ ଶିକ୍ଷାଦାନରୁ ବଞ୍ଚିତ କରିଥିଲେ ମୋତେ । ତେଣୁ ମୁଁ ନିଜର ମିଥ୍ୟା ପରିଚୟ ଦେଇ ମହାନ୍ ଅସ୍ତ୍ରଗୁରୁ ପର୍ଶୁରାମଙ୍କ ଶିଷ୍ୟତ୍ୱ ଗ୍ରହଣ କରଥିଲି; କିନ୍ତୁ ବିଡ଼ମ୍ୱନା ଦେଖ, ମିଥ୍ୟାଚାରୀର ଅପରାଧରେ ସେ ମୋତେ ଯେଉଁ ଦଣ୍ଡରେ ଦଣ୍ଡିତ କଲେ ତାହା ହୋଇଥିଲା ମୋ' ଜୀବନର ପ୍ରଥମ ଭୁଲ୍‌ର ଅନ୍ତିମ ପରିଣତି !

ହେ ପୁଷ୍ପରାଜ ! ତଥାପି ମୁଁ ଥିଲି ଅପାର ପୌରୁଷର ଅଧିକାରୀ, ଅନେକ ଅସ୍ତ୍ର ଶସ୍ତ୍ରବିଦ୍ୟାର ଜ୍ଞାତା, ଦିବ୍ୟଶକ୍ତିର ଅଧିକାରୀ ! କୋଇଲାଖଣି ଭିତରେ ପୋତି ହୋଇ ରହିଥିବା ହୀରାଟିଏ ଭଳି 'ସୂତପୁତ୍ର'ର ଖୋଳପା ଭିତରେ ଅପ୍ରକାଶ୍ୟ ଭାବେ ରହିଥିଲା ମୋ' ବ୍ୟକ୍ତିତ୍ୱ !

ଅର୍ଜୁନଙ୍କ ପ୍ରତି ଆବାଲ୍ୟ ରହିଥିଲା ମୋ'ର ପ୍ରବଳ ଈର୍ଷା । ଦ୍ରୋଣାଚାର୍ଯ୍ୟ ଚାହୁଁଥିଲେ ତାଙ୍କ ପ୍ରିୟତମ ଶିଷ୍ୟ ଅର୍ଜୁନଙ୍କୁ ସଂସାରର ଶ୍ରେଷ୍ଠ ଧନୁର୍ଦ୍ଧର ରୂପେ ପ୍ରତିପାଦିତ କରିବା ପାଇଁ । ଥରେ ଅର୍ଜୁନଙ୍କ ସହିତ ଧନୁର୍ବିଦ୍ୟା ପ୍ରତିଯୋଗିତାର ଅବକାଶ ମିଳିଥିଲା ମୋତେ । ଦ୍ରୋଣାଚାର୍ଯ୍ୟ ସେଠାରେ ମଧ୍ୟ ମୋ' ଆବେଦନକୁ ନାକଚ କରିବାକୁ ଯାଉଥିଲେ ସୂତପୁତ୍ରର ଅଯୋଗ୍ୟତା ଦର୍ଶାଇ । ଏଭଳି ମହତ୍ତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ମୋ'ର ଏକ ନୂତନ ପରିଚୟ ସୃଷ୍ଟିକରି ସମାଜରେ ମୋତେ ଯିଏ ପ୍ରତିଷ୍ଠା ଦେଲେ, ସେ ଥିଲେ ମୋ' ପରମ ମିତ୍ର ଦୁର୍ଯ୍ୟୋଧନ ! ଦୁର୍ଯ୍ୟୋଧନଙ୍କ ମହାନତା ଯୋଗୁଁ ସୂତପୁତ୍ରରୁ 'ଅଙ୍ଗରାଜ' କର୍ଣ୍ଣରେ ପରିବର୍ତ୍ତିତ ହୋଇଗଲା ମୋ' ପରିଚୟ । ବାସ୍ତବରେ ମୋ'ର ଏହି ପରିଚୟ ହିଁ ଜୀବନରେ ଆଣିଦେଇଥିଲା ଏକ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ !

ହେ କୃଷ୍ଣକମଳ ! ଜନ୍ମ ପରେ ଯିଏ ମୋତେ ନୂତନ ଜୀବନ ପ୍ରଦାନ କରିଥିଲେ, ସିଏ ଥିଲେ 'ମାତା ରାଧା' ଏବଂ ଯୌବନରେ ଯିଏ ମୋତେ ନୂତନ ପରିଚୟ ପ୍ରଦାନ କରିଥିଲେ ସିଏ ଥିଲେ 'ମିତ୍ର ଦୁର୍ଯ୍ୟୋଧନ' ! ମାତୃତ୍ୱର ଋଣ ଏବଂ ମିତ୍ରତାର ମୂଲ୍ୟ, ଏ ଉଭୟପାଇଁ ଦାୟଗ୍ରସ୍ତ ରହିଥିଲି ମୁଁ ସାରା ଜୀବନ ! ଏ ଦୁହେଁ ମୋ' ଜୀବନ ତରୀର ଥିଲେ ନିୟନ୍ତ୍ରକ ! ସୁତରାଂ ରାଧାମାଆ କୁଳ ମର୍ଯ୍ୟାଦାର ଯେତେ ନିମ୍ନସ୍ତରରେ ଥିଲେ ମଧ୍ୟ ମୁଁ ତାଙ୍କୁ ପୁତ୍ର ସ୍ନେହରୁ ବଂଚିତ କରିପାରି ନଥାନ୍ତି । ଦୁର୍ଯ୍ୟୋଧନ ଯେତେ ଅଧର୍ମୀ ହୋଇଥିଲେ ମଧ୍ୟ ତାଙ୍କ ମିତ୍ରତାକୁ ମୁଁ ପ୍ରତ୍ୟାଖ୍ୟାନ କରିପାରି ନଥାନ୍ତି । ସେ ପରିସ୍ଥିତିରେ ମୋ'ପାଇଁ ଧର୍ମ, ଅଧର୍ମ ଥିଲା ଏକ ଗୌଣ ବ୍ୟାପାର ! ମୁଁ ପ୍ରତିଜ୍ଞାବଦ୍ଧ ଥିଲି ଦୁର୍ଯ୍ୟୋଧନଙ୍କ ନିକଟରେ, ଶେଷନିଃଶ୍ୱାସ ଥିବା ପର୍ଯ୍ୟନ୍ତ ମୁଁ ତାଙ୍କ ମିତ୍ରତାର ଋଣ ପରିଶୋଧ କରିବାରେ ତିଳେ ମଧ୍ୟ ବିଚ୍ୟୁତ ହେବିନାହିଁ । ତାହା ମଧ୍ୟ ମୁଁ ପାଳନ କରିଥିଲି ।

ମୁଁ ଯେତେବେଳେ ନିଜର ଜନ୍ମ ପରିଚୟ ପାଇଲି, କେଶବ ମୋତେ ଉପଦେଶ ଦେଇଥିଲେ, 'ଅଧର୍ମୀ' ଦୁର୍ଯ୍ୟୋଧନଙ୍କ ସଙ୍ଗ ତ୍ୟାଗକରି ନିଜ 'ଧର୍ମପନ୍ଥି' ଭ୍ରାତାମାନଙ୍କ ସହିତ ସହଯୋଗ କରିବା ପାଇଁ; କିନ୍ତୁ ମୁଁ ବିନୀତଭାବେ ପ୍ରତ୍ୟାଖ୍ୟାନ କରିଥିଲି କେଶବଙ୍କ

ପ୍ରସ୍ତାବକୁ । ମୋ'ପାଇଁ ମୋ' କର୍ତ୍ତବ୍ୟନିଷ୍ଠା, ମୋ' ପ୍ରତିବଦ୍ଧତା ହିଁ ଥିଲା ଧର୍ମ ! ମାତା କୁନ୍ତି ମୋ' ନିକଟକୁ ଆସିଥିଲେ ତାଙ୍କ ପାଞ୍ଚପୁତ୍ରଙ୍କ ଜୀବନ ଭିକ୍ଷାପାଇଁ । ମୁଁ ତାଙ୍କୁ ନିରାଶ କରିନାହିଁ । ଇନ୍ଦ୍ରଦେବ ତାଙ୍କ ପୁତ୍ର ଅର୍ଜ୍ଜୁନଙ୍କ ସୁରକ୍ଷା ପାଇଁ ମୋ' କବଚ, କୁଣ୍ଡଳ ମାଗିଥିଲେ । ମୁଁ ତାଙ୍କୁ ମଧ୍ୟ ନିରାଶ କରିନାହିଁ । ସର୍ବସ୍ୱ ଦାନ କରିଦେବା ପରେ ମଧ୍ୟ ମୁଁ ଦୁର୍ଯ୍ୟୋଧନଙ୍କ ପ୍ରତି ଥିଲି ସମର୍ପିତ ।

ଜଙ୍ଗଲ ଭିତରେ ଚନ୍ଦନବୃକ୍ଷ ଶ୍ରେଷ୍ଠ ହୋଇପାରେ, କିନ୍ତୁ ଜଙ୍ଗଲରେ ନିଆଁ ଲାଗିଲେ ଚନ୍ଦନବୃକ୍ଷ ରକ୍ଷା ପାଇଯାଏ ନାହିଁ । ସେହି ପ୍ରକାରେ, ମୁଁ ନୀତିପରାୟଣ ହୋଇ ମଧ୍ୟ ଅଧର୍ମ ସପକ୍ଷରେ ରହି ଏହି-ଯୁଦ୍ଧାଗ୍ନିରେ ସଂପୂର୍ଣ୍ଣରୂପେ ନିଜକୁ ଉତ୍ସର୍ଗ କରିଦେଇଥିଲି । ଦହି ସଂଯୋଗରେ ଆସି ଦୁଗ୍ଧ ଦହିର ଗୁଣ ଓ ଧର୍ମକୁ ଆପଣେଇ ନେବା ଭଳି, ଏହା ସତ୍ୟ ଯେ, ମୁଁ ଦୁର୍ଯ୍ୟୋଧନଙ୍କ ସଙ୍ଗତରେ ରହି ଅନେକ ଅଧର୍ମ ଆଚରଣ କରିଛି । ଦ୍ରୌପଦୀଙ୍କ ପ୍ରତି ମୋ' ଜିହ୍ୱାରୁ ନିର୍ଗତ ଗୋଟିଏ ଅପଶବ୍ଦ ମୋ'ପାଇଁ ମହାଘାତକ ହେଲା, ଯାହାର ସତ୍ୟତା ମୁଁ ଅନୁଭବ କରିଥିଲି ମୋ'ଉପରେ ଅର୍ଜ୍ଜୁନ ନିକ୍ଷେପ କରିଥିବା ଶେଷ ଶରାଘାତ ପରେ !

ହେ କୃଷ୍ଣକମଳ ! ତା' ସତ୍ତ୍ୱେ ମୁଁ ଆଜି ମଧ୍ୟ କହୁଛି, ନିୟତି·ମୋ' ଜୀବନକୁ ଯେଉଁ ରଙ୍ଗରେ ରଙ୍ଗେଇଛି, ଅତି ନିଷ୍ଠାର ସହିତ ମୁଁ ସେହି ରଙ୍ଗକୁ ଧରି ରଖିଛି ମୋ' ଅନ୍ତିମ ନିଃଶ୍ୱାସ ପର୍ଯ୍ୟନ୍ତ । ସେହି ନିଷ୍ଠା ମଧ୍ୟରେ ସଂଘଟିତ ମହାବିନାଶ ପାଇଁ ଅନେକାଂଶରେ ମୁଁ ନିଜକୁ ଦାୟୀ କରି କ୍ଷମା ଯାଚନା କରୁଛି ତୁମ ନିକଟରେ !"

କର୍ଣ୍ଣଙ୍କ ସ୍ୱୀକାରୋକ୍ତି ଶେଷ ହେବା ମାତ୍ରେ ଚତୁର୍ଦ୍ଦିଗରୁ ଅନୁରଣିତ ହେଲା ସ୍ୱସ୍ତିବାଣୀ.. 'ଧନ୍ୟ.. ଧନ୍ୟ.. ମହାରଥୀ କର୍ଣ୍ଣ ! ଶତଧନ୍ୟ ଆପଣଙ୍କ ନିର୍ଭିକ ବିଚାର ପାଇଁ ! !' ଅନ୍ତରୀକ୍ଷରୁ ଏଭଳି ବାକ୍ୟ ବାରମ୍ବାର ପ୍ରତିଧ୍ୱନିତ ହେବା ଅବସରରେ କୃଷ୍ଣକମଳର ପଂଚମ ପାଖୁଡ଼ାଟି ଶ୍ୱେତବର୍ଣ୍ଣ ଧାରଣ କରିସାରିଥାଏ !

କର୍ଣ୍ଣ ବିନମ୍ରତାର ସହିତ ପ୍ରତ୍ୟାବର୍ତ୍ତନ କଲେ ନିଜ ଆସନକୁ ।

ସ୍ୱଳ୍ପ ସମୟର ବ୍ୟବଧାନରେ ନିଜ ଆସନରୁ ଉଠି ଆସିଲେ ଜଣେ ବଳିଷ୍ଠ ରାଜପୁରୁଷ ! ଦେହରେ ସମ୍ରାଟୋପମ ଆଭୂଷଣ ଓ ବେଶପୋଷାକ ! ତିଳକ ଚର୍ଚ୍ଚିତ ପ୍ରଶସ୍ତ ଲଲାଟ ! ପ୍ରଶାନ୍ତ ମୁଖମଣ୍ଡଳରେ ସହାସ୍ୟ ବିନମ୍ରତା । ଆଖିରେ ଉଦାରତାର ଭାବ । ରାଜକୀୟ ପଦପାତରେ ସେ ମଣ୍ଡପର ମଧ୍ୟଭାଗରେ ଆସି ଉପସ୍ଥିତ ହେଲେ । ପ୍ରଥମେ ପ୍ରଣିପାତ କଲେ କୃଷ୍ଣକମଳଙ୍କୁ । ତା' ପରେ ଧର୍ମଦେବ ଏବଂ ଶ୍ରୀକୃଷ୍ଣଙ୍କୁ ।

ସହସା କୃଷ୍ଣକମଳ ମଧ୍ୟରୁ ଅନୁରଣିତ ହେଲା, "ହେ' ଧର୍ମନନ୍ଦନ ! ଆକାଶରେ ଉଦିତ ସୂର୍ଯ୍ୟର ପରିଚୟ ଅନାବଶ୍ୟକ ହେବାଭଳି ଆପଣଙ୍କ ପରିଚୟ ସମଗ୍ର ସଂସାର ଜାଣିଛି । କିନ୍ତୁ ଆଶ୍ଚର୍ଯ୍ୟର କଥା, ହସ୍ତିନାପୁର ସମ୍ରାଟ ହୋଇ ମଧ୍ୟ ଆପଣ ଆମକୁ ପ୍ରଣାମ କଲେ ! ଏହାର କାରଣ କ'ଣ କହିବେ କି ?"

ରାଜା ଅବିଚଳ କଣ୍ଠରେ କହିଲେ, "ହେ କୃଷ୍ଣକମଳ ! ତୁମେ ଶହସ୍ରାଧିକ ଅଶାନ୍ତ ଆତ୍ମାର ଏକକ ପ୍ରତିନିଧି ! ଯେଉଁ ସୈନିକମାନଙ୍କ ଆତ୍ମବଳିଦାନ ଫଳରେ ମୁଁ ଚକ୍ରବର୍ତ୍ତୀ ସମ୍ରାଟର ମୁକୁଟ ପିନ୍ଧିଲି, ଷଡ଼ତ୍ରିଂଶ ବର୍ଷଧରି ନିଷ୍କଣ୍ଟକ ରାଜ୍ୟ ଭୋଗ କଲି, ସେହି ସ୍ୱର୍ଗତ ବୀରମାନଙ୍କ ପରଲୋକଗତ ପତ୍ନୀଙ୍କ ଆତ୍ମାମାନଙ୍କୁ ପ୍ରଥମେ ସମ୍ମାନ ଜଣାଇବା ମୋ'ର ପରମ କର୍ତ୍ତବ୍ୟ ! ତେଣୁ ମୁଁ ତୁମକୁ ପ୍ରଥମେ ପ୍ରଣିପାତ କଲି !"

କୃଷ୍ଣକମଳ କହିଲେ, "ହେ ଧର୍ମରାଜ ଯୁଧିଷ୍ଠିର ! ଏହି ବିନମ୍ରତା ହିଁ ଆପଣଙ୍କର ବିଶେଷ ପରିଚୟ । କିନ୍ତୁ ହେ ରାଜନ୍ ! ଆପଣ ଜାଣିଥିବେ, ଜଙ୍ଗଲରେ ଥିବା ସଳଖ ଗଛ ଗୁଡ଼ିକ ହିଁ ପ୍ରଥମେ କୁଠାରାଘାତରେ ଧରାଶାୟୀ ହୁଅନ୍ତି । ସେହି ନ୍ୟାୟରେ ଅତି ସରଳତା, ଅତି ବିନମ୍ରତା ଓ ଅତି ଧର୍ମପରାୟଣତା ମଧ୍ୟ ବେଳେବେଳେ ମଣିଷକୁ ବିପଦରେ ପକାଏ । ସୁତରାଂ ଆପଣଙ୍କ ନିକଟରେ ଥିବା ଏହି ମହତ୍ ଗୁଣଗୁଡ଼ିକ ମହାଭାରତ ଯୁଦ୍ଧର କାରଣ ବୋଲି ଆମ୍ଭେ ଭାବୁଛୁ । ଧର୍ମାତ୍ମା ବିଦୁରଙ୍କ ଭଳି ଆମେ ମହାଜ୍ଞାନୀ ନୋହୁଁ , ଆପଣଙ୍କ ରାଜ୍ୟର ଆମ୍ଭେ ସାଧାରଣ ପ୍ରଜା ! ଆମ୍ଭ ଦୃଷ୍ଟିରେ ମହାଭାରତ ଯୁଦ୍ଧ ପାଇଁ ଅନେକାଂଶରେ ଆପଣଙ୍କ ଅତି ଧର୍ମପରାୟଣତା ଏବଂ ଅଦୂରଦର୍ଶୀତା ହିଁ ଦାୟୀ ! ସେଥିପାଇଁ ଏହି ଧର୍ମସଭାରେ ଆପଣ ସର୍ବସମକ୍ଷରେ କ୍ଷମାଯାଚନା ତ ଅବଶ୍ୟ କରିବେ; କିନ୍ତୁ ତା' ପୂର୍ବରୁ ଆମ ମନରେ ଉଠୁଥିବା କିଛି ପ୍ରଶ୍ନିଳ ଜିଜ୍ଞାସାକୁ ପ୍ରଶମିତ କରନ୍ତୁ ।

ହେ ରାଜନ୍ ! ଆପଣ ଜାଣିଥିଲେ, ଦୁର୍ଯ୍ୟୋଧନ ଆପଣଙ୍କ ଭ୍ରାତା ହେଲେ ମଧ୍ୟ ପାଣ୍ଡବ ପରିବାରର ପରମ ଶତ୍ରୁ ! ପାଣ୍ଡବଙ୍କ ବିନାଶ ପାଇଁ ସେ ଶୈଶବରୁ ହିଁ ଅପଚେଷ୍ଟା କରିଆସୁଥିଲେ । ମାତା କୁନ୍ତିଙ୍କ ସମେତ ଆପଣ ପଞ୍ଚଭ୍ରାତା ଜୀବନରେ ଅନେକ ଝଡ଼ଝଞ୍ଜା ଅତିକ୍ରମ କରିବା ପରେ ସ୍ୱତନ୍ତ୍ର ଭାବେ ଇନ୍ଦ୍ରପ୍ରସ୍ଥ ପ୍ରତିଷ୍ଠା କରି ସୁଖ ଶାନ୍ତିରେ କାଳାତିପାତ କରୁଥିଲେ । ଦୁର୍ଯ୍ୟୋଧନଙ୍କ ଆମନ୍ତ୍ରଣ ସ୍ୱୀକାର କରି ପଶା ଖେଳିବା ପାଇଁ କାହିଁକି ଗଲେ ହସ୍ତିନାପୁର ? ଅବଶ୍ୟ ଜଣେ ରାଜା ପକ୍ଷେ ଦ୍ୟୁତକ୍ରୀଡ଼ାକୁ ଅସ୍ୱୀକାର କରିବା କ୍ଷତ୍ରୀୟ ଧର୍ମର ପରିପନ୍ଥି ହୋଇପାରେ । ତା' ସହିତ ଏହା ମଧ୍ୟ ସତ୍ୟ ଯେ, କ୍ରୀଡ଼ାର ନିୟମାନୁସାରେ ଜଣେ ରାଜା ହିଁ ଆଉ ଜଣେ ରାଜାଙ୍କୁ ଦ୍ୟୁତକ୍ରୀଡ଼ା ପାଇଁ ଆହ୍ୱାନ୍ କରିବା ଉଚିତ; କିନ୍ତୁ ଏଠାରେ ଆପଣଙ୍କ ପ୍ରତିଦ୍ୱନ୍ଦ୍ୱୀ ରୂପେ ରାଜା ଧୃତରାଷ୍ଟ୍ର ନ'ଥିଲେ, ଥିଲେ ରାଜକୁମାର ଦୁର୍ଯ୍ୟୋଧନ ଏବଂ ତାଙ୍କ କୁଟିଳବୁଦ୍ଧିଯୁକ୍ତ ମାମୁ ଶକୁନି ! ଏପରି ସ୍ଥଳେ ଆପଣ ସେ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରି ଲେଉଟି ଆସି ପାରିଥାନ୍ତେ । ଦ୍ୟୁତକ୍ରୀଡ଼ାରେ ହେବାକୁ ଥିବା ଅନ୍ୟାୟ ଓ କପଟତାର ପୂର୍ବାନୁମାନ କରି କକା ବିଦୁର ଏବଂ ପିତାମହ ଭୀଷ୍ମ ପରୋକ୍ଷ ଭାବରେ ଆପଣଙ୍କୁ ବାରଣ ମଧ୍ୟ କରିଥିଲେ ଖେଳିବାପାଇଁ । ଆପଣଙ୍କ ଭବିଷ୍ୟଦ୍ରଷ୍ଟା ଭ୍ରାତା ସହଦେବ ଅଶୁଭ ସଙ୍କେତ ମଧ୍ୟ ଦେଇ ସାରିଥିଲେ । ତା' ସତ୍ତ୍ୱେ ଧୀବରର ଜାଲ ଆଡ଼କୁ ଆକର୍ଷିତ ହୋଇ ଯାଉଥିବା

ନିରୀହ ମାଛଟିଏ ଭଳି ଆପଣ ସ୍ୱତଃପ୍ରବୃତ୍ତ ଭାବେ ଧରା ଦେଇଥିଲେ କପଟୀ ଶିକାରୀଙ୍କ ହାତରେ । ହେ ରାଜନ୍ ! ଏଭଳି ଅଦୂରଦର୍ଶୀ ପଦକ୍ଷେପ ନେଇ ଆପଣ ଦୁଷ୍ପରିଣାମ ଆଡ଼କୁ ଅଗ୍ରସର ହେଲେନାହିଁ କି ?

କପଟୀ ଶକୁନିଙ୍କ କୁଟନୀତିରେ ଖେଳାଯାଉଥିବା ପଶାରେ ଆପଣ ବାରମ୍ବାର ପରାଜିତ ହେଲେ । ବାଜିରେ ଲଗାଇ ଗୋଟିଏ ପରେ ଗୋଟିଏ, ନିଜର ସର୍ବସ୍ୱ ହାରିଲେ । ରାଜ୍ୟ ସମେତ ଇନ୍ଦ୍ରପ୍ରସ୍ଥ ଭଳି ସ୍ୱପ୍ନର ନଗରୀକୁ ଲୋଟେଇଦେଲେ ଅନ୍ୟାୟୀ ଖେଳାଳିଙ୍କ ପାଦତଳେ ! ନିଜେ ସମ୍ରାଟରୁ ବନିଗଲେ ବିଜେତାର କ୍ରିତଦାସ ! ଭୀମ, ଅର୍ଜ୍ଜୁନଙ୍କ ଭଳି ମହା ପରାକ୍ରମୀ ଭାଇମାନଙ୍କୁ ଧର୍ମର ଶିକୁଳିରେ ବାନ୍ଧି ଅସହାୟ ମୂଷିକଛୁଆ ଭଳି ପକାଇଦେଲେ ଶିକାରୀ ଗୃଧ୍ର ମୁହଁରେ ! ଆମ୍ଭେ ଜାଣିଛୁ, ତଥାପି ଆପଣ ଥିଲେ ଧର୍ମାତ୍ମା ! ଧର୍ମର ଅନୁଗାମୀ ! ! ନ୍ୟାୟର ନିୟୋକ୍ତା । ଆପଣ ଯାହାସବୁ ହାରୁଥିଲେ, ଧର୍ମର ତରାଜୁରେ ତଉଲି ଅଧର୍ମୀଙ୍କ ଅଣ୍ଟିରେ ଅଜାଡୁ ଥିଲେ । ସେ ପର୍ଯ୍ୟନ୍ତ ସବୁ ଠିକ୍ ଥିଲା; କିନ୍ତୁ ଜଣେ ନାରୀକୁ ଆଣି ଯେତେବେଳେ ଆପଣଙ୍କ ଧର୍ମନିକିତିରେ ଠିଆ କରାଇଲେ ସେତେବେଳେ କମ୍ପମାନ ହେଲା ଧର୍ମକଣ୍ଟା । ଆମ୍ଭେ ଏଠାରେ ଆପଣଙ୍କୁ ପ୍ରଶ୍ନ କରୁଛୁ, ସର୍ବସ୍ୱ ହରେଇ ଥିବା ଜଣେ ନିଃସ୍ୱ, ନିଜକୁ ବିକ୍ରି କରିଦେଇଥିବା ଜଣେ ଦାସ, କେଉଁ ଧର୍ମ ଅଥବା କେଉଁ ନ୍ୟାୟ ବଳରେ ଇନ୍ଦ୍ରପ୍ରସ୍ଥର ମହାରାଣୀଙ୍କୁ କ୍ରୟବସ୍ତୁ ଭଳି ପଶାବାଜିରେ ଲଗାଇ ପାରିଲେ ? ଦ୍ରୌପଦୀଙ୍କ ଉପରେ ଆପଣ ପାଞ୍ଚ ଭାଇଙ୍କର ସମାନ ଅଧିକାର ଥିଲା । ତାଙ୍କୁ ଦୁର୍ଯ୍ୟୋଧନର ଦାସୀ କରିବା ପୂର୍ବରୁ ଅନ୍ୟ ଭାଇମାନଙ୍କର ସ୍ୱୀକୃତି ଓ ସ୍ୱାଭିମାନକୁ ସମ୍ମାନ ଦେବା କର୍ତ୍ତବ୍ୟ ନଥିଲା କି ଆପଣଙ୍କର ? ଧର୍ମର ଦ୍ୱାହି ଦେଇ ନାରୀ ପ୍ରତି ଏଭଳି ଅନ୍ୟାୟ ବିଶ୍ୱ ଇତିହାସରେ ଆପଣ ପ୍ରଥମେ ସୃଷ୍ଟି କରିଥିଲେ ନିଶ୍ଚୟ ! ଅଧର୍ମୀ ଦୁଃଶାସନ ଭରା ରାଜସଭାରେ ଦ୍ରୌପଦୀଙ୍କ ବସ୍ତ୍ରହରଣ ତ ପରେ କରିଥିଲା; କିନ୍ତୁ ତା' ପୂର୍ବରୁ ହିଁ ଆପଣ ତାଙ୍କୁ ପଶାବାଜିରେ ଲଗାଇ ଲାଞ୍ଛିତ ଓ ଅପମାନିତ କରି ସାରିଥିଲେ । ହେ ଧର୍ମରାଜ ଯୁଧିଷ୍ଠିର ! ମହାରାଣୀ ଦ୍ରୌପଦୀଙ୍କ ପ୍ରତି ଅନ୍ୟାୟ କରି ଆପଣ ସମଗ୍ର ନାରୀଜାତିକୁ ଅପମାନିତ କରିଛନ୍ତି, ଏଥିରେ ଆପଣ ଦ୍ୱିମତ ହେବେ କି ? 'ମାତାକୁନ୍ତି' ମଧ୍ୟ ଜଣେ ନାରୀ ! ଦ୍ରୌପଦୀଙ୍କ ପରିବର୍ତ୍ତେ ଆପଣ ମାତା କୁନ୍ତିଙ୍କୁ ବାଜିରେ ହାରିବା କଥା କେବେ ଭାବିଥିଲେ କି ? ?"

କୃଷ୍ଣକମଳଙ୍କ ଶେଷବାକ୍ୟଟି ବିଦ୍ୟୁତ ଝଟ୍‌କା ଭଳି ସମଗ୍ର ସଭାମଣ୍ଡଳୀକୁ କ୍ଷତାକ୍ତ କରିଦେଇଥିବା ଭଳି ମନେ ହେଲା । ଉପସ୍ଥିତ ସଭାଜନେ ମୁଖାବନତ କରି ବସିଲେ । ଯୁଧିଷ୍ଠିର ସ୍ଥିର, ନିର୍ବିକଳ୍ପ, ପାଷାଣ ପ୍ରତିମା ପ୍ରାୟ ଦଣ୍ଡାୟମାନ ଥିଲେ ସଭାମଣ୍ଡପ ମଧ୍ୟଭାଗରେ । କୃଷ୍ଣକମଳ ପୁନର୍ବାର କହିଲେ, "ହେ ରାଜା ! ପିତାମହ ଭୀଷ୍ମ ତାଙ୍କ 'ପ୍ରତିଜ୍ଞାଧର୍ମ' ପାଳନ କରିବାକୁ ଯାଇ ଅନ୍ୟାୟୀଙ୍କ ପକ୍ଷଧର ହେଲେ । ମହାରଥୀ କର୍ଣ୍ଣ 'ମିତ୍ରତାଧର୍ମ' ରକ୍ଷା କରିବାକୁ

ଯାଇ ଅଧର୍ମୀଙ୍କ ସହଯୋଗୀ ହେଲେ । ଆପଣ 'ରାଜଧର୍ମ' ପାଳନ କରିବାକୁ ଯାଇ ନିଜ ପତ୍ନୀଙ୍କୁ ଦୁରାଚାରୀମାନଙ୍କ ଦ୍ୱାରା ଅପମାନିତ କଲେ ! ଧିକ୍ ! ଶତଧିକ୍ ଏଭଳି ଧର୍ମକୁ, ଯାହା ଆପଣଙ୍କ ଭଳି ଧର୍ମଜ୍ଞମାନେ ପାଳନ କରନ୍ତି କେବଳ ଦ୍ରୌପଦୀ ଓ ସୀତାଙ୍କ ଭଳି ଅସହାୟା, ଅବଳାମାନଙ୍କୁ ଅପମାନିତ କରିବାପାଇଁ !"

ମହାରାଜା ଯୁଧିଷ୍ଠିର ବିନମ୍ରତାର ସହିତ କହିଲେ, "ହେ କୃଷ୍ଣକମଳ ! 'ଧର୍ମ ରକ୍ଷତି ରକ୍ଷିତଃ', ଏହି ଋଷିବାକ୍ୟ ସତ୍ୟର ଅପଳାପ ନୁହେଁ ! ଆମେ ଧର୍ମ ପଥରେ ରହିଥିବା କାରଣରୁ ବିଜୟ ଅନ୍ତତଃ ଆମର ହିଁ ହେଲା । ହିମାଳୟ ଶିଖରରେ ପହଞ୍ଚିବାକୁ ହେଲେ ତଳୁ ଅନେକ ଛୋଟଛୋଟ ପାହାଡ଼ ଅତିକ୍ରମ କରି ଅଗ୍ରସର ହେବାକୁ ପଡ଼େ । ଠିକ୍ ସେମିତି, ଧର୍ମପଥରେ ବିଜୟଲାଭ କରିବା ପୂର୍ବରୁ ଅଧର୍ମର ଅନେକ ପ୍ରତିବନ୍ଧକ ପାର୍ କରିବାକୁ ପଡ଼ିଥିଲା ଆମକୁ । ଅବଶ୍ୟ ମୁଁ ଅସ୍ୱୀକାର କରୁନାହିଁ ଯେ, ଦ୍ୟୁତକ୍ରୀଡ଼ା ଥିଲା ମୋ'ର ଦୁର୍ବଳତା ! ସେଥିପାଇଁ ତୁମେ ମୋତେ ଯେଉଁଯେଉଁ ଦୋଷରେ ଅଭିଯୁକ୍ତ କଲ ମୁଁ ନିର୍ବିବାଦରେ ସେ ସବୁକୁ ଅଙ୍ଗିକାର ମଧ୍ୟ କରୁଛି ।

କର୍କଟ ଜୀବାଣୁ ଦେହର ଗୋଟିଏ ଅଙ୍ଗରେ ସୃଷ୍ଟି ହୋଇ ସମଗ୍ର ଶରୀରକୁ ବ୍ୟାପିଗଲା ଭଳି କୌରବଙ୍କ ପଣାପାଲିରେ ଜନ୍ମଲାଭ କରିଥିବା 'ଅଧର୍ମକୀଟ' ସମଗ୍ର କୁରୁବଂଶ ବିନାଶର କାରଣ ହେଲା, ଏହା ସତ୍ୟ । ଏହା ମଧ୍ୟ ମୁଁ ସ୍ୱୀକାର କରୁଛି ଯେ, ମହାଭାରତଯୁଦ୍ଧ ମୋ' ଅଦୂରଦର୍ଶୀତାର ଫଳ । ଏହି ଯୁଦ୍ଧରେ ରାଜ୍ୟ ଓ ରାଜ୍ୟାନ୍ତରର ଯେଉଁ ନିରୀହ ପ୍ରଜା ଏବଂ ସେନା ପରିବାର କ୍ଷତିଗ୍ରସ୍ତ ହେଲେ ସେଥିପାଇଁ ମୁଁ ଆଜି ସର୍ବସମକ୍ଷରେ କ୍ଷମା ଯାଚନା କରୁଛି ।"

ଯୁଧିଷ୍ଠିର କରପତ୍ର ଯୋଡ଼ି ଠିଆ ହୋଇଥିଲେ । ତାଙ୍କ ମୁଖରୁ ବାକ୍ୟ ଶେଷ ହେବା ମାତ୍ରେ ଅନ୍ତରୀକ୍ଷରୁ ଗୁଞ୍ଜରିତ ହେଲା, "ସାଧୁ.. ଧର୍ମରାଜ୍ ଯୁଧିଷ୍ଠିର ସାଧୁ ! ଆପଣଙ୍କ ଉଦାର, ସତ୍ୟବଚନ ଧନ୍ୟ କଲା ଆମକୁ !"

ଏତିକିରେ କୃଷ୍ଣକମଳର ଷଷ୍ଠ ଦଳଟି କ୍ରମଶଃ ଶ୍ୱେତବର୍ଣ୍ଣ ଧାରଣ କରିବାକୁ ଲାଗିଲା । ମହାରାଜ ମଣ୍ଡପ ଉପରୁ ପ୍ରତ୍ୟାବର୍ତ୍ତନ କରି ନିଜ ଆସନ ଗ୍ରହଣ କରିବା ପରେ କିଛିକ୍ଷଣ ନିରବତା ଛାଇଗଲା ସଭାଗାର ମଧ୍ୟରେ । ବିଚାରପତି ଧର୍ମଦେବ ପରବର୍ତ୍ତୀ ପାତ୍ରର ପ୍ରତୀକ୍ଷାରେ ।

ଗୋଟିଏ ମୁହୂର୍ତ୍ତର ବ୍ୟବଧାନ ପରେ......

ଅକସ୍ମାତ୍ ନୂପୁରର ମଧୁର ନିକ୍ୱଣ ବିସ୍ମିତ କଲା ସଭାଜନଙ୍କୁ । ଏବେ ସମସ୍ତଙ୍କ ଦୃଷ୍ଟି ଯାହାଠାରେ କେନ୍ଦ୍ରିଭୂତ ହେଲା, ସେ ମୃଦୁ ପଦପାତ ଓ ମନ୍ଥର ଗତିରେ ଆସୁଥିଲେ ମଣ୍ଡପ ନିକଟକୁ ! ଆଗନ୍ତୁକା ଥିଲେ ଜଣେ ଦିବ୍ୟକାନ୍ତିମୟୀ ନାରୀ ! ଯଜ୍ଞାଗ୍ନିର ତେଜ ସଦୃଶ୍ୟ ଉଜ୍ଜ୍ୱଳ ମୁଖମଣ୍ଡଳ । ତେଜୋଦିପ୍ତ ଚକ୍ଷୁ ଯୁଗଳ ! ଦେହରେ ସାମ୍ରାଜ୍ଞୀର ମହାର୍ଘ ଆଭରଣ !

କୃଷ୍ଣକମଳଙ୍କ ନିକଟରେ ଉପସ୍ଥିତ ହୋଇ ସେ ସଖା ଶ୍ରୀକୃଷ୍ଣ ଏବଂ ଧର୍ମଦେବଙ୍କୁ ଯଥୋଚିତ ପ୍ରଣାମ କରି କହିଲେ, "ହେ କୃଷ୍ଣକମଳ ! ମୁଁ ଦ୍ରୁପଦ ରାଜକନ୍ୟା, ପଞ୍ଚପାଣ୍ଡବଙ୍କ ପତ୍ନୀ ଦ୍ରୌପଦୀ ! ସାରା ସଂସାର କହୁଛି, 'ଦ୍ରୌପଦୀଙ୍କ ପାଇଁ ମହାଭାରତ ଯୁଦ୍ଧ' ! ଯଦି ଏ ଜନଶ୍ରୁତି ସତ୍ୟବୋଲି ତୁମେ ମଧ୍ୟ ଭାବୁଛ, ତାହହେଲେ ଏ ଧର୍ମ ସଭାରେ ମୁଁ କ୍ଷମା ଯାଚନା କରିବାକୁ ପ୍ରସ୍ତୁତ ଅଛି ।"

କୃଷ୍ଣକମଳ କହିଲେ, "ହେ ପାଂଚାଳୀ ! ସର୍ବଦା ଧର୍ମମାର୍ଗରେ ପରିଚାଳିତ ପାଣ୍ଡବ ପରିବାରର ଆପଣ କୁଳବଧୂ । ଜୀବନରେ ଅନେକ ଘାତପ୍ରତିଘାତ ସହନ କରିମଧ୍ୟ କଦାଚିତ ଆପଣ ଧର୍ମଚ୍ୟୁତ ହୋଇନାହାନ୍ତି ! ଧର୍ମପରାୟଣ ପତିମାନଙ୍କ ପାଇଁ ଅଧର୍ମୀଙ୍କ ସଭାରେ ଚରମ ଲାଂଛନାର ଶିକାର ହୋଇଛନ୍ତି ଆପଣ । ତଥାପି ହେ ଯାଜ୍ଞସେନୀ ! ଯଜ୍ଞାଗ୍ନିର ଶିଖା ଭଳି ନିଜକୁ ପବିତ୍ର ରଖିପାରିଛନ୍ତି ବୋଲି ଭଗବାନ ଶ୍ରୀକୃଷ୍ଣ ଆପଣଙ୍କୁ ଦ୍ୱାପରର 'ମହାସତୀ' ରୂପେ ମର୍ଯ୍ୟାଦା ପ୍ରଦାନ କରିଛନ୍ତି ! ପରନ୍ତୁ ହେ ଦେବୀ ! ଜୀବନରେ ଗୋଟିଏ ଭୁଲ୍ ପାଇଁ ଆପଣ କୌରବଙ୍କ ଦ୍ୟୁତସଭାରେ ନିଜେ ଅପଦସ୍ଥ ହେବା ସହିତ ନିଜ ପରିବାର ପାଇଁ ବରଣ କରିଥିଲେ ଚରମ ବିପର୍ଯ୍ୟୟ ! ଆଉ ସେ ଭୁଲ୍ ଗୋଟିକ ହେଉଛି, ଆପଣଙ୍କ ଜିହ୍ୱାର ଅସଂଯତତା ! ତ୍ରେତୟାରେ ରାଜା ଦଶରଥ ତୀର ପ୍ରୟୋଗରେ ସାମାନ୍ୟ ଅସତର୍କ ହେବା କାରଣରୁ ଶ୍ରବଣକୁମାରଙ୍କ ହତ୍ୟାକାରୀ ହେଲେ । ଠିକ୍ ସେମିତି, ଆପଣ ଦୁର୍ଯ୍ୟୋଧନ ପ୍ରତି ବାକ୍ୟ ପ୍ରୟୋଗରେ ଅସଂଯତ ହେବା କାରଣରୁ ଦ୍ୟୁତସଭାରେ ଅପଦସ୍ଥ ହେଲେ ! ଧନୁରୁ ନିକ୍ଷିପ୍ତ ବାଣ ଏବଂ ଜିହ୍ୱାରୁ ନିଷ୍କ୍ରାନ୍ତ ଅପଶବ୍ଦ, ଏ ଦୁହେଁ ଥରେ ଖସିଲେ ଅନ୍ୟକୁ ନିଶ୍ଚୟ କ୍ଷତାକ୍ତ ହିଁ କରିଥାନ୍ତି ।"

କୃଷ୍ଣକମଳଙ୍କ ବକ୍ରୋକ୍ତି ଶୁଣି ଦ୍ରୌପଦୀ ସ୍ମିତ ହସି କହିଲେ, "ହେ ପୁଷ୍ପରାଜ ! ଦୁର୍ଯ୍ୟୋଧନ ଇନ୍ଦ୍ରପ୍ରସ୍ଥ ପରିଦର୍ଶନ ସମୟରେ ଜଳକୁଣ୍ଡକୁ ସ୍ଥଳଭାଗ ଭାବି ଝୁଣ୍ଟିପଡ଼ିଥିଲେ ଏବଂ ସେତିକିବେଳେ ଭୀମ, ଅର୍ଜୁନାଦି ମୋ' ପତିମାନଙ୍କ ବିଦ୍ରୁପ ସହିତ ମୋ' ଅନ୍ତପୁର ଗବାକ୍ଷ ନିକଟରୁ ଶୁଭିଥିଲା ଉପହାସପୂର୍ଣ୍ଣ ବାକ୍ୟଟିଏ, 'ଅନ୍ଧର ପୁତ୍ର ଅନ୍ଧ' ! ହେଲେ ଦୁର୍ଯ୍ୟୋଧନଙ୍କ ପ୍ରତି ଏଭଳି ଅଶାଳୀନ ଆକ୍ଷେପ କଦାଚିତ୍ ମୁଁ କରିନଥିଲି । ପବିତ୍ର ଯଜ୍ଞକୁଣ୍ଡରୁ ଜାତ ଦେବକନ୍ୟା ଯାଜ୍ଞସେନୀ ମୁଁ ! ଶ୍ରୀଗୋବିନ୍ଦ ଯାହାର ପ୍ରିୟସଖା । ପଣ୍ଡୁପୁତ୍ରଙ୍କ ଭଳି ସତ୍ୟବ୍ରତମାନଙ୍କର ଯିଏ ସହଧର୍ମିଣୀ ! ଇନ୍ଦ୍ରପ୍ରସ୍ଥର ପାଟରାଣୀ ! ଦୁର୍ଯ୍ୟୋଧନ ଆମ ଶତ୍ରୁ ହେଲେ ମଧ୍ୟ ସେହି ସମୟ ପାଇଁ ସିଏ ଥିଲେ ଅତିଥି ! ମୋ' ଭଳି କୁଳିନା ଓ ସଂସ୍କାରବତୀ ନାରୀ, ଅତିଥିଙ୍କୁ ଅପମାନିତ କଲାଭଳି ଅଶାଳୀନ ଭାଷା ପ୍ରୟୋଗ କରିଥିବ ବୋଲି ତୁମେ କେମିତି ଭାବିପାରୁଛ ?"

କୃଷ୍ଣକମଳ ଅପେକ୍ଷାକୃତ ନିମ୍ନ କଣ୍ଠରେ ପ୍ରଶ୍ନ କଲେ, "ହେ ଦେବୀ ! ଏହା ମୁଁ

ଭାବୁନାହିଁ, ବରଂ ସାରା ଦୁନିଆ କହୁଛି, ଆପଣ ହିଁ ଦୁର୍ଯ୍ୟୋଧନଙ୍କୁ ଆକ୍ଷେପ କରି କହିଥିଲେ 'ଅନ୍ଧର ପୁତ୍ର ଅନ୍ଧ'ବୋଲି । ଆପଣ ଏବେ ଆଉ କାହାକୁ ଦୋଷ ଦେଉଛନ୍ତି ?

ଦ୍ରୌପଦୀ କହିଲେ, "ହେ କୃଷ୍ଣକମଳ ! ତୁମେ ଏହି କାହାଣୀଟି ଅବଶ୍ୟ ଶୁଣିଥିବ । ଏକଦା ବୃକ୍ଷମୂଳେ ବସି ଧ୍ୟାନରତ ଥିଲେ ଜଣେ ସିଦ୍ଧ ମହାତ୍ମା ! ବୃକ୍ଷଶାଖାରେ ବସିଥିଲେ କାକ ଓ ବକ, ଦୁଇ ମିତ୍ର ! କାକ ଅକସ୍ମାତ୍ ମଳତ୍ୟାଗ କଲା ଋଷିଙ୍କ ଉପରେ ଏବଂ ଉଡ଼ିଗଲା । ଋଷି କ୍ରୋଧିତ ଦୃଷ୍ଟିରେ ଉପରକୁ ଚାହିଁବା ବେଳକୁ ଦେଖିଲେ ବକକୁ । ବିଚରା ବକ ପାଇଲା ଦଣ୍ଡ ! ମୋ' ଅବସ୍ଥା ମଧ୍ୟ ସେ ନିରୀହ ବକ ଭଳି ! ସେଦିନ ମୋ' ଅନ୍ତପୁର ଗବାକ୍ଷ ନିକଟରେ ମୋ' ସହିତ ଠିଆ ହୋଇଥିଲା ମୋ'ର ଜଣେ ମୁଖରା ଦାସୀ ! ଦୁର୍ଯ୍ୟୋଧନ ଝୁଣ୍ଟି ପଡ଼ିବା ଆମେ ଉଭୟେ ଦେଖିଲୁ; କିନ୍ତୁ ସେ ଦୃଶ୍ୟ ଦେଖିବା ମାତ୍ରେ ମୋ' ଦାସୀ ମୁଖରୁ ସେହି ଅଶାଳୀନ ବାକ୍ୟଟି ବାହାରି ଆସିଲା । ଦୁର୍ଯ୍ୟୋଧନ ଅନ୍ତପୁର ଆଡ଼କୁ ଚାହିଁ ଧରିନେଇଥିଲେ ଯେ, ସେ ଆକ୍ଷେପ ମୁଁ କରିଛି । ଦାସୀର ଏଭଳି ଧୃଷ୍ଟତା ପାଇଁ ମୋ'ଠାରୁ ସେ ଅବଶ୍ୟ ଦଣ୍ଡ ପାଇଛି ; କିନ୍ତୁ ଘଟଣାଟିକୁ ଗୋପନ ରଖି ତା' ଦୋଷ ନିଜ ମୁଣ୍ଡକୁ ନେଇ ନିରବ ରହିଗଲି ମୁଁ । ଧର୍ମରାଜଙ୍କ ଦରବାରରେ ଜଣେ ଦାସୀକୁ ଅପରାଧିନୀ ରୂପେ ଠିଆ କରି ଦଣ୍ଡିତ କରିବାକୁ ମୁଁ ଚାହିନଥିଲି । ସାରା ସଂସାର ଜାଣିଲା 'ଅନ୍ଧର ପୁତ୍ର ଅନ୍ଧ' ମୁଁ କହିଛି ବୋଲି । ନିୟତିର କିଭଳି ବିପରିତ ନିୟମ ଦେଖ, ଜଣେ ଦାସୀକୁ ମୁଁ ଦରବାରୀ ଦଣ୍ଡରୁ ରକ୍ଷା କରିଥିବା ସତ୍ତ୍ୱେ କୁରୁ ଦରବାରରେ ମୋତେ ଦାସୀ ରୂପେ ଅପମାନିତ ହେବାକୁ ପଡ଼ିଲା ଏବଂ ଘୋର ଲଜ୍ଜାଜନକ ଦଣ୍ଡରେ ଦଣ୍ଡିତ ମଧ୍ୟ ହେବାକୁ ପଡ଼ିଲା ।"

ପୁନଶ୍ଚ ପ୍ରଶ୍ନ କଲେ କୃଷ୍ଣକମଳ, "ହେ ଦେବୀ ! ହୋଇପାରେ ଏ ଘଟଣା ବିଧିର ବିଡ଼ମ୍ବନା ! ତେବେ ଏହା ସତ୍ୟ ବୋଲି ଆପଣ ଦୁନିଆକୁ କିଛି ପ୍ରମାଣ ଦେଇପାରିବେ ?"

"ଅବଶ୍ୟ !" ଦ୍ରୌପଦୀଙ୍କ କଣ୍ଠସ୍ୱର ଏଥର ଦୃଢ଼ ଓ କଠୋର ଶୁଣାଗଲା । ସେ କହିଲେ, "ହେ' ଅଷ୍ଟଦଳ କମଳ ! ମୋ' ପୂର୍ବରୁ ଏଠାକୁ ଜଣ ଜଣ କରି ଛଅ ଜଣ ରାଜପୁରୁଷ ଆସିଲେ । ସତ୍ୟତା ଅଧାରରେ ନିଜନିଜ ବକ୍ତବ୍ୟ ରଖିଗଲେ । ତାହାରି ପ୍ରଭାବରେ ତୁମର ଛଅଗୋଟି କୃଷ୍ଣ ପାଖୁଡ଼ା ଶ୍ୱେତବର୍ଣ୍ଣ ଧାରଣ କରିସାରିଛନ୍ତି । ଏବେ ମୁଁ ଯାହା କହିଲି ତାହା ଯଦି ସତ୍ୟ ହୋଇଥାଏ, ମୁଁ ଶ୍ରୀଗୋବିନ୍ଦ ଏବଂ ଧର୍ମଦେବଙ୍କୁ ଚାହିଁ ବିଶ୍ୱାସର ସହିତ ଘୋଷଣା କରୁଛି, ତୁମର ସପ୍ତମ ପାଖୁଡ଼ା ନିଶ୍ଚୟ ଶ୍ୱେତବର୍ଣ୍ଣ ଧାରଣ କରିବ !" ଏହା କହି ଦ୍ରୌପଦୀ କରପତ୍ର ଯୋଡ଼ି ଧ୍ୟାନମୁଦ୍ରାରେ ଦଣ୍ଡାୟମାନ ହେଲେ । ସମଗ୍ର ସଭାସଦଙ୍କ ଉତ୍କଣ୍ଠିତ ଦୃଷ୍ଟି ପୁଷ୍ପରାଜଙ୍କ ସପ୍ତମ ପାଖୁଡ଼ା ଉପରେ । ମାତ୍ର କିଛି କ୍ଷଣ ! କ୍ରମଶଃ କୃଷ୍ଣକମଳଙ୍କ ସପ୍ତମ ଦଳ ଶ୍ୱେତବର୍ଣ୍ଣ ଧାରଣ କରିବା ସହିତ ଦର୍ଶକଙ୍କ ଉତ୍ସୁକତା ଶାନ୍ତ ପଡ଼ିଆସିଲା । ତତ୍‌ସଙ୍ଗେସଙ୍ଗେ

ଗଗନ ମାର୍ଗରୁ ପୁଷ୍ପବୃଷ୍ଟି ହେଲା ଏବଂ ସ୍ୱସ୍ତି ବଚନ ଶୁଣାଗଲା 'ସାଧୁ.....ଦ୍ରୁପଦନନ୍ଦିନୀ ! ସାଧୁ.. ସାଧୁ.. ମହାସତୀ ଦ୍ରୌପଦୀ ସାଧୁ !'

ଦ୍ରୌପଦୀ କୃତାଞ୍ଜଳିପୁଟରେ ପ୍ରଣାମ ଜଣାଇ ଆପଣା ଆସନକୁ ପ୍ରତ୍ୟାବର୍ତ୍ତନ କଲେ ।

ଏବେ ସମଗ୍ର ସଭାଜନଙ୍କ ଦୃଷ୍ଟି କୃଷ୍ଣକମଳଙ୍କ ଅଷ୍ଟମ ପାଖୁଡ଼ାଟି ଉପରେ । ଉପସ୍ଥିତ ପାତ୍ରମାନଙ୍କ ମଧ୍ୟରେ ଚାପା ଗୁଞ୍ଜରଣ ଖେଳିବୁଲୁଥିଲା । ସମସ୍ତେ ଜାଣିବାକୁ ଉତ୍କଣ୍ଠ, କେଉଁ ମହାରଥୀ ଆସି ନିଜ ଦୋଷ ସ୍ୱୀକାର କଲାପରେ ଅଷ୍ଟମ କୃଷ୍ଣ ପାଖୁଡ଼ାଟି ରୂପାନ୍ତରିତ ହେବ ଶ୍ୱେତବର୍ଣ୍ଣରେ ଏବଂ ସେ ପୂର୍ଣ୍ଣଭାବେ ମୁକ୍ତ ହେବ ।

ଏତିକିବେଳେ ନିଜ ଆସନରୁ ଉଠିଲେ ଜଣେ ମଧ୍ୟମବୟସ୍କ ଖର୍ବକାୟ ରାଜପୁରୁଷ । ରୁକ୍ଷ ମୁଖମଣ୍ଡଳରେ ତାଙ୍କର ଆବୃତ ହୋଇ ରହିଥିଲା ଅର୍ଦ୍ଧପକ୍ୱ ଶ୍ମଶ୍ରୁଗୁଚ୍ଛ ! କୁଣ୍ଠିତ ଗତି ଓ ବକ୍ର ପଦପାତରେ ଅଗ୍ରସର ହେଲେ ସେ କୃଷ୍ଣକମଳ ନିକଟକୁ । ଶ୍ରୀକୃଷ୍ଣ ପଛଆଡ଼କୁ ମୁହଁ ନ'ବୁଲାଇ ସ୍ଥିରକଣ୍ଠରେ କହିଲେ, "ଆସନ୍ତୁ ଗାନ୍ଧାର କୁମାର, ଶକୁନି ! କୁଣ୍ଠାବୋଧ କରନ୍ତୁ ନାହିଁ । ସମୟକୁ ସାମନା କରିବା ହିଁ ମଣିଷର ଧର୍ମ ! କୃଷ୍ଣକମଳ ଆପଣଙ୍କ ପ୍ରତୀକ୍ଷାରେ । ଦୟାକରି ଏହି ମଣ୍ଡପ ଉପରକୁ ଆସି ଆପଣ ନିଜ ସ୍ୱୀକାରୋକ୍ତି ରଖିଲେ କୃଷ୍ଣକମଳଙ୍କୁ ନିଶ୍ଚୟ ସାନ୍ତ୍ୱନା ମିଳିବ !"

ଶକୁନି ଯୋଡ଼ହସ୍ତରେ ମଣ୍ଡପ ଉପରକୁ ଆସି କୃଷ୍ଣକମଳଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ତା'ପରେ ସେ ଧର୍ମଦେବ ଏବଂ ଶ୍ରୀକୃଷ୍ଣଙ୍କୁ ଯଥାରୀତି ପ୍ରଣାମ କରି କହିଲେ, "ହେ' ଗୋବିନ୍ଦ ! ଏ ଅକିଞ୍ଚନ ପ୍ରଥମେ ଆପଣଙ୍କ ଶ୍ରୀମୁଖରୁ ସତ୍ୟର ସ୍ୱୀକାରୋକ୍ତି ଶୁଣି କୃତାର୍ଥ ହୁଅନ୍ତା ଭାବିଥିଲା । ଆପଣ କ'ଣ ନିରାଶ କରିବେ ତାକୁ ?"

ଶ୍ରୀକୃଷ୍ଣଙ୍କ ଓଷ୍ଠାଧାରରେ ଖେଳିଗଲା ଧୀରେ ମଧୁର ହସର ତରଙ୍ଗ ! ସେ କହିଲେ, "ମାମୁ ଶକୁନି ! ଆପଣ ଜାଣନ୍ତି, ମହାଭାରତ ଯୁଦ୍ଧରେ ଭାଗ ନେଇଥିବା ରଥୀ, ମହାରଥୀ ଅଥବା ସଂପୃକ୍ତ ପାତ୍ର-ପାତ୍ରୀଙ୍କ ସ୍ୱୀକାରୋକ୍ତି ହିଁ ସନ୍ତୁଷ୍ଟ କରିପାରିବ କୃଷ୍ଣକମଳର ଅଶାନ୍ତ ଆତ୍ମାମାନଙ୍କୁ । ଆପଣ ସ୍ୱୟଂ ଥିଲେ କୌରବ ପକ୍ଷର ଜଣେ ସୁଦକ୍ଷ ରଥୀ ! ମୁଁ ଥିଲି ଅର୍ଜୁନଙ୍କ ରଥର ସାରଥିଟିଏ ମାତ୍ର ! ଯୁଦ୍ଧରେ ତ ଭାଗ ମଧ୍ୟ ନେଇନଥିଲି ମୁଁ । ମୋ' ବାକ୍ୟ କୃଷ୍ଣକମଳଙ୍କୁ କିଭଳି ସାନ୍ତ୍ୱନା ଦେଇପାରିବ ?"

ଶକୁନି ଦୁଇ ହାତ ଯୋଡ଼ି କହିଲେ, "ହେ ମଧୁସୂଦନ ! ସୂର୍ଯ୍ୟ ରାତ୍ରିକାଳରେ ପୃଥିବୀର ଅର୍ଦ୍ଧେକ ଭାଗକୁ ଆଲୋକ ପ୍ରଦାନ କରେନାହିଁ; କିନ୍ତୁ ସେହି ଅର୍ଦ୍ଧେକରେ ଜଳୁଥିବା କ୍ଷୀଣ ପ୍ରଦୀପ ଠାରୁ ଆରମ୍ଭ କରି ଆକାଶର ଚନ୍ଦ୍ରମା ପର୍ଯ୍ୟନ୍ତ, ଯିଏ ଯେତେ ପ୍ରକାର ଆଲୋକ ସୃଷ୍ଟିକରନ୍ତି, ସେ ସମସ୍ତ ଆଲୋକର ମୂଳ ଉତ୍ସ ମଧ୍ୟ ସୂର୍ଯ୍ୟ ! ଠିକ୍ ସେହିପରି, ଯୁଦ୍ଧରେ ପ୍ରତ୍ୟକ୍ଷଭାବେ ଭାଗ ନ ନେଇ ମଧ୍ୟ ସମଗ୍ର ଯୁଦ୍ଧର ନିୟନ୍ତା ଥିଲେ ଆପଣ, ଏହା ମିଥ୍ୟା

ନୁହେଁ । ଏହା ମଧ୍ୟ ମିଥ୍ୟା ନୁହେଁ ଯେ, ମହାଭାରତ ଯୁଦ୍ଧରେ ଆମ ଉଭୟଙ୍କର କାର୍ଯ୍ୟଶୈଳୀ ଥିଲା ଭିନ୍ନ; କିନ୍ତୁ ଲକ୍ଷ୍ୟ ଥିଲା ଗୋଟିଏ ! ଆପଣ ଧର୍ମ ପକ୍ଷରେ ରହି ଅଧର୍ମର ବିନାଶ କଲେ । ମୁଁ ଅଧର୍ମ ପକ୍ଷରେ ରହି ଅଧର୍ମୀଙ୍କ ବିନାଶ କଲି ।"

ଏବେ କୃଷ୍ଣକମଳର ସ୍ଫୁରିତ ଦଳ ମଧ୍ୟରୁ ପ୍ରଶ୍ନ ହେଲା, "ହେ' ଗାନ୍ଧାର କୁମାର ! ଆପଣଙ୍କ କାର୍ଯ୍ୟଶୈଳୀ ସମ୍ପର୍କରେ ତ ସାରା ସଂସାର ଜାଣିଛି । କୂଟ କପଟ ଓ ଛନ୍ଦ ଛଳନାର ଆପଣ ଥିଲେ ଗନ୍ତାଘର ! ଛଳନାର ମୁଖା ପିନ୍ଧି ସାରା ଜୀବନ ଭଗିନୀ ଗୃହରେ ରହିଲେ । କମାର ବାରମ୍ବାର ଲୁହାକୁ ତତାଇ, ହାତୁଡ଼ିରେ ପିଟି, ଉହାରେ ଘଷି, ଶସ୍ତ୍ରକୁ ଶାଣିତ କରିବା ଭଳି ଆପଣ ନିଜ ଭଗ୍ନିପୁତ୍ରମାନଙ୍କୁ ଶୈଶବରୁ ପ୍ରସ୍ତୁତ କରୁଥିଲେ ପଣ୍ଡୁପୁତ୍ରମାନଙ୍କ ବିରୁଦ୍ଧରେ । ବାସ୍ତବରେ ଆପଣଙ୍କ ଜୀବନର ଲକ୍ଷ୍ୟ କ'ଣ ଥିଲା ? ପାଣ୍ଡବଙ୍କ ବିଜୟ ନା କୁରୁବଂଶର ବିଲୟ ? ? ତାକୁ ନେଇ ଆମେ ଆଜି ବି ଦ୍ୱିଧାଗ୍ରସ୍ତ ! ସେ ବିଷୟରେ ଆମକୁ ସନ୍ଦେହମୁକ୍ତ କରିବେ କି ?"

ଶକୁନି ତାଙ୍କ ଚିରାଚରିତ ଢଙ୍ଗରେ ହସି ଉତ୍ତର ଦେଲେ, "ହେ କୃଷ୍ଣକମଳ ! ଚିତାଗ୍ନି କେବଳ ମୃତ ଶରୀରକୁ ଭସ୍ମ କରେ; କିନ୍ତୁ ପ୍ରତିଶୋଧର କଣିକାଏ ଅଗ୍ନି ଗୋଟାଏ ବଂଶକୁ ପାଉଁଶରେ ପରିଣତ କରିଦେବା ପାଇଁ ଯଥେଷ୍ଟ ! ସେହି ଅଗ୍ନି ମୋ' ଛାତି ଭିତରେ ନିରନ୍ତର ଜଳୁଥିଲା କୌରବଙ୍କ ବିନାଶ ପାଇଁ ! ମୋ' ଜୀବନର ପରମ ଓ ଚରମ ଲକ୍ଷ୍ୟ ଥିଲା କୁରୁ ବଂଶ ବୃକ୍ଷର ସମୂଳ ଉତ୍ପାଟନ !"

"କିନ୍ତୁ କାହିଁକି ଗାନ୍ଧାର କୁମାର ?" ପ୍ରଶ୍ନ କଲେ 'କୃଷ୍ଣକମଳ' ।

"ହେ ପୁଷ୍ପରାଜ ! ଏକ କ୍ଷୁଦ୍ର ରାଜ୍ୟ ଗାନ୍ଧାର ! ମୋ' ପିତା 'ରାଜା ସୁବଳ' ଥିଲେ ଗାନ୍ଧାରର ନରପତି । ମୋ'ର ଅଲିଅଳୀ ଭଉଣୀ 'ଗାନ୍ଧାରୀ' । ଗାନ୍ଧାରୀର ଜନ୍ମ ପରେ ଭବିଷ୍ୟଦ୍ରଷ୍ଟା ଋଷିମାନେ ତା' ଗ୍ରହଦୋଷ ସମ୍ପର୍କରେ ଚେତାବନୀ ଦେଇ କହିଥିଲେ ଯେ, ବିବାହ ପରେ ଗାନ୍ଧାରୀର ବିଧବାଯୋଗ ଅଛି । ସେହି ଦୋଷକୁ ଖଣ୍ଡନ କରିବାକୁ ହେଲେ କନ୍ୟାକୁ ପ୍ରଥମେ ଯେ କୌଣସି ଇତରପ୍ରାଣୀ ସହିତ ବିବାହ କରାଇବାକୁ ପଡ଼ିବ । ତା'ପରେ ହିଁ ଝିଅର ପାରମ୍ପରିକ ବିବାହ ମଙ୍ଗଳପ୍ରଦ ହୋଇପାରେ । ଏହି ଭବିଷ୍ୟବାଣୀ ଉପରେ ପ୍ରାଧାନ୍ୟ ଦେଇ ମୋ' ପିତା ଗାନ୍ଧାରୀକୁ ଗୋଟାଏ ଛାଗଳ ସହିତ ବିବାହ କରାଇଥିଲେ । ତା'ପରେ ଆମେ ତା' ନିମନ୍ତେ ଯୋଗ୍ୟ ବରର ସନ୍ଧାନରେ ଥିଲୁ । ଇତ୍ୟବସରରେ ହସ୍ତିନାପୁରର ମହାମହିମ ଭୀଷ୍ମ ଗାନ୍ଧାରୀର ରୂପଗୁଣର ସନ୍ଧାନ ପାଇ ପ୍ରସ୍ତାବ ଦେଇଥିଲେ ଧୃତରାଷ୍ଟ୍ରଙ୍କ ସହିତ ଗାନ୍ଧାରୀର ବିବାହ ପାଇଁ । ଜଣେ ଦୃଷ୍ଟିହୀନ ରାଜାଙ୍କ ସହିତ ବିବାହ ଦେବାକୁ ଆମେ ଅନିଚ୍ଛା ପ୍ରକାଶ କଲୁ; କିନ୍ତୁ ବାହୁବଳୀ ଭୀଷ୍ମଙ୍କ ଅଭିଳାଷ ଆଗରେ ଆମ ଇଚ୍ଛା ଅନିଚ୍ଛାର କୌଣସି ମୂଲ୍ୟ ରହିଲାନାହିଁ । ଏଭଳି ପରିସ୍ଥିତି

ଦେଖି ଗାନ୍ଧାରୀ ସ୍ୱଇଚ୍ଛାରେ ବରଣ କଲା ଧୃତରାଷ୍ଟ୍ରଙ୍କୁ । ନିଜ ଆଖିରେ ଚକ୍ଷୁପଟଳ ବାନ୍ଧି ପତ୍ନୀଧର୍ମ ପାଳନ କରିବାକୁ ପ୍ରସ୍ତୁତ ହେଲା ସେ । ବିବାହର କିଛି ଦିନ ଅନ୍ତେ ଧୃତରାଷ୍ଟ୍ର ଜାଣିବାକୁ ପାଇଲେ ଯେ, ଗାନ୍ଧାରୀର ପ୍ରଥମ ବିବାହ ଗୋଟାଏ ହୀନ ପଶୁ ସହିତ ହୋଇଥିଲା, ଯେଉଁ ଘଟଣା ତାଙ୍କୁ ଗୁପ୍ତ ରଖାଯାଇଛି । ଏଥିରେ ସେ ଘୋର ଅପମାନିତ ବୋଧକଲେ । ରାଜାଙ୍କ ଆକ୍ରୋଶ, ଅପମାନ ଓ କ୍ରୋଧ, ଯୁଦ୍ଧର ରୂପ ନେଲା । ଭୀଷ୍ମଙ୍କ ସେନାପତିତ୍ୱରେ ଗାନ୍ଧାର ଉପରେ ହେଲା ଆକ୍ରମଣ । ପରାଜିତ ହେଲେ ଗାନ୍ଧାର ନରେଶ ! ସପରିବାର ସେ ବନ୍ଧା ହୋଇ ଆସି ହସ୍ତିନାପୁର କାରାଗୃହରେ ବନ୍ଦି ହେଲେ । ଭୀଷ୍ମଙ୍କ ଯୋଜନା ଥିଲା, ଖାଦ୍ୟ ଜଳ ନଦେଇ ଆମ ପରିବାରକୁ ସେ ତିଳତିଳ କରି ମାରିଦେବେ । ତେଣୁ ଦିନରେ ଥରେ, ଜଣେ ମାତ୍ର ଖାଇବା ପରିମାଣର ଅନ୍ନ ସେ ଆମକୁ ଯୋଗାଉଥିଲେ । ମୋ' ଦୂରଦ୍ରଷ୍ଟା ପିତା ଚିନ୍ତା କରି ଦେଖିଲେ, ପରିବାର ମଧ୍ୟରୁ କେବଳ ଜଣେ ହିଁ ସେହି ଖାଦ୍ୟ ଖାଇ ଜୀବନ ଧାରଣ କରିପାରିବ । ଅନ୍ତତଃ ଜଣେ ହିଁ ଜୀବିତ ରହୁ, କିନ୍ତୁ ସେ ବଂଚିରହିବ କେବଳ ଏହି ଗଣହତ୍ୟାର ପ୍ରତିଶୋଧ ନେବାପାଇଁ । ବଳରେ ହେଉ ବା ଛଳରେ, ଭୀଷ୍ମଙ୍କ ଏ ଅମାନୁଷିକ ଅତ୍ୟାଚାରର ପ୍ରତିଶୋଧ ନେବାକୁ ପଡ଼ିବ ତାକୁ । ହସ୍ତି ଉପଦ୍ରୃତ ଫସଲ କିଆରିର ଅସହାୟ ପାଳଭୂତ ଭଳି ଭୀଷ୍ମଙ୍କୁ ନିଜ ଚକ୍ଷୁ ସମ୍ମୁଖରେ ଦେଖିବାକୁ ପଡ଼ିବ ନିଜ ବଂଶର ବିନାଶ ! ଏ ଥିଲା ମୋ' ପିତାଙ୍କ ଅନ୍ତିମ ଅଭିଳାଷ ।

ଶୈଶବରୁ ହିଁ ମୋ' ଭିତରେ ଥିବା ପ୍ରତ୍ୟୁତ୍ପନ୍ନମତି ସ୍ୱଭାବ ଏବଂ କୁଟିଳ ପ୍ରକୃତି ପ୍ରଭାବିତ କରିଥିଲା ମୋ' ପିତାଙ୍କୁ । ତେଣୁ ଏହି ଦୀର୍ଘସୂତ୍ରୀ ପ୍ରତିଶୋଧ ପାଇଁ ସେ ମୋତେ ଚୟନ କଲେ । ବୁଭୁକ୍ଷୁ ପିତା, ମାତା ଓ ଭାଇମାନଙ୍କ ଭାଗର ଅନ୍ନ ଖାଇ ବଞ୍ଚି ରହିଲି ମୁଁ ବନ୍ଦିଗୃହରେ ଏବଂ ଶାଣିତ କରି ଚାଲିଥିଲି ମୋ' କୁଟବୁଦ୍ଧିର କୃପାଣକୁ କୁରୁବଂଶର ବିନାଶ ପାଇଁ । ସ୍ୱଚକ୍ଷୁରେ ମୁଁ ଦେଖିଛି, କ୍ଷୁଧା ତୃଷାରେ ଛଟପଟ୍ ହୋଇ ମୋ' ପିତା, ମାତା ଓ ଭାଇମାନଙ୍କ ମରିବାର ଭୟାନକ ଦୃଶ୍ୟକୁ । ପିତା ମୋତେ କହିଥିଲେ, ମୃତ୍ୟୁ ପରେ ତାଙ୍କ ଅସ୍ଥିକୁ ପଶାକାଠି ରୂପେ ବ୍ୟବହାର କରି ଲକ୍ଷ୍ୟପଥରେ ଆଗେଇ ଯିବାପାଇଁ । ମୁଁ ତାହା ହିଁ କରିଛି ।

ହେ ପୁଷ୍କରାଜ କମଳ ! ବାରୁଦକାଠି ଅନ୍ୟ ବସ୍ତୁକୁ ଜଳାଇବାକୁ ଯାଇ ନିଜେ ଅଙ୍ଗାରରେ ପରିଣତ ହେବା ଭଳି ମୁଁ ପ୍ରତିଶୋଧର ଅଗ୍ନିରେ କୌରବଙ୍କୁ ଜଳାଇ ନିଜକୁ ମଧ୍ୟ ସେଥିରେ ଭସ୍ମୀଭୂତ କରିଛି । ସ୍ୱୀକାର କରୁଛି, ମହାଭାରତ ଯୁଦ୍ଧର 'ଛଳନାୟକ' ଏବଂ 'ଖଳନାୟକ' ଭାବରେ ମୁଁ କୁଖ୍ୟାତ । ଏହି ଅବାଞ୍ଛିତ ମହାଯୁଦ୍ଧପାଇଁ ମୁଖ୍ୟତଃ ମୁଁ ନିଜକୁ ହିଁ ଦାୟୀ କରି ତୁମ ନିକଟରେ କ୍ଷମାଭିକ୍ଷା ମାଗୁଛି ! ତୁମ ବିକ୍ଷୁବ୍ଧ ଆତ୍ମାର ଶାନ୍ତି କାମନା କରୁଛି ।" ଶକୁନିଙ୍କ ବକ୍ତବ୍ୟ ଶେଷ ହେବା ମାତ୍ରେ କୃଷ୍ଣକମଳର ଅଷ୍ଟମ କୃଷ୍ଣପାଖୁଡ଼ାଟି

ଶ୍ୱେତବର୍ଣ୍ଣ ଧାରଣ କଲା ଏବଂ କୃଷ୍ଣକମଳ ପୂର୍ଣ୍ଣରୂପେ 'ଶ୍ୱେତକମଳ'ରେ ରୂପାନ୍ତରିତ ହୋଇ ସାରିଥିଲେ ।

ଏ ଅଲୌକିକ ଦୃଶ୍ୟ ଚମତ୍କୃତ କରିଥିଲା ସଚରାଚର ଦର୍ଶକଙ୍କୁ । ସହସା ଶୂନ୍ୟମାର୍ଗରୁ ପୁଷ୍ପବର୍ଷା ହେବାକୁ ଲାଗିଲା । ଦଶଦିଗ ପ୍ରକମ୍ପିତ ହେଲା ଧନ୍ୟ..ଧନ୍ୟ ପ୍ରତିଧ୍ୱନୀରେ । ଜଳପୂର୍ଣ୍ଣ ରୌପ୍ୟପାତ୍ରର ମଧ୍ୟଭାଗରେ 'ଶ୍ୱେତକମଳ' ଏବେ ଦେଖାଯାଉଥିଲେ ମେଘମୁକ୍ତ ରାତ୍ରି ଆକାଶରେ ପରାଗ ମୁକ୍ତ ପୂର୍ଣ୍ଣେନ୍ଦୁ ଭଳି ସ୍ୱଚ୍ଛ, ସୁନ୍ଦର ଓ ସମୁଜ୍ଜ୍ୱଳ !

ଶକୁନି ପ୍ରତ୍ୟାବର୍ତ୍ତନ କରି ସାରିଥିଲେ ନିଜ ଆସନକୁ । ଧର୍ମଦେବ ଶ୍ରୀକୃଷ୍ଣଙ୍କୁ ବିନମ୍ରଭାବେ କହିଲେ, "ହେ କେଶବ ! କୃଷ୍ଣକମଳଙ୍କ ମନରୁ ଅଶାନ୍ତିର କାଳିମା ଅବଶ୍ୟ ଦୂର ହେଲା । ସେ' ଶ୍ୱେତବର୍ଣ୍ଣା ହେଲେ । ଶାନ୍ତ ହେଲେ । ଏବେ ତାଙ୍କୁ ଆପଣ କୃପାକରି 'କମଳ'ର ସ୍ଥୁଳ ବନ୍ଧନରୁ ମୁକ୍ତି ପ୍ରଦାନ କରନ୍ତୁ । ଆପଣଙ୍କ ଶ୍ରୀମୁଖନିଃସୃତ ଆତ୍ମଜ୍ଞାନ ହିଁ ତାଙ୍କୁ ଏ ବନ୍ଧନରୁ ବିମୁକ୍ତ କରିପାରିବ ।"

ଭଗବାନ୍ ଶ୍ରୀକୃଷ୍ଣ ମୃଦୁହାସ ପୂର୍ବକ ନିଜ ଆସନ ପରିତ୍ୟାଗ କରି ଉଠିଆସିଲେ । ଶ୍ୱେତକମଳ ସମ୍ମୁଖରେ ଅଭୟମୁଦ୍ରା ପ୍ରଦର୍ଶନ କରି କହିଲେ, "ହେ 'ପୁଷ୍ପେନ୍ଦ୍ର' ! ଅବୋଧ୍ୟ ଶିଶୁ ମାଆ ମୁହଁରୁ ମନଗଢ଼ା କାହାଣୀ ଶୁଣି ମନକୁ ଶାନ୍ତ କଲା ଭଳି ମହାଭାରତର ଚରିତ୍ରମାନଙ୍କ ମୁଖରୁ ଯୁଦ୍ଧଗାଥା ଓ କ୍ଷମା ପ୍ରାର୍ଥନା ଶୁଣି ତୁମ ହୃଦୟର ବ୍ୟଥା ଓ ବେଦନା ଦୂର ହୋଇଗଲା, ତୁମେ ଶାନ୍ତ ହେଲ । ଅତି ଉତ୍ତମ ! କିନ୍ତୁ ହେ କମଳ ! ଜାଣିରଖ, ଏହି ମହାଯୁଦ୍ଧ ମହାକାଳର ଅନନ୍ତ ସ୍ରୋତ ମଧ୍ୟରେ ଏକ କ୍ଷୁଦ୍ର ଜଳକଣା ସଦୃଶ୍ୟ ଘଟଣା ମାତ୍ର । ଏହା ସତ୍ୟ ନୁହେଁ ବରଂ ଏକ ଆପେକ୍ଷିକ ସତ୍ୟ ! ମୁଁ ଦେଖିଛି, କୁରୁକ୍ଷେତ୍ର ଯୁଦ୍ଧଭୂମିରେ ଅଷ୍ଟାଦଶ ଦିନ ଧରି କେବଳ ଶଙ୍ଖଟିଏ ବାଜୁଥିଲା ଏବଂ ଚକ୍ରଟିଏ ଘୂରୁଥିଲା । ସମୟର ଘୂର୍ଣ୍ଣାୟମାନ ଚକ୍ର ତଳେ ସ୍ୱତଃ ଘଟି ଚାଲିଥିଲା ଘଟଣାମାନ । ସମୟ ହିଁ ଏ ମହାଯୁଦ୍ଧର ନିୟନ୍ତା ଓ ନିର୍ଣ୍ଣାୟକ ମଧ୍ୟ ! ଏ ଯୁଦ୍ଧ ନୂଆ ନୁହେଁ । ମହାକାଳର ଅନନ୍ତ ପ୍ରବାହ ମଧ୍ୟରେ ଏଭଳି ଅନେକ ମହାଭାରତ ଯୁଦ୍ଧ ପୂର୍ବରୁ ଘଟିସାରିଛି, ଆଜି ଘଟୁଛି ଏବଂ ଭବିଷ୍ୟତରେ ଅନେକ ଘଟିବ ମଧ୍ୟ । କିଛି ବି କେଉଁଠାରେ ଅଟକିଯାଇନି କିମ୍ବା ସ୍ଥିର ହୋଇଯାଇ ନାହିଁ ।

ଜୀବନକାଳ ମଧ୍ୟରେ ବାରମ୍ବାର ଋତୁ ପରିବର୍ତ୍ତନ ସହିତ ଆମେ ଶୀତର ଦଂଶନକୁ ସହ୍ୟ କରୁଛେ, ବସନ୍ତର ମାଧୁର୍ଯ୍ୟକୁ ଉପଭୋଗ କରୁଛେ । ଅଧିକ ଦୁଃଖ ଦେବାପାଇଁ ଶୀତ କେବେ ଆମ ନିକଟରେ ଅଟକିଯାଏନି କିମ୍ବା ଅଧିକ ସୁଖପାଇବା ପାଇଁ ଆମେ ବସନ୍ତକୁ ଅଟକାଇ ପାରିନେ ! କାଳର ପ୍ରବାହ ସହିତ ଘଟଣା ସ୍ୱତଃ ଘଟିଚାଲିଥାଏ..! ନିରନ୍ତର.. ନିରବଧି ! ଏହା ପ୍ରକୃତିର ନିୟମ । ପ୍ରଗତି ହିଁ ଜୀବନ ! ପରିବର୍ତ୍ତନ ହିଁ ସତ୍ୟ । ଏହି ଜ୍ଞାନ ହିଁ ମୁକ୍ତିର ମାର୍ଗ ପ୍ରଦର୍ଶନ କରେ । ତୁମ ମନରେ ପ୍ରଶ୍ନ ଉଠିଥିଲା, ଅଧର୍ମର ବିନାଶ ଓ ଧର୍ମ

ସଂସ୍ଥାପନା ପାଇଁ ଯଦି ଏ ଯୁଦ୍ଧ ଅନିବାର୍ଯ୍ୟ ଥିଲା, ତା'ହେଲେ ଅଠର ଅକ୍ଷୌହଣୀ ନିରୀହ ସୈନିକ ଓ ସେମାନଙ୍କ ପରିବାରବର୍ଗ କି ଅଧର୍ମ କରିଥିଲେ ଯେ ଏଭଳି ଦୁଃଖଦ ପରିଣାମ ଭୋଗିଲେ ?

ହେ ଶ୍ୱେତକମଳ ! ସବୁ ପ୍ରାଣୀଙ୍କ ଭିତରେ ପରମାତ୍ମାଙ୍କର ଅଂଶ ଜୀବାତ୍ମା ରୂପେ ବିଦ୍ୟମାନ, ଏହା ପରମ ସତ୍ୟ ! ସଂସାରକୁ ଅନ୍ନ ଯୋଗାଉଥିବା କୃଷକ ଫସଲକୁ ସୁରକ୍ଷିତ ରଖିବାପାଇଁ କ୍ଷେତରେ କୀଟନାଶକ ପ୍ରୟୋଗ କରେ । ସେଥିରେ ଲକ୍ଷଲକ୍ଷ କୀଟ ପ୍ରାଣତ୍ୟାଗ କରନ୍ତି । କହି ପାରିବ କି, ସେ ନିରୀହ କୀଟମାନେ କି' ପାପ କରିଥାନ୍ତି ଯେ, ଏଭଳି ଦୁଃଖଦ ପରିଣତି ଭୋଗକରନ୍ତି ?

ନିମ୍ନଗାମୀ ହେବା ନଦୀର ଧର୍ମ । ଜୀବନଦାୟିନୀ ନଦୀ ଜଳଭାର ସହିତ ପର୍ବତ ଶିଖରରୁ ନିମ୍ନକୁ ବହି ଆସେ । ତା' ସ୍ରୋତର ପ୍ରଖରତା ଅନେକ କ୍ଷୁଦ୍ର ଜୀବଙ୍କ ମୃତ୍ୟୁର କାରଣ ହୁଏ ଏବଂ ତା' ଜଳର ଶୀତଳତା ଅନେକ ଜୀବଙ୍କୁ ନୂତନ ଜୀବନ ପ୍ରଦାନ କରେ । କହିପାରିବ କି, ଏହି ଜୀବମାନେ କେଉଁଭଳି ପାପ ଅଥବା ପୁଣ୍ୟ କରିଥାନ୍ତି ଯେ, ନିୟମିତ ଏ ଦୁଃଖ ଓ ସୁଖ ଭୋଗ କରନ୍ତି ?

ହେ' କମଳ ! ଏହି ଦୃଶ୍ୟମାନ ଜଗତର ପ୍ରତ୍ୟେକ ଘଟଣା ଆପେକ୍ଷିକ ! ଏଠାରେ କେହି କାହା ଆତ୍ମାର ହତ୍ୟାକାରୀ ନୁହନ୍ତି ଅଥବା କେହି କାହାପାଇଁ ଦୋଷୀ ନୁହନ୍ତି ! ମନୁଷ୍ୟ କେବଳ ଅଜ୍ଞାନତା ବଶତଃ ନିଜକୁ ଘଟଣା ସହିତ ସଂପୃକ୍ତ କରି ସୁଖ କିମ୍ବା ଦୁଃଖକୁ ଆପଣାର କରିନେଇଥାଏ । ସେମିତି, ତୁମେ ମଧ୍ୟ ଅତୀତର ଅଶାନ୍ତିକୁ ଗଣ୍ଠିଧନ କରି ଯୁଗାନ୍ତର ଧରି ଦୁଃଖ ପାଉଥିଲ ! ଏବେ ମୁକ୍ତ ହୁଅ.. ଶାନ୍ତ ହୁଅ ।"

ଶ୍ରୀକୃଷ୍ଣଙ୍କ ଶ୍ରୀମୁଖରୁ ବାକ୍ୟ ଶେଷ ହେବା ମାତ୍ରେ ମହାଶୂନ୍ୟରେ ଅନୁରଣିତ ହେଲା ପବିତ୍ର ଓଁକାର ! ମୁହୁର୍ମୁହୁଃ ପ୍ରଣବ ନାଦରେ ମୁଖରିତ ହେବାକୁ ଲାଗିଲା ଗଗନ ପବନ । ତା' ସହିତ ଅକସ୍ମାତ୍ ଧର୍ମସଭା ମଧ୍ୟସ୍ଥ ଜଳପାତ୍ର ମଧ୍ୟରୁ ଅଦୃଶ୍ୟ ହୋଇଗଲା 'ଶ୍ୱେତକମଳ' ।

ଏହି ଘଟଣା ପରର ଦୃଶ୍ୟ ଥିଲା ତତୋଧିକ ବିସ୍ମୟପ୍ରଦ ! ସାରା ସଂସାରର ଦୃଷ୍ଟି ଅଟକିଥିଲା ଯେଉଁ ଘୂର୍ଣ୍ଣାୟମାନ ଘନ ବର୍ତ୍ତୁଳାକାର ପିଣ୍ଡ ଏବଂ ଉପସ୍ଥିତ ପାତ୍ରପାତ୍ରୀମାନଙ୍କ ଉପରେ, କ୍ରମଶଃ ସେ ପିଣ୍ଡଟି ବିଲୀନ ହେବାକୁ ଲାଗିଲା ମହାକାଶର ଅନନ୍ତ ଶୂନ୍ୟତା ଭିତରେ । ପୁଳାଏ ଭିଣାତୂଳା ସଦୃଶ୍ୟ ସୂକ୍ଷ୍ମରୁ ସୂକ୍ଷ୍ମତର, ସୂକ୍ଷ୍ମତମ ହୋଇ ହଜିଗଲା ତା' ଅସ୍ତିତ୍ୱ ଅନ୍ତରୀକ୍ଷର ନୀଳିମା ମଧ୍ୟରେ । ଓଁକାର ନାଦ ମଧ୍ୟ ବିଲୀନ ହୋଇଗଲା କ୍ରମଶଃ ମହାଶୂନ୍ୟର ଅନନ୍ତ ନିଶବ୍ଦତା ଭିତରେ ।

□□

ଗଳ୍ପ: ଆଜିର

# ଶେଷରୁ ଆରମ୍ଭ

ପେଟର ଦାନା ମୁଠାକ ପାଇଁ ଜନମମାଟି ଛାଡ଼ି ବିଦେଶରେ ଦାଦନ ଖଟନ୍ତି ଏମାନେ । ନୂଆଗାଁ' ବାଉରି ସାହିର ତିନି ପା' ମରଦ ଏବେ ସୁରଟରେ । 'ନିଜ ଗାଆଁ ମାଟିରେ ଖଟି ଖାଇବାକୁ ସରକାର ଯେତେ ସୁବିଧା ଦେଲେ କଅଣ ହବ ହେ, ଚୋରଣୀ ଗାଈର ବାଡ଼ ଡେଇଁବା ଅଭ୍ୟାସ ଭଳି ଏମାନଙ୍କର ପ୍ରକୃତି' ଏଭଳି କୁହାକୁହି ହୁଅନ୍ତି ଗାଆଁର ଉପରସାହି ଭଦ୍ରଲୋକେ । ତଳସାହିର ଅଧିକାଂଶ ଶ୍ରମିକ ନିଜ ପିଲାଛୁଆଙ୍କୁ ଧରି ଚାଲିଯାଆନ୍ତି ଦାଦନ ଖଟିବାକୁ । ଭେଣ୍ଡିଆ ବୟସରେ ଘରୁ ଗୋଡ଼ କାଢ଼ି ଯିଏ ବିଦେଶ ଗଲା, ଗଲାପୁତ୍ର ବାହୁଡ଼ି ନଇଲା.. !

ପଦନା କଥା କିନ୍ତୁ ଟିକିଏ ଅଲଗା..... !

ଗାଆଁର ଅନ୍ୟ ମରଦଙ୍କ ଭଳି ପଦନା ବି ଯାଇଛି ଦାଦନ ଖଟିବାକୁ । ଏଇ ଫଗୁଣ ପଶିଲେ ଛଅ ମାସ ହବ । ଘରେ ସାତ ମାସର ପେଟି ମାଇପ । ଦି'ଦିଇଟା କୋଳର, କାଖର ପିଲା । ଘରେ ଅନ୍ଧୁଣୀ ମାଆ ବୁଢ଼ୀ ! ଏମାନଙ୍କୁ ଛାଡ଼ି ପଦନା ଯାଇଛି ବିଦେଶ । ଯାଇଚି ଯେ' ଯାଇଚି ! ଦିନେ ବି ଫୋ'ନୁ ନାହିଁ କି ଚିଠିପତର ଖଣ୍ଡେ ଦେବାର ନାଆଁ ନାହିଁ । ତା' ପାଖରେ ମୋବାଇଲି ନଥିଲେ କ'ଣ ହେଲା, ଆଉ କାହା ମୋବାଇଲିରେ ଆନନ୍ଦ ମଉସା କତିକୁ ଫୋ'ନୁଟେ କରିପାରିଥାଆନ୍ତା । ସେତକ ବି କରୁନି ।

ରୁକୁଣାର ମନ ଗୋଳେଇ ଘାଣ୍ଟି ହଉଚି ଦିନରାତି । ପୋଷ୍ଟ୍‌ପିଅନ ଆନନ୍ଦ ମଉସାର ସାଇକଲ୍ ଘଣ୍ଟି ଶବଦ ଶୁଣିଲେ ରୁକୁଣା ଧାଇଁ ଯାଉଚି ଦାଣ୍ଡଦୁଆରକୁ । ଗେରସ୍ତ ପାଖରୁ ଫୋ'ନୁ କି ଟଙ୍କା ପଇସା କିଛି ପୋ'ଷ୍ଟରେ ଆସିଥିବ ପରା, ଏଇ ଆଶା ନେଇ ।

ହେଲେ ମଉସା ମନ ଦୁଃଖରେ କହନ୍ତି, "ନାଇଁ ଲୋ' ଝିଅ ! ଆଜି ବି ତୋ'ନାଆଁରେ କିଛି ଅସିନି ! ମୁଁ ଭାବୁଚି, ସେ ହୁଣ୍ଡାଟା ନୂଆ ଜାଗାକୁ ଯାଇ କଉଠି କିଛି ଅସୁବିଧାରେ ଏକା ପଡ଼ିଯାଇଥିବ । ନ'ହେଲେ ଛ'ମାସ ହେଲା ଗଲାଣି , ଟଙ୍କା ପଇସା ନ'ପଠେଇଲା ନାଇଁ, ଲୋକଟା ଚିଠି ଖଣ୍ଡେ ଦିଅନ୍ତାନି.. ଫୋ'ନୁ ଟେ କରନ୍ତାନି ? ଆଲୋ' ଝିଅ ! ତୋ'ସାଙ୍ଗରେ କିଛି ରାଗ ରୁଷା ହେଇକି ଘରୁ ପଳେଇନି ତ ?"

*ସୁରେନ୍ଦ୍ର ନାଥ ସାହୁ* ______________________________

ସେଦିନ କଥାକୁ ମନେ ପକାଏ ରୁକୁଣା । ରାଗ ରୁଷା କିଛି ନାଇଁ । ରାତିରେ ପଦନା ଭଲରେ ଖାଇ ପି' ଅଗଣାରେ ବସିଥିଲା । ବିଡ଼ି ଟାଣୁଟାଣୁ କହିଲା, "ବୁଝିଲୁ ରୁକୁ! ଏଥର ଯାହା ହେଲେ ମଧ୍ୟାରୁ ମତେ ଗାଁ ଛାଡ଼ିବାକୁ ପଡ଼ିବ ଲୋ' । ଗାଆଁରେ ତ ଆଉ ଆଗପରିକା ମୂଲ ପାଇଟି ମେଲୁନି । ତୁ ଦି'ଦିଇଟା ମାଇପିଲାକୁ ଜନମ ଦେଇଚୁ । ତାଙ୍କ ଭବିଷ୍ୟତ କଥା ଆମକୁ ଭାବିବାକୁ ପଡ଼ିବ ନା ନାଇଁ......କଉନୁ?"

ବିଡ଼ିଟାକୁ ଶେଷ ଟାଣ ଦେଇ ଫୋପାଡ଼ିଦେଲା ପରେ ପୁଳେ ଧୂଆଁ ନାକବାଟେ ଛାଡ଼ି ପଦନା କହିଥିଲା, "ହେଇଟି ରୁକୁ ଲୋ' ! ତୁ ଜମାରୁ ବେସ୍ତ ହବୁନି ବା' । ମୁଁ ଯାଇ ଯୁଉଠି ରହିଲେ ମଧ୍ୟାରୁ ତତେ ଫୋ'ନୁ କରିକି ଜଣେଇବି । ମୋ'ର ତ ମୋବାଇଲି ନାହିଁ । ମୁଁ ସିଆଡୁ ଆଉ କାହା ଫୋ'ନୁ ମାଗିକି ହଉ ପଛେ, ଆନନ୍ଦ ମଉସା ଫୋ'ନୁ କୁ ଲଗେଇ କଥା ହେବି । ତୁ' ତ ମୂରୁଖ ମାଇକିନା ! ମଉସାକୁ ମୁଁ କହିଦେଇଚି, ମୋର ଯାହା କିଛି ଚିଠି ପତର, ଟଙ୍କା ପଇସା ପୋ'ଷ୍ଟୁରେ ଆସିବ, ସବୁ ହେଜିକି ଦଉଥିବେ ତତେ ।"

ରୁକୁଣା ମନ ମାରି କହିଥିଲା, "ହେଲେ ତମେ ତ ଆଗରୁ ଘର ଛାଡ଼ି କେବେ କୁଆଡ଼େ ଯାଇନ । ଏବେ ଏକେଲା ମଣିଷ ବିଦେଶ ଯିବ ବୋଲି ବାହାରିଚ ଯେ, ମୋ'ମନ କାଇଁକି ଗୋଳେଇ ଘାଣ୍ଟି ହଉଚି ବା' !"

– "ଆଲୋ.... ! ତୁଉନି ହ' । ଯାହା ହେଲେ ମଧ୍ୟାରୁ ଆମେ ହେଲୁ ଅଣ୍ଡିରା ପିଲା । ଆମକୁ କିଏ କ'ଣ ଉଠେଇ ନଉଚି ଯେ, ତୁ ଛାନିଆ ହଉଚୁ...... ? ହେଃ.....ହୁଣ୍ଡି ଟା !"

ତା' ପରଦିନ ଭୋ'ରୁ କାଉ କା' ନକରୁଣୁ ପଦନା ତା' ରଙ୍ଗଛଡ଼ା ଛୋଟିଆ ଟ୍ରଙ୍କ ଖଣ୍ଡିକ କାନ୍ଧରେ ନଦିଲା । ହେଲେ ତା' ଆଗରୁ ରୁକୁଣାକୁ ଥରେ ଛାତି ଉପରକୁ ଆଉଜେଇ ଆଣି କୋହଭରା କଣ୍ଠରେ କହିଥିଲା, "ହେଇଟି ରୁକୁ ! ମୋ' ଦି'ଝିଅ ଆଉ ଅନ୍ଧୁଣୀ ମା' ତତେ ଲାଗିଲେ । ତୁ ଆଦଉଁ ବ୍ୟସ୍ତ ହବୁନି । ଫି' ମାସରେ ଟଙ୍କା ମନିଅର୍ଡ଼ର କରି ପଠେଇବି ତୋ' ନାଆଁରେ ! ବରଷେ ପୂରିଲେ, ହାତରେ କିଛି ଧନ ହେଲେ ଯାଇ ଆସିବି ।"

ପଦନା ସିନା ଭରସା ଦେଇ କହିଥିଲା– ମାସ ନ'ପୂରୁଣୁ ପଇସା ପଠେଇବ ବୋଲି, ହେଲେ ହେଲା କ'ଣ ? ଟଙ୍କା କି ଚିଠି ତ ଦୂରର କଥା, ଆଜି ପର୍ଯ୍ୟନ୍ତ ଫୋ'ନୁ ଟେ ମଧ୍ୟାରୁ କଲାନି ।

ହାଃ..ହୁତାଶରେ ଗଡ଼ି ଚାଲିଲା ରୁକୁଣାର ଦିନ । ମାସ ପରେ ମାସ । ଘରେ ଯାହା ଗଣ୍ଡେ ମୁଠେ ଥିଲା, ଧୀରେଧୀରେ ସବୁ ସରିଗଲା । ତା'ପରେ ଉଆଁସ ରାତିର ଅନ୍ଧାର ଭଳି ଅଭାବ ଅସୁବିଧା ମାଡ଼ି ଆସିଲା ତା' ସଂସାର ଭିତରକୁ । ପଦନାର ପଇସାକୁ ଅନେଇ ଅନେଇ ଘରେ ଯାହା ପିତ୍ତଳର ଡ଼ାଳ, ଗିଲାସ ଦିଇଟା ଥିଲା, ସେତକ ବନ୍ଧାଛନ୍ଦା କରି ଦୁଃଖେକଷ୍ଟେ ଚଳିଗଲା କିଛିଦିନ । ତା'ପରେ ସବୁ ଅନ୍ଧାର ! ଚାରିଚାରିଟା ଭୋକିଲା ପେଟ

ଅନେଇ ବସିଲେ ଲିଭିଲା ଚୁଲିରେ ବସିଥିବା ଖାଲି ଉଧାଣିକୁ । ସଂସାର ଏବେ ଚଳିବ କିମିତି ? ସେଥିରେ ପୁଣି ପଦନା ଗଲାବେଳେ ରଖିଦେଇ ଯାଇଚି, ତା'ପେଟ ଭିତରେ ଆଉ ଗୋଟେ ସନ୍ତକ !

ତିନି ବରଷର ଝିଅ 'ନେତ' ଆଉ ଚାରି ବରଷର'ରେବ' ! ଦୁଇ ଭଉଣୀ ଏବେ ପେଟର ଦାନା ମୁଠାକ ପାଇଁ ଉଚ୍ଛନ୍ନ ହେଇଗଲେଣି । ସାହି ପଡ଼ିଶାରେ ସମସ୍ତଙ୍କ ମନକୁ ନେଇ ସେ ନାନୀ ଭଉଣୀ କରି ଚଳୁଚି । ହେଲେ ଅଭାବ ଅସୁବିଧାରେ ଦିନେ ଓଳିଏ ସିନା କିଏ କାହା ପାଇଁ ପତର ପକେଇଦବ, ସବୁଦିନ କିଏ ଦବ ? ଏଠିତ ସମସ୍ତେ ଅଭାବି । ତା'ଛଡ଼ା ପର ହାତଟେକାକୁ ରୁକୁଣା ଅନେଇବା ଭଳି ମାଇକିନିଆ ନୁହଁ !

ତା'ପେଟର ବଢ଼ନ୍ତା ପିଲା ଭଳି ଦିନକୁଦିନ ଅଭାବ କଷଣ ବଢ଼ି ଚାଲିଲା ରୁକୁଣାର ସଂସାର ଭିତରେ । ତେଣୁ ସେ ଦିନେ ବାଧ୍ୟହେଇ ଗୋଡ଼ କାଢ଼ିଲା ପଦାକୁ ।

"ଆଲୋ' ବୋହୂ! ନ' ମାସର ପେଟ ବୋହି ତୁ ପର ଦୁଆରକୁ ମୂଲ ଲାଗି ଯିବୁ ?" ଉପର ମନରେ ଆକଟ କରିଥିଲା ଅନ୍ଧୁଣୀ ଶାଶୁ । କିନ୍ତୁ ବୁଢ଼ୀ ବୁଝୁଥିଲା, ସେତିକି ନ'କଲେ ଭାସିଯିବ ତା' ସଂସାର ! ପଦନାର ଟଙ୍କାକୁ ଅନେଇ ବସିଲେ ଭୋକ ଓପାସରେ ଉଜୁଡ଼ିଯିବ ଚାରିଚାରିଟା ଜୀବନ ।

ସେଦିନ ପଧାନପାଟର ଆଣ୍ଠୁଏ କାଦୁଅ ଭିତରେ ନଇଁପଡ଼ି ତଳି ବାଛୁବାଛୁ ହଠାତ୍ ଆଉ ସମ୍ଭଳା ପଡ଼ିଲାନି ରୁକୁଣାକୁ ! ଚାରିକାତ ମେଲେଇ ପଡ଼ିଗଲା ସେ କାଦୁଅ ଭିତରେ । ମୂଲ ଖଟୁଥିବା ସାଙ୍ଗ ମାଇକିନାଏ ଆସି ତାକୁ ଘେରିଗଲେ । ଲୁଗାଖଣ୍ଡେ ଆଣି ଘୋଡ଼େଇ ପକେଇଲେ ତା' ଅଣ୍ଟା ତଳକୁ । ଖଲ୍‌ଖାଲ୍ ହେଇ ପେଟରୁ ଗଳିପଡ଼ିଲା ପିଲାଟା କାଦୁଅ ପଚପଚ ବିଲ ହୁଡ଼ାଟା ଉପରେ । ଯିଏ ଶୁଣିଲା ସିଏ ଗାଲରେ ହାତ ଦେଲା ! ସବୁ ସେଇ ଷଠି ଦୁଛେଇର କରୁଣା ! କିଛି ବିଘିନ ଘଟିନି ଯାହା ! !

ଦି'ଦିଇଟା ଝିଅକୁ ଜନମ ଦେଇଥିବା ରୁକୁଣା ଏବେ ପୁଅ ମୁହଁକୁ ଚାହିଁ ଦୁଃଖ ଭୁଲିଯିବାକୁ ଚେଷ୍ଟାକଲା । ପଦନା ଥିଲେ କେଡ଼େ ଖୁସି ହେଇଥାନ୍ତା । ପିଲାଟା ତା' ବାପାର ମୁହଁଟାକୁ ଚୋରେଇ ଆଣିଚି । ଦେଖିଲେ ରୁକୁଣାର ମନ ପୂରି ଉଠୁଚି । ମନ ସିନା ପୂରୁଚି, ହେଲେ ପେଟ ସେ କଥା ବୁଝୁଚି କି ?

ଅନ୍ତୁଡ଼ି ଶାଳର ପୋଖତି ସିଏ । ପୁଅ ଜନମ ହେବା ପରେ ତା' ମୂଲ ପାଇଟି ବନ୍ଦ । ଏଣେ ଦାନାମୁଠେ ନାଇଁ ଘରେ ।

ନେତ ଆଉ ରେବ ଏବେ ଆଉ ଘରେ ରହୁନାହାନ୍ତି ଯେତେ ଆକଟ କଲେ ବି । ଗାଁ'ରେ ବୁଲିବୁଲି ଯା' ତା' ଘରୁ ମାଗିବା ଆରମ୍ଭ କରିଦେଲେଣି କାଙ୍ଗାଲୁଣୀ ଦି'ଟା । ଘର କୋଣେ ଲେଙ୍ଗୋରା ଗଡ଼େଇ ବସିଚି ଅନ୍ଧୁଣୀ ଶାଶୁବୁଢ଼ୀ । କା' ଆଗେ କହିବ ପେଟ ଭୋକ କଥା ?

ଆକାଶର ଜହ୍ନ ତାରା ଭଳି, ସରକାରଙ୍କର ମାଳମାଳ ଯୋଜନା ଗରିବଙ୍କ ପାଇଁ । ଟଙ୍କାକିଆ ଚାଉଳଠୁଁ ଆରମ୍ଭ କରି ଇନ୍ଦିରା ଆବାସ ପର୍ଯ୍ୟନ୍ତ । ହେଲେ ସେ ସବୁ ଆଜି ବି ଅପହଞ୍ଚ ରୁକୁଣା ପାଇଁ । ତା'ଭଳି ଗୋଟେ ନିଆଶ୍ରି, ନିରିମାଖିର ହାରିଗୁହାରି ଶୁଣିବାକୁ ତଳ ବାଉରି ସାହିର ଏ ଅପନ୍ତରାକୁ କିଏ କିସପାଇଁ ଆସିବ ?

ସେଦିନ କୋଳର କଅଁଳା ପୁଅକୁ ଦେଖି ଛାନିଆ ହେଇଗଲା ରୁକୁଣା ! ଜନମ ବେଳେ ଯାହାଟିକେ ମାଉଁସ ଲାଗିଥିଲା ଦିହରେ । ଏବେ ଶୁଖି ଝଡ଼ି ମଲା ଝିଟିପିଟି ଭଳିଆ ଦେଖାଗଲାଣି । ରାହାଧରି ଖାଲି କାନ୍ଦୁଚି ଦିନରାତି । ଖୁରେଇ ବିଦାରି ହଉଚି କୋଳ ଭିତରେ । ରାମ୍ପି ପକଉଚି ତା' ହାଡୁଆ ଛାତିଟାକୁ । ହେଲେ ଟୋପେ ବି ରସ ବାହାରୁନି ରୁକୁଣାର ବୁକୁରୁ । ଥିଲେ ସିନା ବାହାରିବ ? ଦିନଦିନ ଧରି ପେଟରେ ଦାନା ମୁଠେ ପଡ଼ିନି । ଘନବୋଉ କାଲି ଦେଇଥିଲା ଦି'ଢ଼ୋକ କାଞ୍ଜିପାଣି । ହେମନାନୀ ଦେଇଥିଲା ତୋରାଣୀ ଟାଟିଏ । ସେତିକି । ସେତିକିରେ କ'ଣ ଛାତିରେ ଅମୃତ ଭରିଯିବ ? ଦିହଟାକୁ କାଟିଦେଲେ ତ ନୁଣିଆ ରକତ ଟୋପେ ବାହାରିବନି, ଆଉ କ୍ଷୀର ଆସିବ କୁଆଡୁ ? ?

ଛିଃ ! ପେଟଚିରି ଜନମ ଦେଇଥିବା ପିଲାକୁ ଯୋଉ ମା' କ୍ଷୀରଟୋପେ ଦେଇ ନ'ପାରିବ, ସିଏ ମା'..ନା ରାକ୍ଷସୀ ? ମନକୁ ମନ ଧିକ୍କାରିଲା ରୁକୁଣା । ବିଷ କି ମହୁରା ଖାଇ ଜୀବନ ହାରିଦେଲେ ତରିଯାଆନ୍ତା ହେଲେ ଏ ଜଞ୍ଜାଳରୁ । ବେଳେବେଳେ ସେ ଭାବେ, ଭୁଲ ପାଠକୁ ସିଲଟରୁ ଲିଭେଇବା ପରି ତା' ସଂସାରଟାକୁ ପୂରା ଲିଭେଇ ଦିଅନ୍ତା କି ? ହେଲେ ସେମିତି କିଛି କରିବା ଆଗରୁ ଅଟକିଯାଏ ତା' ହାତ ! ଆଗକୁ ଆଉ କିଛି ଭାବିପାରେନି ରୁକୁଣା !

ଦିନେଦିନେ ଠିକ୍ ଏତିକିବେଳେ ପୋଷ୍ଟ ମଉସାଙ୍କ ସାଇକଲ୍ ଘଣ୍ଟି ଶବଦ ଶୁଭେ ଦାଣ୍ଡଆଡୁ । ମଉସା ରୁକୁଣା ଦୁଆରେ ଦଣ୍ଡେ ଠିଆହେଇ ତା' ଦୁଃଖର ସଂସାର ଉପରେ ଟିକେ ଆଖି ବୁଲେଇଦେଇ ଯାଆନ୍ତି । ରୁକୁଣାକୁ ଧୈର୍ଯ୍ୟ ଦିଅନ୍ତି । "ଆଲୋ ଝିଅ ! ପଦନାର ଚିଠି କି ପଇସା ଆଜି ନହେଲେ କାଲି ଆସିବ । ଏଡ଼େ ମୂରୁଖ କାମ ପଦନା ପରି ଲୋକ କେବେ କରିବନି । ତୁ ମା' ଭୈରବୀକୁ ଏକା ଡାକେ, ସିଏ ତୋ ଗୁହାରୀ ନିଷ୍ଚେ ଶୁଣିବେ ।"

ଆନନ୍ଦ ମଉସା ପାଟିରୁ ଏମିତିକା ଆଶ୍ୱାସନାଭରା କଥା ପଦିଏ ଶୁଣିଲେ ରୁକୁଣାର ମରଣ ଖୋଜୁଥିବା ମନଟା ଆଉଦିନେ ବଞ୍ଚିବା ପାଇଁ ରାହା ପାଇଯାଏ । ତେଲ ସରି ଲିଭି ଆସୁଥିବା ଦୀପର ଶୁଖିଲା ସଳିତାଟାକୁ ଟିକେ ଉଖାରି ତେଜିଦେଇ ଯାଆନ୍ତି ଆନନ୍ଦ ମଉସା ।

ମଉସା ଜାଣନ୍ତି, ଜୀବନ ଚାଲିଯିବ ପଛେ, ରୁକୁଣା କାହା ହାତଟେକା ଅନୁକମ୍ପାକୁ ଅନେଇବ ନାହିଁ । ତଥାପି ସେଦିନ ସେ ପକେଟରୁ କିଛି ଟଙ୍କା ବାହାରକରି ଯାଚିଥିଲେ, "ଆଲୋ ଝିଅ ! ନେ ଏ ଟଙ୍କା ତିନିଶ' ରଖିଥା । କେତେଦିନ ତୁ ଆଉ ଏମିତି ଭୋକ ଓପାସରେ ସଡ଼ି ପଦନାର ଟଙ୍କାକୁ ଅନେଇ ବସିଥିବୁ ? ତୁ ତ ପୋଖତୀ ମଣିଷ । ଘରୁ ଗୋଡ଼ କାଢ଼ି କୁଆଡ଼େ ଯିବୁ ?"

*ସୁରେନ୍ଦ୍ର ନାଥ ସାହୁ*

ଆନନ୍ଦ ମଉସାଙ୍କ କଥା ଶୁଣି ରୁକୁଣାର ରକ୍ତଶୂନ୍ୟ ମୁହଁରେ ଶୁଖିଲା ହସଟିଏ ଖେଳି ଯାଇଥିଲା । "ମଉସା ! ମୁଁ କିଅଣ ତମ ଦୁଃଖ ଜାଣିନି କିହେ' ? ଗୋଟେ ବୋଲି ପୁଅ, ଅକାଳରେ ଚାଲିଗଲା । ମାଉସୀ ତିନି ବରଷ ହେଲା ଶେଯ ଧରି ପଡ଼ିଚନ୍ତି । ତମ ଦରମା ଗଣ୍ଡାକ ତାଙ୍କ ଓଉଷଧ, ପଥିପାଚନକୁ ନିଅଣ୍ଟ । ତାଇଁରୁ କାଟି ତମେ ମୋ' ପିଲାଙ୍କ ମୁହଁରେ ଦାନା ଦେବା କଥା କିମିତି ଭାବୁଚ ! ଥାଉ ମଉସା ! ମୁଁ ତ ଶୁଝି ପାରିବିନି ତମ ଟଙ୍କା, ଋଣୀ ହେଇ କାଇଁକି ମରିବି ?"

ମଉସା ବୁଝାନ୍ତି, "ଆଲୋ ହୁଣ୍ଡି ! ତତେ ଋଣୀ ହେବାକୁ କିଏ କହୁଚି ? ପଦନା ମନିଅର୍ଡ଼ର କଲେ ବଳେ ମୁଁ ସେଥିରୁ କାଟି ନେବିନି ଏ ଟଙ୍କା ? ନେ ରଖ୍ !"

ନା' ! ରୁକୁଣାର ବିବେକ ମାନେ ନା । ପଦନା ଯେ କେବେ ଟଙ୍କା ପଠେଇବ, ଏ ବିଶ୍ୱାସର ବୀଜଟି ଗଜେଇ ପାରେନି ରୁକୁଣାର ମରୁଡ଼ିଗ୍ରସ୍ତ ମନରେ । ମଉସା ମନ ଦୁଃଖରେ ଫେରେଇ ନିଅନ୍ତି ଟଙ୍କା । ତାଙ୍କ ଆଖି ଆଗରେ ଭାସିଉଠେ ପଦନାର ସ୍ନେହ ଢ଼ଳଢ଼ଳ ସରଳ ମୁହଁଟି ଏବଂ ଶେଷ କଥା ପଦିକ, "ମଉସା ! ଦାଦନ ଖଟିବା ପାଇଁ ମୁଁ ବିଦେଶ ଯାଉଚି । ମୋ' ପିଲାମାନଙ୍କ ଉପରେ ଟିକେ ନିଘା ରଖିଥିବ । ସେମାନେ ତମକୁ ଏକା ଲାଗିଲେ ।"

ନିରବରେ ଛଳଛଳେଇ ଯାଆନ୍ତି ଆନନ୍ଦ ମଉସା । ଏତିକିବେଳେ ସେ ନିଜ ଅଭାଗା ଜୀବନ ଉପରେ ଟିକିଏ ଆଖି ବୁଲେଇ ଆଣନ୍ତି । ଗୋଟେ ବୋଲି ପୁଅ ତାଙ୍କର ଅକାଳରେ ଚାଲିଗଲା । ଘରେ ଚିର ରୋଗିଣା ସ୍ତ୍ରୀ । ତାଙ୍କ ଅନ୍ତେ ସଂସାର ଶୂନ୍ୟ ! ସେଥିପାଇଁ ମାଉସୀ ସବୁବେଳ ତାଙ୍କୁ ନେହୁରା ହୁଅନ୍ତି, "ମୁଁ ବଞ୍ଚି ଥାଉଥାଉ କୋଉ ଗୋଟେ ଅଭାବୀ ଘରୁ ପିଲାଟେ କୋଳେଇ ଆଣ । ପୁଅ ହଉ କି ଝିଅ ହଉ, ଆମେ ତାକୁ ପାଳିବା । ଏବେ ମୋ'ପାଇଁ ସିନା ତମେ ଅଛ । ତମେ ପଡ଼ିଗଲେ ପାଟିରେ ପାଣି ଟୋପେ ଦେବାକୁ କିଏ ଅଛି ଆମର କହିଲ ?"

ସତ କଥା । ସେଥିପାଇଁ ଆନନ୍ଦ ମଉସାଙ୍କ ସ୍ନେହିଳ ଦୃଷ୍ଟି ରୁକୁଣାର ବଡ଼ ଝିଅ 'ରେବ' ଉପରେ । ରେବକୁ ସେ ଝିଅ କରି କୋଳକୁ ଆଣିବେ ଭାବିଛନ୍ତି । ହେଲେ ରୁକୁଣାର ଏ ଦୁଃଖ ବେଳାରେ, ପଦନାର ଅନୁପସ୍ଥିତିରେ ଏ କଥା ଉଠାଇବାକୁ ତାଙ୍କ ବିବେକ ଡାକୁନାଇଁ । ପ୍ରକାରାନ୍ତରେ ସେ ମଧ୍ୟ ଅପେକ୍ଷା କରିଛନ୍ତି, ପଦନାର ଫେରିବା ବାଟକୁ ।

ସେଦିନ ସକାଳ ପହରୁ ଖାଙ୍କର ପେଟ ଦେଖେଇ ପିଣ୍ଡା ଉପରେ ପଡ଼ିଥାନ୍ତି ଦୁଇ ଭଉଣୀ, ରେବ ଆଉ ନେତ । ସବୁଦିନ ମାଗି ବୁଲିଲେ ଛିଃ ଛାକର କରୁଥିବେ ଲୋକେ । ଶୁଖିଲା ଥନମୁଣ୍ଡିଟାକୁ ଜାବ ପକେଇ ଶୋଇପଡ଼ିଚି କୋଳରେ ପୁଅଟା । ଦୁଇଦିନ ହେଲା ଆଉ କଡ଼ ଲେଉଟେଇବାକୁ ବଳ ପାଉନି ବୁଢ଼ୀ । ମଲା ଭଳିଆ ପଡ଼ିଚି ଶେଯରେ ।

ପୁଅକୁ ଶାଶୁବୁଢ଼ୀର କତରା ଉପରେ ଗଡ଼େଇଦେଇ ଠିଆହେଲା ରୁକୁଣା । ଖୁବ୍ ଦୁର୍ବଳ ଲାଗୁଚି । ବେଳେବେଳେ ଚାରିଆଡ଼ ଅନ୍ଧାର ଦିଶୁଚି । ତଥାପି ପିଲା ଦି'ଟା ପେଟରେ ଦି'ମୁଠା, ବୁଢ଼ୀ ପାଟିରେ ଟୋପେ ନ'ଦେଲେ ପାପ ଲାଗିବନି ତାକୁ! ଉପର ସାହି ଗୁଣ ସାଉକାର ଘରେ ବାସିପାଇଟି ଟିକିଏ କରିଦେଲେ ଦି'ମୁଠା ପଖାଳ କି ବାସିରୋଟି ଦି'ପଟ ମିଳିଯିବ । ଏହି ଆଶାରେ ରୁକୁଣା ବାଉଁଶ ତାଟିଟାକୁ ଆଉଜେଇ ଗୋଡ଼ କାଢ଼ିଲା ।

ସାଉ ଘରୁ କାମ ସାରି ଦି'ପଟ ଶୁଖିଲା ରୋଟି ଧରି ଫେରିବା ବେଳକୁ ପିଲାଟା ଡାଙ୍ଗ ହେଇ ପଡ଼ିଥିଲା ଶେଯରେ! ଛାତି ଭିତରେ ଭୂମିକମ୍ପ ଖେଳିଗଲା ରୁକୁଣାର! ବୁକୁ ଫଟେଇ କାନ୍ଦିଲା ସେ । ମୁଣ୍ଡ ପିଟିଦେଲା କାନ୍ଥରେ! ବୋହୂର କାନ୍ଦଣା ଶୁଣି କୁଆଡୁ ବଳ ଆସିଲା କେଜାଣି, ଛାନିଆ ହେଇ ଉଠି ବସିଲା ବୁଢ଼ୀ । କ'ଣ ହେଇଚି ବୁଝି ପାରୁନଥିଲା ସେ । ବୁଝିଲେ ଅବା ଛାତି ଫଟେଇ କାନ୍ଦିବା ପାଇଁ ଶକତି କାଇଁ ତା'ର ? ଖଞ୍ଜାଖଞ୍ଜି ହେଇ ରହିଥିବା ଦୁଇଶ' ଛଅଖଣ୍ଡି ଶୁଖିଲା ହାଡ଼ ଉପରେ ଫଟାଚିରା ଚମଡ଼ାଟେ ଘୋଡ଼େଇ ହେଇ ବଞ୍ଚିଛି ସିଏ !

ପୁଅ ମରିବା ପରଠୁଁ ରୁକୁଣାର ଶେଯ ଧରିବା ଅବସ୍ଥା ! ଉଠିବାକୁ ବଳ ପାଉନି । ହେଲେ ତା' ଦୃଷ୍ଟିଟା ଅମାନିଆ ପିଲାପରି ବାରମ୍ବାର ଲମ୍ବିଯାଉଚି ଦାଣ୍ଡ ଆଡ଼କୁ । ପଦନାର ଟଙ୍କା ଉପରେ ତା'ର ଆଉ ଆଶା ନାଇଁ କି ସେଥିପାଇଁ ସିଏ ଅନେଇ ବସିନି, ଅନେଇ ବସିଛି ପୋଷ୍ଟ ପିଅନ ଆନନ୍ଦ ମଉସାର ଆସିବା ବାଟକୁ, ଦୁଆର ଦୁଆର ବୁଲି ଯିଏ ଚିଠି ବାଣ୍ଟେ । ସୁଖଦୁଃଖ ବାଣ୍ଟେ ଘରେଘରେ । ଅଝାଡ଼ ଜଙ୍ଗଲ ଭିତରେ ବାଟ ହୁଡ଼ିଥିବା ଗୋରୁଟି କହ୍ନେଇର ବଇଁଶୀ ଶବଦକୁ କାନେଇଥିବା ପରି ରୁକୁଣା କାନେଇ ବସିଛି ଆନନ୍ଦ ମଉସାର ସାଇକେଲ୍ ଘଣ୍ଟି ଶବଦକୁ! ହେଲେ କାଇଁ.... ? ଆଜିକୁ ଦଶ ବାର ଦିନ ହେଲା ମଉସା ତ ଚିଠି ବାଣ୍ଟିବାକୁ ଆସୁନି ! ତା' ଜାଗାରେ ଆସୁଚି ଜଣେ ନୂଆ ଲୋକ !

ନିଜ ସ୍ତ୍ରୀର ଅଧିକ ଅସୁସ୍ଥତା କାରଣରୁ ପନ୍ଦରଦିନ ଛୁଟିରେ ଥିଲେ ପୋଷ୍ଟମେନ୍ ଆନନ୍ଦ ବିଶ୍ୱାଳ । ଛୁଟିରୁ ଫେରି ସେଦିନ ଯୋଗ ଦେଇଥିଲେ କାମରେ । ଡାକବ୍ୟାଗରୁ ଚିଠିତକ ଅଜାଡ଼ିଦେଇ ଗୋଟାକ ପରେ ଗୋଟେ ମୋହର ମାରି ଚାଲିଥିଲେ ସେ ।

ହଠାତ୍ ଅଟକିଗଲା ତାଙ୍କ ହାତଟା ଗୋଟେ ପୋଷ୍ଟକାର୍ଡ଼ ଉପରେ ! ଚିଠିଟା ଆସିଥିଲା ରୁକୁଣା ନାଆଁରେ ! ଅବଶ୍ୟ ଠିକଣାରେ ରୁକୁଣାର ନାଆଁ ବଦଳରେ ଲେଖାଥିଲା- 'ପଦନା ଦାସର ଭାରିଯା ପାଇବେ !'

ଚମକି ପଡ଼ିଲେ ଆନନ୍ଦ ମଉସା ! ଚିଠିଟାକୁ ସହଜେ ବିଶ୍ୱାସ କରିପାରିଲେନି ସେ । ଓଲଟ ପାଲଟ କରି ଭଲରୂପେ ଦେଖିଲେ । ପ୍ରାୟ ପାଞ୍ଚମାସ ତଳେ ଚିଠିଟା ପୋଷ୍ଟ

କରାଯାଇଥିଲା ସୁଦୂର କୋଲ୍‌କାତାରୁ । କୌଣସି କାରଣରୁ ହୁଏତ ଚିଠିଟା ଅଟକି ରହିଥିଲା କେଉଁଠି । ଡାକ ବ୍ୟବସ୍ଥାରେ ଏମିତି ବିଭ୍ରାଟ ବେଳେବେଳେ ହୁଏ । ହେଲେ ଏ ଚିଠିର ପ୍ରେରକ କିଏ ? ପ୍ରଶ୍ନଟି ଉଙ୍କିମାରିଲା ମଉସାଙ୍କ ମନରେ !

ପରଚିଠି ପଢ଼ିବା ବେନିୟମ କାର୍ଯ୍ୟ ହେଲେ ବି, ଉତ୍କଣ୍ଠା ରୋକିପାରିଲେନି ଆନନ୍ଦ ମଉସା ! ଚିଠିଟାକୁ ସେ ଆମୂଳ ଚୂଳ ପଢ଼ିଲେ । ଚିଠିର ସାରମର୍ମ ଥିଲା ଏ ପ୍ରକାର- 'ପଦନା କଲିକତା ଯାଇ ଜଣେ ଠିକାଦାର ପାଖରେ କୋଠା ତିଆରି କାମରେ ଯୋଗ ଦେଇଥିଲା । କାମ ଆରମ୍ଭ ହେବାର ମାତ୍ର ଆଠ ଦଶଦିନ ପରେ, କାମ କରୁଥିବା ଅବସ୍ଥାରେ ହଠାତ୍ ଗୋଟେ ଉଚ୍ଚ ଭାଡ଼ାରୁ ଗୋଡ଼ଖସି ତଳେ ପଡ଼ିଗଲା । ଘଟଣାସ୍ଥଳରେ ହିଁ ମୃତ୍ୟୁବରଣ କରିଥିଲା ପଦନା ! କାର୍ଯ୍ୟରତ ଶ୍ରମିକମାନଙ୍କ ଅପମୃତ୍ୟୁ ସେମିତି କିଛି ବଡ଼କଥା ନୁହେଁ ସେଠାରେ ! ଅର୍ଥାତ୍ ପଦନାର ମୃତ୍ୟୁ ସମ୍ବାଦଟି ଗଢ଼ି ଉଠୁଥିବା ଅଟ୍ଟାଳିକାର ଇଟା ଯୋଡ଼େଇ ଭିତରେ ସମାଧି ନେଇଗଲା ! ପତ୍ର ପ୍ରେରକ ବି ଜଣେ ଓଡ଼ିଆ ଶ୍ରମିକ । ପଦନା ସହିତ ତା'ର ଅଳ୍ପ ଦିନର ପରିଚୟ । ସେଥିରୁ ସେ କୌଣସି ପ୍ରକାରେ ଠିକଣାଟି ସଂଗ୍ରହ କରି ଚିଠିଟି ପଠେଇଚି ପାଞ୍ଚମାସ ପୂର୍ବେ ।'

ଚିଠିଟା ପଢ଼ିବା ପରେ ଆନନ୍ଦ ମଉସାଙ୍କ ହୃଦୟ କାନ୍ଦି ଉଠିଥିଲା । ହେଃ ଭଗବାନ୍ ! ଏ କି' ଭୟଙ୍କର ଦୁଃସମ୍ବାଦ ଶୁଣେଇଲ ତମେ !! ଏ ଖବର ପାଇଲେ ରୁକୁଣା ଆଉ ଦେହ ଧରି ରହିବ ଟି ? ଛଅ ମାସ କାଳ ଚାତକ ପରି ଅନେଇ ରହିଥିବା ଭାରିଯାକୁ, ମଶାଣିକୁ ଯିବାପାଇଁ ଅପେକ୍ଷା କରିଥିବା ଅନ୍ଧୁଣୀ ମାଆବୁଢ଼ୀକୁ ଏ ଚିଠି ପଢ଼ି ସେ ଶୁଣେଇ ପାରିବେ ? ନା ! ପାରିବେନି ! ତେଣୁ ସେ ଠିକ୍ କଲେ, ଏ' ଗୋଟେ ବେନାମି ଚିଠି । ଏଇଟା ମିଛ ଚିଠି ହେବା ଉଚିତ ।

'ଏକଦମ୍ ସତ କଥା ! ଆଜିକାଲି ଯେତେ ସବୁ ଫ୍ୟାକ୍ ନିଉଜ୍ । ମିଛ ଖବର ! ବେନାମି ଚିଠି ! ପଦନା ମରିନି.....ମୋଟେ ମରିନି ! ପଦନା ଭଳିଆ ଲୋକ ତା' ସକଳ ପରିବାରକୁ ଗାଁରେ ଛାଡ଼ିଦେଇ କଲିକତା ପରି ଗୋଟେ ଅପନ୍ତରାରେ ଯାଇ କାଇଁକି ମରିବ ହୋ' ? କେହିଜଣେ ତା' ନାଆଁରେ ମିଛ ଲେଖିଛି । ଏମିତି ହଜାରେ ବେଁନାମି ଚିଠି ଆସୁ, ସବୁ ବାଜେ ଖବର !' ପୋଷ୍ଟମେନ୍ ଆନନ୍ଦ ବିଶ୍ୱାଳ ପ୍ରଥମେ ନିଜ ମନକୁ ଏଭଳି ପ୍ରବୋଧନା ଦେଲେ । ଛାତିକୁ ଦୃଢ଼ କଲେ । ତା'ପରେ ସେ ସନ୍ତର୍ପଣରେ ପୋଷ୍ଟମାଷ୍ଟ୍ରଙ୍କ ଦୃଷ୍ଟି ଅନ୍ତରାଳକୁ ଯାଇ ଚିଠିଟାକୁ ଟିକ୍‌ଟିକ୍ କରି ଚିରି ଫୋପାଡ଼ିଦେଲେ ।

ଘର ଛାଡ଼ିବା ଦିନ ପଦନା ତାଙ୍କୁ ପଦେ ଖାଲି କହିଥିଲା, 'ମଉସା, ମୁଁ ଦାଦନ ଖଟିବାକୁ ବିଦେଶ ଯାଉଛି, ମୋ' ପିଲାଙ୍କ ଉପରେ ଟିକେ ନିଘା ରଖିଥିବ ! ମୋ' ସଂସାର ତମକୁ ଲାଗିଲା ।'

ଏବେ ମଉସାଙ୍କ ଆଖି ଆଗରେ ପଦନା ବିଦାୟ ବେଳର ଅଧାହସ ଅଧାକାନ୍ଦର ଭିଜାଭିଜା ମୁହଁଟା ଉଭା ହେଲା । ପଚାରିଲା, "ମଉସା, ମୋ' ପିଲାମାନେ କେମିତି ଅଛନ୍ତି ?"

ମଉସା ମନ ଭିତରେ ହଠାତ୍ ଚମ୍‌କି ପଡ଼ିଲେ । ଚିଠି ଉପରେ ମୋହର ମାରି ଚାଲିଥିବା ହାତଟା ତାଙ୍କର ଛାଆଁକୁ ଅଟକିଗଲା । ଦୁଇ ହାତ ଉପରକୁ ଟେକି ସେ ମନେ ମନେ ଠାକୁରଙ୍କୁ ଗୁହାରି କଲେ, 'ହେଃ ...ଠାକୁରେ ! ଘଟଣାଟା ଯଦି ସତ, ତା'ହେଲେ ଏ ଅସହାୟ ମା' ପିଲାଛୁଆ, ଏ ନିଆଶ୍ରି ପରିବାରଟିର ଅବସ୍ଥା କ'ଣ ହେବ? ତାଙ୍କ ଆଖି ଆଗରେ କ'ଣ ପଦନାର ଘରସଂସାର ଭାସିଯିବ । ଉଜୁଡ଼ିଯିବ ଚାରିଚାରିଟା ଜୀବନ ? ? ଆନନ୍ଦ ମଉସାଙ୍କ ଆଖି ଛଳଛଳେଇଗଲା ।

କଥାରେ ଅଛି, ଈଶ୍ୱର ସବୁଠାରେ ହାଜର ହୋଇପାରନ୍ତି ନାହିଁ ତେଣୁ ସେ 'ମାଆ'ମାନଙ୍କୁ ପଠାଇଛନ୍ତି । ସଂସାରର ସବୁ ଦୁଷ୍ଟଙ୍କୁ ବିନାଶ କରିପାରନ୍ତି ନାହିଁ ତେଣୁ 'ଅବତାରୀ'ମାନଙ୍କୁ ପ୍ରେରଣ କରନ୍ତି । ସେହି ନ୍ୟାୟରେ ଈଶ୍ୱର ବୋଧେ ସବୁ ଦୁସ୍ଥ ପରିବାରର ଦୁଃଖ ଦୂର କରିପାରନ୍ତି ନାହିଁ, ତେଣୁ ସେ 'ଆନନ୍ଦ ବିଶ୍ୱାଳ'ଙ୍କ ଭଳି କିଛି ସହୃଦୟୀ ମଣିଷଙ୍କୁ ପ୍ରେରଣ କରନ୍ତି ଏ ସଂସାରକୁ ।

ସେଥିପାଇଁ ହୁଏତ ମଉସାଙ୍କ ଅନ୍ତର୍ଚେତନା ଜାଗ୍ରତ ହୋଇଉଠିଲା । ପକେଟ୍ ଉଣ୍ଡାଳିଲେ ସେ । ପାଇଲେ ଛଅଶହ ଅଶି ଟଙ୍କା । ତାଙ୍କ ରୋଗିଣା ସ୍ତ୍ରୀ'ର ଔଷଧ ଖର୍ଚ୍ଚ ! ସ୍ତ୍ରୀ ତ' ତିନି ବରଷ ହେଲା ଏଇ ଔଷଧ ଖାଇଖାଇ ଆଣ୍ଠୁ ଧରି ଯେମିତିକୁ ସେମିତି ପଡ଼ିଛନ୍ତି ଖଟିଆରେ । ଏ ଛଅଶହ ଟଙ୍କାର ଔଷଧ ଖାଇଦେଲେ କୋଉ ଏବେ ପାହାଡ଼ ଚଢ଼ିଯିବେ, ବରଂ ଏ ଟଙ୍କାରେ ଗୋଟେ ଦୁଃସ୍ଥ ପରିବାର ସପ୍ତାହଟେ ବଞ୍ଚିବାପାଇଁ ଖୋରାକ ପାଇଯିବ । ସେହି ଛଅଶହ ଟଙ୍କା ରୁକୁଣାକୁ ଦେବାପାଇଁ ସ୍ଥିର କଲେ ମଉସା । କିନ୍ତୁ ରୁକୁଣା ଭଳିଆ ସ୍ୱାଭିମାନୀ ସ୍ତ୍ରୀ  କ'ଣ ଏ ଅଯାଚିତ ଦାନ କ'ଣ ଗ୍ରହଣ କରିବ ?

ସେଠୁ ଆନନ୍ଦ ମଉସା ଗୋଟେ ଉପାୟ ଉଦ୍ଭାବନ କଲେ । ଖଣ୍ଡେ ମନିଅର୍ଡ଼ର ଫର୍ମ ଆଣିଲେ । ସେଥିରେ ପ୍ରେରକ ସ୍ଥାନରେ 'ପଦନା'ର ନାଁ ଲେଖିଲେ । ଛଅଶହ ଟଙ୍କା ଭରିଲେ । ଫର୍ମ ତଳଭାଗରେ ପଦନା ଲେଖିଲା ଭଳିଆ ଛୋଟ ଚିଠିଟେ ଲେଖିଲେ, "ରୁକୁ ଲୋ' ! ମୋ' ଉପରେ ରାଗିଛୁ କି ? ମୁଁ ଏଠାକୁ ଆସି ଟିକିଏ ଅଡୁଆରେ ଏକା ପଡ଼ିଯାଇଥିଲି । ସେଥିପାଇଁ ଏତେଦିନ ହେଲା ତୋ' ପାଖକୁ ଚିଠି କି ଟଙ୍କା ପଠେଇ ପାରୁନଥିଲି । ଏବେ ଆଉ କିଛି ଅସୁବିଧା ହବନି । ହଠାତ୍‌କୁ ତୋ' ଚଳିବାପାଇଁ ଏବେ ଛ'ଶହ ଟଙ୍କା ପଠେଇଲି । ଆଗକୁ ଅଧିକ ପଠେଇବି । ତୁ ଜମାରୁ ବେସ୍ତ ହବୁନି । ମୋ' ମା' ଆଉ ପିଲାମାନଙ୍କୁ ନେଇ ଦୁଃଖେକଷ୍ଟେ ଚଳୁଥିବୁ । ଇତି- ପଦନା"

ଚିଠିଟି ଲେଖିସାରି ମଉସା ଦୀର୍ଘ ନିଃଶ୍ୱାସଟେ ଛାଡ଼ିଲେ । ତା'ପରେ ସେ ଟଙ୍କା ଓ ମନିଅର୍ଡ଼ର ଫର୍ମକୁ କାନ୍ଧଝୁଲା ବ୍ୟାଗରେ ପୂରେଇ ସାଇକେଲ୍ ଗଡ଼େଇଲେ ରୁକୁଣା ଘରଆଡ଼େ ।

*ସୁରେନ୍ଦ୍ର ନାଥ ସାହୁ*

ଆଜି ଗାଆଁଟାଯାକର ଚିଠି ବଣ୍ଟାହବ ପରେ, ପ୍ରଥମେ ରୁକୁଣାର ! ଏତେ ଦିନକେ ଆଜି ରୁକୁଣା ନାଆଁରେ ମନିଅର୍ଡ଼ର ଆସିଛି । ଟଙ୍କା ପଠେଇଚି ପଦନା । ରୁକୁଣା, ତା' ପିଲାମାନେ ଆଉ ଅନ୍ଧୁଣୀ ମାଆ ଶୁଣିଲେ କେତେ ଖୁସି ହେବେ ! ଜୀବନ ପଶିବ ମଲା ଦିହରେ ! !

ରୁକୁଣାର ଦାଣ୍ଡଦୁଆରେ ବ୍ରେକ୍ କଷି ଡାକଛାଡ଼ିଲେ ଆନନ୍ଦ ମଉସା, "ରୁକୁଣା ଲୋ'......ଏ ଝିଅ ରୁକୁଣା ! ପଦନା ଟଙ୍କା ପଠେଇଚି, ନବୁ ଆ' !"

ମଉସାଙ୍କ ଗୋଟାଏ ଡାକରେ କୁଡ଼ିଆ ଭିତରୁ ସତେଅବା ଉଚ୍ଛୁଳି ଆସିଲା ଖୁସିର ଲହରୀ । ରୁକୁଣା ଏବଂ ତା' ଦୁଇଝିଅ ଧାଇଁ ଆସିଲେ ହସହସ ମୁହଁରେ । ଘେରି ଠିଆହେଲେ ତାଙ୍କ ସାଇକେଲକୁ । ସେମାନଙ୍କ ମୁହଁରେ କିଛି ବିସ୍ମୟ, କିଛି ଆନନ୍ଦ, କିଛି ଉଦ୍‌ବେଗ ! ! ପଦନା ବିଦେଶ ଯିବା ଦିନୁ ରୁକୁଣା ମୁହଁରେ ଖୁସି ସହିତ ଲୁହ କେବେ ଦେଖିନଥଲେ ମଉସା । ଏଣେ ମଉସା ନିଜେ, ସିଏ ବି ଖୁସିରେ ହସୁଥିଲେ କି ଦୁଃଖରେ କାନ୍ଦୁଥିଲେ ଜାଣି ହେଉନଥିଲା । ଥରିଲା ଥରିଲା ହାତରେ ମୁଣିରୁ କାଢ଼ିଲେ ମିଛ ମନିଅର୍ଡ଼ର ଫର୍ମ୍‌ଟା । ତା' ଉପରେ ରୁକୁଣାର ଆଙ୍ଗୁଳି ଛାପଟିଏ ନେଇ ହାତକୁ ବଢ଼େଇଦେଲେ ଛଅଗୋଟି ଶହେ ଟଙ୍କିଆ ନୋଟ୍ ! ରୁକୁଣା ପରମ ଉତ୍କଣ୍ଠାରେ ନୋଟ୍‌ଗୁଡ଼ିକୁ ନେଇ ମୁଣ୍ଡରେ ଲାଗେଇଲା । ଛାତିରେ ଜଡ଼େଇ ଧରିଲା । ତା'ପରେ ମଉସା ନିଜେ ଲେଖିଥିବା ଚିଠିଟାକୁ ପଢ଼ି ଶୁଣେଇଲେ ରୁକୁଣାକୁ । ରୁକୁଣା ଥିଲା ନିର୍ବାକ । କଣ୍ଠ ବାଷ୍ପରୁଦ୍ଧ ! ଏଇ ଗୋଟିଏ ଚିଠିରେ ପଦନା ପ୍ରତି ଥିବା ତା' ମନର ସବୁ ରାଗ, ରୋଷ, ମାନ ଅଭିମାନ ଧୋଇ ହୋଇଗଲା ଏବଂ ତାହା ଲୁହର ରୂପ ନେଇ ଝରିପଡ଼ିଲା ସେ ହାତରେ ଧରିଥିବା ନୋଟିଗୁଡ଼ିକ ଉପରେ । ରୁକୁଣା ମନେମନେ ମା' ଭଇରବୀଙ୍କୁ ଭୋଗ ମନାସିଲା ତା'ଗେରସ୍ତର ମଙ୍ଗଳ କାମନା କରି ।

କହିବା ବାହୁଲ୍ୟ, ସେ ଦିନ ପରଠାରୁ ପଦନା ନିୟମିତ ଟଙ୍କା ପଠାଉଛି ଘରକୁ । ତା' ସହିତ ରୁକୁଣା ନାଆଁରେ ଚିଠି ଖଣ୍ଡେଲେଖା ବି ଦଉଚି । ପ୍ରତିମାସ ପ୍ରଥମ ସପ୍ତାହରେ ଆନନ୍ଦ ମଉସାଙ୍କ ଦରମା ତାରିଖ । ଠିକ୍ ସେହିଦିନ ରୁକୁଣା ପାଖକୁ ପଦନାର ମନିଅର୍ଡ଼ର ଟଙ୍କା ଆସେ । କେବେ ଦେଢ଼ ହଜାର, କେବେ ଦୁଇ ହଜାର । କିନ୍ତୁ ପଦନା ଆସିବାର ନାଇଁ ।

ଯା' ଭିତରେ ଅନେକ ବର୍ଷ ବିତିଗଲାଣି । ଅନେକ ଦୁଃଖ-ସୁଖର ଦିନ ଖରାଛାଇର ଖେଳ ଭଳି ରୁକୁଣାର ଚାଳିଆ ଉପର ଦେଇ ହଜିଗଲାଣି । ପଦନାର ଅନ୍ଧୁଣୀ ମା' ମରି ଏବେ ସ୍ୱର୍ଗରେ । ଆନନ୍ଦ ମଉସାଙ୍କ ରୋଗିଣା ସ୍ତ୍ରୀ ମଧ୍ୟ ସେ'ପାରିକୁ ଚାଲିଗଲେଣି । ମଉସା ଚାକିରିରୁ ଅବସର ନେଇ ସାରିଲେଣି । ରୁକୁଣା ଦରବୁଢ଼ୀ ହେଲାଣି । ତା'ର ଦୁଇ ଝିଅ ବାହା

ହେବା ବୟସରେ କେବେଠାରୁ ପହଞ୍ଚିଲେଣି । ହେଲେ ଆଜିପର୍ଯ୍ୟନ୍ତ ପଦ୍ନା ଘରକୁ ଆସିନାଇଁ । କିନ୍ତୁ ତା' ଟଙ୍କା ଆସୁଛି । ନିୟମିତ ଆସୁଛି । ପଦ୍ନା ପଠାଉଥିବା ମନିଅର୍ଡ଼ର ଟଙ୍କାରେ ରୁକୁଣା ଏବେ ଭଲରେ ଚଳୁଛି । ରୁକୁଣାର ଭଲମନ୍ଦ, ସୁଖ ଦୁଃଖରେ ଆସି ଠିଆ ହଉଚନ୍ତି ଆନନ୍ଦ ମଉସା । ସ୍ତ୍ରୀ ମଲା ପରେ ଆନନ୍ଦ ମଉସାଙ୍କର ନିଜର ବା କିଏ ଅଛି ଦୁନିଆରେ ? ତେଣୁ ରୁକୁଣା ଆଉ ଆନନ୍ଦ ମଉସା ଏବେ ପରସ୍ପର ଉପରେ ନିର୍ଭରଶୀଳ । ବାପ ଝିଅ ଭଳି ଗୋଟିଏ ଘରେ ଚଳୁଛନ୍ତି । ଏବେ ଆନନ୍ଦ ମଉସା ରେବ ପାଇଁ ଭଲ ପ୍ରସ୍ତାବଟେ ଆଣିଛନ୍ତି । ସିଏ ନିଜେ କର୍ତ୍ତା ହୋଇ ଏ ବର୍ଷ ତାକୁ ବାହା କରେଇବେ । ମଉସା କହୁଛନ୍ତି, ପଇସାପତ୍ର ପାଇଁ କିଛି ଅସୁବିଧା ହେବନାହିଁ । କାରଣ ପଦ୍ନା ପ୍ରତିମାସରେ ମନିଅର୍ଡ଼ର କରୁଛି । ଆଜିକାଲି ନିହାତି ପାଞ୍ଚ ଛଅ ହଜାର ଟଙ୍କା ଲେଖା ପଠେଇଲାଣି ଘରକୁ । ରୁକୁଣା ନାଆଁରେ ଚିଠି ଖଣ୍ଡେଲେଖା ବି ଦଉଚି । କିନ୍ତୁ ସେ ନିଜେ ଆସୁନାଇଁ । ପଦ୍ନା କାହିଁକି ଆସୁନାଇଁ ସେ ରହସ୍ୟ ଅବଶ୍ୟ ରୁକୁଣା ଏବେ ଜାଣିଗଲାଣି । ଯେବେଠାରୁ ଜାଣିଲାଣି, ସେବେଠାରୁ ସେ ଆଖି ଲୁହ ଆଖିରେ ମାରି ଜିଇବା ମଧ୍ୟ ଶିଖିଗଲାଣି ।



*ସୁରେନ୍ଦ୍ର ନାଥ ସାହୁ*

# ମିଛଗପ

ଝଡ଼ ପୂର୍ବରୁ ଯେମିତି ମାଟିକୁ ଓହ୍ଲେଇଥାଏ ଗୁମସୁମ୍ ନିରବତା ! ନିର୍ଧୁମ୍ ବର୍ଷିବା ଆଗରୁ ମେଘ ଯେମିତି ଚୁପ୍‌ଚାପ୍ ଓହଳି ରହିଥାଏ ମଝି ଆକାଶରେ । ଠିକ୍ ସେମିତି, ମିତାର ଗମ୍ଭୀର ମୁହଁରେ ଜମାଟ ବାନ୍ଧିଥିଲା ବିଷର୍ଣ୍ଣ ନିରବତା । ପାହାଡ଼ି ଝରଣା ଭଳି ପ୍ରଗଲ୍‌ଭା ମିତା ଅକସ୍ମାତ୍ ନିରବିଯାଇଥିଲା ଆବଦ୍ଧ ଜଳାଶୟଟିଏ ଭଳି ! କିନ୍ତୁ କାହଁକି.. ? କାହିଁକି ତା'ର ଏ ଥମ୍‌ଥମ୍ ଭାବ ? ଗୁମସୁମ୍ ଗାମ୍ଭୀର୍ଯ୍ୟ ! !

ବୋଉ ମିନତିଦେବୀ ଅନେକ ଚେଷ୍ଟା କରି ମଧ୍ୟ ତା' ମୌନଗାମ୍ଭୀର୍ଯ୍ୟର କୂଳକିନାରା ପାଉନଥିଲେ, ଯଦିଓ ଝିଅର ଏଭଳି ବ୍ୟବହାର ସହିତ ପିଲାଟିବେଳୁ ସେ ପରିଚିତ । କୌଣସି କଥାକୁ ନେଇ ମିତା ଯଦି ଥରେ ରାଗିଲା କି ରୁଷିଲା, ତା' କାଠୁଆ ମନକୁ ତରଳେଇବା ଭାରି କଷ୍ଟ ! ଏବେ ତାକୁ ପଦେ କିଛି ପଚାରିଲେ, ବେଲୁନରେ ପିନ୍ ଫୋଡ଼ିଦେଲା ଭଳି ଢ଼ୋ' କିନା ଫାଟିପଡ଼ିବ ! ତା' ସ୍ୱାମୀ ଅର୍ଣ୍ଣବ ଘରେ ଥିଲେ କାରଣଟା ଅବଶ୍ୟ ଜଣା ପଡ଼ିଯାଆନ୍ତା ! କିନ୍ତୁ ସିଏ ଯାଇଛନ୍ତି ଟୁର୍‌ରେ । ପିଙ୍କୁ ଯାଇଛି ସ୍କୁଲକୁ । ବରଂ ପିଙ୍କୁ ସ୍କୁଲରୁ ଫେରୁ । ମା' କଥା ପୁଅ ଆସିଲେ ବୁଝିବ ।

ମିତା ଆଜି ଦି'ପହର ଖିଆ ପରେ ତା' ବାପାଙ୍କ ପୁରୁଣା ଆଲମିରା ଖୋଲି କିଛି ଗୋଟେ ଖୋଜୁଥିଲା । ସେଥିରୁ ସେ କ'ଣ ପାଇଲା କେଜାଣି, ହାତରେ ଲୁଚେଇକି ଧରିଲା । ଖଣ୍ଡେ ଚାରିଚଉତା କାଗଜ ନିଶ୍ଚୟ । ତା' ପରଠୁଁ ମିତାର ହାବଭାବ ବଦଳିଯାଇଛି । ତା'ବୋଉଙ୍କ ଆଡ଼କୁ କେମିତି ଗୋଟେ ସନ୍ଦେହି ଦୃଷ୍ଟିରେ ବାରମ୍ବାର ଅନଉଛି । କିଛି ପଚାରିବ ପଚାରିବ ହୋଇ ପୁଣି ନିରବିଯାଉଛି । ତା' ଆଖିର ଜଳାଶୟରେ ସତେ ଯେମିତି ପ୍ରଶ୍ନର ପାଣିକୁଆମାନେ ବାରମ୍ବାର ମୁଣ୍ଡ ଉଠେଇ ପୁଣି ବୁଡ଼ିଯାଉଛନ୍ତି । ମିନତିଦେବୀ ବହୁତ ଚେଷ୍ଟା କଲେ, କିନ୍ତୁ ତା'କାରଣ ବୁଝିବା ତାଙ୍କ ପକ୍ଷେ ସମ୍ଭବ ହେଲାନାହିଁ । ସେ ଚୁପ୍‌ଚାପ୍ ଯାଇ ଡ୍ରଇଁରୁମର ଟି.ଭି ଆଗରେ ବସିଲେ । ଟି.ଭି. ଦେଖିବାକୁ ମଧ୍ୟ ଇଚ୍ଛା ହେଲାନି । ସାମନା କାନ୍ଥରେ ଓହଳିଛି ସ୍ୱାମୀଙ୍କ ଫୁଲମାଳଦିଆ ଫୋଟ ! ଟି.ଭି ଆଗରେ ବସିଲେ ପ୍ରଥମେ ସିଏ ହିଁ ପଡ଼ନ୍ତି ଆଖିରେ । ଛଳଛଳେଇଯାଏ ଆଖି ।

ହେଇ କାଲି ଭଳିଆ ଲାଗୁଛି । ସ୍ୱାମୀ ତାପସଙ୍କ ଆକସ୍ମିକ ବିୟୋଗ ପରେ ମିନତିଙ୍କ ଜୀବନ ପାଲଟି ଯାଇଥିଲା ଉଜୁଡ଼ା ବଗିଚା ଭଳି ଶ୍ରୀହୀନ ! ମିତା ସେତେବେଳକୁ ମାତ୍ର ଅଠର ବର୍ଷର । ମିନତିଙ୍କ ଖାଁ ଖାଁ ଜୀବନରେ ଏକମାତ୍ର ଝିଅ ମିତା ହିଁ ବଞ୍ଚିବାର ରାହା ! ତାକୁ

ଛାଡ଼ିଦେଲେ ଆଦିଗନ୍ତ କେବଳ ଶୂନ୍ୟତା ହିଁ ଶୂନ୍ୟତା । ତେଣୁ ଝିଅକୁ ବିବାହ ଦେଇ ନିଜଠାରୁ ଦୂରେଇଦେବାକୁ ଚାହୁଁନଥିଲେ ମିନତି । ବାଉଁଶ ଜଙ୍ଗଲ ଭିତରେ ଅକସ୍ମାତ୍ ଚନ୍ଦନବୃକ୍ଷଟିଏ ଠାବ କଲା ଭଳି ସେ ପାଇଥିଲେ ଅର୍ଣ୍ଣବଙ୍କୁ । ଅର୍ଣ୍ଣବ ଶୈଶବରୁ ପିତୃମାତୃହୀନ । ଜଣେ ସମ୍ପର୍କୀୟ କକାଙ୍କ ପାଖରେ ରହି ମଣିଷ ହୋଇଛନ୍ତି । କକାଙ୍କର ମଧ୍ୟ ଆକସ୍ମିକ ବିୟୋଗ ହେଲା । ଅର୍ଣ୍ଣବ ନିଜକୁ ଅନାଥ ବୋଲି ଅନୁଭବ କରିବା ଆଗରୁ ମିନତି ତାଙ୍କୁ ଆପଣେଇ ଆଣିଥିଲେ । ଅର୍ଣ୍ଣବଙ୍କୁ ଜୀବନସାଥୀ ରୂପେ ପାଇ ମିତା ବେଶ୍ ଖୁସି । ସେମାନଙ୍କ ସୁଖି ଦାମ୍ପତ୍ୟର ଏକମାତ୍ର ସାକ୍ଷୀ ପିଙ୍କୁ । ପିଙ୍କୁକୁ ହେଲାଣି ଆଠ ବର୍ଷ । ହେଲେ ମିତାଟା ଆଜି ବି ପିଲାଟେ ଭଳି ଜିଦ୍‌ଖୋର । ଭାରି ଅଭିମାନିନୀ । ସ୍ୱାର୍ଥପର ମଧ୍ୟ । ନିଜ ସମସ୍ୟା, ନିଜ ସୁଖଦୁଃଖ, ତା'ନିଜ ଅର୍ଜିତ ସମ୍ପତ୍ତି ଭଳି କୋଳେଇ ଧରିଥିବ । କାହାରିକୁ ଟିପେ ବାଣ୍ଟିବନି । ଭିତରେ ଭିତରେ ଗୁମୁରୁଥିବ । କାହାକୁ କିଛି କହିବନି । ଆଜି ବି ସେମିତି.. !

ମିନତିଦେବୀ ଆଖି ବୁଜି ହଜିଯାଇଥିଲେ ନିଜ ଭିତରେ । ପିଙ୍କୁ ଫେରିଲାଣି ସ୍କୁଲରୁ । ଭିତରକୁ ଗଲାଣି । ତା' ମାଆ ପାଖରେ ବସି ଏବେ ତାକୁ ମନେଇବାକୁ ଚେଷ୍ଟା କରୁଥିବ । କିନ୍ତୁ ସିଏ ବି ପାରିଲାନି ବୋଧେ । ଲୁହ ଟଳମଳ ଆଖିରେ ଆଈଙ୍କ ପାଖକୁ ଆସି ପଚାରିଲା,"ଆଈ ! ମାମା କାଇଁକି ରାଗିଛନ୍ତି ? ମୋ' ସାଙ୍ଗରେ କଥା ହେଲେନାଇଁ ! ମୋ' ସ୍କୁଲ କଥା ବି ପଚାରିଲେ ନାଇଁ । କ'ଣ ହେଇଚି କି ତାଙ୍କର ?"

ନାତିକୁ କୋଳକୁ ଟାଣିଆଣି ମିନତି କହିଲେ, "ତୁ କ'ଣ ତୋ' ଫୁଲେଇ ମାମାକୁ ଜାଣିନୁ ? ତୁ ସ୍କୁଲକୁ ଗଲା ପରଠୁଁ ସିଏ ସେମିତି ଗୁମ୍ ମାରି ବସିଛି । ମୋ' ସାଙ୍ଗରେ ବି କଥା ହଉନି । ପଚାରିଲେ କିଛି କହୁନି । ଆଚ୍ଛା.. ଏବେ ତୋ' ମାମା ସେ ରୁମ୍ ଭିତରେ ବସି କ'ଣ କରୁଥିଲା କହିଲୁ ?"

"ଖଣ୍ଡେ କାଗଜ ଧରି ମାମା କିଛି ଦେଖୁଥିଲେ ଆଉ ଲୁହ ପୋଛୁଥିଲେ । ବହୁତ ପୁରୁଣା, ମଳିଆ କାଗଜ ଭଳିଆ ଦିଶୁଥିଲା । ମୋତେ ଦେଖିବା ମାତ୍ରେ ସେଇଟାକୁ ସେ ଫୋଲ୍ଡ କରିକି ଅଜାଙ୍କ ଆଲମାରି ଭିତରେ ପୂରେଇଦେଲେ । ମୁଁ ଜାଣି ପାରିଲିନି କି କାଗଜ ସେଇଟା । ତମେ ଜାଣିଚ କି ଆଈ ! ସେଥିରେ କ'ଣ ଲେଖାହେଇଚି ? ମାମା ସେଇଟା ପଢ଼ି କାହିଁକି ଲୁହ ପୋଛୁଥିଲେ ?"

ମିନତି ନିରୁତ୍ତର ! ଏବେ ସେ ରହସ୍ୟମୟ କାଗଜ ଖଣ୍ଡିକ ଗୋଟେ ଗୁପ୍ତ ସିନ୍ଦୁକର ଚାବିକାଠି ଭଳି ମିନତିଙ୍କ ଆଖି ଆଗରେ ଝୁଲିଲା । ସେ ଭାବିଲେ, କି ରହସ୍ୟ ଲେଖା ହେଇଛି ସେ କାଗଜରେ ? ସେଇଟା ତା'ବାପାଙ୍କ ଅଲମାରି ଭିତରୁ ପାଇ ସେ ଲୁଚଉଛି କାହିଁକି ? ମିନତି ଏମିତି ଅନେକ କିଛି ମାନସମନ୍ଥନ କରିବା ପରେ କିଛି ଗୋଟେ ସୁରାକ ପାଇଗଲେ ବୋଧେ ! ମେଘ ଫାଙ୍କରେ ସୋରାଏ ସୂର୍ଯ୍ୟକିରଣ ଭଳି ଓଠରେ ତାଙ୍କର ଧାରେ

ହସ ଖେଳିଗଲା । ସେ ପିଙ୍କୁକୁ ଟିକିଏ ଗେଲ କରିଦେଇ ବୁଝେଇଲେ, "ମୋ' ସୁନା ନାତି ତା' ମାମା ପରିକା ଅବୁଝା ପିଲା ନୁହେଁ । ଭାରି ଭଲ ପୁଅ ! ଆ' ବାପା ! ମୋ' କୋଳକୁ ଆସ୍ । କାଲି ତୋ' ବାବା ଟୁର୍‌ରୁ ଫେରନ୍ତୁ, ଆମେ ବାବାଙ୍କୁ କହିବା । ମାମା କାହିଁକି ଆମ ସାଙ୍ଗରେ କଥା ହଉନାହାନ୍ତି, କଂପ୍ଲେନ୍ କରିବା । ମାମାଙ୍କୁ ସିଏ ପାନେ ଦେବେ ।"

ପିଙ୍କୁ ମୁହଁ ଫୁଲେଇ କହିଲା, "ଆଇ ! ସତ କହୁଚି, ମୁଁ ଆଜି ରାତିରେ ମାମାଙ୍କ ପାଖରେ ମୋଟୁରୁ ଶୋଇବିନି । ତମ ପାଖରେ ଶୋଇବି ।"

"ହଁ..! ମୋ' ଧନ ଆଜି ମୋ' ପାଖରେ ଶୋଇବ । ଆଉ ମୁଁ ତାକୁ ବଢ଼ିଆ ଗପଟିଏ କହିବି ।" ଏହା କହି ମିନତି ପିଙ୍କୁକୁ ଭିଡ଼ିଆଣି ଚୁମାଟିଏ ଦେଲେ । ଗପ ଶୁଣିବା ଲୋଭରେ ପିଙ୍କୁ ସେଦିନ ଚଞ୍ଚଳ ପଢ଼ା ସାରି ଆଇ ଯାହା ଦେଲେ ଚଟାପଟ ଖାଇଦେଲା । ମିନତିଙ୍କ ରାତି ଖିଆ କେବଳ ପଟେ ରୋଟି ଓ ଗ୍ଲାସେ କ୍ଷୀର । ମିତାର ଦୁଇଖଣ୍ଡ । ମିତା କିଚେନ୍‌କୁ ଯିବା ପୂର୍ବରୁ ମିନତି ନିଜେ ସେ କାମଟି ସାରି ଝିଅ ଆଗରେ ଖାଇବା ବାଢ଼ିଦେଲେ । ତଥାପି ମିତାର ମୁହଁରେ ତିଳେମାତ୍ର ଭାବାନ୍ତର ନାହିଁ । ବାଧ୍ୟ ହୋଇ ସେ ପାଟି ଖୋଲିଲେ, "ମା'ମିତା ! ମନର ଅଶାନ୍ତି ତୁ ଯଦି ତୋ' ନିଜ ମା' ଆଗରେ କହିବାକୁ କୁଣ୍ଠାବୋଧ କରୁଛୁ ତା'ହେଲେ ଅର୍ଣ୍ଣବ ଆସନ୍ତୁ । ମୁଁ ଆଉ ତତେ ବୁଝେଇ ପାରିବିନି । ସେତିକି ଖାଇଦେଇ ଶୋଇବୁ ।"

ମିନତିଙ୍କ ବେଡରୁମର ଦୁଇ ବିପରିତ ଝରକା ପାଖେ ଦୁଇଟା ଡବଲ୍‌ଖଟିଆ ପଡ଼ିଛି । ଗୋଟାକରେ ଶୁଅନ୍ତି ସେ ନିଜେ । ଆଉ ଅର୍ଣ୍ଣବ ଟୁର୍‌ରେ ଗଲେ ମିତା ପିଙ୍କୁକୁ ଧରି ଅନ୍ୟ ଖଟିଆରେ ଶୁଏ । ଆଜି ମଧ୍ୟ ସେ ସେହି ଖଟିଆରେ ଶୋଇଲା, କିନ୍ତୁ ପିଙ୍କୁ ତା' ପାଖକୁ ଗଲାନାହିଁ । ଶୋଇଲା ଆଇଙ୍କ ପାଖରେ ।

ପିଙ୍କୁକୁ କୋଳେଇ ଧରି ଆଇ ପଚାରିଲେ, "ବାପା ପିଙ୍କୁ, ତୁ ତ ଗପ ଆରମ୍ଭ ହେବାର ଦୁଇ ମିନିଟ୍ ଭିତରେ ଶୋଇପଡୁଛୁ । ଗପ କାଲି କହିଲେ ଚଳିବନି ?"

"ନା..ନା..ନା ! କାଲି ନୁହେଁ, ମୁଁ ଗପ ଆଜି ଶୁଣିବି....ଆଜି ଶୁଣିବି...ଆଜି ଶୁଣିବି ।" ପିଙ୍କୁ ଅଳି କଲା । ମିନତି କହିଲେ "ହଉ, ଶୁଣ୍ ! ଆଜି ତୋତେ ଗୋଟେ ଆମ ସମୟର ପୁରୁଣା ଗପ କହିବି । ଅଧାରୁ ଶୋଇପଡ଼ିବୁନି ଟି ?"

ପିଙ୍କୁ ଆଇକୁ ଭିଡ଼ିଧରି କହିଲା, "ନା ଶୋଇବନି, ତମେ କୁହ !"

ଶୁଣ୍ ତା'ହେଲେ, "ଗୋଟେ ଗାଆଁରେ ଥିଲେ ମା'ଟିଏ, ପୁଅଟିଏ । ବାପାଙ୍କର କାଳ ହେଇସାରିଥାଏ । ପୁଅ ଦୂର ସହରରେ ଚାକିରି ଖଣ୍ଡେ ପାଇଲା । ଘରେ ତ ଆଉ କେହି ନାହିଁ, ସେ ବୁଢ଼ୀ ମାଆକୁ ସାଙ୍ଗରେ ଧରି ସହରକୁ ଗଲା । ସେଠି ମାଆ-ପୁଅ ଦୁହେଁ ଖୁବ୍ ଭଲରେ ଚଳିଲେ । ପୁଅର ବାହା ବୟସ ହେଇଯାଇଥାଏ । ବୁଢ଼ୀ ମାଆଟି ମଧ୍ୟ ଆଉ ଘର

କାମଧାମକୁ ପାରୁନଥିଲା । ଘରକୁ ବୋହୂଟିଏ ଆସିଲା । ମା’ ପୁଅଙ୍କ ଟିକି ସଂସାରକୁ ବୋହୂଟେ ଆସିବା ପରେ ଘରଟା ହସହସ ଦିଶିଲା । ସଜଡ଼ା ଫୁଲଦାନି ଭଳି ସୁନ୍ଦର ଦିଶିଲା । କିଛି ଦିନ ଭଲରେ କଟିଲା । ହେଲେ ବର୍ଷେ ଦୁଇବର୍ଷ ବେଳକୁ ମାଆବୁଢ଼ୀକୁ ଲାଗିଲା, ଘରଟା ପୁଣି ଆଗଭଳିଆ ଖାଲିଖାଲି ଲାଗୁଛି । ନିଛାଟିଆ ଲାଗୁଛି । ଏତେବେଳକୁ ତା’ କୋଳରେ ନାତି କି ନାତୁଣୀଟେ ବସି ଖେଳିବା କଥା । ହେଲେ ଛୁଆଟିଏ ଦେବାରେ ବୋହୂ ଏତେ ଡେରି କାହିଁକି କରୁଛି ?”

କାହାଣୀ ଅଧାରେ ବନ୍ଦ କରି ଆଈ ପଚାରିଲେ, “ପିଙ୍କୁ ! ଗପ ଶୁଣୁଚୁ ନା ଶୋଇପଡ଼ିଲୁ ?”

ପିଙ୍କୁ ନିଦୁଆ କଣ୍ଠରେ କହିଲା, “ମୁଁ ଶୁଣୁଚି.. ତମେ କହିଚାଲ ନା !”

ଆଈ ପୁଣି ଆରମ୍ଭ କଲେ, “ହଁ.. ବୋହୂର ପିଲାପିଲି ନ’ହେବାରୁ ମାଆବୁଢ଼ୀର ଚିନ୍ତା ବଢ଼ିଲା । ସେତେବେଳ ସନ୍ତାନ ନ’ହେଲେ ଲୋକେ ଡାକ୍ତରୀ ଚିକିତ୍ସା ଅପେକ୍ଷା ବୈଦ୍ୟ, କବିରାଜି, ଚେରମୂଳି ଚିକିତ୍ସା ଉପରେ ଅଧିକ ବିଶ୍ୱାସ କରୁଥିଲେ । ମାଆବୁଢ଼ୀତ ପୁରୁଣାକାଳିଆ ମଣିଷ । ସେ ପାରୁପର୍ଯ୍ୟନ୍ତ ଚେଷ୍ଟାକଲା ଏମିତି ସବୁ ଚିକିତ୍ସା କରେଇ ବୋହୂର ସନ୍ତାନ ସମସ୍ୟା ଦୂର କରିବାପାଇଁ । ହେଲେ ସେଥିରେ କିଛି ଫଳ ମିଳିଲାନାଇଁ ! ଦେଖୁଦେଖୁ ବିବାହର ଚାରି ବର୍ଷ ପୂରିଗଲା । ସାହି ପଡ଼ୋଶିଏ ଆଗରେ କିଛି ନ’କହିଲେ ବି ପଛରେ ଚୁପୁରୁ ଚାପୁରୁ ହେଲେ । ସେ ସମୟର ସମାଜ କୋଳଶୂନ୍ୟ କୁଳବଧୂକୁ ଭାରି ହୀନିମାନୀ ଦୃଷ୍ଟିରେ ଦେଖୁଥିଲା । ବୋହୂଟି ଆଖିଲୁହ ଆଖିରେ ମାରି କର୍ମକୁ ଆଦରି ଚଳେ । ମାଆବୁଢ଼ୀର ଚିନ୍ତା କହିଲେ ନ’ସରେ । ଶେଷରେ ପୁଅ ଡାକ୍ତରୀ ଚିକିତ୍ସା ଆରମ୍ଭ କଲା । ବହୁତ ପ୍ରକାର ପରୀକ୍ଷାନିରୀକ୍ଷା ହେଲା । ମାସମାସ ଧରି ଔଷଧପଥ୍ୟ ଖିଆ ହେଲା । ତଥାପି କିଛି ଫଳ ମିଳିଲାନାହିଁ । ଡାକ୍ତର ଶେଷରେ ହାତକାଟି ଲେଖିଦେଲେ, ‘ଗର୍ଭାଶୟର ଜଟିଳତା କାରଣରୁ ତୁମେ କେବେ ବି ମା’ ହୋଇପାରିବ ନାହିଁ’ !

ସେଠୁ ଭାଗ୍ୟକୁ ଆଦରି ସ୍ୱାମୀ ସ୍ତ୍ରୀ ଦୁହେଁ ଘରକୁ ଫେରିଲେ । ମା’ ବୁଢ଼ୀ ଏକଥା ଶୁଣି ମନେମନେ ବହେ କାନ୍ଦିଲା । ଦୁଃଖ, ଅଶାନ୍ତିରେ ଦିନ ଗଡ଼ି ଚାଲିଲା । ବୁଢ଼ୀ ନିଜ ଭାଗ୍ୟକୁ ନିନ୍ଦେ ସିନା ବୋହୂକୁ ଦିନେ ବି କିଛି କହେନାହିଁ । ଓଲଟା ଧୈର୍ଯ୍ୟ ଦିଏ ପିଲାମାନଙ୍କୁ । ଦିନେ ସେ ପୁଅ-ବୋହୂକୁ ଡାକି କହିଲା, “ପିଲେ ! ତମେ ଏତେ ଡାକ୍ତର ବଇଦ ଦେଖେଇଲ, ହେଲେ ଜଣେ ବହୁତ ବଡ଼ ଡାକ୍ତରଙ୍କୁ ଭୁଲିଯାଇଛ । ଥରେ ତା’ ପାଖକୁ ଯାଅ । ସେ କେବେ ବି କାହାକୁ ନିରାଶ କରନ୍ତିନି ।”

ବୋହୂ ବଡ଼ ଆଗ୍ରହରେ ପଚାରିଲା, “ମା’ ! ତମେ ସେମିତି କୋଉ ଡାକ୍ତରଙ୍କୁ ଜାଣିଚ ଯଦି, ତାଙ୍କ ଠିକଣା ଦିଅ । ତାଙ୍କ ନାଆଁ କୁହ । ଆମେ ନିଶ୍ଚୟ ଯିବୁ ।”

"ଆଲୋ ବୋହୂ! ସେ ଡ଼ାକ୍ତରଙ୍କ ନାଁ ହଉଚି, ଆଶୁତୋଷ! ପ୍ରଭୁ ଆଶୁତୋଷ ମହାଦେବ।" ଗଭୀର ବିଶ୍ୱାସରେ ବୁଢ଼ୀ ଦୁଇହାତ କପାଳରେ ଯୋଡ଼ି କହିଲା, "ସଂସାରର ସବୁ ରୋଗ,ଶୋକର ବିନାଶକାରୀ ହେଉଛନ୍ତି ସିଏ। ଏବେ ତାଙ୍କ ଛଡ଼ା ଆମର ଆଉ ଅନ୍ୟ ଗତି ନାହିଁ। ତୁ ତାଙ୍କରି ଶରଣ ନେ'। ମନରେ ଭକ୍ତି, କର୍ମରେ ନିଷ୍ଠା ରଖି ଡାକିଲେ ଠାକୁରେ ନିଶ୍ଚୟ ଆମ ଦୁଃଖ ଶୁଣିବେ।"

ଶାଶୂମା'ଙ୍କ କଥା ଶୁଣି ବୋହୂ ଆଖିରେ ଲୁହ ଟଳମଳ ହେଲା। ସେ କହିଲା, "ମାଆ! ପୂଜା-ପାଠ, ଧର୍ମ-କର୍ମରେ ମୋ'ର ବେଶି କିଛି ଜ୍ଞାନ ନାହିଁ। ଆପଣହିଁ ମୋତେ ବାଟ ବତାନ୍ତୁ, ମୁଁ ଭଗବାନ ଶିବଙ୍କର କୋଉ ପୂଜା, କି ବ୍ରତ କରିବି।"

ଶାଶୂ ବୁଢ଼ୀ କହିଲା, "ବୋହୂ! ମୁଁ ଶୁଣିଛି, ପ୍ରଭୁ ମହାଦେବଙ୍କର 'ଆଶୁତୋଷ ବ୍ରତ' ପାଳିଲେ ଅପୁତ୍ରକ ନାରୀ ସନ୍ତାନବତୀ ହୁଏ। ମୁଁ ତା' ନୀତି ନିୟମ ସବୁ ଜାଣିଛି। ବେଶି କିଛି ବିଧି-ବିଧାନ ନାହିଁ। ଯେ କୌଣସି ମାସର ସୋମବାରରୁ ଆରମ୍ଭ ହେବ ଏ ବ୍ରତ। ଅଶୌଚ ହେବା ପାଞ୍ଚଦିନକୁ ଛାଡ଼ି ଏକୋଇଶି ଦିନ ପାଳନ କରିବାକୁ ପଡ଼ିବ। ପ୍ରତିଦିନ ବଡ଼ି ଭୋରରୁ ଶିବ ମନ୍ଦିରକୁ ଯିବୁ। ମନରେ ଭକ୍ତି ଆଉ ବିଶ୍ୱାସକୁ ଦୃଢ଼ କରିବୁ। 'ଓଁ ନମଃ ଶିବାୟଃ' ମନ୍ତ୍ର ବୋଲିବୋଲି ଶିବଲିଙ୍ଗ ଉପରେ ଏକୋଇଶିଟି ବେଲପତ୍ର ସହିତ ମାଣେ କଞ୍ଚା ଗୋଦୁଗ୍ଧ ଅର୍ପଣ କରିବୁ। ହଁ, ଏ ବ୍ରତର ଆଉ ଗୋଟେ ବଡ଼ ନିୟମ ମନେ ରଖିବୁ। ମନ୍ଦିରରୁ ଫେରିବା ବାଟରେ ନିହାତି ଜଣେ ଭିକାରିକୁ କିଛି ଖାଇବା ପଦାର୍ଥ ଦାନ କରିବାକୁ ପଡ଼ିବ। ନିୟମ ଏତିକି। ପାରବୁ ତ ମା'?"

ବୋହୂ ତା' ଓଦା ଆଖିରୁ ଲୁହ ପୋଛି ଦୃଢ଼ କଣ୍ଠରେ କହିଲା, "ମୁଁ ନିଶ୍ଚୟ ପାରବି ମା'! ମୋତେ ଆପଣ ଆଶୀର୍ବାଦ ଦିଅନ୍ତୁ।"

ମା'ବୁଢ଼ୀ ହସହସ ପାକୁଆ ମୁହଁରେ ପୁଅକୁ ଅନେଇ କହିଲା, "ପୁଅରେ! ଆମ କଲୋନୀ ସେପାଖ ବସ୍ତି ମୁଣ୍ଡରେ ଗୋଟେ ଶିବ ମନ୍ଦିର ଅଛି। ନୀଳକଣ୍ଠେଶ୍ୱରଙ୍କ ମନ୍ଦିର। ମୁଁ ଜାଣିଚି, ସେ ମନ୍ଦିର ପାଚେରୀ କଡ଼େ ଗୋଟେ କୁଡ଼ିଆରେ ଭିକାରୁଣୀ ବୁଢ଼ୀଟେ ରହୁଚି। ବୋହୂର ବ୍ରତପାରଣ ସହିତ ଭିକ୍ଷା ଦାନ, ଦୁଇଟାଯାକ କାମ ଭଲରେ ହବ। ହେଲେ ବାବୁରେ! ଏଡ଼େ ପାହାନ୍ତାରୁ ବୋହୂଟା ଏକେଲା କେମିତି ଯିବ ମନ୍ଦିରକୁ? ତୁ ଯାଉଥିବୁ ସାଙ୍ଗରେ।"

ସନ୍ତାନ ମାନସିକ ରଖି ପୂଜା-ପାଠ, ବ୍ରତ-ଉପବାସ ପାଳନ କରିବାରେ ପୁଅର ତିଳେମାତ୍ର ଆଗ୍ରହ ନଥିଲା। ତଥାପି ମାଆର ମନ ରଖିବାପାଇଁ ସେ ରାଜି ହେଲା। ବୋହୂ କୋଉ ସୋମବାରରୁ ବ୍ରତ ଆରମ୍ଭ କରିବ ସେକଥା ସ୍ଥିର ହେଲା। ପ୍ରତିଦିନ ମାଣେ କରି ଖାଣ୍ଟି ଗାଈକ୍ଷୀର କୋଉଠୁ ଆସିବ ତାହା ମଧ୍ୟ ସ୍ଥିର ହେଲା।

ଆଈ ଗପକୁହା ଏତିକିରେ ରଖି ନାତିକୁ ହଲେଇଦେଇ ପଚାରିଲେ, "ପିଙ୍କୁ ! ଗପ ଶୁଣୁଚୁ ନା' ଶୋଇଲୁଣି ?"

ପିଙ୍କୁକୁ ବୋଧେ ନିଦ ହେଇ ସାରିଥିଲା । ସେ କିଛି ଜବାବ ଦେଲାନି । ମିନତିଦେବୀ ଜାଣନ୍ତି, ପିଙ୍କୁ ଅଧାଗପ ଶୁଣି ଶୋଇବା ପିଲା । ସେ ଆରାମରେ ଶୋଇଲାଣି । ସେପାଖ ଖଟିଆରେ ମିତା ଶୋଇଚି । ନିଦରେ ଶୋଇନି, ବରଂ ଶୋଇବାର ଛଳନା କରି ଗପ ଶୁଣୁଚି । ଶୈଶବରେ ଏଇ ମା'ଙ୍କ କୋଳରେ ଶୋଇ ସେ ଏମିତିକା କେତେ ଗପ ଶୁଣିଚି । ହେଲେ ଆଜିର ଗପଟା ମିତାକୁ ଟିକିଏ ନିଆରା ଲାଗୁଥିଲା । ତେଣୁ ସେ ଚୁପ୍‌ଚାପ୍ ଶୋଇବା ବାହାନା କରି ଗପ ଆଡ଼େ କାନେଇଥିଲା । ମିନତିଦେବୀ ଏ କଥା ଜାଣିପାରିଲେ । ପିଙ୍କୁକୁ ଶୁଣେଇବା ବାହାନାରେ ସେ ଗପକୁହା ଜାରି ରଖିଲେ, "ହଁ.. ବୋହୂଟି ନିର୍ଦ୍ଦିଷ୍ଟ ଦିନ ଶାଶୂଙ୍କ କହିବା ପ୍ରକାରେ ବ୍ରତ ଆରମ୍ଭ କଲା । ବ୍ରାହ୍ମ ମୁହୂର୍ତ୍ତରେ ଉଠିଲା । ସ୍ନାନ-ଶୌଚ ହେଲା । ବାରି ବେଲଗଛରୁ ସଂଗ୍ରହ କରି ଏକୋଇଶିଟି ବେଲପତ୍ର ସହିତ ମାଣେ କଞ୍ଚା କ୍ଷୀର ଧରି ଶିବ ମନ୍ଦିରକୁ ବାହାରିଲା । ତା' ସ୍ୱାମୀ ଅନିଚ୍ଛା ସତ୍ତ୍ୱେ ତା' ସହିତ ଚାଲିଲା । ସେତେବେଳକୁ ବଡ଼ି ଭୋର୍ ସମୟ । କାଉ କୁକୁଡ଼ାଙ୍କ ରାବ ଛଡ଼ା ଆଉ କିଛି ଶୁଭୁନଥାଏ । ଲୋକଙ୍କ ଚଳପ୍ରଚଳ ଆରମ୍ଭ ହେଇନଥାଏ । ମନରେ ଟିକେ ଭୟଭୟ ଭାବ ! କଲୋନୀ ଶେଷ ହେବାପରେ ବସ୍ତି । ବସ୍ତି ମୁଣ୍ଡରେ ମନ୍ଦିର । ତା' ପାଚେରୀକୁ ଲାଗି ତାଳପତ୍ର ବରଡ଼ା ଛାଆଣିର ଦୁଇଟା ଅଧାଭଙ୍ଗା କୁଡ଼ିଆ । କୁଡ଼ିଆ ପାର କରି ଦି'ପାଦ ଆଗକୁ ଗଲେ ମନ୍ଦିରର ଦ୍ୱାର । ସ୍ୱାମୀ-ସ୍ତ୍ରୀ ଦୁହେଁ ମନ୍ଦିର ଦୁଆର ମୁହଁରେ ପହଞ୍ଚିଲେ । ସ୍ୱାମୀ କହିଲା, "ମୁଁ ଗାଧୁଆ ପାଧୁଆ କରିନି । ଭିତରକୁ ଯିବିନାହିଁ । ତମେ ପୂଜା କରି ଆସ ।"

ଭୟ ଆଉ ଶଙ୍କା ଲାଗୁଥିଲେ ବି ବୋହୂ ନିଜ ମନକୁ ଦୃଢ଼ କରି ମନ୍ଦିର ଦୁଆର ଖୋଲି ଭିତରକୁ ଗଲା । ମନ୍ତ୍ର ଉଚ୍ଚାରଣ କରିକରି ଶିବଲିଙ୍ଗ ଉପରେ ବେଲପତ୍ର ଚଢ଼େଇଲା । କ୍ଷୀର ଅର୍ପଣ କଲା । ନିଜ ମନର ଅଭିଳାଷକୁ ଲୁହଭିଜା ଆଖିରେ ଜଣାଇଲା ଠାକୁରଙ୍କୁ ।

ମନ୍ଦିରରୁ ବାହାରି କୁଡ଼ିଆ ପାର କଲେ ରାସ୍ତା । ବୋହୂ କୁଡ଼ିଆ ଆଗରେ ଯାଇ ଠିଆହେଲା । ଦେଖିଲା, ଗୋଟେ କୁଡ଼ିଆର ବାଉଁଶ ତାଟି ଦରଆଉଜା ଏବଂ ଅନ୍ୟ କୁଡ଼ିଆ ମୁହଁରେ ବସିଛି ଭିକାରୁଣୀ ବୁଢ଼ୀଟେ । ତା' ଶାଶୂମା ଏହି ବୁଢ଼ୀ କଥା ବୋଧେ କହୁଥିଲେ । ପୁଟୁଳିରେ ବାନ୍ଧି ଧରିଥିବା କିଛି ଚାଉଳ, ଡାଲି, ପରିବା ଭିକାରୁଣୀକୁ ଦେଲା ବୋହୂ । ରାତି ନ'ପାହୁଣୁ ଭିକ୍ଷାପ୍ରାପ୍ତି ଦେଖି ବୁଢ଼ୀର ଶୁଖିଲା ମୁହଁରେ ହସ ଚହଟିଗଲା । ଉଦିତ ସୂର୍ଯ୍ୟର ପହିଲି କିରଣରେ ବୁଢ଼ୀର କୃତଜ୍ଞତା ଭରା ହସ ଖୁବ୍ ସୁନ୍ଦର ଦିଶିଲା ବୋହୂକୁ ! ବୋହୂ ଅନ୍ତରଙ୍ଗ ସ୍ୱରରେ ବୁଢ଼ୀକୁ ପଚାରିଲା, "ମାଉସୀ ! ତମେ ଏଠି ଏକା ରହୁଚ ?"

ବୁଢ଼ୀ ଠାରରେ ଯାହା କହିଲା, ସେଥିରୁ ବୋହୂ ବୁଝିପାରିଲା ଯେ, ତା' କାନକୁ ଭଲ ଶୁଭୁନାଇଁ କି ଆଖିକୁ ଠିକ୍ ଦୃଶ୍ୟ ହେଉନାହିଁ । ସଂସାରରେ ତା'ର କେହି ନାହାନ୍ତି । ଠାକୁରଙ୍କ ଭରସାରେ ଏଠି ଭିକ ମାଗି ପଡ଼ିଚି ।

ଠିକ୍ ଏତିକିବେଳେ ପାଖ କୁଡ଼ିଆରୁ ଶୁଣାଗଲା କୁନି ପିଲାର କୁଆଁକୁଆଁ କାନ୍ଦଣା ! ବୋହୂ ବିସ୍ମୟରେ ବୁଢ଼ୀକୁ ପଚାରିଲା, "ସେ କୁଡ଼ିଆରେ କିଏ ରହୁଚି କି ମାଉସୀ ?"

"ତା' କଥା ପଚାରୁଚ କି ମା' ? ସେଇଟା ମୋ'ଠୁ ବଡ଼ ଅଭାଗିନୀ ! ଛତରଖାଇ ଭଳି କୋଉ ଗୋଟେ ଟୋକା ସାଙ୍ଗେରେ ଛତର ଖାଇଖାଇ ବୁଲୁଥିଲା । ମା' ବାପାର ଠିକଣା ନାଇଁ । ସେ ଟୋକା ଯାକୁ କୁଆଡୁ ଉଡ଼େଇ ଆଣିଥିଲା କି କ'ଣ, ବୁଲିବୁଲି ଶେଷରେ ଏଇଠି ଆସି ଡେରା ପକେଇଲେ, ମୋ' ପାଖେରେ । ଟୋକା ଦିନସାରା କୁଆଡ଼େ ବୁଲିବୁଲି କାମ ପାଇଟି କରେ । ରାତିରେ ପେଟେ ମଦ ପିଇ ଆସେ ଯା' ପାଖକୁ । ଯାହା ଲୁଟିବା କଥା ଲୁଟିନେଲା । ଯେତେବେଳେ ଜାଣିଲା ଯେ, ଏଇଟା ମା' ହବାକୁ ଯାଉଚି, ଟୋକା ଦେ' ଫୁର୍ ର୍ ର୍ ର୍.... ! ଆଜିକୁ ସାତ, ଆଠ ମାସ ହେଲା ଆଉ ତା'ର ଦେଖା ଦରଶନ ନାଇଁ !

"ଆଉ ଇଏ କେମିତି ଚଳୁଚି ମାଉସୀ ?" ବୋହୂ ପଚାରିଲା ସହାନୁଭୂତିଭରା କଂଠରେ ।

"କ'ଣ କରିବି ମା' ! ଟୋକିଟା ପେଟରେ ଛୁଆ ଧରିଚି ବୋଲି ଜାଣିଲି ଯେତେବେଳେ ମୋ' ମନରେ ଦୟା ହେଲା । ମୁଁ ତାକୁ ଆଡେଇକି ପାଖରେ ରଖିଲି । ମନ୍ଦିର ଦୁଆରେ ମୋ' ସାଙ୍ଗେରେ ବସି ଭିକ ମାଗି ଚଳୁଚି । ଏବେ ଦି'ଦିନ ହେଲା ସିଏ ପିଲା ଜନମ କରିଚି । ଏକା ବେଳେକେ ଦିଇଟା ଲୋ' ମା' ! ଯାଆଁଳା ପିଲା ! ସିଏ ପୁଣି ଝିଅ.... ! ଦିଇଟା ଝିଅ ! ! ଆହା ! କୋଉ ମାଆ କପାଳରେ ବିଧାତା ଗୋଟେ ପିଲାର ସୁଖ ଦଉନି, ଆଉ ଯା ପରି ଭିକାରୁଣୀକୁ ଦଉଚି ଦି' ଦିଇଟା ! ଛି.... ! ଛି....ଲୋ' ହୀନକପାଳୀ ! ଧିଇକ୍ ତୋ' ମାଆ ପଣିଆକୁ । ଏ ରାଇଜରେ ଭିକାରୁଣୀ ଅଭାବ ଥିଲେ ତ, ଆଉ ଦି'ଟା ଭିକାରୁଣୀ ଜନମ କଲା ।

ବୁଢ଼ୀର ଧିକ୍କାରପଦ ଗୁଡ଼ା ଫୋପଡ଼ା ବୋଲୁଅ ଭଳି ସେ ଦରଆଉଜା ଟାଟି କବାଟରେ ଢ଼ୋ'ଢ଼ୋ' ବାଡ଼େଇ ହେଲା କି କ'ଣ, କୁଡ଼ିଆ ଭିତରୁ ଦୁର୍ବଳ ପାଦ ଘୋଷାରି ପଦାକୁ ବାହାରିଲା ଜଣେ କଙ୍କାଳସାର ମହିଳା ! ଦୁଇପାଦ ଆଗକୁ ଆସି ହାଲିଆ ହେଇ ହାମୁଡ଼େଇ ବସିପଡ଼ିଲା ତଳେ । କୋଟରଗତ ଆଖି ଦୁଇଟା ତା'ର ଦେଖାଯାଉଥିଲା ଲିଭିଆସୁଥିବା ସଞ୍ଜସଳିତା ପରି ନିଷ୍ପ୍ରଭ ! କଥା ପଦେ କହିବାକୁ ବଳ ପାଉନଥିଲା ସେ !

ବୁଢ଼ୀ କହିଲା, "ତା' ରୂପ-ଭେକ ଟିକେ ଦେଖ ମା' ! ଏମିତିରେ ଇଏ ଦିଇଟା ପିଲା ବେଇଚି । ବଞ୍ଚେଇକି ରଖି ପାରିବ ? ଯା' ଛାତିଟାକୁ ଚିରିଦେଲେ ପରା ଟୋପେ ନୁଣିଆ ରକତ ବାହାରିବନି, ଆଉ କ୍ଷୀର କୁଆଡୁ ଆସିବ ଯେ, ପିଲେ ଖାଇ ବଞ୍ଚିବେ ?

ଏତିକିବେଳେ କୁଡ଼ିଆ ଭିତରୁ ଶୁଭିଲା ଭୋକିଲା ଛୁଆ ଦିଇଟାର ବିକଳ କାନ୍ଦ ! ସେ କାନ୍ଦ ଛୁଞ୍ଚି ଭଳି ଫୋଡ଼ି ହେଇଗଲା ବୋହୂର ମମତାଭରା ହୃଦୟ ଭିତରେ । ବୋହୂଟି ସେଠାରେ ଆଉ ଧୈର୍ଯ୍ୟଧରି ରହିପାରିଲାନି । ତା' ସ୍ୱାମୀର ମୁହଁକୁ ବିକଳରେ ଅନେଇଲା । ସ୍ୱାମୀ ଉଦାସ କଣ୍ଠରେ କହିଲା, ଚାଲ ଯିବା ଘରକୁ । ଦୁହେଁ ଫେରିଲେ ।

ବୋହୂର 'ଆଶୁତୋଷ ବ୍ରତ' ନିୟମିତ ଭାବେ ଚାଲିଥିଲା । ପ୍ରତିଦିନ ଭୋରରୁ ପୁଅବୋହୂ ମିଶି ମନ୍ଦିରକୁ ଆସନ୍ତି । ବୋହୂ ଠାକୁରଙ୍କୁ ବେଲପତ୍ର ଚଢ଼ାଇ ଦୁଗ୍ଧସ୍ନାନ କରାଏ । ବାଟରେ ଦୁଇ ଭିକାରୁଣୀଙ୍କୁ କିଛିକିଛି ଭିକ୍ଷା ଦିଏ । ସୂର୍ଯ୍ୟ ଉଦୟ ବେଳକୁ ଦୁହେଁ ଘରକୁ ଫେରନ୍ତି ।

ଥରକର କଥା । ସେଦିନ ଥିଲା ବ୍ରତର ଅଷ୍ଟମ ଦିନ । ବୋହୂ ମନ୍ଦିର ପୂଜା ଶେଷକରି କୁଡ଼ିଆ ଆଗରେ ଯାଇ ଠିଆ ହେଲା । ସବୁ ଦିନ ଭଳି ସେ ଗୋଟେ ପୁଟୁଳିରେ ଆଣିଥାଏ କିଛି ଚାଉଳ, ପରିବା । ଆଉ ଗୋଟେ ପୁଡ଼ିଆରେ କିଛି ରନ୍ଧା ଖାଦ୍ୟ । କୁଡ଼ିଆ ଭିତରୁ ବିକଳିଆ କୁଆଁକୁଆଁ କାନ୍ଦ ଶୁଭୁଥାଏ । ବୁଢ଼ୀ ତାଟି ଖୋଲି ବାହାରକୁ ଆସିଲା । ବୋହୂ ତା' ହାତକୁ ଚାଉଳ ପୁଟୁଳି ଆଉ ପୁଡ଼ିଆଟା ବଢ଼େଇଦେଇ କହିଲା, "ମାଉସୀ ! ଏ ପୁଡ଼ିଆରେ କିଛି ରୋଟି ଆଉ ଭଜା ଆଣିଛି । ତମେ ଖାଇବ ଆଉ ସେ ପୋଖତୀଟାକୁ କିଛି ଖାଇବାକୁ ଦେବ । ନିଅ ରଖ ।"

ବୁଢ଼ୀ ଉଦାସ କଣ୍ଠରେ କହିଲା, "ସିଏ କି ରୁଟି ଖାଇବ ଗୋ' ମାଆ । କାଲି ରାତିରୁ କାନ୍ଦିକାନ୍ଦି ଶୋଇଚି କତରା ଉପରେ । ତା' ଯାଆଁଳା ଝିଅ ଭିତରୁ ଗୋଟେ କାଲି ରାତିରେ ମରିଗଲା । ଭୋକରେ ଆଉଟୁ ପାଉଟୁ ହେଇ ପିଲାଟା ପ୍ରାଣ ଛାଡ଼ିଦେଲା । ମୁଁ ତମକୁ କହୁନଥିଲି ମା' ! ଖତଗଦାରେ ଧାନଚାରା ପରିକା ଠାକୁରେ ସିନା ଏ କାଙ୍ଗାଲୁଣୀକୁ ଦିଇଟା ପିଲା ଦେଇଚନ୍ତି, ହେଲେ ଇଏ ଗୋଟାକୁ ବି ବଞ୍ଚେଇ ରଖି ପାରିବନି । ଏଇନା ଶୁଣୁନା ! କ୍ଷୀର ଟୋପେ ପେଟରେ ନ'ଥିବାରୁ ଆର ପିଲାଟା ମଧ୍ୟାରୁ କେମିତି ଆଉଟୁ ପାଉଟୁ ହେଇ କାନ୍ଦୁଚି ? ଏଇଟା ବି ମରିବ !"

ବୁଢ଼ୀ ମୁହଁରୁ ଏ ହୃଦୟ ବିଦାରକ କାହାଣୀ ଶୁଣି ବୋହୂ ନିଜ ଆଖି ଲୁହକୁ ରୋକି ପାରିଲାନି ! କଅଁଳା ଶିଶୁଟିର ବିକଳ କାନ୍ଦଣା ତା' ମମତାଭରା ହୃଦୟକୁ ଟହଲେଇ ଦେଉଥାଏ । ତୁହାକୁ ତୁହା ତା' କାନ ପାଖରେ ପ୍ରତିଧ୍ୱନିତ ହେଉଥାଏ ବୁଢ଼ୀର କଥା ପଦିକ.. କ୍ଷୀରଟୋପେ ବିନା ଏ ପିଲା ବି ମରିବ.. ଏ ପିଲା ବି ମରିବ !!

'ନା ! ସେ ମରିବନି !' ହଠାତ୍ କେହି ଯେମିତି ଆସି ବୋହୂର କାନରେ କହିଦେଲା । ପ୍ରକୃତିସ୍ଥ ହେଲା ବୋହୂ । ସଙ୍ଗେସଙ୍ଗେ ସେ ତା'ସ୍ୱାମୀ ହାତରେ ପୂଜା ଥାଳିଟା ଧରେଇଦେଇ ଖାଲି ଢ଼ାଳଟା ଧରି ଧାଇଁଲା ମନ୍ଦିର ଭିତରକୁ । ଅଳ୍ପ ସମୟ ପରେ ଭିତରୁ କିଛି କ୍ଷୀର ଧରି

ଆସିଲା । ଡ଼ାଲଟା ବୁଢ଼ୀ ହାତରେ ଦେଇ କହିଲା, "ଏତକ ନେଇ ସେ ପିଲାକୁ ଦିଅ ।"
"ଆରେ ! ତମେ ତ କ୍ଷୀରତକ ଠାକୁରଙ୍କୁ ସମର୍ପଣ କରିଦେଇଥିଲ । ଏ କ୍ଷୀର ପୁଣି ଆସିଲା କୁଆଡୁ ?" ଆଶ୍ଚର୍ଯ୍ୟରେ ପଚାରିଲା ତା' ସ୍ୱାମୀ ।
ବୋହୂ କହିଲା, "ଦେଖ ! ମୁଁ ମାଆ ନ'ହେଲେ ମଧ୍ୟ ମୋ' ଭିତରେ ଗୋଟେ ମାଆର ହୃଦୟ ଅଛି । ସେ ଭୋକିଲା ଛୁଆର କାନ୍ଦ ଶୁଣି ମୋ' ଛାତି ଫାଟିଗଲା ଭଳି ଲାଗିଲା । ରୋକି ପାରିଲିନି ନିଜକୁ । ଠାକୁରଙ୍କ ପାଖକୁ ଗଲି । ଦେଖିଲି, ଶିବଲିଙ୍ଗ ଉପରେ ମୁଁ ଯେଉଁ କ୍ଷୀର ଅର୍ପଣ କରୁଛି ସେଥିରୁ ଅଧିକାଂଶ ବହିଯାଏ ପାଦୁକ ନଳା ଭିତରକୁ । ଆଉ କିଛି ରହିଯାଏ ଲିଙ୍ଗ ଆଉ ଶକ୍ତିର ଖୋପ ମଝି ଅଂଶରେ । ମୁଁ କ୍ଷମା ମାଗିଲି ଠାକୁରଙ୍କୁ । ତା'ପରେ ଲିଙ୍ଗ ତଳୁ ପୋଛି-ପାଛି ଆଣିଲି ବଳକା କ୍ଷୀରତକ । ସେତକ ପିଇଲେ କିଛି ସମୟପାଇଁ ପିଲାଟାର ଭୋକ ମରିଯିବ ତ !"
ପୁଅ କହିଲା, "ବହୁତ ଭଲ କଲ । ଠାକୁରେ କେଡ଼େ ଦୟାଳୁ ଦେଖ, ଯେଉଁ ପିଲାର ମା' ଛାତିରେ କ୍ଷୀର ନାହିଁ, ତା'ପାଇଁ ଗୋଟେ ବିକଳ୍ପ ବ୍ୟବସ୍ଥା ଗାଈ କ୍ଷୀରରେ ସେ ରଖିଛନ୍ତି । ନ'ହେଲେ କେତେ ମାତୃହରା ଶିଶୁ ଅକାଳରେ ମରନ୍ତେ ।"
କ୍ଷୀର ପିଇବା ପରେ ଶିଶୁଟା ବୋଧେ ନିଶ୍ଚିନ୍ତରେ ଶୋଇପଡ଼ିଲା । ଭିତରୁ ଆଉ କାନ୍ଦଣା ଶୁଭୁନଥିଲା । ସେଦିନ ବୋହୂ ନିଶ୍ଚିନ୍ତ ମନରେ ଫେରିଲା ଘରକୁ ।

ଏ ଘଟଣା ପରଠାରୁ ବୋହୂର ଆଶୁତୋଷ ବ୍ରତର ଧାରା କିଛିଟା ବଦଳିଗଲା । ସେ ପୂର୍ବପ୍ରକାରେ ପୂଜାର ସବୁ ସାମଗ୍ରୀ ଧରି ମନ୍ଦିରକୁ ଯାଏ । କିନ୍ତୁ ମନ୍ଦିର ପାଖାପାଖି ହେବାବେଳକୁ ତା' କାନରେ ପଡ଼େ ସେ ଭୋକିଲା ପିଲାଟିର କରୁଣ କାନ୍ଦଣା ! ସେ କାନ୍ଦ ବୋହୂର କଅଁଳ ମନକୁ ଟହଲେଇ ଦିଏ । ଗୋଟେ କାରୁଣ୍ୟଭରା ମା'..ମା'..ଡ଼ାକ ବାରମ୍ବାର ପିଟି ହୁଏ ଆସି ବୋହୂର ମାତୃତ୍ୱକାମୀ ହୃଦୟରେ । ତା'ପାଦ ଆଉ ଆଗକୁ ଚଳିପାରେନି ! ମନ୍ଦିରକୁ ଯିବା ପୂର୍ବରୁ ସେ ବାଉଁଶ ତାଟି ଠେଲି କୁଡ଼ିଆ ଭିତରକୁ ଯାଏ । ଡାଳରେ ଆଣିଥିବା ମାଣେ କ୍ଷୀରରୁ ଅଧେ ଭିକାରୁଣୀର ସିଲଭର୍ କଂସାରେ ଅଜାଡ଼ିଦିଏ ।

ସେଠୁ ମନ୍ଦିରକୁ ଯାଇ ଠାକୁରଙ୍କ ଆଗରେ ଅଧା କ୍ଷୀରଥିବା ଡାଳଟି ଥୋଇ ବୋହୂ ଯୋଡ଼ହସ୍ତରେ ବିନତି କରେ, "ହେ ପ୍ରଭୁ ! ମୋତେ କ୍ଷମା କର । ବ୍ରତର ନିୟମ ଭଙ୍ଗ କରି ମୁଁ ଅପରାଧ କରୁଛି । ହେଲେ ପ୍ରଭୁ, ମୁଁ ନାଚାର ! ତୁମକୁ ଦୁଗ୍ଧସ୍ନାନ କଲେ ତୁମରି କୃପାରୁ ମୋ' କୋଳକୁ ସନ୍ତାନଟିଏ ଆସିପାରେ, ସିଏ ତ ଗୋଟେ ଅନାଗତ ପାଇଁ ଅଭିଳାଷ । ହେଲେ ତୁମରି କରୁଣାରୁ ଯେଉଁ ସନ୍ତାନଟି ଜଣେ ମାଆ କୋଳକୁ ଆସିଛି, ଏହି ଟୋପାକ କ୍ଷୀର ବିନା ସେ ମରଣ ସହିତ ଲଢୁଛି । ଠାକୁରେ ! ଏ କଥା ଜାଣିବା ପରେ ତୁମ ପାଇଁ ଆଣିଥିବା କ୍ଷୀରରୁ କିଛି ସେ ନିରିମାଖି ଶିଶୁଟିକୁ ଦେବାକୁ ମୁଁ ବାଧ୍ୟ ହେଉଛି । ମୋତେ

କ୍ଷମାକର ପ୍ରଭୁ !" ହୃଦୟରେ ସମର୍ପଣ ଭାବ ରଖି ବୋହୂ ଠାକୁରଙ୍କ ଆଗରେ ଏତିକି କହେ । ସେ ଅଧା କ୍ଷୀରରେ ଠାକୁରଙ୍କୁ ଦୁଗ୍ଧସ୍ନାନ କରି ଲେଉଟି ଆସେ ଘରକୁ । ସ୍ୱାମୀ ଏ ସମସ୍ତ ଘଟଣା ନିଜ ଆଖିରେ ଦେଖେ । କିଛି କହେନି ସ୍ତ୍ରୀକୁ ।

ବୋହୂ ହାତରୁ ପ୍ରତିଦିନ ଶୁଦ୍ଧ ଗାଈକ୍ଷୀର ଖାଇ ଶିଶୁକନ୍ୟାଟି ଧୀରେଧୀରେ ସ୍ୱାସ୍ଥ୍ୟବାନ୍ ଦେଖାଗଲା ।

ବ୍ରତର ଶେଷ ଦିନ । ବୋହୂ ଦୁଗ୍ଧଡାଳ ଧରି କୁଡ଼ିଆ ମୁହଁକୁ ଗଲାବେଳକୁ ଘରେ ସେ ପୋଖତୀଟି ନାହିଁ ! ବୁଢ଼ୀ ବସିଛି ଦୁଆର ମୁହଁରେ । ତା' କୋଳରେ ଛୁଆଟା ଭେଁ...ଭେଁ ରଡ଼ି ଛାଡୁଚି । ବୋହୂ କିଛି ପଚାରିବା ଆଗରୁ ବୁଢ଼ୀ କହିଲା, "ମା ! ଏଇଟା ଛେଉଣ୍ଡ ହେଇଗଲା ! କାଲି ରାତିରେ ମରିଗଲା ଏ ଅଭାଗିନୀର ମା' । ହେଲେ ଏ ବିଚାରୀକୁ ନିଆଶିରି କରିଦେଲା । ମଲା ଖବର ପାଇ ରାତିରେ ବସ୍ତିରୁ ଚାରି/ପାଞ୍ଚଜଣ ଆସିଥେଲେ । ତାକୁ ପୋଡ଼ିବାକୁ ନେଇଗଲେ । ଏଇଟାକୁ ମୋ' କୋଳରେ ଗଡ଼େଇଦେଇ ଗଲେ । ହେଲେ ମୁଁ ୟାକୁ ନେଇ କିମିତି ଚଳିବି ମା' କହିଲ ? ମୋ' ମରଣ ଏ ଘଡ଼ି କି ଆର ଘଡ଼ି । ଆଖିକୁ ଭଲ ଦୁରୁଶ ହଉନି ଯେ, ଉଣ୍ଡାଳି ଉଣ୍ଡାଳି ଚଳୁଚି । ଓଳିଏ ଖାଇଲେ ଓଳିଏ ଓପାସ । ଏମିତିରେ ମୁଁ ୟା' ପେଟ ଭରିବି କିମିତି ? ଭାବୁଚି, ଏ ଅଭାଗିନୀକୁ ନେଇ ମନ୍ଦିର ଦୁଆରେ ଗଡ଼େଇଦେବି । କାଉ-କୁକୁର ଖାଇଲେ ଖାଉ କି ହେଟା-ଶିଆଳ ନଉ । ଠାକୁରେ ବୁଝିବେ ସେ କଥା !"

ବୁଢ଼ୀ କଥା ଶୁଣି ବୋହୂ ତା'କୋଳରୁ ଝାମ୍ପି ଆଣିଲା ଶିଶୁଟାକୁ । ନିଜ ଛାତିରେ ଚାପିଧରି କହିଲା, "ମାଉସୀ ! ତମେ ଚିନ୍ତା କରନି, ଆଜିଠାରୁ ମୁଁ ହେଲି ଏ ଝିଅର ମା' !" ବୁଢ଼ୀ ଆଶ୍ଚର୍ଯ୍ୟରେ ପଚାରିଲା, "ମା ! ଏ କାଙ୍ଗାଳୁଣୀ, ଜାରଜ ପିଲାଟାକୁ ତମେ ଝିଅ କରିବ ?"

"ହଁ ମାଉସୀ । ସନ୍ତାନଟିଏ ପାଇଁ ମୁଁ ବ୍ରତ କରୁଥିଲି । ଆଜି ମୋ'ବ୍ରତର ଶେଷ ଦିନ । ପ୍ରଭୁ ଆଶୁତୋଷ ମୋ' ଭକ୍ତିରେ ସନ୍ତୁଷ୍ଟ ହୋଇ ମୋତେ ବର ଦେଇଛନ୍ତି । ଆଜିଠୁଁ ଇଏ ମୋ' ଝିଅ ।"

ସ୍ୱାମୀ ଶିଶୁଟିକୁ ନିଜ କୋଳକୁ ଟେକିନେଇ କହିଲା, "ୟା'କୁ କୋଳେଇ ଆଣିବା କଥା ତୁମେ ଭାବିବା ଆଗରୁ ମୁଁ ସ୍ଥିର କରିଥିଲି । ୟା'ପାଇଁ ନାଁ'ଟିଏ ମଧ୍ୟ ମୁଁ ଠିକ୍ କରି ରଖିଛି ।"

"ଆଶ୍ଚର୍ଯ୍ୟ ! ତମେ ଆମ ଝିଅର ନା' ବି ସ୍ଥିର କରିସାରିଛ ? କ'ଣ ରଖିଛ ଶୁଣେ ?" ବୋହୂ ଉତ୍କଣ୍ଠାରେ ପଚାରିଲା ।

ସ୍ୱାମୀ କହିଲା, "ତୁମ ନାଁ 'ମିନତି' । ମୋ' ନାଁ 'ତାପସ' । ଆମ ଦୁଇ ନାଆଁର ପ୍ରଥମ ଦୁଇ ଅକ୍ଷର ମିଶିଲେ ଯାହା ହେବ, ସେ ହେବ ଆମ ଝିଅର ନାଆଁ !"

*ସୁରେନ୍ଦ୍ର ନାଥ ସାହୁ*

ମିନତିଦେବୀଙ୍କ କାହାଣୀ ଏଠି ଅଟକିଗଲା । ହଠାତ୍ ସେ ପାଦପାଖରେ କାହାର ଉଷ୍ଣୁମ୍ ସ୍ପର୍ଶ ପାଇ ଚମକିପଡ଼ିଲେ । ଆଖି ଖୋଲି ଦେଖିଲେ, ତାଙ୍କ ପାଦ ଉପରେ ମୁଣ୍ଡ ଥୋଇ ତଳେ ବସିଛି ମିତା । ତରଳିଯାଉଥିବା ବରଫ ପାହାଡ଼ଟେ ଭଳି ସର୍ବାଙ୍ଗ ତା'ର ଝାଳ ସରସର । ଆଖିରେ ଲୁହର ବନ୍ୟା ! ହାତରେ ସେହି ରହସ୍ୟମୟ ପୁରୁଣା କାଗଜ ଖଣ୍ଡିକ ! ମିନତିଙ୍କ ପାଇଁ ସେ କାଗଜ ଆଉ ରହସ୍ୟ ହୋଇ ନଥିଲା । ସେ ଜାଣି ସାରିଥିଲେ, ମିତା ତା' ବାପାଙ୍କ ଆଲମିରାରୁ ତିରିଶିବର୍ଷ ତଳର ସେହି ଡାକ୍ତରୀ ରିପୋର୍ଟ ଖଣ୍ଡିକ ନିଶ୍ଚୟ ପାଇଛି । ତା' ମନରେ ପ୍ରଶ୍ନ ଉଠିଥିବ, ସେହି ରିପୋର୍ଟ ଯଦି ସତ, ତା' ମାମା ଯଦି ସନ୍ତାନହୀନା, ତା'ହେଲେ ସେ କାହାର ଝିଅ ? ତା' ପ୍ରକୃତ ବାପା ମା' କିଏ ? ଏକଥା ଆଜି ପର୍ଯ୍ୟନ୍ତ ତାକୁ ଲୁଚେଇ ରଖାଯାଇଛି କାହିଁକି ? ଏଇ କଥାକୁ ନେଇ ସେ ଆଜି ସାରା ଦିନ ନିଜେ ପ୍ରଶ୍ନଟିଏ ପାଲଟି ବସିଥିଲା ।

ମିନତି ତଳୁ ଉଠାଇ ଆଣିଲେ ମିତାକୁ । ଆଖିରୁ ଲୁହ ପୋଛିଦେଲେ । ତା'ଅଲରା କେଶକୁ ସଜାଡ଼ିଦେଇ ଚୁମାଟିଏ ଦେଲେ ଗାଲରେ । ଅତି ଆଦରରେ କୋଳରେ ଚାପିଧରି କହିଲେ, "ଝିଅ ! ପିଲାବେଳେ ତୁ ମୋ' ପାଖରୁ କେତେ ଗପ ଶୁଣିଛୁ । କେତେକଥା ମନରୁ ଫାନ୍ଦି, କଳ୍ପନାରୁ ସାଉଁଟି, ମିଛ ଉପରେ ସତ୍ୟର ପ୍ରଲେପ ଦେଇ ଅନେକ ଗପ ତତେ ମୁଁ କହିଛି । ଭାବିନବୁ, ଆଜିର ଏ ଗପଟା ମଧ୍ୟ ନିହାତି ଗୋଟେ ମନଗଢ଼ା 'ମିଛଗପ' ! ମା' ମିତା ! ମିଛ ଗପ ଶୁଣିବା ପରେ ଭୁଲିଯିବା ଭଲ ! ! ତୁ ବି ଏ ଗପ ଭୁଲିଯା' !



# ଜେବ୍ରାକ୍ରସ୍‌ର ପ୍ରେମୀଯୁଗଳ

ମୁଁ ଦିଲ୍ଲୀରୁ ଫେରିବା ଖବର ପାଇବା ମାତ୍ରେ ଅନୁପ ଦା' ଆସି ପହଂଚିଗଲେ ମୋ' କ୍ୱାର୍ଟର୍‌ସ ଦୁଆର ମୁହଁରେ। "ଶୁଭେନ୍ଦୁ..! ଓ'ଏ ଶୁଭେନ୍ଦୁ! ଆମି ଅନୁପ ଦା' ଏସିଚିଲାମ୍! ଦୁଆର୍‌ଟା ଖୋଲ୍‌ନା ବାବା!" ବନ୍ଦ ଦରଜା ବାହାରେ ଠିଆ ହୋଇ ସେ ଡ଼ାକ ଛାଡ଼ିଲେ।

ମୁଁ ସେ ପର୍ଯ୍ୟନ୍ତ ପ୍ୟାଣ୍ଟ୍ ସାର୍ଟ ବି ଓହ୍ଲେଇନଥାଏ। ଆଟାଚି ଖଣ୍ଡିକ ଚାରିକାତ ମେଲେଇ ପଡ଼ିଥାଏ ଖଟ ଉପରେ। ଦଶ ଦିନର ଲଗେଜ୍ ବୋହି ସତେ ଯେମିତି ସିଏ ମୋ'ଠୁ ଅଧିକ ହାଲିଆ। ମଇଳା ଲୁଗାପଟା ଆଉ ଝାଳଭିଜା ସକସ୍ ହଳକ ଜମା ହୋଇଥାଏ ପାଣି ଟାଙ୍କି ପାଖରେ। ଦେହରେ..ମନରେ..ମୋ'ର ଦୀର୍ଘ ରେଳଯାତ୍ରା ଜନିତ କ୍ଳାନ୍ତି। ଭାବିଥିଲି, ପ୍ରଥମେ ଟିକିଏ ଫ୍ରେସ୍ ହେଇଯିବି। ରୋଷେଇର ତ ପ୍ରଶ୍ନ ଉଠୁନି। ଅଫିସ୍ କ୍ୟାଣ୍ଟିନରୁ କ'ଣ ଦି'ଟା ଖାଇଦେଇ ଆସି ନିଶ୍ଚିନ୍ତରେ ଶୋଇବି ତିନି ଚାରି ଘଣ୍ଟା। ତା'ପରେ ଯାହା ଦେଖାଯିବ।

ହେଲେ ଏମିତି ଅବେଳରେ ଅନୁପ ଦା' ଆସି ପହଂଚିଯିବେ, ଏ ଆଶଙ୍କା ମୁଁ କରିନଥିଲି। ଅବଶ୍ୟ ତାଙ୍କ ଅବାଂଛିତ ଆଗମନ ମୋ'ପାଇଁ ଅସ୍ୱସ୍ତିର କାରଣ ହେଲେ ମଧ୍ୟ ଦୀର୍ଘ ଦଶଦିନ ଧରି ମୁଁ ଯେଉଁ ରହସ୍ୟର ଖିଅ ଧରି ଘୂରିବୁଲୁଛି, ଅନ୍ତତଃ ସେଥିରୁ ରକ୍ଷା ମିଳିଯିବ, ଏହା ଭାବି ମୁଁ ମନକୁ ବୁଝେଇଲି। ଏଠୁ ଦିଲ୍ଲୀ ଯିବା ଦିନ ମୋତେ ରହସ୍ୟର ଖିଅ ଧରେଇଥିବା ଲୋକଟି ଏଇ ଅନୁପ ଦା'।

"ଶୁଭେନ୍ଦୁ..! ତୁମି ଯାଅ! ଆମି କହିବା ପ୍ରକାରେ ସେ ନିର୍ଦ୍ଦିଷ୍ଟ ଏଲାକାର୍ କୋଉ ଏକ୍‌ଟା ହୋଟେଲେ ତୁମି ଥାକ୍‌ବ। ତା'ରି କାଛାକାଛି ଗୋଟେ ବଡ଼ ଜେବ୍ରାକ୍ରାସିଂ ଆଛି। ସେଖାନେ ସକାଳେ ସାଢ଼େ ନଅଟା ଆର୍ ବିକେଲେ ସାଢ଼େ ଚାରିଟାରେ, ମୁଁ କହିବା ଭଳି ସେଇ ଘଟନାର ପୁନରାବୃତ୍ତି ହେଉଚି କି ନା'ଇ ଦେଖି ଆସିବ! ଖାସ୍ ଆମାର୍ ଜନ୍ୟ କଷ୍ଟ କରି ଏତିକି କରିବ, ବାବା ଶୁଭେନ୍ଦୁ। ତୁମି ଫେରିବା ପରେ କହିବି, ଏ ଘଟନାର୍ ମୂଲେ କେତେବଡ଼ ହ୍ରିଦୟସ୍ପର୍ଶୀ ପ୍ରେମ କାଥାଟେ ଲୁଚି ରହିଚି!" ଏତିକିମାତ୍ର ସୂଚନା ଦେଇ ଅନୁପ ଦା' ମୋତେ ବିଦାୟ ଦେଇଥିଲେ ସେଦିନ।

*ସୁରେନ୍ଦ୍ର ନାଥ ସାହୁ*

ଅନୁପ ସରକାର ! ଆମ ଡ଼ିପାର୍ଟମେଣ୍ଟର ସିନିୟରମୋଷ୍ଟ୍ ସେକ୍ସନ ଅଫିସର୍ ! ଅଫିସ୍‌ରେ ତାଙ୍କୁ ଥୋକେ ସମ୍ବୋଧନ କରନ୍ତି 'ଅନୁପ ଦା' ତ ଆଉ ଥୋକେ 'ସରକାର ଦା' । ଯାହା ଡ଼ାକିଲେ ବି ସେ ଖୁସ୍ । ଖାଲି 'ଦାଦା' ସମ୍ବୋଧନଟା ଲୋଡ଼ା । ବୟସରେ ମୋ'ଠୁ ଯଥେଷ୍ଟ ବଡ଼ । ପିତୃପ୍ରତୀମ କହିଲେ ଚଳିବ । ଅନୁପଦା'ଙ୍କ କୌଣସି କଥାକୁ ମୁଁ କାଟିପାରେ ନାହିଁ । କେବଳ ମୋ' ସିନିୟର ଭାବେ ନୁହେଁ, ବରଂ ତାଙ୍କ ବନ୍ଧୁତ୍ୱପୂର୍ଣ୍ଣ ଆଚରଣ ଓ ମଧୁର ଭାଷା ମୋତେ ଖୁବ୍ ଭଲ ଲାଗେ ।

ଅନେକେ କହନ୍ତି, 'ବଙ୍ଗଳା' ଗୋଟେ ଶ୍ରୁତିମଧୁର ଭାଷା । ହେଲେ ଆମ ଓଡ଼ିଆ ଭାଷାରେ କ'ଣ ମାଧୁର୍ଯ୍ୟ ନାହିଁ ? ଅଛି । ଓଡ଼ିଆ ହେଲା 'ଆଖୁଦଣ୍ଡ' ଭଳି କର୍କଷ ମିଠା । ତାକୁ ତମେ ଯେତେ ଚୋବେଇବ ତା' ଭିତରୁ ସେତେ ମଧୁରତା ବାହାରିବ । ଅନୁପ ସରକାର ଓଡ଼ିଆ ଭାଷାର ଆଖୁଦଣ୍ଡ ଉପରେ ବଙ୍ଗଳା ଭାଷାର କ୍ରୀମ ବୋଳି କଥାବାର୍ତ୍ତା କରନ୍ତି ବୋଲି ତାଙ୍କ ଖଣ୍ଟିଓଡ଼ିଆ ଆମକୁ ଅଧିକ ମଧୁର ଲାଗେ ।

ତା' ସହିତ ଲୋକଟା ପ୍ରଚଣ୍ଡ ମାତୃଭାଷାପ୍ରେମି । କେବଳ ଅନୁପ ଦା' କାହିଁକି ଅଧିକାଂଶ ବଙ୍ଗାଳି ଭାଷାପ୍ରେମି ବୋଲି ମୁଁ ହଲପ୍ କରି କହିବି । ମୋତେ ଅନେକଥର କୋଲକାତା ଟୁର୍‌ରେ ଯିବାର ଅବସର ମିଳିଛି ଏବଂ ବିଭିନ୍ନ ବଙ୍ଗାଳି ବନ୍ଧୁଙ୍କ ଘରେ ଆତିଥ୍ୟର ସୁଯୋଗ ମଧ୍ୟ ମିଳିଛି । ସମସ୍ତେ ମୋ' ଭଳି ସାଧାରଣ କିମ୍ବା ମୋ'ଠୁଁ ଉଚ୍ଚ ବର୍ଗର ଚାକିରିଆ । ସେଠି ମୁଁ ଆବିଷ୍କାର କରିଛି, ପ୍ରାୟ ସମସ୍ତଙ୍କ ବୈଠକଘରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଫଟୋଟିଏ ଏବଂ ଆଲମିରା ଭର୍ତ୍ତି ବଙ୍ଗଳା ବହି ଓ ମ୍ୟାଗାଜିନ୍ । ବାଟଘାଟରେ ଦେଖିଛି, ଛାତ୍ର ଓ ପ୍ରଫେସର୍‌ଙ୍କ ଠାରୁ ଆରମ୍ଭ କରି ଟ୍ରଲି ଟଣାଳି ପର୍ଯ୍ୟନ୍ତ, ସମସ୍ତଙ୍କ ହାତରେ ମାସିକ ବଙ୍ଗଳା ପତ୍ରପତ୍ରିକାରୁ ଗୋଟେ ଅଧେ ଥିବ । ବଙ୍ଗାଳିମାନେ ଭାରି ଆମିଷପ୍ରେମି ଓ ଇକ୍‌ନୋମିଷ୍ଟ ମଧ୍ୟ । ତା' ସତ୍ତ୍ୱେ ସେମାନଙ୍କ ମାସିକିଆ ବଜେଟ୍ ଭିତରେ ସାହିତ୍ୟପତ୍ରିକା ପାଇଁ ସ୍ୱତନ୍ତ୍ର ଖର୍ଚ୍ଚ ଯୋଜନା ନିଶ୍ଚୟ ଥିବ । ଅନୁପ ଦା'ଙ୍କ ଭାଷାପ୍ରେମ ସଂପର୍କରେ ମୋ' ସହକର୍ମୀ ସୁରେଶବାବୁ ଥରେ କହୁଥିଲେ, ସିଏ କୁଆଡ଼େ ଜାଣିଶୁଣି ଓଡ଼ିଆ ଉପରେ ବଙ୍ଗଳା କୋଟିଙ୍ଗ୍ ଦେଇ କଥା କହନ୍ତି । କଟକି ପାଣି-ପବନରେ ଯିଏ ଦୀର୍ଘ ପଚିଶି ବର୍ଷ ରହିଲେଣି, ସିଏ ଶୁଦ୍ଧ ଓଡ଼ିଆ କାହିଁକି କହି ପାରିବେନି ? ଆମ ରାଜ୍ୟରୁ କିଛି ଅର୍ଦ୍ଧଶିକ୍ଷିତ ଓଡ଼ିଆ କେବଳ ହାବଡ଼ା ଷ୍ଟେସନରୁ ଫେରିଲେ ମଧ୍ୟ ବଙ୍ଗଳା କହିବା ଶିଖିଯାଆନ୍ତି । ଆଉ ଆମ ଶିକ୍ଷିତ ଅନୁପ ଦା' କାହିଁକି ଓଡ଼ିଆ କହି ପାରିବେନି ?

ସେ ଯାହା ହେଉ, କିଏ କେଉଁ ଭାଷାରେ କହିବ, ନ' କହିବ ସେ ତାଙ୍କ ବ୍ୟକ୍ତିଗତ ବ୍ୟାପାର । ଏଠି କିନ୍ତୁ ଅନୁପ ଦା' ମୋ' ଦୁଆର ଆଗରେ ଉଭା ହେଲେଣି ଗୋଟେ ବିରାଟ

ରହସ୍ୟର ସୂତ୍ରଧର ରୂପେ । ଦିଲ୍ଲୀରୁ ଯେଉଁ ତଥ୍ୟ ଆଣିବାକୁ ସେ ମତେ କହିଥିଲେ ମୁଁ ଆଣିଛି । ତେବେ ରହସ୍ୟର ଚାବିକାଠିଟା ରହିଛି ତାଙ୍କରି ପାଖରେ ।

"ଓ'ଏ ଶୁଭେନ୍ଦୁ! ଘୁମେଗାଲୋ କି? ଦୁଆର୍‌ଟା ଖୋଲ୍‌ନା ବାବା!" ଦୁଆର ସେପଟୁ ପୁଣିଥରେ ଶୁଭିଲା ଦାଦାଙ୍କ ମଧୁର ଚିତ୍କାର! ଅନିଚ୍ଛା ସତ୍ତ୍ୱେ ମୁଁ ଦୁଆର ଖୋଲି ତାଙ୍କୁ ଡାକିଲି, "ଆସନ୍ତୁ ଦାଦା! ବସନ୍ତୁ!" ଖଟିଆ ପାଖରେ ପଡ଼ିଥିବା ପ୍ଲାଷ୍ଟିକ୍ ଚେୟାର୍ ଉପରୁ ମଇଳା ବେଡ଼ସିଟ ଖଣ୍ଡିକ ଉଠେଇ ଆଣି ମୁଁ କହିଲି ।

"କ୍ଷମା କରିବ ଶୁଭେନ୍ଦୁ! ଆମି ଜାଣ୍‌ଚି, ଟୁର୍ ଥେକେ ତୁମି ଏଇକ୍ଷିଣା ଫେରିଚ! ଏତିକିବେଳେ ଆସି ତୁମକୁ ଡିସ୍‌ଟାର୍ବ କରିବାଟା ନିହାତି ଅଭଦ୍ରାମି ନିଶ୍ଚୋୟ! ତା' ସତ୍ତ୍ୱେ, କ'ଣ କରିବି କହିଲ? ତୁମି ଫେରିବା ଖବର୍ ପାଇ ମୁଁ ଏକଦମ୍ ଧୈର୍ଯ୍ୟ ଧରି ରହିପାରିଲି ନାଇଁ! ଘଟଣାଟା ସମ୍ପର୍କରେ ଜାଣିବାକୁ ଉତ୍କଣ୍ଠା ଜାଗିଲା ମନରେ । ଚୋଲି ଆସିଲି । ଠିକ୍ ଆଛି ଶୁଭେନ୍ଦୁ! ଠିଆ ଠିଆ, ଅତି ସଂକ୍ଷେପରେ ଆମିକୁ ସୁଦ୍ଧୁ ଏତିକି କୁହ, ମୁଁ ଯାହା କହିଥିଲି, ସେ ଘଟନାର ପୁନରାବୃତ୍ତି ସେଖାନେ ହେଉଚି କି ନାଇଁ??" ପ୍ରଶ୍ନଟି ପଚାରି ଆକଣ୍ଠ କୌତୂହଳରେ ସେ ମୋତେ ଅନାଇ ରହିଲେ ।

"ଆପଣଙ୍କ ଅନୁମାନ ପୂରାପୂରି ସତ ଦାଦା ।" ମୁଁ କହିଲି, "ସେ ନିର୍ଦ୍ଦିଷ୍ଟ ଜେବ୍ରାକ୍ରସ୍, ଠିକ୍ ସେଇ ସମୟ, ଜଣେ ଅନ୍ଧ, ଜଣେ ଭଦ୍ରମହିଳା ଏବଂ ସେହି ଦୃଶ୍ୟର ପୁନରାବୃତ୍ତି! ମୁଁ ନିଜ ଆଖିରେ ଦେଖି ଆସିଲି । ପ୍ରତିଦିନ ଦୁଇଓଳି ସମୟ ବାହାର କରି ମୁଁ ଦେଖିଛି । ହେଲେ ଦାଦା! ଏ ଘଟଣା ମୂଳରେ ସେମିତି କିଛି ରହସ୍ୟ ଥିବା ଭଳି ତ ମୋତେ ଲାଗିଲାନି! ଜଣେ ଦୃଷ୍ଟିହୀନ ଲୋକକୁ ଜଣେ ଭଦ୍ରମହିଳା ନିୟମିତ ଆସି ଜେବ୍ରାକ୍ରସ୍ ପାର୍ କରେଇ ଚାଲିଯାଉଛନ୍ତି । ଏ' ଘଟଣାରେ ଭଲା କି ରହସ୍ୟ ଅଛି ବୋଲି ଆପଣ ଭାବୁଛନ୍ତି?"

"ଆଛି.. ଶୁଭେନ୍ଦୁ, ଆଛି! ଗୋଟେ ଅସାଧାରଣ ପ୍ରେମକାହାଣୀ ଲୁଚି ରହିଚି ସେ ସାଧାରଣ ଘଟଣାଟି ଭିତରେ! ଯା' ହେଉ ଖୁସି ଲାଗିଲା, ତୁମି ସଠିକ୍ ଖବରଟା ଆଣି ଆମାକେ ଦିଲୋ! ହଉ.. ଏବେ ତ ତୁମି କ୍ଲାନ୍ତ ହେଇ ଆସିଛ । ଆଜି ବିଶ୍ରାମ ନିଅ । ସମୟ ଦେଖି ତୁମକୁ ଏ ବ୍ୟାପାର୍‌ଟା ସମ୍ପର୍କରେ ନିଶ୍ଚୟ କହିବି ।" ଏତିକି କହି ଅନୁପ ଦା' ଯିବାପାଇଁ ଉପକ୍ରମ କରୁଥିଲେ । ମୁଁ ତାଙ୍କର ଦୁଇ ଡେଣାକୁ ଧରି ଏକ ପ୍ରକାର ଜବରଦସ୍ତ ବସେଇଦେଲି ଚେୟାର୍ ଉପରେ ।

"ଚଳିବନି ଦାଦା! ଦୀର୍ଘ ଦଶଦିନ ଧରି ମୁଁ ଯେଉଁ ଗୋଲକଧନ୍ଦାରେ ଧନ୍ଦି ହେଉଚି, ଏବେ ଶୀଘ୍ର ଆପଣ ତା'ର ରହସ୍ୟ ଖୋଲନ୍ତୁ । ପ୍ରକୃତରେ ଘଟଣାଟା କ'ଣ । କି ରହସ୍ୟ ଅଛି ଏ ଅନ୍ଧ ଆଉ ଭଦ୍ରମହିଳା ଉପାଖ୍ୟାନରେ । ସବୁ କଥା ଖୋଲିକରି କହନ୍ତୁ ମୋତେ । ନ'ହେଲେ

ଆଜି ମୋତେ ନିଦ ହବନି ଦାଦା !" ସତେ ଯେମିତି ମୁଁ ଜେଜେଙ୍କ ପାଖରେ ଗପ ଶୁଣିବାକୁ ଅଳି କରୁଥିଲି ।

ଅନୁପ ଦା' ମୋ' ଉତ୍କଣ୍ଠା ଦେଖି ଅଳ୍ପ ହସିଲେ । ସାନ୍ତ୍ୱନା ଦେଇ କହିଲେ, "ହଉ.., କହିବି ବାବା କହିବି ! ହେଲେ ବୋଲ, ସେ ପାଖେ ତୁମି କୋଥାଏ ଥାକଲ ? କୋଉ ହୋଟେଲରେ ?"

"ମୋ'ର ଭୁଲ୍ ହେଇନି ଦାଦା ! ଆପଣ କହିବା ପ୍ରକାରେ ମୁଁ ନିଜାମୁଦ୍ଦିନ୍ ଷ୍ଟେସନ୍‌ରେ ଓହ୍ଲେଇ ଟାକ୍ସି କରି ସିଧା ଚାଲିଗଲି କରୋଲବାଗ୍ । ସେଠୁ ଆର୍ଯ୍ୟସମାଜ୍ ରୋଡ଼ । ବାଁ ପଟେ ସେହି ପୁରୁଣାକାଳିଆ ହୋଟେଲ୍ 'ମିନର୍ଭା ପ୍ୟାଲେସ୍' । ସେହି ହୋଟେଲ୍‌ରେ ରହିବା କଥା ଆପଣ ମୋତେ କହିଥିଲେ ନା ? ଯା'ହେଉ ସେଠି ସୁବିଧାରେ ମୋତେ ରୁମ୍‌ଟେ ବି ମିଳିଗଲା । ଯୋଗକୁ ସେକେଣ୍ଡ ଫ୍ଲୋର୍ ୨୦୩ ନମ୍ବର୍ ରୁମ୍ । ତା' ବାଲ୍‌କୋନିରେ ବସିଲେ, ଆପଣ କହିବା ପ୍ରକାରେ 'କାରୋଲବାଗ୍'ର ବଡ଼ ଛକଟା ଦେଖାଯାଏ । ହୋଟେଲ୍‌ର ଠିକ୍ ସାମନା ରୋଡ୍‌ରେ ଗୋଟେ ବଡ଼ 'ଜେବ୍ରାକ୍ରସ୍' ! ଜେବ୍ରାକ୍ରସ୍ ପାର କରି ପଥଚାରୀମାନେ ଏପଟ ସେପଟ ଯାତାୟାତ କରନ୍ତି । ଉଭୟ ପାଖରେ ଭିଡ଼ ଲାଗି ରହିଥାଏ ।

ପ୍ରଥମ ଦିନ ମୁଁ ମୋ'ର ନିତ୍ୟକର୍ମାଦି ସାରି ଆପଣ କହିବା ପ୍ରକାରେ ଠିକ୍ ସାଢ଼େ ନଅଟାରେ ଆସି ବାଲ୍‌କୋନି ଉପରେ ଚେୟାରଟେ ପକେଇ ବସିଲି । ଜେବ୍ରାକ୍ରସ୍ ଆଡ଼େ ନଜର ରଖିଲି । ଫୁଟପାଥ୍ ଉପରେ ପଥଚାରୀମାନଙ୍କ ଭିଡ଼ କ୍ରମଶଃ ବଢୁଥିଲା । ରାଜପଥ ଉପରେ ପିମ୍ପୁଡ଼ିମାଳ ପରି ଗତିଶୀଳ ଗାଡ଼ି-ମଟର । ଛକ ଉପରେ ଟ୍ରାଫିକ୍‌ର ଅଟୋ ସିଗନାଲ୍ ଜଳୁଥିଲା, ଲିଭୁଥିଲା । ଗାଡ଼ିମଟର ଅଟକୁଥିଲା । ପଥଚାରୀମାନେ ଜେବ୍ରାକ୍ରସ୍ ପାର କରିବା ପରେ ପୁଣି ଛୁଟି ଚାଲୁଥିଲା ପଛକୁ ପଛ ଗାଡ଼ି । ଏହି ଗତାନୁଗତିକ ଦୃଶ୍ୟ ଭିତରେ ଜଣେ ଦୃଷ୍ଟିହୀନ ବ୍ୟକ୍ତି ବାଡ଼ି ଠୁକ୍‌ଠୁକ୍ କରି ଆସି ପହଂଚିଲେ ଜେବ୍ରାକ୍ରସ୍ ପାଖରେ । ହାତରେ ଧରିଥିଲେ ପୁଳାଏ ମାଗାଜିନ୍ ଓ ନିଉଜ୍ ପେପର୍ । ଲୋକଟା ଗୋରା ହେଇ ଅଳ୍ପ ଡେଙ୍ଗା । ଆଖିରେ ଗାଢ଼ କଳା ଚଷମା ! ବୟସ ଅନ୍ଦାଜ୍ ପଞ୍ଚାବନ ପରେ ହେବ । ମୁଣ୍ଡର ଅର୍ଦ୍ଧେକ ଚନ୍ଦା, ବାକି ଅଧାରୁ ଅଧିକ ପାଚିଲା କେଶ ସମ୍ବଳିତ । ଅନ୍ଧଜଣକ ଜେବ୍ରାକ୍ରସ୍ ପାର୍ କରି ରାସ୍ତା ଆରପରିକୁ ଯିବାପାଇଁ ବୋଧେ ଅପେକ୍ଷା କରିଥିଲେ ।

ଏତିକିବେଳେ ଫୁଟ୍‌ପାଥରୁ ଓହ୍ଲେଇ ଜେବ୍ରାକ୍ରସ୍ ଆଡ଼କୁ ଆସିଲେ ଜଣେ ଭଦ୍ରମହିଳା । ପ୍ରୌଢ଼ା ନିଶ୍ଚୟ । ଈଷତ୍ ଶ୍ୟାମଳୀ । ଚର୍ବିଳ ଚେହେରା । ମିଡ଼ିଏମ୍ ହାଇଟ୍ । ତାଙ୍କ ବୟସ୍କ ମୁହଁରୁ ସୌନ୍ଦର୍ଯ୍ୟର ଠିକଣା ଅନେକ ଦିନରୁ ହଜିଯାଇଥିଲା ! କିନ୍ତୁ ମନେ ହେଉଥିଲା, ପଚିଶି, ତିରିଶ ବର୍ଷ ପୂର୍ବେ ସେ ନିଶ୍ଚୟ ସୁନ୍ଦରୀ ଦିଶୁଥିବେ । ତାଙ୍କ ସାଲୁଆର୍ କମିଜ୍ ଆଉ ଚାଲିବା ଢଙ୍ଗରୁ ଟିକେଟିକେ ପଞ୍ଜାବୀ ଭଳି ଲାଗୁଥିଲେ । ମହିଳା ଜଣକ ଅନ୍ଧବ୍ୟକ୍ତିଙ୍କ ପାଖକୁ ଗଲେ ।

ଦୁହେଁ ଅଳ୍ପ ସମୟ ପାଇଁ କିଛି କଥାବାର୍ତ୍ତା କଲେ । ଜେବ୍ରାକ୍ରସ୍ ପାର୍ କରିବା ପାଇଁ ସିଗନାଲ୍ ମିଳିସାରିଥିଲା । ସେଠୁ ପ୍ରୌଢ଼ା ଅନ୍ଧବ୍ୟକ୍ତିର ହାତ ଧରି ଧୀରେସୁସ୍ଥେ ରାସ୍ତା ପାର୍ କରେଇ ନେଇ ସେ ପାଖରେ ଛାଡ଼ିଦେଲେ । ଆଉ ପଦେ ଦି'ପଦ କଥା ହେବା ପରେ ଦୁହେଁ ଚାଲିଗଲେ ନିଜ ନିଜ ବାଟରେ । ଠିକ୍ ସେମିତି ଅପରାହ୍ଣ ସାଢ଼େ ଚାରିଟା ବାଜିବା ମାତ୍ରେ ମୁଁ ଆସି ବସିଲି ବାଲ୍‌କୋନିରେ । ଦେଖିଲି, ଠିକ୍ ଚାରିଟା ଚାଳିଶିରେ ପୁଣି ସେ ଅନ୍ଧ ବ୍ୟକ୍ତି ଦେଖାଦେଲେ ରାସ୍ତା ସେପାଖ ଜେବ୍ରାକ୍ରସ୍ ମୁଣ୍ଡରେ । ତାଙ୍କ ହାତରେ ଆଉ ବହିପତ୍ର କିଛି ନଥିଲା । ସେ ଆସିବା ଆଗରୁ ପ୍ରୌଢ଼ାଜଣକ ପହଂଚିସାରିଥିଲେ ଜେବ୍ରାକ୍ରସ୍ ପାଖରେ । ସିଗନାଲ୍ ମିଳିବା ମାତ୍ରେ ପ୍ରୌଢ଼ା ଅନ୍ଧ ବ୍ୟକ୍ତିର ହାତ ଧରି ଜେବ୍ରାକ୍ରସ୍ ଏ ପାଖ ମୁଣ୍ଡରେ ଛାଡ଼ିଦେଲେ । ଦୁହେଁ ପୁଣି ହଜିଗଲେ ଜନଗହଳି ଭିତରେ । ଏହି ଦୃଶ୍ୟର ପୁନରାବୃତ୍ତି ମୁଁ ଲାଗଲାଗ୍ ତିନିଦିନ ଧରି ଦେଖିଛି । ତା'ପର ଦୁଇଦିନ ଅବଶ୍ୟ ସମୟ ଦେଇପାରିନି । ହୋଟେଲ୍ ଛାଡ଼ିବା ଦିନ ମଧ୍ୟ ସମୟ ବାହାର କରି ଲକ୍ଷ୍ୟ କରିଥିଲି, ଖାସ୍ ଆପଣ କହିଥିଲେ ବୋଲି । ହେଲେ ଆଜ୍ଞା ! ଏ ଘଟଣାରେ ଏତେ କୌତୂହଳୀ ହେବାର କାରଣ କ'ଣ ମୁଁ କିଛି ବୁଝିପାରୁନି ! ଦୃଷ୍ଟିହୀନମାନଙ୍କୁ ଆଖିଥିବା ଲୋକେ ହିଁ ତ ବାଟ ଦେଖାନ୍ତି । ରାସ୍ତା ପାର କରାନ୍ତି । ସଚରାଚର ଏଭଳି ଦୃଶ୍ୟ ଆମେ ଦେଖୁଛେ । ଏଠି ଅବଶ୍ୟ ସେ ମହିଳା ନିର୍ଦ୍ଦିଷ୍ଟ ସେହି ଦୃଷ୍ଟିହୀନ ଲୋକଟିକୁ ନିୟମିତ ଭାବେ ଆସି ସହାୟତା କରୁଛନ୍ତି । ହୁଏ ତ ସିଏ ତା'ର ସମ୍ପର୍କୀୟା, ବାନ୍ଧବୀ, ପତ୍ନୀ କିମ୍ବା ଖୁବ୍ ହେଲେ ପ୍ରେମିକାଟିଏ ହୋଇଥାଇ ପାରନ୍ତି । ଏ କଥାକୁ ଏତେ ଗୁରୁତ୍ୱ କାହିଁକି ଦଉଚନ୍ତି ଆପଣ କିଛି ବୁଝିପାରୁନି ମୁଁ ।"

ଅନୁପ ଦା' ଏଥର ନିଜ ମନକୁ ଚେୟାରଟା ଟାଣିନେଇ ଜମେଇକି ବସିଲେ । କହିଲେ, "ଶୁଭେନ୍ଦୁ ! ଖୁବ୍ ବେଶି ହେଲେ ପ୍ରେମିକାଟିଏ ହ'ତେ ପାରେ....... ! ବାସ୍ । ଏତିକି କହି ତୁମି କାଥାଟାର୍ ପୂର୍ଣ୍ଣଚ୍ଛେଦ୍ ପାକାଇଦେଲ ନା ? ହେଲେ ଶୁଭେନ୍ଦୁ ! ସେମାନେ ଏ ଯାଏ ପାକାଇ ନାହାନ୍ତି ପୂର୍ଣ୍ଣଚ୍ଛେଦ୍ ! ଦୀର୍ଘ ପଞ୍ଚିଶ୍ ବଛର୍ ଧରି ସେମାନଙ୍କ ପ୍ରେମକାହାଣୀ ଅସରନ୍ତି ଗପ ଭଳି ଚୋଲିଛି.. ଚୋଲିଛି..ଚୋଲିଛି ! କେହି ଥକିପଡ଼ିନି କି କେହି କାହା ଉପରୁ ବିଶ୍ୱାସ ହରେଇ ଦେଇନି ।....... ଯାକୁ ସିନା କହିବ ପ୍ରେମ !"

"ମାନେ.. ! ମୁଁ କିଛି ବୁଝିପାରୁନି ! ଆଉ ଅଧିକା ପ୍ରହେଳିକା ନ'ଦେଖେଇ ଘଟଣାଟା କ'ଣ କହନ୍ତୁ ନା ଦାଦା ?" ଅଳି କଲି ମୁଁ ।

ଏଥର ଅନୁପ ଦା' ରହସ୍ୟର ପରଦା ଉନ୍‌ମୋଚନ କଲେ । "ବେଶ୍, ତା'ହେଲେ ଶୁଣ । ୧୯୯୫ ମସିହାର କାଥା ଆମି ବୋଲ୍‌ଚି । ତା'ମାନେ, ଆଜିଠୁଁ ଆନ୍ଦାଜ୍ ପଚିଶି-ଛବିଶି ବଛର୍ ତଲର ବ୍ୟାପାର୍ ! କୋମ୍ପାନୀ କାମରେ ଯାଇ ଆମି ସାଉଥ୍ ଦିଲ୍ଲୀର ସେଇ 'ମିନର୍ଭା' ହୋଟେଲ୍‌ରେ ପ୍ରାୟ ଗୋଟେ ମାସ୍ ପାଇଁ ରହିଥିଲି । ହୋଟେଲ୍ ଗେଟ୍ ସାମନାରେ

ଏବେ ତ ସିକ୍ୟୁରିଟି ଜଗୁଛନ୍ତି, କିନ୍ତୁ ସେ ସମୟେ ଉଖାନେ ସୁଦ୍ଧୁ ଉଠାଦୋକାନୀମାନେ ବସୁଥିଲେ । ଗେଟ୍ କାଛେ ବସୁଥିଲା ଗୋଟେ ପେପର୍ ବିକାଳି ଟୋକା । ଭାରି ସୁନ୍ଦରିଆଟେ । ବୟସ ଏଇ ଉଣିଶ୍ କି କୁଡ଼ି ପାଖାପାଖି ହବ । ନିଶ୍ଚୟ ଗରିବ ଘରର୍ ହେଇଥିବ । ନାମ୍‌ଟା ତା'ର ଆଜି ବି ଆମାର୍ ମନେ ଆଛି । 'ପ୍ରେମ୍' ! ପ୍ରେମାନନ୍ଦ ଦାସ । ତମରି ଉଡ଼ିଶ୍ୟାର ଛେଲେ ।

ଆମି କେବେକେବେ ତା' ଫୁଟ୍‌ପାଥ୍ ଦୋକାନରୁ ପେପର୍-ଟେପର୍ କିଣିଆଣି ପଢ଼େ । ତା' ପାଖେ ବସୁଥିଲା ଗୋଟେ ରେଡ଼ିମେଡ଼୍ କାପଡ଼୍ ବିକାଳି ପିଲା । ତା' ନାଁ କ'ଣ ଟି...... ? ହଁ ମନେ ପଡ଼ିଲା, ନିର୍ମଳ । ସେଟା ବି ଉଡ଼ିଆ ଛେଲେ । ଏ ଦୁଇଜଣ ଥିଲେ ଜିଗିରି ଦୋସ୍ତ । ଥରେ ମୁଁ ହୋଟେଲରୁ ତଳକୁ ଓହ୍ଲେଇ ଗଲି ପେପର୍ କିଣିବାର ଜନ୍ୟ ! ପେପରବାଲା ଟୋକା ଦୋକାନ ମେଲେଇ କୁଆଡ଼େ ଯାଇଥିଲା । ଆମି ସେ ପାଖ ଦୋକାନୀକୁ କହିଲି, "ଆରେ ବାବା ! ଏ ପେପରବାଲା ଛେଲେ ଗେଲା କୁଆଡ଼େ ? ଗୋଟେ 'ଅମୃତ ବାଜାର୍' ଦରକାର ଥିଲା ।"

ସେ କହିଲା, "ଦାଦା, ଆପଣଙ୍କୁ ଯୋଉ ପତ୍ରିକା ଦରକାର ସେଇଠି ପଇସା ଥୋଇଦେଇ ନେଇଯାଆନ୍ତୁ । ସେ ରସିକ ଛେଲେଟା ଜେବ୍ରାକ୍ରସ୍ ପାଖରେ ବସି ଏବେ ସପନ ଦେଖୁଥିବ ।"

ମୁଁ କହିଲି, "ଆରେ ! ସିଏ ତ ଫି' ଦିନ୍ ଠିକ୍ ଏଇ ସମୟେ ପସରା ମେଲିଦେଇ କୁଆଡ଼େ ଚୋଲିଯାଉଛି । କ'ଣ...... ଚକ୍କର୍ ଟକ୍କର ଚାଲିଚି କି ଟୋକାର ?"

ନିର୍ମଳ କହିଲା, "ହଁ ବାବୁ ! ସେ ପ୍ରତିଦିନ ସକାଳେ ଘଣ୍ଟାଏ ଉପରଓଳି ଘଣ୍ଟାଏ ଜେବ୍ରାକ୍ରସ୍ ପାଖରେ ଠିଆହେଇ ସପନ ଦେଖିବା ଅଭ୍ୟାସ କରୁଚି । ଆପଣ ନଉନାହାନ୍ତି, କୋଉ ପତ୍ରିକା ନେବେ ।"

ମୁଁ ତା' କାଥାରୁ କିଛି ବୁଝିତେ ପାରିଲିନି । ବୋକାଙ୍କ ଭଳି ସେ'ଖାନେ ପଇସା ରଖିଲି ଆଉ ପେପର୍ ଧରି ଆସିଲି । ମନରେ କିନ୍ତୁ ମୋ'ର କୌତୂହଳ ଜାଗିଲା, ବ୍ୟାପାର୍‌ଟା କ'ଣ, ଜାଣିବାପାଇଁ । ସେଥିପାଇଁ ମୁଁ ଫୁଟ୍‌ପାଥ୍ କଡ଼େ ଠିଆହେଇ ପେପରଟାକୁ ଆଡ଼େଇଲି ଆଉ ନଜର ଦେଲି ସେ ଦୋକାନ୍ ଆଡ଼େ । ପ୍ରାୟ ଆଧା ଘଣ୍ଟା ପର୍ ଆସିଲା ପେପର ଦୋକାନୀ ପ୍ରେମାନନ୍ଦ । କାପଡ଼ ବିକାଳି ଛେଲେ ତା' ଉପରେ ବହେ ବିରକ୍ତ ହୋଇ ବକାବକି କଲା ।

ଘଟଣାଟା କ'ଣ ଜାଣିବାପାଇଁ ପତା ଲଗେଇଲି । ଶୁଣିଲି, ସେପାଖ ଜେବ୍ରାକ୍ରସ୍ ଦେଇ ଦୈନିକ୍ ଏକଟା ସୁନ୍ଦରୀ ମେୟେ ଅଫିସ୍ ଯାତାୟାତ୍ କରେ । ମେୟେଟା ପଞ୍ଜାବୀ ପରିବାରର । ନାମ୍‌ଟା ତା'ର 'ସୋନି' । ସୋନିସୁମନ୍ ! ଅଦୂରସ୍ଥ ଏକ୍ ପ୍ରାଇଭେଟ୍ ଫାର୍ମ

ରେ ସେ ଚାକିରି କରେ । ସକାଳେ ଆଉ୍ ବିକାଳେ ସେଇ ଜେବ୍ରାକ୍ରସ୍ ପାର୍ କରି ସେ ଅଫିସ୍ ଯାଏ ଆଉ୍ ଫେରେ । ଜାଣିଲି, ପେପର ବିକାଳି ପ୍ରେମାନନ୍ଦ ସେଇ ବଙ୍ଗାଳୀ ମେୟେ 'ସୋନି'ର ପ୍ରେମରେ ପଡ଼ିଯାଇଛି । ସୁଦ୍ଧୁ ଏକତରଫା ପ୍ରେମ୍ !

ପ୍ରେମାନନ୍ଦର ସମସ୍ତ ପ୍ରେମଲୀଳା ଆମି ନିର୍ମଳ ଥେକେ ଶୁଣିଲାମ୍ !

ପ୍ରେମାନନ୍ଦ୍ ପ୍ରଥମ କରି ଯେଉଁଦିନ୍ ସୋନିକୁ ଦେଖିଲା, ତାକୁ ଲାଗିଲା ଅକସ୍ମାତ୍ ଛାତି ଭିତରୁ ତା' ହୃଦୟଟା ଅପହରଣ୍ ହୋଇଯାଇଛି । କିନ୍ତୁ ସେଟା ନେଲା କିଏ ? ପ୍ରେମ୍ ଯେତେବେଳେ ଅନୁଭବ କାଲା ଯେ, ସେଟା ସୋନି ସୁମନ୍ ହିଁ ଚୋରେଇ ନେଇଛି, ସେଠୁ ସେ 'ସୋନି'ର ପିଛା କରିବା ଆରମ୍ଭ କଲା । ଦୋକାନ୍, ବ୍ୟେବସାୟ ବନ୍ଦ୍ କରି ଛେଲେଟା ତା' ପିଛା ପାଗଲ୍ ପ୍ରାୟ ଘୂରି ବୁଲିଲା । ସୋନି ସଙ୍ଗେ ଦି'ପଦ କାଥା ହୋଇଗଲେ, ତା'ର ଟିକିଏ ଅନ୍ତରଙ୍ଗ ସ୍ପର୍ଶ ମିଳିଗଲେ ଜୀବନଟା ସାର୍ଥକ୍ ହୋଇଯିବ, ପ୍ରେମ୍ ଅନ୍ତତଃ ଏଇ ସିଦ୍ଧାନ୍ତରେ ପହଂଚି ସାରିଥିଲା ।

ଏକ ଦିନ୍ ସକାଲ ସାଢ଼େ ନଅ । 'ସୋନି' ରାସ୍ତା ପାର୍ କରି ଅଫିସ୍ ଯିବାପାଇଁ ସେଇ ଜେବ୍ରାକ୍ରସ୍‌ରେ ଅପେକ୍ଷା କରିଥିଲା । ପ୍ରେମ ସବୁଦିନ୍ ଭଳି ତାକୁ ଅଦୂରରୁ ଅନେଇଥାଏ । ଏଇ ସମୟେ ଜଣେ ଦୃଷ୍ଟିହୀନ୍ ବୃଦ୍ଧ ଆସି ପହଂଚିଲେ ସେଖାନେ । ସେ ମଧ୍ୟ ରାସ୍ତା ପାର୍ ପାଇଁ ଅପେକ୍ଷା କଲେ । ସିଗନାଲ୍ ମିଳିବା ମାତ୍ରେ 'ସୋନି' ସେହି ଆନ୍ଧ ବ୍ୟକ୍ତିର୍ ହସ୍ତ ଧରି ଜେବ୍ରାକ୍ରସ୍ ପାର୍ କରେଇଦେଲା ଏବଂ ନିଜ ବାଟରେ ସେ ଚୋଲେଗେଲା । ଏ ଦୃଶ୍ୟ ଦେଖୁଥିଲା ପ୍ରେମପାଗଲ୍ ପ୍ରେମାନନ୍ଦ । ସେଠୁ ସେ କିଛି ସୂତ୍ର ପାଇଗଲା ବୋଧେ । କାରଣ ସେଦିନରୁ ପ୍ରେମାନନ୍ଦ 'ଗୁରୁ' ଜ୍ଞାନ କଲା ଆନ୍ଧବୃଦ୍ଧକୁ । ପରଦିନ ସକାଲେ ସେ ନିଜେ ବି ଆନ୍ଧ ବେଶରେ ସଜେଇ ହେଇ ଆସିଲା । ସୋନିକୁ ଅପେକ୍ଷା କଲା ଜେବ୍ରାକ୍ରସେର୍ ନିକଟେ । ଆଖିରେ ତା'ର କାଲୋ ଚଷମା । ହାତେ ଆନ୍ଧ ଲାଠି । ମୁଖେ ଜେବ୍ରାକ୍ରସ୍ ପାର୍ ହେବାର ବ୍ୟାକୁଲତା !

ଦୁଇ ମିନିଟି ପର୍ ସୋନି ଯେତେବେଳେ ସେ ଖାନେ ଆସି ପହଂଚିଲା, ଆନ୍ଧ ପ୍ରେମିକ ପ୍ରେମାନନ୍ଦ ପରମ ପ୍ରତ୍ୟୟରେ ହାତ ବଢ଼ାଇଦେଲା ତା' ଆଡ଼କୁ । ସୋନିର ଟିକିଏ ସନ୍ନିଧ୍ୟ, ତା' ହାତର ଟିକିଏ ସ୍ପର୍ଶ ପ୍ରେମର ଚରମ ଅଭିଳାଷ । ବେଚାରୀ ସୋନି କେମିତି ଜାଣିବ ଯେ, ଟୋକା ତା' ସାନ୍ନିଧ୍ୟ ପାଇବା ପାଇଁ ବ୍ୟାକୁଳ୍ ? ସେ ନିର୍ବିକାର ଭାବେ ପ୍ରେମ୍‌ର ହାତ ଧରିଲା ଏବଂ ଜେବ୍ରାକ୍ରସ୍ ପାର୍ କରେଇ ଚୋଲିଗେଲା ଆପଣା ବାଟରେ । ଅପରାହ୍ନ ସାଢ଼େ ଚାରିରେ ସୋନି ଅଫିସରୁ ଫେରିବା ସମୟେ ପୁନର୍ବାର୍ ପ୍ରେମ୍ ତା' ଅପେକ୍ଷାରେ ରହିଲା ଜେବ୍ରାକ୍ରସ୍ କାଛେ । ପୁନର୍ବାର୍ ପାଇଲା ସେ ପ୍ରେମିକା ହାତର ସ୍ପର୍ଶ ! ସୋନି ସନ୍ନିଧ୍ୟର ସୁଗନ୍ଧ ଆଉ୍ ତା' ସ୍ପର୍ଶର ରୋମାଂଚ ପାଇ ଧନ୍ୟ ହୋଇଗେଲା ପ୍ରେମପାଗଲ ପ୍ରେମାନନ୍ଦ !

ପର ଦିନଠୁଁ ଦେଖାଗଲା ପ୍ରେମାନନ୍ଦ ପ୍ରତିଦିନ୍ ସକାଳେ ଆର୍ ବିକାଳେ, ଦୁଇବାର୍ ସୋନିର ହାତ ଧରି ଜେବ୍ରାକ୍ରସ୍ ପାର୍ କରୁଛି । ଏ ପାଖରୁ ସେ ପାଖ୍ । ପୁଣି ସେ ପାଖରୁ ଏ ପାଖ୍ । ସପ୍ତାହର୍ ରବିବାର୍ ଆର୍ ଶୋନିବାର୍, ଏ ଦୁଇଦିନ ଛଡ଼ା ଦୈନିକ୍ ଦୁଇବେଳା ଏ ଦୃଶ୍ୟ ଦେଖିବାକୁ ମିଳିଲା ସେଇ ଜେବ୍ରାକ୍ରସ୍ ଛକରେ ।

ଏକ୍ ଦିନେର୍ କାଥା । ସେ ସମୟେ ଆମି ଫୁଟ୍‌ପାଥ୍ ବେଞ୍ଚ୍ ଉପରେ ବସି ପେପର୍ ପଢୁଥିଲି । ପ୍ରେମ ଆର୍ ନିର୍ମଲ୍ ! ଦୁଇ ବନ୍ଧୁଙ୍କ ଆଲୋଚନା, ସବୁ ଶୁଣିଚି ଆମି । ନିର୍ମଲ୍ ତାକୁ ଡ଼ାକି ପଚାରିଲା, "ଆରେ ପ୍ରେମ୍! ତୁ ନିଜ ବେପାର୍ ପତ୍ର ଛାଡ଼ି ସେ ପଞ୍ଜାବୀ ଟୋକି ପଛରେ କାଇଁକି ଗୋଡ଼େଇଛୁ ? ଏମିତି ଅନ୍ଧ ନାଟକ କାଇଁକି କରୁଛୁ ?"

ପ୍ରେମ୍ କହିଥିଲା, "ଭାଇ ! ପ୍ରେମ ପାଇଁ ମଣିଷ ଯଦି ସ୍ୱର୍ଗ ଛାଡ଼ି ନରକକୁ ଯାଇପାରେ, ଅମୃତ ଛାଡ଼ି ଜହର ପିଇପାରେ, ଜୀବନ ଛାଡ଼ି ମରଣକୁ ଆପଣେଇ ପାରେ, ସେଠି ମୋ' ଭଳି ଜଣେ ପ୍ରେମିକ ଅନ୍ଧ ହେବାଟା କୋଉ ବଡ଼ କଥା ? ତା' ଛଡ଼ା ମୁଁ ତ ସତସତିକା ଅନ୍ଧ ହେଇନି, କେବଳ ଅଭିନୟ କରୁଛି ।"

"ହେଲେ ତୋ'ର ଏ ମିଛିମିଛିକା ଅନ୍ଧ ନାଟକ କେତେଦିନ ଚାଲିବ ? ସୋନି କ'ଣ ଏଡ଼େ ବୋକୀ ଯେ ପ୍ରତିଦିନ ତୋ' ହାତ ଧରି ଜେବ୍ରାକ୍ରସ୍ ପାର କରାଉଥିବ, କିଛି ଜାଣି ପାରିବନି ? ଦିନେ ଯେତେବେଳେ ସେ ଜାଣିବ ଯେ, ତୁ ଅସଲି ନୁହଁ ନକଲି ଅନ୍ଧ, ପରିଣତି କ'ଣ ହେବ ଜାଣିଚୁ ତ ?"

"ପରିଣତି ! ହାଃ..ହାଃ ! ପ୍ରେମରେ କେବେ ପରିଣତି କଥା ଚିନ୍ତା କରାଯାଏନାରେ ଭାଇ । ସେମିତି ହେଇଥିଲେ କେଦାର ଗୌରୀ, ସୋନି ମହିବାଲ୍ ଆଉ ହିର୍ ରାଞ୍ଝାଙ୍କୁ ନେଇ ପ୍ରେମ ଇତିହାସ କେବେ ଲେଖା ହେଇନଥାନ୍ତା ।" ପ୍ରେମ ହସି ହସି କହିଥିଲା ।

"ହେଲେ ବାପ ପ୍ରେମ୍ ! କହିଲୁ, ଦିଲ୍ଲୀ ସହରରେ ତ ଯୁଆଡ଼େ ଅନେଇବ ସିଆଡ଼େ ହଜାର ହଜାର ସୁନ୍ଦରୀ ଝିଅ ବୁଲୁଚନ୍ତି, ତୋତେ ଏ ବଞ୍ଜାବୀ କୁଡ଼ି 'ସୋନିସୁମନ୍' କାଇଁକି ଏଡ଼େ ଭଲ ଲାଗିଲା ?"

"ହାଃ.. ହାଃ.. ହାଃ.. ହାଃ.. !" ଗୋଟେ ମନଖୋଲା ହସ ସହିତ ପ୍ରେମ୍ କହିଲା, "ତୋ'ର ଏ ପ୍ରଶ୍ନର ଉତ୍ତର ମୁଁ ଦେବିରେ ଭାଇ । ନିଶ୍ଚୟ ଦେବି । ହେଲେ ତୁ ଯା, ପ୍ରଥମେ ଜହ୍ନକୁ ପଚାରି ଆସ୍, ସଂସାରରେ ହଜାର ହଜାର ସୁନ୍ଦର ଫୁଲ ଥାଉଥାଉ ତାକୁ ନୀଳକଇଁ ହିଁ କାହିଁକି ଭଲ ଲାଗିଲା ? ମୟୁରୀକୁ ପଚାରି ଆସ୍, ଆକାଶରେ ଜହ୍ନ, ତାରା ଆଉ ଇନ୍ଦ୍ରଧନୁ ଥାଉଥାଉ ତାକୁ କଳାଘୁମର ମେଘଟା କାହିଁକି ଭଲ ଲାଗିଲା ? ଆଉ ପ୍ରଜାପତିକୁ ପଚାରି ଆସ୍, ଦୁନିଆରେ ମଧୁରରୁ ମଧୁରତର ପଦାର୍ଥ ଥାଉଥାଉ ତାକୁ ଫୁଲରସ ହିଁ କାଇଁକି ଭଲ

ଲାଗିଲା ? ତା'ପରେ ମତେ ଆସି ପଚାରିବୁ, ଦିଲ୍ଲୀ ମହାନଗରୀରେ ହଜାରେ ସୁନ୍ଦରୀ ଝିଅ ଥାଉଥାଉ ମୋତେ ସୋନିସୁମନ୍ ହିଁ କାଇଁକି ଭଲ ଲାଗିଲା !"

ନିର୍ମଳ ଥଟ୍ଟାରେ କହିଲା, "ବାଃ ! ମୁଁ ଦେଖୁଛି, ୟା' ଭିତରେ ତୁ ତ ପୂରା କବି ପାଲଟିଗଲୁଣି ।"

"ହଁ, ଯଦି ବି ମୁଁ କବି ପାଲଟିଥିବି, ସେଥିରେ ମୋ'ର କିଛି ବାହାଦୁରି ନାଇଁରେ ଭାଇ । ମୋ' ନୁଖୁରା ଜୀବନକୁ କାବ୍ୟମୟ କରି ତୋଳିଛି ସୋନିସୁମନ୍ । ମୋ' ଜୀବନର ଊଷର ମରୁରେ ନିର୍ଝରର ଶୀତଳତା ଢାଳିଛି ସେଇ ସୋନିସୁମନ୍ । ମୋ' ଛାତିର କଠୋର ଚଟ୍ଟାଣ ଉପରେ ସବୁଜିମାର ଢ଼େଉ ଖେଳେଇଚି ସେଇ ସୋନିସୁମନ୍ । ମୋ' ମନର ରୌଦ୍ର ନିଦାଘରେ ବସନ୍ତର ମଧୁମଳୟ ଛୁଟେଇଛି ସେଇ ସୋନିସୁମନ୍ । ମୋ' ହୃଦୟର ରୁକ୍ଷ ଚଟାଣରେ  ଲକ୍ଷ ଲକ୍ଷ ଫୁଲ ଫୁଟେଇଛି ସୋନିସୁମନ୍ ।"

"ଥାଉ ! ସୋନି ସୁମନକୁ ନେଇ କବିତାଟା ବେଶି ଲମ୍ବା ହେଇଗଲା । ମୁଁ ଯାଉଛି ।" ନିର୍ମଳ ବିରକ୍ତ ହୋଇ ସେଠୁ ଚାଲିଗଲା ।

କିନ୍ତୁ ଶୁଭେନ୍ଦୁ ! ଅର୍ଦ୍ଧଶିକ୍ଷିତ ପ୍ରେମ୍ ମୁହଁରୁ ଏଭଳି କାବ୍ୟମୟ ଯୁକ୍ତିରେ ଆମି ସେ ଦିନ ସଂପୂର୍ଣ୍ଣ ହତବାକ୍ ହେଇଗଲି । ଶୁଭେନ୍ଦୁ ! ଇଏ ଥିଲା ପ୍ରେମ୍‌ର ନିରୋଳା ଭାଲୋବାସାର୍ ସଙ୍କେତ୍ ! ଏଥିରୁ ଆମି ବୁଝିଗଲି, ସେ କେଡ଼େ ଗଭୀର ପ୍ରେମ କରୁଛି ସୋନିକୁ । ନିଜକୁ ଆନ୍ଧ ସଜେଇ ପ୍ରତିଦିନ୍ ସେ ଜେବ୍ରାକ୍ରସ୍ ପାଖେ ପ୍ରତୀକ୍ଷା କରି ଚାଲିଥିଲା । ହେଲେ ନିର୍ମଲ୍ କହିଲା ଭଳିଆ, ବେଶିଦିନ୍ ଆଗେଇ ପାରିଲାନି ତା'ର୍ ଏ ମିଛିମିଛିକା ନାଟକ । ସୋନି ଦିନେ ତାକୁ ଡାକି ନେଲା ଜେବ୍ରାକ୍ରସ୍ କଡ଼କୁ । ଚକ୍ଷୁରୁ ତା'ର କାଲୋ ଚଷମାଟା ଉତାରି ଧରେଇଦେଲା ତା' ହାତରେ । କହିଲା, "ବେସରମ୍ ! ତୋ' ଭଳି ଭଣ୍ଡ, ପ୍ରତାରକମାନଙ୍କ ପାଇଁ ଲୋକେ ଆସଲ୍ ଅନ୍ଧମାନଙ୍କୁ ଆଉ ବିଶ୍ୱାସ କରିବେନାଇଁ । ନିର୍ଲ୍ଲଜ୍ ! ମୋ' ଦେହ ସହିତ ଦେହ ଲଗେଇ ବାଟ ଚାଲିବାପାଇଁ ତୁ ଯଦି ଏତେ ବ୍ୟାକୁଳ, ସତସତିକା ଅନ୍ଧଟେ ଭଲା ହେଇଥାନ୍ତୁ କି ! ଜୀବନ ତମାମ ତୋ' ହାତ ଧରି ଜେବ୍ରାକ୍ରସ୍ ପାର୍ କରାଉଥାନ୍ତି । ରାସ୍ତା ଦେଖାଉଥାନ୍ତି ।"

ବାସ୍ ! ସୋନି ସେଦିନ ତାକୁ ଏତିକି ମାତ୍ର କହିଲା ଏବଂ ଚାଲିଗଲା ନିଜ ବାଟରେ । ଏ ଘଟଣା ପରେ ପ୍ରେମର ଅସ୍ତିତ୍ୱ ଆଉ ଦେଖିବାକୁ ମିଳିଲାନି ସେ ଖଣ୍ଡମଣ୍ଡଳରେ । ଘଟଣା ସମ୍ପର୍କରେ ଜାଣିଥିବା ଲୋକେ ଭାବିଲେ, ଟୋକାଟା ବୋଧହୁଏ ଲଜ୍ଜାରେ ସେ ଇଲାକା ଛାଡ଼ି ଚାଲିଗଲା; କିନ୍ତୁ ନା ! ପ୍ରାୟ ଏକ ମାସ୍ ପରେ ତା'ର ପୁନଃ ଆବିର୍ଭାବ ଆଶ୍ଚର୍ଯ୍ୟ କଲା ସମସ୍ତଙ୍କୁ । ପୁନଶ୍ଚ ତା'ର ସେଇ ଆନ୍ଧର ବେଶ । ଆଖିରେ କାଲୋ ଚଷମା । ହାତେ ଆନ୍ଧ ଲାଠି । ସକାଲ ଠିକ୍ ସାଢ଼େ ନଅରେ ଆସି ସେ ଅପେକ୍ଷା କଲା ଜେବ୍ରାକ୍ରସ୍ ଛକରେ ।

ଠିକ୍ ବେଳରେ ସୋନିର ଆଗମନ ତା' ହାଇହିଲ୍ ଶବ୍ଦରୁ ଠଉରେଇ ନେଇଥିଲା ପ୍ରେମ୍ । ପରମ ପ୍ରତ୍ୟୟର ସହିତ୍ ସେ ହାତ ବଢ଼ାଇଲା ସୋନି ଆଡ଼କୁ । "ସୋନି..! ମୁଁ ତୁମରି ଅପେକ୍ଷାରେ ହିଁ ଅଛି । ମୋ' ହାତ ଧରି ଜେବ୍ରାକ୍ରସ୍‌ଟା ପାର୍ କରେଇ ଦିଅ ?"

"ଆରେ ! ପ୍ରେମ୍...ତୁ !! ତୁ ଫେର୍ ଚାଲିଆସିଲୁ..!!" ସୋନି ଚିତ୍କାର କଲା, "ବଦ୍‌ମାସ୍ ! ଭଣ୍ଡ.. ନିର୍ଲ୍ଲଜ କୋଉଠିକାର ! ରହ ଏଇନା ତୋତେ ପୁଲିସ୍‌ରେ ଦଉଚି..!" "ସୋନି ! ମାଇ ଲଭ୍ ! ତମେ ମତେ ପୁଲିସ୍‌ରେ ଦିଅ କି ହାଜତ୍‌ରେ ଦିଅ ମନା ନାହିଁ; କିନ୍ତୁ ତା' ଆଗରୁ ଥରେ ମାତ୍ର ତମ ହାତଟା ଦିଅ ମୋ' ହାତରେ । ତୁମ ହାତ ଧରି, ତୁମ ସାନ୍ନିଧ୍ୟର ମହକିତ ବଳୟ ଭିତରେ ଥରେ ଜେବ୍ରାକ୍ରସ୍‌ଟା ପାର୍ କରିଯାଏ ।" ପ୍ରେମ୍ ହାତ ଲମ୍ବେଇଲା । ତା' ନିର୍ବିକାର ମୁହଁରେ ଚମକୁଥିଲା ଚେନାଏ ନିର୍ମଳ ହସ !

"ବେସରମ୍‌ର ବି ଗୋଟେ ସୀମା ଅଛି, ପ୍ରେମ ! ବିଚ୍ ବଜାର ଉପରେ କ'ଣ ଏମିତି କଥାବାର୍ତ୍ତା କରୁଚ ? କାହା ସହିତ କଥା ହଉଚ ଜାଣିଚ ?" ସୋନି ଆଖିରେ ନିଆଁ ଗୁଳାର ତେଜ !

"ଜାଣିଚି ସୋନି !" ପ୍ରେମର ଉଦ୍‌ବେଗ ଶୂନ୍ୟ ଉତ୍ତର ! "ମୁଁ ସେଇ ଝିଅ ସାଙ୍ଗରେ କଥା ହେଉଚି, ଯାହାକୁ ମୁଁ ପ୍ରଥମ ଦେଖାରେ ହିଁ ଦେଇପକାଇଥିଲି ମୋ' ଅଲିଅଳ ହୃଦୟଟିକୁ !"

"ହେଃ ! ହୃଦୟ !! ତମ ଅଲିଅଳ ହୃଦୟଟାକୁ ମୋତେ କାଇଁକି ଦେଲ ? ମୁଁ କ'ଣ ମାଗିଥିଲି ତମକୁ ? ?"ସୋନି ଓଠରେ ଖେଳିଗଲା ବେପରବାୟ ହସ ।

"ସୋନି ! ତମେ ବୋଧେ ଜାଣିନାହଁ ? ଦୁନିଆରେ ସେଇଟା ହିଁ ଏଭଳି ଗୋଟେ ଚିଜ, ଯାହା ନ ମାଗିଲେ ବି ଆପେ ଦିଆ ହେଇଯାଏ; କିନ୍ତୁ ତାକୁ ମାଗିକରି କେହି ନେଇପାରେ ନାହିଁ । ଯେତେ ଯତ୍ନରେ ରଖିଲେ ବି ସେଇଟା ଅଚାନକ୍ କେଉଁଠି ହଜିଯାଏ; କିନ୍ତୁ ତାକୁ ଦୁନିଆ ସାରା ଖୋଜିଲେ ବି ମିଳେନାହିଁ ।"

"ଦେଖ ପ୍ରେମ୍ ! ବହୁତ୍ ହେଇଗଲା । ଫୁଟ୍‌ପାଥର ସବୁ ଲୋକ ଆମକୁ ଦେଖୁଛନ୍ତି । ତମ ଡାଇଲାଗ୍ ଶୁଣି ହସୁଛନ୍ତି । ମିଛରେ କଳାଚଷମା ପିନ୍ଧି ଅନ୍ଧ ହେବାର ନାଟକ ଏଥର ବନ୍ଦ୍ କର.. ପ୍ଲିଜ୍ ।" ସୋନିର କଂଠସ୍ୱରରେ କଠୋରତା କ୍ରମଶଃ ମିଳେଇଯାଉଥିଲା ।

"ସୋନି ! ଏବେ ତ ଏ' ନାଟକ ହିଁ ମୋ' ଜୀବନ ! ବଂଚି ରହିବାକୁ ହେଲେ ମୋତେ ଏ ନାଟକ କରିବାକୁ ହିଁ ପଡ଼ିବ ।"

"ମାନେ ! ସେ ଦିନ ମୁଁ ତମକୁ ଭଣ୍ଡ, ପ୍ରତାରକ୍, ଧପ୍ପାବାଜ୍ କହି କେତେ ଅପମାନ ଦେଇଥିଲି, ସେସବୁ କ'ଣ ଭୁଲିଗଲ ?"

"ତମେ ମତେ ଅପମାନ ଦେଇଥାଇ ପାର । କଟୁ କଥା କହିଥାଇ ପାର । ମୋ'ର କିଛି ବି ମନେ ନାହିଁ । ମନେ ଅଛି କେବଳ ତମର ଗୋଟିଏ ବାକ୍ୟ ! ସେହି ବାକ୍ୟ ମୁଁ

ଜୀବନରେ କେବେ ଭୁଲି ପାରିବିନି । ସେଇ ଗୋଟିଏ ବାକ୍ୟର ଆଧାରଶୀଳା ଉପରେ ମୁଁ ପ୍ରତିଷ୍ଠା କରିଛି ମୋ' ପ୍ରେମର ମହଲ । ମୋତେ ନିରାଶ କରିବନି ସୋନି !" ପ୍ରେମ ଯୋଡ଼ହସ୍ତରେ ନେହୁରା ହେଲା ।

"ଗୋଟିଏ ବାକ୍ୟ ! ମାନେ ? କୋଉ ଗୋଟିକ ବାକ୍ୟ, ଯାହାକୁ ତମେ ଜପାମାଳି କରିଛ ଶୁଣେ ?" ସୋନି ପୁଣି ଥରେ ଉତ୍ୟକ୍ତ ହେଲା ।

"ମନେ ପକାଅ । ତମେ ସେଦିନ ମତେ କହିଥିଲ ନା ? 'ତୁ ଭଲା ସତସତିକା ଅନ୍ଧଟେ ହେଇଥାନ୍ତୁ କି, ମୁଁ ଜୀବନ ସାରା ତୋ' ହାତ ଧରି ଜେବ୍ରାକ୍ରସ୍ ପାର୍ କରାଉଥାନ୍ତି । ରାସ୍ତା ଦେଖାଉଥାନ୍ତି ।' ମନେ ପଡ଼ିଲା ତୁମ ପ୍ରତିଶ୍ରୁତି ?"

"ମାନେ ! !" ସୋନି ଆଖିରେ ଆଖିଏ ବିସ୍ମୟ !

"ହେଇ ଦେଖ !" ପ୍ରେମ୍ ତା ଆଖି ଉପରୁ ଅବଲିଳାକ୍ରମେ ଓହ୍ଲେଇ ଆଣିଲା କଳା ଚଷମା ଗୋଟିକ । ଚଷମା ତଳୁ ଆତ୍ମପ୍ରକାଶ କଲା ହଳେ ନିଷ୍ପ୍ରଭ ଚକ୍ଷୁଗୋଲକ !

"ଓଃ ମାଇ ଗଡ୍ !" ଚମକି ପଡ଼ିଲା ସୋନି ! "ପ୍ରେମ୍ ! ତମ ଆଖି ! ! ତମ ଆଖିକୁ କ'ଣ ହେଲା ? ଏ କ'ଣ କଲ ପ୍ରେମ୍ ? ତମର ଦୁଇଟାଯାକ ଆଖି ! ହେ ଭଗବାନ୍ !" କଣ୍ଠ ବାଷ୍ପରୁଦ୍ଧ ହୋଇଅସିଲା ସୋନିର । ଛାତିରେ ତା'ର କୋହର ଜୁଆର । ଆଖିରେ ଲୁହର ବନ୍ୟା ! !

"ତୁମେ ମତେ ପ୍ରତିଶ୍ରୁତି ଦେଇଥିଲ ନା', ସତସତିକା ଅନ୍ଧଟେ ହେଇଥିଲେ ଜୀବନ ତମାମ ମୋ' ହାତ ଧରି ଜେବ୍ରାକ୍ରସ୍ ପାର୍ କରାଇବ ବୋଲି । ମୁଁ ଆଜି ଜଣେ ସତସତିକା ଅନ୍ଧ ! ଏବେ ମୋ'ର ଅଧିକା କିଛି ଆକାଙ୍କ୍ଷା ନାହିଁ ଜୀବନରେ । ବାସ୍.. ତମ ହାତ ଧରି, ତମ ଦେହକୁ ଦେହ ଲଗେଇ, ତୁମ ନିଃଶ୍ୱାସ ଭୁରୁଭୁରୁ ମହକରେ ଗାଧୋଇ ଗାଧୋଇ, ଦିନରେ ଦୁଇଥର ଜେବ୍ରାକ୍ରସ୍ ପାର୍ ହେଉଥିବି । ସେ ପାଖ ବଜାରକୁ ଯାଇ ବହିପତ୍ର ବିକି ଏ ପାଖ ବସାକୁ ଫେରୁଥିବି । ସକାଳେ ପୁଣି ପ୍ରତୀକ୍ଷା କରିବି ତୁମ ସାନ୍ନିଧ୍ୟ ଟିକିଏ ପାଇଁ । ସେ ପାଖରେ ଚାଲିବ ମୋ' ଜୀବିକା, ଏପାଖରେ ମୋ' ଜୀବନ ! ବାସ୍ ତମାମ୍ ଜୀବନ ଏମିତି ଚାଲିବ...ଚାଲିବ...ଚାଲିବ ।"

"ଓଃ ! ନୋ ! ପାଗଳ କୋଉଠିକାର !" ସୋନି କୋହଭରା କଣ୍ଠରେ କହିଲା, "ହେ ଭଗବାନ୍ ! ମୋତେ ଟିକିଏ ପାଖରେ ପାଇବ ବୋଲି ନିଜର ଅମୂଲ୍ୟ ଆଖି ଦୁଇଟାକୁ ନଷ୍ଟ କରିଦେଲ ତମେ ! ! ଇସ୍.. ! ତମର କେତେବଡ଼ କ୍ଷତି ହେଲା ଜାଣିପାରୁଚ ପ୍ରେମ୍ !"

"ସୋନି ! ମୁଁ କେବଳ ଏତିକି ଜାଣିଚି, ପ୍ରେମରେ ଲାଭ-କ୍ଷତିର ହିସାବ ଦେଖାଯାଏନା ! ଜୀବନରେ କିଛି ପାଇବାକୁ ହେଲେ କିଛି ହରେଇବାକୁ ପଡ଼େ ! ମୁଁ ଯେତେବେଳେ ଜାଣିଲି, ପ୍ରତିଦିନ ତମର ଟିକିଏ ସ୍ପର୍ଶ, ଅଳ୍ପ ସାନ୍ନିଧ୍ୟ ବିନା ମୁଁ ଆଉ

ବଂଚିପାରିବିନି, ସେତିକି ପାଇବା ପାଇଁ ମୁଁ ମୋ' ଆଖି ହଳକ ଉତ୍ସର୍ଗ କରିଦେଲି । ଜଣେ ଗରିବ ଅସହାୟ ଅନ୍ଧ ବାଳକକୁ ଦାନ କରିଦେଲି ମୋ' ଆଖି ଦୁଇଟା । ନିଜ ଜୀବନକୁ ଆଲୋକିତ କରିବା ପାଇଁ ମୁଁ ସେ ପିଲାଟିର ଆଖିରେ ଆଲୋକ ଭରିଦେଲି । କ'ଣ କିଛି ଭୁଲ କଲି ?"

"ଭୁଲ୍ ମୁଁ କରିଛି ପ୍ରେମ୍ !" ସୋନିର କୋହ ଓ ଉଚ୍ଛ୍ୱାସଭରା କଣ୍ଠସ୍ୱରର ପ୍ରତିଧ୍ୱନିରେ କ୍ଷଣିକପାଇଁ ଜଡ଼ ପାଲଟିଗଲା ଚଳଚଂଚଳ ଜେବ୍ରାକ୍ରସର ଚିତ୍ର । ପ୍ରେମ୍‌ର ଛାତି ଉପରେ ଲୋଟିପଡ଼ି କଇଁ କଇଁ କାନ୍ଦିଉଠିଲା ସୋନି । "କ୍ଷମା କରିଦିଅ ପ୍ରେମ୍, ମତେ କ୍ଷମା କରିଦିଅ ।"

ପ୍ରେମ୍‌ର ଓଠରେ ଚହଟି ଉଠିଲା ଚେନାଏ ନିର୍ମଳ ହସ । ସୋନିକୁ ଛାତିରେ ଆଉଜେଇ ଆଣି ସେ କହିଲା, "ସୋନି ! ଗୋଟିଏ ସର୍ତ୍ତରେ ମୁଁ ତୁମକୁ କ୍ଷମା କରିବି । ଆଉ ସେ ସର୍ତ୍ତ ମଧ୍ୟ ମୋ'ର ନୁହେଁ, ତୁମରି ହିଁ ଥିଲା । ଆଜିଠାରୁ ପ୍ରତିଦିନ ତୁମେ ମୋ' ହାତ ଧରି ଜେବ୍ରାକ୍ରସ୍ ପାର କରେଇବ । ସର୍ତ୍ତ କେବଳ ଏତିକି ।"

"ନିଶ୍ଚୟ ! ନିଶ୍ଚୟ ପ୍ରେମ୍ !" ଜନାକୀର୍ଣ୍ଣ ଛକରେ ସୋନି ସେଦିନ ଦୃଢ଼ କଂଠରେ ଘୋଷଣା କରିଥିଲା, "ପ୍ରେମ ! ମୁଁ ଆଜି ଏ ଜେବ୍ରାକ୍ରସ୍‌ର ଜନ ସମୁହ ଆଗରେ କଥା ଦଉଚି, ଜୀବନ ତମାମ୍ ମୁଁ ତମ ହାତ ଧରି ଜେବ୍ରାକ୍ରସ୍ ପାର୍ କରାଉଥିବି । ତମ ଆଖି ଭଳି ବାଟ ଦେଖେଇ ଚାଲିବି ଜୀବନ ତମାମ୍ ।"

ଅନୁପ ଦା' ଏତିକି କହି ଦୀର୍ଘନିଃଶ୍ୱାସ ଛାଡ଼ିଲେ ଏବଂ ଚେୟାରକୁ ଆଉଜି ବସିଲେ ।

ମୁଁ ଅଭିଭୂତ ହୋଇ ଶୁଣୁଥିଲି ତାଙ୍କ ପ୍ରେମକାହାଣୀ । ପଚାରିଲି, "ତା'ମାନେ ଏବେ ବି ସେ ଘଟଣାର ପୁନରାବୃତ୍ତି ସେଠାରେ ଚାଲିଛି ?"

ଅନୁପ ଦା' ସ୍ମିତ ହସି କହିଲେ, "ଏ ବ୍ୟାପାର୍‌ଟା ଦୀର୍ଘ ପଚିଶ୍-ଛବିଶ୍ ବର୍ଷ ତଳର । ସେ ଦିନ ଏ ଘଟଣା ଘଟିବା ସମୟେ ଆମି ସେଖାନେ ସ୍ୱୟଂ ଉପସ୍ଥିତ ଥିଲି । ସେ ଦିନର ସେ ତରୁଣ ପ୍ରେମୀଯୁଗଳ ଆଜି ପ୍ରୌଢ଼ ଓ ପ୍ରୌଢ଼ା । ପ୍ରେମ୍ ସୋନିକୁ ପାଖରେ ପାଇବା ପାଇଁ ନିଜ ଆଖି ହଳକୁ ଉତ୍ସର୍ଗ କରିଦେଲା ଆଉ ପ୍ରତିବଦଳରେ ସୋନି ତା' ଜୀବନ ଓ ଯୌବନକୁ ଜଳାଞ୍ଜଳି ଦେଇଦେଲା ପ୍ରେମ୍ ପାଇଁ ! ଆଜି ବି ସେମାନେ କେବଳ ଜେବ୍ରାକ୍ରସ୍‌ର ପ୍ରେମୀଯୁଗଳ !"

"ତା'ମାନେ, ସେ ଦୁହେଁ ବିବାହ କରିନାହାନ୍ତି !" ବିସ୍ମୟରେ ପଚାରିଲି ମୁଁ ।

ଅନୁପ ଦା' କହିଲେ, "ଶୁଭେନ୍ଦୁ ! ଆମି ଦେଖ୍‌ଚି, ପ୍ରେମତତ୍ତ୍ୱ ଉପରେ ତମର ଆଦୀ ଜ୍ଞାନ ନାହିଁ । ଆରେ ବାବା ! ତୁମି କି ଏତିକି ଜାଣିନା, ପ୍ରେମର କବର୍ ଉପରେ ଦାମ୍ପତ୍ୟର ସୌଧ ଗଢ଼ା ହୁଏ ବୋଲି ? ସେମାନେ ଚାହୁଁନଥିଲେ, ତାଙ୍କ ଅମର ପ୍ରେମ କାହାଣୀକୁ ମାଟିତଳେ ପୋତି କବର ଦେବାପାଇଁ । ତା' ଛଡ଼ା ପ୍ରେମ ତ କେବେ ବି ଭାବି

ନଥିଲା ସୋନିକୁ ତା' ଜୀବନସାଥୀ କରିବା କାଥା ! ସେ ସୁଦ୍ଧୁ ଏତିକି ଚାହିଁଥିଲା, ସେ ତା' ପ୍ରେମିକାର ହାତ ଧରି ଜୀବନ ତମାମ୍ ଜେବ୍ରାକ୍ରସ ପାର୍ ହେଉଥିବ । ସୋନି ବି ଶପଥ୍ କରିଥିଲା, ସାରା ଜୀବନ ସିଏ ତା' ପ୍ରେମିକ୍‌ର ହାତ ଧରି ଜେବ୍ରାକ୍ରସ୍ ପାର୍ କରେଇବ । ବାସ୍, କଥା ତ ଏତିକି ! ଦୁହେଁ ଦୁହିଙ୍କ ଜବାବରେ ଅଟଳ ! ଆଜି ବି !"

"ଦାଦା ! ବିଶ୍ୱାସ ଲାଗୁନି । କାରଣ ଏଭଳି ଉତ୍ସର୍ଗୀକୃତ ପ୍ରେମ ଆଜିକାଲି ସମାଜରେ ଗୋଟେ ବିରଳ ଘଟଣା ।" ଦୀର୍ଘନିଃଶ୍ୱାସ ଛାଡ଼ି କହିଲି ମୁଁ ।

"ଅବଶ୍ୟ ଶୁଭେନ୍ଦୁ ! ଏଇଜନ୍ନ୍ୟ ଆମାକେ ମୋଗଲ ଯୁଗର ସେ ବିଶ୍ୱବିଖ୍ୟାତ ପ୍ରେମ ସ୍ମାରକୀ 'ତାଜ୍‌ମହଲ୍' ବି ଫିକାଫିକା ଲାଗେ ପ୍ରେମ ଓ ସୋନିର ପ୍ରେମ କାହାଣୀ ଆଗେ । ମୋ' ବନ୍ଧୁ, ପରିଜନ ଯିଏ ବି ଦିଲ୍ଲୀ ଭ୍ରମଣରେ ଯାଏ, ମୁଁ ତାଙ୍କୁ କହେ, ଆଗ୍ରାର ତାଜମହଲ୍ ପରିଦର୍ଶନ ବଦଳେ ଜେବ୍ରାକ୍ରସ୍‌ର ପ୍ରେମୀଯୁଗଳଙ୍କୁ ଥରେ ଦର୍ଶନ କରି ଏସୋ ! ଜୀବନଟା ଧନ୍ୟ ହୋଇଯିବ ।"

ଅନୁପ ଦା' ଏହା କହୁ କହୁ ବିଦାୟ ନେବାକୁ ଉଠିଲେ । ମୁଁ କିନ୍ତୁ ସମ୍ପୂର୍ଣ୍ଣ ହଜିଯାଇଥିଲି ମୋ' ଭାବନାରାଜ୍ୟରେ । ଆଖି ଆଗରେ ମୋ'ର ଚଳଚ୍ଚିତ୍ର ଦୃଶ୍ୟ ଭଳି ଝଳଝଳ ହୋଇ ଦିଶୁଥିଲା ଦିଲ୍ଲୀ ମହାନଗରୀର ସେ ଜନାକୀର୍ଣ୍ଣ ଛକରେ ହାତ ଧରାଧରି ହୋଇ ଜେବ୍ରାକ୍ରସ୍ ପାର କରୁଥିବା ପ୍ରେମୀଯୁଗଳଙ୍କ ଦୃଶ୍ୟ !!



# ଆଉଜଣେ ନୀଳକଣ୍ଠ

ବୈଶାଖର ରୌଦ୍ରଦଗ୍ଧ ଦି'ପହର ! କମାରଭାଟିର ଜଳନ୍ତା ଅଙ୍ଗାର ଭଳି ହୁତ୍‌ହୁତ୍ ଜଳୁଥିଲା ତାଳଚେରର ଖଣି ଖାଦାନ୍‌ଭରା ମାଟି । କର୍ଫ୍ୟୁ ଲାଗିବା ଭଳି ମାଇନିଂ କାଲୋନୀରେ ଛାଇ ରହିଥିଲା ଅବାଞ୍ଛିତ ନିରବତା ! ସେଦିନର ଉତ୍ତାପ ଥିଲା ବୋଧେ ସର୍ବାଧିକ ! ଖରା ଆତଙ୍କରେ ବସ୍ତିର ସବୁ ଦୁଆର ଝରକା ବନ୍ଦ୍ ! ରାସ୍ତାଘାଟ ଶୁନ୍‌ଶାନ୍ ! ସେ ନିଆଁଝରା ଝାଞ୍ଜି ଭିତରେ ଗୋଟେ ଅସହାୟ ନାରୀ କଣ୍ଠର ଆକୁଳ ଚିତ୍କାର ଶୁଭୁଥିଲା ରହିରହିକା, ବାବୁ...ଭିକ ମୁଠେ ମିଳୁ ! ମା'..ତୋରାଣି ମୁନ୍ଦିଏ ମିଳୁ ।

ମାଇନିଂ ସୁପରଭାଇଜର୍ 'ନୀଳକଣ୍ଠ ବାବୁ' ଖଣିରୁ ସକାଳସିଫ୍ଟ ଡ୍ୟୁଟି ସାରି ସଦ୍ୟ ଫେରିଥିଲେ ବସାକୁ । ମୁହଁ ହାତ ଧୋଇ ଖାଇବାକୁ ପ୍ରସ୍ତୁତ ହେଉଛନ୍ତି, ଏତିକିବେଳେ କାନରେ ପଡ଼ିଲା ସେ ବିକଳ ଚିତ୍କାର, "ବାବୁ...ତୋରାଣି ମୁନ୍ଦିଏ ମିଳୁ ! ଦାନା ମୁଠେ ଦିଅ ବାବୁ.....!!" ନୀଳକଣ୍ଠ ଅଟକିଗଲେ । ପାଟିକୁ ନେଉଥିବା ଭାତ ଗୁଣ୍ଡା ପୁଣି ଫେରି ଆସିଲା ଥାଳିକୁ ।

ଏ ଘଟଣା ଆଜିକୁ ପ୍ରାୟ ପନ୍ଦର ବର୍ଷ ତଳର । ସେତେବେଳେ ନୀଳକଣ୍ଠ ଥାଆନ୍ତି ତାଳଚେର, ସାଉଥ୍ ବଲଣ୍ଡା ଖଣିର ଭୂତଳ ଖଣି ନିରୀକ୍ଷକ । ନୀଳକଣ୍ଠ ପାଢ଼ି । ଦକ୍ଷିଣ ଓଡ଼ିଶାର ବ୍ରାହ୍ମଣ । ପଚିଶି ଛବିଶି ବର୍ଷର ଅବିବାହିତ ଯୁବକ । ମୋ' ପୁଅ ଅମ୍ଳାନ ଷଷ୍ଠ ଶ୍ରେଣୀରେ ପଢ଼ିଲାବେଳେ ନାଳକଣ୍ଠ ଆମ ଘରକୁ ଆସି କିଛିଦିନ ପାଇଁ ତାକୁ ଟ୍ୟୁସନ୍ ପଢ଼ାଉଥିଲେ । ସେତିକିବେଳେ ମୁଁ ତାଙ୍କୁ ଅତି ନିକଟରୁ ଜାଣିଥିଲି । ଆମେ ବି ବ୍ରାହ୍ମଣ ପରିବାରର । ତେଣୁ ଜାତିପୁଅ ହିସାବରେ ଆମ ଘରେ ନୀଳକଣ୍ଠଙ୍କୁ ଯଥେଷ୍ଟ ଆଦର ସମ୍ମାନ ମିଳେ ।

ଥରେ ନୀଳକଣ୍ଠଙ୍କ ବାପା ବ୍ରହ୍ମାନନ୍ଦବାବୁ ଗାଁ'ରୁ ଆସିଥିଲେ । ନୀଳକଣ୍ଠ 'ବାପା'ଙ୍କୁ 'ନନା' ସଂବୋଧନ କରନ୍ତି । ପୁଅର ବ୍ୟାଚେଲର୍ କ୍ୱାର୍ଟରରେ ଦିନେ ଦୁଇଦିନ ପାଇଁ ରହିଥିଲେ ସେ । ସେତିକିବେଳେ ବ୍ରହ୍ମାନନ୍ଦ ପାଢ଼ିଙ୍କ ସହିତ ମୋ'ର ପରିଚୟ । ସେହି ସ୍ୱଳ୍ପ ପରିଚୟରୁ ମୁଁ ଜାଣିପାରିଲି, ବ୍ରହ୍ମାନନ୍ଦ ପାଢି ଭାରି ନିଷ୍ଠାପର ବ୍ରାହ୍ମଣ ! ଜାତି, ଧର୍ମ, ପରମ୍ପରାକୁ ନେଇ ବଡ଼ କଠୋରବାଦୀ ! ପ୍ରାତଃତର୍ପଣ ଓ ପୂଜା-ପାଠ ପୂର୍ବରୁ, ଠାକୁରଙ୍କୁ ତୁଳସୀ ଅର୍ପଣ ବିନା

ଜଳ ମଧ୍ୟ ସ୍ପର୍ଶ କରନ୍ତିନି ସେ । ହିନ୍ଦୁ ଧର୍ମର ପୂଜାପଦ୍ଧତି, ପାରମ୍ପରିକ ରୀତିନୀତି, ବିଧିବ୍ୟବସ୍ଥା ଉପରେ ତାଙ୍କର ଅଗାଧ ଜ୍ଞାନ । ପୁରାଣ ଶାସ୍ତ୍ରରେ ପାଣ୍ଡିତ୍ୟ । ସେ ରହିବା ଭିତରେ ମୁଁ ଦିନେ ତାଙ୍କୁ ଆମ ଘରକୁ ନିମନ୍ତ୍ରଣ କଲି । ଆମେ ବି ବ୍ରାହ୍ମଣ ପରିବାର ବୋଲି ଜାଣିବା ପରେ ନୀଳକଣ୍ଠଙ୍କ ସହିତ ସେ ଆମ ଘରକୁ ଆସିଲେ । କିନ୍ତୁ ବହୁତ ଅନୁରୋଧ ପରେ ବି ଆମ ଘରେ ଜଳସ୍ପର୍ଶ ମଧ୍ୟ କଲେନାହିଁ ! କାରଣ ସେ କହିଲେ, ଆମେ ହେଲୁ 'ସାହୁ ବ୍ରାହ୍ମଣ' ଆଉ ସେ 'ପାଢ଼ି ବ୍ରାହ୍ମଣ' । ଆମେ ତାଙ୍କ ସମାସ୍କନ୍ଧ ନୋହୁଁ !

ତାଙ୍କ କଥାରେ ମୋତେ ଦୁଃଖ ଲାଗୁ କି ନ'ଲାଗୁ, ନୀଳକଣ୍ଠ କିନ୍ତୁ ତାଙ୍କ ନନାଙ୍କ ବ୍ୟବହାରରେ କ୍ଷୁବ୍ଧ ଜଣାପଡ଼ିଲେ । ମୋ' ସ୍ତ୍ରୀ ପାଣି ଗ୍ଲାସ୍ ଧରି ଠିଆ ହୋଇଥିଲେ । ନୀଳକଣ୍ଠ ସଙ୍ଗେସଙ୍ଗେ ତାଙ୍କ ହାତରୁ ପାଣି ଗ୍ଲାସକ ନେଇ ନନାଙ୍କ ଆଗରେ ଢ଼କ୍ଢ଼କ୍ କରି ପିଇଲେ ଏବଂ ଚାଲିଗଲେ । ପରଦିନ ସକାଳେ ଦେଖିବା ବେଳକୁ ତାଙ୍କ ନନା ବ୍ରହ୍ମାନନ୍ଦବାବୁ ଗାଁ'କୁ ଫେରି ଯାଇଛନ୍ତି ।

ମତେ ଆଶ୍ଚର୍ଯ୍ୟ ଲାଗିଲା, ଏଡ଼େ କଠୋରପନ୍ଥୀ ବାପାଙ୍କ ସହିତ ନୀଳକଣ୍ଠଙ୍କ ଭଳି ଉଦାରବାଦୀ ପୁଅ ଗୋଟିଏ ଘରେ ଚଳନ୍ତି କେମିତି ସେ କଥା ଭାବି ।

ସତରେ, ନୀଳକଣ୍ଠ ଜଣେ ଆଧୁନିକ ଚିନ୍ତାଧାରାର ଯୁବକ । ସମାଜରେ ଚଳି ଆସୁଥିବା ଅନେକ ଭିତ୍ତିହୀନ ବିଶ୍ୱାସ, ଅନ୍ଧ ପରମ୍ପରା ଆଉ ଚିରାଚରିତ ବିଧିବ୍ୟବସ୍ଥାର ଘୋର ବିରୋଧୀ ସେ ! ପୂଜା ପାଠ, ମଠ ମନ୍ଦିରର କେବେ ଧାର ଧାରନ୍ତିନି । ପଚାରିଲେ କହନ୍ତି, 'କର୍ମ ହିଁ ଈଶ୍ୱର' ! ଭଗବାନ୍ ଫଟୋରେ କି ମଠରେ ନଥାନ୍ତି, ଥାଆନ୍ତି ମଣିଷର କର୍ମରେ ! ସେଥିପାଇଁ ଗୀତାରେ ଶ୍ରୀକୃଷ୍ଣ କର୍ମଯୋଗକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ମଣିଷ ବିବେକର କଥା ମାନି ଯଦି ଉଚିତ ମାର୍ଗରେ କର୍ମ କରି ଚାଲିବ, ତା'କୁ ମନ୍ଦିର ଯାଇ ନାମ ଜପିବା କି ଅଧିଆ ପଡ଼ିବା ଦରକାର ନାହିଁ । ପରୋପକାର ସବୁଠୁ ବଡ଼ ଧର୍ମ ! 'ନିଜେ ବଂଚ ଓ ଅନ୍ୟକୁ ବଂଚିବାକୁ ଦିଅ' ଏହି ବାକ୍ୟ ହିଁ ମଣିଷର ନୀତି ହେବା ଦରକାର । 'ବସୁଧୈବ କୁଟୁମ୍ବକମ୍' କେବଳ ଶାସ୍ତ୍ରରେ ପଢ଼ିଲେ ଯଥେଷ୍ଟ ନୁହେଁ; ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସାରା ବିଶ୍ୱକୁ ଆପଣେଇ ନେବା ଭଳି ନିଜର ବିଶାଳ ହୃଦୟଟେ ଥିବା ଦରକାର !"

ମୁଁ ଦିନେ ପଚାରିଲି, "ନୀଳକଣ୍ଠବାବୁ ! ଆପଣଙ୍କ ଚିନ୍ତାଧାରା ବିଜ୍ଞାନସମ୍ମତ, ଯୁଗପୋଯୋଗୀ । କିନ୍ତୁ ଆପଣଙ୍କ ନନା ତ ପୁରୁଣା ବିଚାରର ମଣିଷ ! କଠୋରପନ୍ଥୀ, ରକ୍ଷଣଶୀଳ ଲୋକ । ଏଥିପାଇଁ ଆପଣ ବାପ,ପୁଅ ଭିତରେ ମତାନ୍ତର, ମନାନ୍ତର ହୁଏନି ?

ଏହାର ସ୍ପଷ୍ଟିକରଣ ଦେବାକୁ ଯାଇ ନୀଳକଣ୍ଠ କହିଥିଲେ, "ମୁଁ ଘରର ସାନ ପୁଅ । ମୋ' ବଡ଼ ଭାଇ ଆଶୁତୋଷ । ସେ ନନାଙ୍କର ଅତି ପ୍ରିୟ ! ନନାଙ୍କ ନୀତିର ଅନ୍ଧ-ଅନୁଗାମୀ !

ସବୁବେଳେ ତାଙ୍କ ସହିତ ଛାଇଭଳି ଥାଆନ୍ତି । କିନ୍ତୁ ମୋ' ନୀତି ଅଲଗା ! ଛୋଟବେଳୁ ହିଁ ନନାଙ୍କ ସହିତ ମୋ'ର ଏମିତିଆ ଛୋଟଛୋଟ କଥାକୁ ନେଇ ମତଭେଦ ହୁଏ । ଭାଗ୍ୟେ ଭଲ, ମୋ' ବୋଉ ଦୂରଦୃଷ୍ଟି ସମ୍ପନ୍ନା । ସିଏ ଦେଖିଲେ, ମୁଁ ଘରେ ରହିଲେ ଆମ ବାପ ପୁଅ ଭିତରେ ସବୁବେଳେ ଅଶାନ୍ତି ହେବ । ତେଣୁ 'ଦୂରରେ ରହୁ, ଭଲରେ ଥାଉ' ନ୍ୟାୟରେ ସିଏ ମୋତେ ବାହାରେ ହଷ୍ଟେଲରେ ରହି ପଢ଼ିବାର ସୁଯୋଗ ଦେଲେ । ପଢ଼ା ଶେଷ ହେବା ପରେ ଚାକିରି କରିବାର ଅନୁମତି ବି ଦେଲେ । ହୋଷ୍ଟେଲରେ ରହି ହାଇସ୍କୁଲ ପଢ଼ିବାଠୁଁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ମୋ'ର ଅଧିକାଂଶ ଦିନ କଟିଛି ବାହାରେ ! କେବେ କେମିତି ନନାଙ୍କ ସହିତ ମୋ'ର ଏମିତି କିଛି ଛୋଟମୋଟ ଘଟଣାକୁ ନେଇ ମତାନ୍ତର ହୁଏ । ଏଇ ସେଦିନ ଯେମିତି ଆପଣଙ୍କ ଘରେ ହେଲା । ଏଭଳି ପରିସ୍ଥିତିରେ ମୋ' ପାଖରେ ଅଛି ତଉଲ ଯନ୍ତ୍ରଟିଏ !"

"ତଉଲଯନ୍ତ୍ର.. ମାନେ ?" ଆଶ୍ଚର୍ଯ୍ୟରେ ପ୍ରଶ୍ନ କଲି ମୁଁ ।

"ମାନେ ନିକିତି । ମୋ' ପାଖରେ 'ବିବେକ' ନାମକ ନିକିତିଟିଏ ଅଛି । ନନାଙ୍କ ରଢ଼ିବାଦୀ ବିଚାରକୁ ନେଇ ଯେତେବେଳେ ମୁଁ ଧର୍ମ ସଂକଟରେ ପଡ଼ିଯାଏ, ସେତେବେଳେ ସେହି ନିକିତିର ଗୋଟେପାଖେ ରଖେ ମୋ' 'ନନାଙ୍କ ଯୁକ୍ତି' ଏବଂ ଅନ୍ୟ ପଲାରେ ରଖେ ମୋ' 'ନିଜ ବିଚାର' । ତଉଲେ । ଯୋଉଟା ମୋ' ବିବେକ ନିକିତିରେ ଓଜନଦାର ମନେହୁଏ ସେ ଯୁକ୍ତିକୁ ହିଁ ମୁଁ ଗ୍ରହଣ କରେ ।"

ସେଇ ନୀଳକଣ୍ଠ ପାଢ଼ି । ସେଦିନ ତାଙ୍କ ପାଟି ପାଖକୁ ଯାଇଥିବା ପ୍ରଥମ ଭାତଗୁଣ୍ଡା ଥାଳିଆକୁ ଲେଉଟି ଆସିଥିଲା ଗୋଟେ ଭିକାରୁଣୀର 'ବାବୁ ଆଜ୍ଞା !......ତୋରାଣି ମୁନ୍ଦେ ମିଳୁ' ନିବେଦନରେ !

ହାତ ଧୋଇଲେ ସେ । ଦାଣ୍ଡ ଦୁଆର ବନ୍ଦ ଥିଲା, ତେଣୁ ସେ ଝରକା ଖୋଲିବାକୁ ଗଲେ । ବାହାରେ ନିଆଁ ବର୍ଷୁଥିଲା । ଫାଲେ ଝରକା ଖୋଲିବା ମାତ୍ରେ ଚଟୁଏ ଜଳନ୍ତା ଅଙ୍ଗାର ସତେ ଯେମିତି କିଏ ଆଣି ଛାଟିଦେଲା ତାଙ୍କ ମୁହଁ ଉପରକୁ । ଝରକାର ସାମାନ୍ୟ ଫାଙ୍କରେ ସେ ଯେଉଁ ଦୃଶ୍ୟ ଦେଖିଲେ ହୃଦୟ ତାଙ୍କର ତରଳିବାକୁ ଲାଗିଲା ! ଗେଟ୍ ସାମନାରେ ଠିଆ ହୋଇଥିଲା ଶୀର୍ଣ୍ଣ-ଶ୍ରୀହୀନ, କଙ୍କାଳସାର ବୁଢ଼ୀଟିଏ ! ଚକ୍ଷୁ କୋଟରଗତ । ଦେହରେ ସାତ ସିଆଁ କଙ୍କୋଟ ଲୁଗା । କାଖରେ ସାଉଁଟା ଚିରାକନାର ଗୋଟେ ଛୋଟ ଗଣ୍ଠିଲି । ହାତରେ ଲୋଚା-କୋଚା ସିଲଭର ଥାଳିଆଟେ । ପାଖରେ ଠିଆ ହୋଇଛି ଗୋଟେ ଆଠନଅ ବର୍ଷର ଅର୍ଦ୍ଧଲଙ୍ଗୁଳୀ ଝିଅ । ତଳେ ତତଲା ପିଚୁର ଜ୍ୱାଳାରୁ ରକ୍ଷା ପାଇବା ପାଇଁ ଦୁହେଁ ପାଦରେ ଗୁଡ଼େଇଥିଲେ ପୁଳାଏ ଲେଖା ପଲିଥିନ୍ ଜରି ! ଦୁଇହଳ ଆଶାୟୀ ଆଖି ଚାହିଁ ରହିଥିଲେ ତାଙ୍କ ଦରଆଉଜା ଦୁଆର ଆଡ଼େ । "........ବାବୁ ! ଗଣ୍ଡେ ଖାଇବାକୁ ମିଳୁ ।"

ନୀଳକଣ୍ଠଙ୍କ କୋମଳ ହୃଦୟ ସହାନୁଭୂତିରେ ଜଡ଼ସଡ଼ ହେବାକୁ ଲାଗିଲା । ଗତ ରାତିର ବାସି ପଖାଳ ଦି'ବେଲା ପଡ଼ିଥିଲା ଡେକ୍‌ଚିରେ । ନିଜପାଇଁ ବାଢ଼ିଥିବା ସଜ ଭାତରୁ ଦି'ମୁଠା କମେଇଦେଲେ ହଳେ ବୁଭୁକ୍ଷୁ ପେଟ ପାଇଁ ପର୍ଯ୍ୟାପ୍ତ ହେଇପାରେ । ସେ ଝରକା ବନ୍ଦ କରି ଦାଣ୍ଡ କବାଟ ଖୋଲିଲେ ଦୁହିଙ୍କୁ ବାରଣ୍ଡା ଉପରକୁ ଡାକିବାପାଇଁ; କିନ୍ତୁ ଏ' କ'ଣ ! ! ସେହି କ୍ଷଣିକ ଭିତରେ ଘଟିଯାଇଥିଲା ଗୋଟେ ଅଭାବନୀୟ ଘଟଣା, ଯାହା ନୀଳକଣ୍ଠ କଳ୍ପନା ବି କରିନଥିଲେ । ଭୟ ଓ ଆଶଙ୍କାରେ ତଟସ୍ଥ ସେ ! ଭିକାରୁଣୀ ବୁଢ଼ୀଟା ଟଳିପଡ଼ିଥିଲା ତାଙ୍କ ଗେଟ୍ ସାମନାରେ ! ! ହାତରୁ ଛିଟିକି ପଡ଼ିଥିଲା ଗଣ୍ଠିଲି ଓ ଥାଳିଆ । ଆଉ ତା' ହାଡ଼ୁଆ ଛାତି ଉପରେ ଲୋଟିପଡ଼ି ଚିତ୍କାର କରୁଥିଲା ଝିଅଟା ଗୋଟେ ବିଚିତ୍ର ସ୍ୱରରେ !

କାଳବିଳମ୍ବ ନ'କରି ଗେଟ୍ ପାଖକୁ ଦୌଡ଼ିଗଲେ ନୀଳକଣ୍ଠ । ତାଙ୍କ ମନ ପାପ ଛୁଇଁଲା । ହେ ଭଗବାନ ! ଅଂଶୁଘାତରେ ବୁଢ଼ୀ ଶେଷ ହେଇଗଲା କି ଆଉ ! ! କିନ୍ତୁ ନା ! ନଇଁ ପଡ଼ି ବୁଢ଼ୀର ଶ୍ୱାସପ୍ରଶ୍ୱାସ ପରୀକ୍ଷା କରି ଆଶ୍ୱସ୍ତ ହେଲେ ସେ । ତା'ପରେ ନୀଳକଣ୍ଠ ତାକୁ କୋଳେଇ ଧରି ଆସ୍ତେ ଉଠାଇ ଆଣିଲେ ବାରଣ୍ଡା ଉପରକୁ । ଫ୍ରିଜ୍‌ରୁ ଥଣ୍ଡାପାଣି ଆଣି ବୁଢ଼ୀର ମୁହଁ ଆଉ ତାଳୁରେ ମାରିଲେ । ପଢ଼ାଘରେ ଥିବା ଟେବୁଲ୍ ଫ୍ୟାନ୍‌ଟା ଆଣି ତା' ମୁଣ୍ଡ ପାଖରେ ଚଳାଇ ରଖିଲେ । ଆମ୍ବୁଲାନ୍ସ ପାଇଁ କୋଲିୟାରୀ ଡାକ୍ତରଖାନାକୁ ଖବର ଦେବାକୁ ସେ ଫୋନ୍ ଉଠାଇବାକୁ ଯାଉଛନ୍ତି, ଏତିକିବେଳେ ବୁଢ଼ୀ ଅଳ୍ପ କୁନ୍ଥେଇଲା ଭଳି ମନେହେଲା । ଆଖି ମିଟିମିଟି କଲା । ସଂପୂର୍ଣ୍ଣ ସଞ୍ଜ୍ଞା ଫେରିବା ପରେ ନୀଳକଣ୍ଠ ତାକୁ ହାତଧରି ଉଠାଇଲେ ଏବଂ କାନ୍ଥକୁ ଆଉଜେଇ ବସାଇଦେଲେ । ସମ୍ଭ୍ରମରେ ଲୁଗାପଟା ସଜାଡ଼ିନେଲା ବୁଢ଼ୀ । ଝିଅକୁ କୋଳକୁ ଟାଣିନେଲା ।

"କଣ ମାଉସୀ...ଟିକେ ଭଲ ଲାଗୁଚି ?" ଅନ୍ତରଙ୍ଗ ସ୍ୱରରେ ପଚାରିଲେ ନୀଳକଣ୍ଠ ।

ବୁଢ଼ୀ ଥିଲା ସଂପୂର୍ଣ୍ଣ ନିର୍ବାକ ! ନିରୀହ ଆଖିରୁ ତା'ର ବହି ଚାଲିଥିଲା କୃତଜ୍ଞତାର ଅବିରାମ ଅଶ୍ରୁଧାର ।

ନୀଳକଣ୍ଠ ସେମାନଙ୍କ ସାମନାରେ ଥୋଇଦେଲେ ଆଣି ପଖାଳ ବେଲାଏ ଏବଂ ନିଜ ପାଇଁ ରଖିଥିବା କିଛି ଆଳୁ-ପୋଟଳ ଭଜା । ପେଟରେ ପେଟେ ଭୋକ ଥିବା ସତ୍ତ୍ୱେ ଦୁହେଁ ବଡ଼ ସଙ୍କୋଚରେ ଉଦରସ୍ଥ କଲେ ସେତକ । ପେଟରେ ଆହାର ପଡ଼ିବା ପରେ ବୁଢ଼ୀ ଟିକିଏ ସୁସ୍ଥ ଅନୁଭବ କଲା । ସେତିକି ସମୟ ଭିତରେ ନୀଳକଣ୍ଠ ତାଙ୍କ ଖାଇବା ଶେଷ କରି ଆସି ବସିଲେ ତା'ପାଖରେ । ବାରମ୍ବାର ପଚାରିବାରୁ ବୁଢ଼ୀ ଆରମ୍ଭ କଲା ତା ଦୈନ୍ୟ ଜୀବନର କରୁଣ କାହାଣୀ...............

*ସୁରେନ୍ଦ୍ର ନାଥ ସାହୁ*

Source: Author, Digitized by PPRACHIN, SOA

– କାମାକ୍ଷାନଗର ପାଖ ମହୁଲପଡ଼ା ଗାଁ ମୁଣ୍ଡରେ ବୁଢ଼ୀର ଘର । ଜାତିରେ ପାଣ ! ଅଛୁଆଁ, ହୀନ କପାଳୀ ହେଲେ ବି ଠାକୁରେ ତାକୁ ଦୁଇ-ଦୁଇଟା ପୁଅ ଦେଇଥିଲେ । ଦୁଇପୁଅଙ୍କ ପରେ ଏ ଝିଅ 'ନେତୀ' । ହେଲେ ଝିଅଟା ବଡ଼ ହତଭାଗିନୀ ! ଜନମରୁ ବେଡ଼ୀ ! କାନକୁ ଶୁଭୁନି କି ଜିଭ ଲେଉଟୁନି ! ! ଜନମ ହେବା ପରେ ବାପାକୁ ଖାଇଲା । ବୁଢ଼ା ମରିବାର ଅଳପ ଦିନ ପରେ ବଡ଼ପୁଅ ବରଜୁ କୋଇଲାଗାଡ଼ି ତଳେ ଚାପି ହେଇ ସେ ପାରିକୁ ଚାଲିଗଲା । ସାନ ପୁଅ 'ସନିଆଁ' ! ଗାଁ ଠିକାଦାର ପାଖେ ମୂଲ-ମଜୁରୀ କରୁଥିଲା । ମାଆ, ପୁଅ-ଝିଅ, ତିନିହେଁ ଦୁଃଖେ କଷ୍ଟେ ଚଳିଯାଉଥିଲେ ସନିଆଁର ଅଳପ ରୋଜଗାରରେ । ହେଲେ....... ! ବୁଢ଼ୀ ଆଉ କିଛି କହିପାରିଲାନି । କେବଳ ଦୀର୍ଘନିଃଶ୍ୱାସ ଛାଡ଼ିଲା ।

– ସନିଆଁ ଆଉ କାମଧାମ କରୁନି କି ମାଉସୀ ? ସିଏ ଏବେ ତମମାନଙ୍କୁ ପଚାରୁନି ନା' କ'ଣ ? ନୀଳକଂଠ ସହାନୁଭୂତି ଭରା କଣ୍ଠରେ ପଚାରିଲେ ।

ବୁଢ଼ୀ ତା' ଫଟା ପଣତ କାନିରେ ଝିଅର ଝାଳୁଆ ମୁହଁକୁ ପୋଛୁ ପୋଛୁ କହିଲା, – ନାଇଁ ବାବୁ ! ସନିଆଁ ମୋର ବଡ଼ ନିକ (ଭଲ) ପିଲା । ହେଲେ ସେ ସବାଖାଇ ଡାହାଣୀ ଘରକୁ ଆସିବା ପରେ ପୁଅ ମୋର ପୂରାପୂରି ବଦଳିଗଲା ।

ନୀଳକଣ୍ଠ ଅନୁମାନ କରିନେଲେ, ବୁଢ଼ୀର ଏ ଆକ୍ଷେପ କାହା ଉଦ୍ଦେଶ୍ୟରେ ହେଇପାରେ ! ହେଲେ ସେ କିଛି ପଚାରିବା ଆଗରୁ ବୁଢ଼ୀ କହିଲା, – ହଁ ବାବୁ, ପୁଅର ଘର ସଂସାର କରିବା ବଅସ ହେଇଯାଇଥିଲା । ମୁଁ ମଧ୍ୟ ଆଉ ଘରର କାମ ଧନ୍ଦାକୁ ପାରୁନଥିଲି । ସବୁ କଥାକୁ ଭାବି-ବିଚାରି ମୁଁ ଖୋଜି ଖୋଜି ବୋହୂଟିଏ ଆଣିଲି । ହେଲେ...... ! ବୁଢ଼ୀ ଅଳ୍ପ ଚୁପ୍ ରହି ଆଖିରୁ ଲୁହ ପୋଛିଲା । ହୃଦୟ ଭିତରୁ ଉବୁକି ଆସୁଥିବା କୋହଭରା କାହାଣୀକୁ ବୋଧେ ଅଟକେଇବାକୁ ଚେଷ୍ଟା କଲା ସେ, କିନ୍ତୁ ପାରିଲାନି । ପୁଣି ଆରମ୍ଭ କଲା, – ହେଲେ ସେ ମଉନ ମୁହାଁ ଆମ ପାଇଁ କାଳ ନାଗୁଣୀ ହବ ବୋଲି କିଏ ଜାଣିଥିଲା ବାବୁ ! ! ସିଏ ଦୁଆର ମାଡ଼ୁ ମାଡ଼ୁ ଆମ ଘରେ କଳିମଞ୍ଜି ବୁଣିଦେଲା । ଘର ମଝିରେ କାନ୍ଥ ଠିଆ କରିଦେଲା । ଦିନ କେତେଟା ଯାଇନି, ଭାଙ୍ଗିଗଲା ଆମ ସୁନାର ସଂସାର ! ସନିଆଁକୁ ସିଏ କି' ଗଦ ଶୁଂଘେଇଲା କେଜାଣି, ଭେଣ୍ଡା ପୁଅ ମୋର ମେଣ୍ଢା ପାଲଟିଗଲା । ଏବେ ସିଏ ନିକା (କେବଳ) ତା' ମାଇପ କଥାରେ ଉଠୁ ବସ ହଉଚି । ଘରେ ସେ ସବାଖାଇ ନାଗୁଣୀର ରାଜୁତି ଚାଲିଚି । ମୁଁ ତିନିକୋଡ଼ି ଆଠ ବରଷର ବୁଢ଼ୀ ଆଉ ଏ ବେଡ଼ୀ ଭଉଣୀ, ଆମେ ଆଜି ଭିକଥାଳ ଧରି ଦାଣ୍ଡରେ ବୁଲୁଚୁ, ହେଲେ ଆମ କଥା ପଚାରେ କିଏ ! !

ଅଭାଗିନୀର ଦୁଃଖଭରା କାହାଣୀ ଶୁଣି ନୀଳକଣ୍ଠଙ୍କ କୋମଳ ହୃଦୟ ସହାନୁଭୂତିର ଅଶ୍ରୁରେ ଗୋଟାପଣେ ଗାଧୋଇ ସାରିଥାଏ । କିଛି ସମୟ ସେ ଆଖି ବୁଜି ଚୁପ୍‌ଚାପ୍ ବସିଲେ ।

ତା' ପରେ ହଠାତ୍ ଗୋଟେ ସିଦ୍ଧାନ୍ତ ନେଲେ । ବୁଢ଼ୀକୁ ଡାକିନେଲେ ତାଙ୍କ ବଗିଚାକୁ । ବଗିଚା ବୋଇଲେ, କ୍ୱାର୍ଟର୍ସକୁ ଲାଗି ଦୁଇ ତିନି ଗୁଣ୍ଠ ପରିମିତ ସମତଳ ପଡ଼ିଆଟେ । ଖଣି ବିଭାଗ ତରଫରୁ ମଜବୁତ୍ ତାରବାଡ଼ ଘେରା । ବୁଢ଼ୀକୁ କହିଲେ, – ଆଜିଠୁଁ ତମେ ଦୁହେଁ ଆଉ ମାଗି ବୁଲିବା ଦରକାର ନାହିଁ! ମୋ' ଘର କାନ୍ଥକୁ ଲାଗି ଛୋଟ ଚାଳିଆଟେ ତୋଳେଇଦେବି । ମା-ଝିଅ ଦୁହେଁ ରହିବ । ଦେଖ କେତେ ବଡ଼ ଜାଗା ଖାଲି ପଡ଼ିଛି । ମୁଁ ଏକଲା ଲୋକ, ବଗିଚାରେ ଚାରାଟିଏ ବି ଲଗେଇ ପାରୁନି । ପରିଶ୍ରମ କଲେ ସବୁ ଫସଲ ହେଇ ପାରିବ ଏ' ମାଟିରେ । ପାଣିର ଅସୁବିଧା ନାହିଁ । ଖତ,ସାର,ବିହନ, ସବୁ ମୁଁ ଯୋଗେଇଦେବି । ତମେ ଖାଲି କୋଡ଼ା ଖୋସା କରି, ପାଣିପୁଣା ଦେଇ ଯତ୍ନ ନେବ ବାଡ଼ି ବଗିଚାର । ଯାହା ଫଳିବ, ତୁମେ ଦୁହେଁ ଖାଇବ । ବଳିଲେ ତାକୁ ନେଇ କଲୋନୀର ଘରେ ଘରେ ବିକ୍ରି କରିବ । ଅପୋଷା ରହିବନି ତମର ଦୁଇଟା ପେଟ । କ'ଣ ପାରିବ ତ ମାଉସୀ ? ପ୍ରଶ୍ନିଳ ଆଖିରେ ନୀଳକଣ୍ଠ ଚାହିଁଲେ ବୁଢ଼ୀକୁ ।

ବୁଢ଼ୀ ଜଳଜଳ କରି ଅନେଇଥିଲା ଦେବଦୂତ ଭଳି ଦେଖାଯାଉଥିବା ସେ ବାବୁ ଜଣକୁ । କୁହୁଡ଼ି ସେ ପାରିର ଗଛବୃଛ ଭଳି ବାବୁଙ୍କ କଥା ଗୁଡ଼ାକ ଝାପ୍‌ସା ଝାପ୍‌ସା ଲାଗୁଥିଲା ତାକୁ! ଏତେ ବଡ଼ ସରକାରୀ ଚାକିରିଆ ବାବୁ, ତା' ପରି ଗୋଟେ କାଙ୍ଗାଳୁଣୀକୁ ଟାପରା କରୁନାହାନ୍ତି ତ ? ଜାତିରେ ପୁଣି ସେ ଅଛୁଆଁ ପାଲୁଣୀ ! ବାବୁ ତ କେଡ଼େ ବଡ଼ ବ୍ରାହ୍ମଣଘର ପୁଅ ନାଖେ (ଭଳି) ଦିଶୁଛନ୍ତି ! ବାବୁଙ୍କ ବୟସର ତାଆରି ପୁଅ, ଯାହାକୁ ସେ ଅନ୍ତ ଫାଡ଼ି ଜନମ ଦେଇଥିଲା, ସିଏ ଗୋଇଠା ମାରି ତଡ଼ି ଦେଇଚି ଘରୁ । ଆଉ ଇଏ ପୁଣି କୋଉ ମାଆର ପୁଅ, ଦାଣ୍ଡରେ ବୁଲୁଥିବା ଗୋଟେ ମେଳେଛ ପାଲୁଣୀକୁ ଡାକିଆଣି ଆଶରା ଦଉଛନ୍ତି ଘରେ ! ବାବୁ ଆଉ ତାକୁ ଥଟ୍ଟା କରୁନାହାନ୍ତି ତ ? ବୁଢ଼ୀ ଆଖିରେ ପ୍ରଶ୍ନିଳ ବିସ୍ମୟ !

ନୀଳକଣ୍ଠ ତାକୁ ଥଟ୍ଟା କରୁନଥିଲେ ! ସତକୁ ସତ ଦିନ ଦି'ଟାରେ ଛୋଟ ଚାଳିଆଟିଏ ଠିଆ ହେଲା ନୀଳକଣ୍ଠଙ୍କ ପାଚେରୀ କଡ଼େ । ମାସ କେଇଟା ଭିତରେ ନୁଖୁରା ପଡ଼ିଆଟା ତାଙ୍କର ହସି ଉଠିଲା ଛନଛନିଆ ସବୁଜିମା ଓ ଫୁଲ,ଫଳର ପ୍ରାଚୁର୍ଯ୍ୟରେ ! ବୁଢ଼ୀ କିନ୍ତୁ ଉପଭୋଗ କରିପାରିଲାନି ବେଶିଦିନ ସେ ସୁଖ ସମୃଦ୍ଧିକୁ । ପୂର୍ବରୁ ହିଁ କିଡ଼ନୀ ରୋଗରେ ଆକ୍ରାନ୍ତ ଥିଲା ସେ । କୋଲିୟାରି ବଡ଼ ଡାକ୍ତରଖାନାରେ ନୀଳକଣ୍ଠ ତା' ଚିକିତ୍ସାର ବନ୍ଦୋବସ୍ତ କରାଇଥିଲେ । ନୀଳକଣ୍ଠଙ୍କ ପୁତ୍ର ସୁଲ୍ଲଭ ଯତ୍ନ ଓ ସେବା-ସହାୟତା ସତ୍ତ୍ୱେ ବର୍ଷ ଦୁଇଟା ପରେ ସେପାରିକୁ ଚାଲିଗଲା ବୁଢ଼ୀ । ହେଲେ ମାଆର ବିୟୋଗ ପରେ 'ନେତୀ' ଅସହାୟା ହୋଇଯାଇନଥିଲା । ନୀଳକଣ୍ଠ ତାକୁ ବିନା ଦ୍ୱିଧାରେ ଗ୍ରହଣ କରି ନେଇଥିଲେ ସାନ ଭଉଣୀ ଭାବରେ ! ଆଉ ସେଇଦିନୁ ଅସ୍ପୃଶ୍ୟା ନେତୀ ପାଲଟି ଯାଇଥିଲା ଜାତିଶ୍ରେଷ୍ଠ ପାଢ଼ି ପରିବାରର ଜଣେ ସଦସ୍ୟା !

*ସୁରେନ୍ଦ୍ର ନାଥ ସାହୁ*

ନୀଳକଣ୍ଠଙ୍କ ବିବାହ ସରିଥାଏ ସେତେବେଳକୁ । ପରିବାରର ମାନ ରଖି ସେ ନିଜ ଜାତିରେ ହିଁ ବିବାହ କରିଥିଲେ; କିନ୍ତୁ ନନା ବୋଉଙ୍କର ପୂର୍ଣ୍ଣ ସମର୍ଥନ ନ'ଥିଲା ସେ ବାହାଘରେ । ଅସଲ କଥା ହେଲା, ବୋହୂ 'ସାଗରୀକା' ବ୍ରାହ୍ମଣ ଝିଅ ହେଲେ ବି ଦେଖିବାକୁ ଶ୍ୟାମଳୀ ! ସେଥିରେ ପୁଣି ଗରିବ ପରିବାରର କନ୍ୟା ! ସେଥିପାଇଁ ତା'ର ଅନେକ ବିବାହ ପ୍ରସ୍ତାବ ଭାଙ୍ଗି ଯାଇଥିଲା । ବୟସ ବଢ଼ି ଚାଲିଥିଲା । ରଙ୍ଗିନ୍ ଗୋଲାପ ବଗିଚାରେ ବିଚାରୀ 'କଳାଦୁଦୁରା'ଟେ ଭଳି ଅନାଦୃତା ହୋଇ ପଡ଼ିଥିଲା ଘରକୋଣେ । ଦୁଦୁରା ଭଳି ଅଲୋଡ଼ା ଫୁଲ ନୀଳକଣ୍ଠ ମହାଦେବଙ୍କର ପ୍ରିୟ । ଠିକ୍ ସେମିତି ଆମ ନୀଳକଣ୍ଠ ବାବୁ ଆପଣେଇ ଆଣିଥିଲେ ଶ୍ୟାମଳୀ ସାଗରୀକାଙ୍କୁ ।

ବିବାହ ପରେ ସେ ଜାଣିଲେ, ସାଗରୀକା ଦେଖିବାକୁ ସିନା କଳା, ହେଲେ ହୃଦୟ ତାଙ୍କର କଳା ଶାମୁକା ଭିତରେ ମୋତିଟିଏ ଭଳି ଉଜ୍ଜ୍ୱଳ । ଅନ୍ତରଟା ସାଗର ଭଳି ବିଶାଳ ! 'ନେତୀ' କୁ ଭଉଣୀ ରୂପେ ଘରକୁ ଆଣିବା ସମ୍ପର୍କରେ ନୀଳକଣ୍ଠ ଯେତେବେଳେ ତାଙ୍କ ମତାମତ ଚାହିଁଲେ, ସେ କହିଥିଲେ, – ଚର୍ମର ରଙ୍ଗ ସିନା ଅଲଗା, ହେଲେ ରକ୍ତର ରଙ୍ଗ ତ ଅଲଗା ନୁହେଁ, ଜଣେ ଅସହାୟାକୁ ସାହା ହେବା ହିଁ ମଣିଷର ଅସଲ ଧର୍ମ ! ଆଜିଠୁଁ ନେତୀ ମୋ' ନଣନ୍ଦ ହେଇ ରହିବ ଏ ଘରେ ।

ନୀଳକଣ୍ଠଙ୍କ ନନା ବ୍ରହ୍ମାନନ୍ଦ ପାଢ଼ି ପୁଅର ଏ କୀର୍ତ୍ତିକଳାପ ଗୁଡ଼ିକ ଶୁଣି ଶୁଣି ଶଯ୍ୟାଶାୟୀ ହେଇସାରିଥିଲେ । ପୁଅ ଜାତିଶ୍ରେଷ୍ଠ ବ୍ରାହ୍ମଣ ହୋଇ ଗୋଟେ ପାଲୁଣୀ ଝିଅକୁ ଭଉଣୀ କରି ଘରକୁ ଆଣିବା କଥା ଶୁଣିବା ମାତ୍ରେ ଦୁଃଖ ଓ ଅପମାନରେ ଦେହତ୍ୟାଗ କଲେ ସେ ।

ଏ ଘଟଣା ଥିଲା ସେ ସମୟର ବର୍ଣ୍ଣବିଦ୍ୱେଷୀ ବ୍ରାହ୍ମଣ ସମାଜ ଭିତରେ ଗୋଟେ ପ୍ରଚଣ୍ଡ ବିସ୍ଫୋରଣ ! ସେ ବିସ୍ଫୋରଣରେ କ୍ଷତାକ୍ତ ହୋଇ ନୀଳକଣ୍ଠ ବ୍ରାହ୍ମଣ ସମାଜରୁ ଛିଟ୍‌କି ଆସି ବାହାରେ ପଡ଼ିଥିଲେ । ନନାଙ୍କର ତ୍ୟଜ୍ୟପୁତ୍ର ହୋଇ ସାରିଥିଲେ । କିନ୍ତୁ 'ବିବେକ'ର ନିକିତିରେ ନିଜ ବିଚାରକୁ ତଉଲିବା ନୀଳକଣ୍ଠ ନିଜ ସିଦ୍ଧାନ୍ତରୁ ତିଳେ ବି ବିଚ୍ୟୁତ ହୋଇନଥିଲେ ।

ତା' ପର ବର୍ଷ । ନୀଳକଣ୍ଠଙ୍କ ବଦଳି ହୋଇଯାଇଥିଲା ତାଳଚେରରୁ ସୁଦୂର ଧାନବାଦ୍‌ର ଗୋଟେ କୋଇଲାଖଣିକୁ । ଅର୍ଥାତ୍ ଦୁଇ ହଜାର ଏଗାର ମସିହା ପରଠାରୁ ତାଙ୍କ ସହିତ ମୋର ଆଉ ଭେଟ ନାହିଁ । ଅନେକ ସମୟରେ କିନ୍ତୁ ତାଙ୍କ ନିରୋଳା ମାନବିକତାର କଥା ମୋର ମନେ ପଡ଼େ । ଶ୍ରଦ୍ଧା ଓ ସମ୍ମାନରେ ଅନ୍ତର ପୂରି ଉଠେ । ସତରେ ଆମର ଏ

ସ୍ୱାର୍ଥସର୍ବସ୍ୱ ସମାଜରେ ଏମିତି ବି ମଣିଷ ଅଛନ୍ତି ଯିଏ ଘଟଣାଚକ୍ରରେ ପାଲଟି ଯାଆନ୍ତି 'ଈଶ୍ୱର' ! ଅନ୍ୟର ମଙ୍ଗଳ ପାଇଁ ଭଗବାନ୍ ଶିବଙ୍କ ଭଳି ହଳାହଳ ପାନ କରି ହୋଇ ପାରନ୍ତି ନିଜେ 'ନୀଳକଣ୍ଠ' !

ହଠାତ୍ ଦିନେ, ଏଇ ଗତ ସପ୍ତାହର କଥା । ଗୋଟେ ଦୈନିକ ସଂବାଦ ପତ୍ରର ବିଜ୍ଞାପନ ସ୍ତମ୍ଭରେ ବିଜ୍ଞାପନଟିଏ ଦେଖିବାକୁ ପାଇଲି ମୁଁ । ବିଜ୍ଞାପନଦାତା ଥିଲେ ଧାନବାଦରୁ ସ୍ୱୟଂ ନୀଳକଣ୍ଠ ପାଢ଼ି । ନୀଳକଣ୍ଠଙ୍କ ନାଆଁଟି ପଢ଼ିବାମାତ୍ରେ ମୋ' କୌତୂହଳ ବଢ଼ିଗଲା ! ଲେଖାଥିଲା, 'ନେତୀ' ପାଇଁ ପାତ୍ର ଆବଶ୍ୟକ । ତା'ଅଭିଶପ୍ତ ଜୀବନର ସମଗ୍ର କାହାଣୀ ସ୍ପଷ୍ଟଭାବେ ଚିତ୍ରଣ କରାଯାଇଥିଲା ସେଥିରେ ଏବଂ ଆହ୍ୱାନ କରାଯାଇଥିଲା କୌଣସି ହୃଦୟବାନ୍ ଯୁବକକୁ, ଯିଏ 'ନେତୀ' ଭଳି ଗୋଟେ ଭିନ୍ନକ୍ଷମ ଝିଅକୁ ନିର୍ବିବାଦରେ ଗ୍ରହଣ କରିପାରିବ ଜୀବନ ସଙ୍ଗିନୀ ଭାବେ ।

ବିଜ୍ଞାପନଟି ପଢ଼ି ମୁଁ ଅଭିଭୂତ ହେଇଗଲି । ଅନ୍ତରରେ ପ୍ରଣାମ କଲି ନୀଳକଣ୍ଠଙ୍କୁ । ମନେ ମନେ ଭାବିଲି, ନେତୀ ଭଳି ଗୋଟେ ଆଜନ୍ମ ମୂକବଧୀରା, ଅଛବ ଝିଅକୁ ଆପଣେଇ ନେବାପାଇଁ ଆଜି ଆମ ସମାଜରେ ନୀଳକଣ୍ଠ ପାଢ଼ିଙ୍କ ଭଳି ମଣିଷ କ'ଣ ସତରେ ମିଳିବେ ? ଯେଉଁ ଯୁବକ ଏଥିପାଇଁ ଆଗେଇ ଆସିବ, ତାକୁ ହେବାକୁ ପଡ଼ିବ ଆମ ନୀଳକଣ୍ଠଙ୍କ ଭଳି ଆଉଜଣେ ନୀଳକଣ୍ଠ ! ସତରେ କେହିଜଣେ ଆଗେଇ ଆସିବ ଏଥିପାଇଁ ? ଏହି ପ୍ରଶ୍ନଟି ସହିତ ମୋ' ଉତ୍କଣ୍ଠା ଧୀରେଧୀରେ ପ୍ରଶମିତ ହୋଇଗଲା । ଭାବନାର ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ଲେଖାଟି ବାସି ଖବରରେ ପରିଣତ ହୋଇଗଲା ।

ପରଦିନ ସକାଳ ! ସକାଳର ଚାହା କପ୍ ଧରି ମୁଁ ଅଭ୍ୟାସଗତ ଭାବେ ସେ ଦିନର ପେପର୍ ଖୋଜିବା ବେଳକୁ ଟେବୁଲ ଉପରେ ସେହି ପୁରୁଣା କାଗଜଟିକୁ ଦେଖି ଆଶ୍ଚର୍ଯ୍ୟ ହେଲି ମୁଁ । ଭାବିଲି, କାଗଜ ଥାକରେ ରଖିଦେଇଥିବା ଗତ କାଲିର ପେପରଟା ପୁଣି ଆଣି ଟେବୁଲ ଉପରେ କିଏ ରଖିଲା ? ମୋ' ସ୍ତ୍ରୀ ବନିତା ଯେତେ ଦିନ ପର୍ଯ୍ୟନ୍ତ ବଂଚିଥିଲେ, ଘରର ସବୁ ଯତ୍ନ ସିଏ ନେଉଥିଲେ । ଏବେ ମୁଁ ଏକା ! ଅମ୍ଳାନ ଅବଶ୍ୟ ପଢ଼ା ସାରି ଏଇ ଖଣି ନିଗମରେ ବର୍ଷେ ହେଲା ଚାକିରି କଲାଣି । କେବଳ ଆମେ ବାପା-ପୁଅ ଦୁହେଁ ଏ'ଘରେ ରହୁଚୁ । ସାଙ୍ଗ ହେଇ ରୋଷେଇ-ବାସ କରି ଚଳୁଚୁ । ଘରକୁ ବୋହୂଟେ ନ' ଆସିବା ପର୍ଯ୍ୟନ୍ତ ଏମିତି ଚଳିବାକୁ ପଡ଼ିବ । ଘରର ଅନ୍ୟାନ୍ୟ କାମ ପାଇଁ କାମବାଲୀ 'ଲକ୍ଷ୍ମୀ' ଆସୁଚି । ଭାବିଲି, ସେଇ ଅପାଠୋଇ ଲକ୍ଷ୍ମୀ ବୋଧେ ଜାଣି ନ ପାରି ଗତକାଲିର ପୁରୁଣା ପେପରଟା ଆଣି ଟେବୁଲ ଉପରେ ରଖିଦେଇଛି । ଘରଣୀ ନଥିବା ଘରେ ବେଳେ ବେଳେ ଏମିତି ସବୁ ବିଭ୍ରାଟ ହୁଏ । ହେଲେ ଶାଶୁ ନଥିବା ଘରକୁ ସହଜେ ବୋହୂଟେ ବି ମିଳୁଚି କୁଆଡୁ ?

ଆନମନା ହେଇ ମୁଁ ସେ ପୁରୁଣା ପେପରର ଦୁଇ ପୃଷ୍ଠା ଆଡ଼େଇଲି । ଗତକାଲି ପଢ଼ିଥିବା ନୀଳକଣ୍ଠଙ୍କ ବିବାହ ବିଜ୍ଞାପନ ଉପରେ ପୁଣିଥରେ ଆଖି ବୁଲେଇ ଆଣିଲି । ସ୍ଥିର ହେଇଗଲା ମୋ' ଆଖି । କାରଣ ଖବରଟିକୁ ଗାଢ଼ ନାଲି କାଳିରେ ଅଣ୍ଡରଲାଇନ୍ କରା ଯାଇଥିଲା । ଆଶ୍ଚର୍ଯ୍ୟ ! ଏମିତି କିଏ କଲା, ମୁଁ କିଛି ବୁଝି ପାରିଲିନି । ବୁଝିବା ଆଗରୁ ମୋ' ପୁଅ ଅମ୍ଳାନ୍ ସ୍ମିତ ହସି ମୋ' ଆଗରେ ଠିଆ ହେଲା । ମୁଣ୍ଡ ପୋତି କହିଲା,- ବାପା ! ସେଇଟା ମୁଁ ହିଁ କରିଚି, ଖବରଟା ଆପଣଙ୍କ ଦୃଷ୍ଟିକୁ ଆସିବ ବୋଲି । ଆପଣ ଯଦି ଆଶୀର୍ବାଦ ଦେବେ, ତା'ହେଲେ ମୁଁ ନୀଳକଣ୍ଠ ସାର୍‌ଙ୍କ ଭଉଣୀ ନେତୀକୁ ଜୀବନ ସାଥୀ ରୂପେ ଗ୍ରହଣ କରିବି !

ଅମ୍ଳାନର କଥା ଶୁଣି ମୁଁ କ୍ଷଣିକପାଇଁ ହତବାକ୍ ହେଇଗଲି । ଆଶ୍ଚର୍ଯ୍ୟ ! ମୋ' ପୁଅ ଅମ୍ଳାନ ନେତୀକୁ ଜୀବନସାଥୀ କରିବା କଥା ଭାବିଚି ! ! ଘରକୁ ବୋହୂଟିଏ ଦରକାର, କାହିଁ ଏ କଥା ତ ମୁଁ ଥରେ ବି ଭାବି ନଥିଲି ! ଯଦିଓ ନୀଳକଣ୍ଠଙ୍କ ମହାନତା ପାଇଁ ମୁଁ ମନେମନେ ତାଙ୍କୁ ଏତେ ପ୍ରଶଂସା କରୁଛି । ତାଙ୍କ ମାନବୀୟ ଉଦାରତା ଆଗରେ ମୁଣ୍ଡ ନୁଆଁଉଚି । ପ୍ରଣାମ କରୁଛି । ହେଲେ ତାଙ୍କ ଭଳି ମହାନ୍ ହେବାର ଅବସର ମୋ' ହାତପାହାନ୍ତାକୁ ଆସିବାବେଳକୁ ମୋ' ବୁଦ୍ଧି ବିବେକ କେମିତି ଜଡ଼ ପାଲଟିଗଲା ? ନେତୀକୁ ବୋହୂରୂପେ ଆପଣେଇ ଆଣିବା କଥା ମୁଁ କଳ୍ପନା ବି କରିନଥିଲି । ଅମ୍ଳାନର କଥା ଶୁଣି ବିସ୍ମୟ ଓ ଆନନ୍ଦରେ ଅନ୍ତର ମୋ'ର ପୂରି ଉଠିଲା । ଗଦ୍‌ଗଦ୍ ହୋଇଗଲା ହୃଦୟ ! ଅମ୍ଳାନକୁ ଆବେଗରେ କୋଳେଇ ନେଇ କହିଲି, -ବାବୁରେ ! ମୁଁ ଧନ୍ୟ ହୋଇଗଲି । ତୁ ମୋ' ପାଇଁ ହେଇଗଲୁ 'ଆଉଜଣେ ନୀଳକଣ୍ଠ' !



# ଅଶାନ୍ତ ଆତ୍ମା

ସୂତୁଲିରେ ଗୁନ୍ଥା ହେଇଥିବା ଧାଡ଼ିଏ ଚାଇନା ଫୋଟକା ଅଗରେ ଧାପେ ନିଆଁ ଧରେଇ ଦେଲେ କ୍ଷଣିକ ଭିତରେ ପେନ୍ଥାକ ଯାକ ଫୋଟକା ଢୋ' ଢା' ଫୁଟିବା ଭଳି ରହସ୍ୟର ନିଆଁ ଝୁଲଟା ରଘୁ ନାହାକଙ୍କ ଘରୁ ବାହାରି ଗାଆଁଟା ସାରା ହୁଲସ୍ଥୁଲ୍ ହେବାକୁ ନିମିଷେ ବି ଲାଗିଲାନି ।

ଘଟଣାଟା ହେଲା, ରଘୁ ନାହାକଙ୍କ ସାନବୋହୂ ଦେହକୁ ପ୍ରେତ ଆସିଛି !

ଗାଁ' ଲୋକଙ୍କ ପାଇଁ କଥାଟା ସତରେ ଥିଲା ବଡ଼ ରୋଚକ ! ଦେହରେ ପ୍ରେତ ସବାର ହବା, ଡାହାଣୀ ଲାଗିବା, ମଙ୍ଗଳା ଆସିବା, ଠାକୁରାଣୀ ପ୍ରସନ୍ନେଇବା ଭଳି ଘଟଣା 'କେନ୍ଦୁଆପଲ୍ଲୀ' ଲୋକଙ୍କ ପାଇଁ ମାମୁଲି କଥା ହେଲେବି ରଘୁ ନାହାକଙ୍କ ସାନବୋହୂ ଭଳି ଜଣେ ଉଚ୍ଚଶିକ୍ଷିତା, ସଂଭ୍ରାନ୍ତ ଓ ସହରୀ ମହିଳାଙ୍କୁ ପ୍ରେତ ଲାଗିବା କଥାଟାକୁ ସହଜେ ବିଶ୍ୱାସ କରିପାରୁନଥିଲେ କେହି ।

-ଆରେ ! ବୋହୂଟା କେତେ ପାଠ-ଶାଠ ପଢ଼ିଚି । ବିଦେଶରେ ବଡ଼ ଚାକିରି କରିଚି ! ଗୁଣି ଗାରେଡ଼ି, ତନ୍ତ୍ରମନ୍ତ୍ର, ଭୂତପ୍ରେତକୁ ଏମାନେ ତ ମୋଟୁରୁ ବିଶ୍ୱାସ କରନ୍ତିନି । ହେଲେ ବଡ଼ ଆଚମ୍ବିତ କଥା, ବୁଢ଼ା ନ'ଆସି ନ'ଆସି ଶେଷରେ ତାଆରି ଦିହକୁ ଆସିଲା ! !

-ବୁଝିଲ, ତା' ପରିବାର ଭିତରେ ଏଇ ସାନ ବୋହୂଟି ହିଁ ଭଲ ବୋଲି ବୁଢ଼ା କହେ । ଗତ ବରଷ ଶାଶୁବୁଢ଼ୀର ମଲା କାମରେ ବେଙ୍ଗାଲୋର୍‌ରୁ ଆସି ଏ ବୋହୂ ପରା ବୁଢ଼ା ପାଖରେ ମାସେକାଳ ରହିଥିଲା ? ବୁଢ଼ାର ସେବାଯତ୍ନ କରିଥିଲା । ରଘୁ ଏ ବୋହୂଟିକୁ ଭାରି ଭଲପାଏ । ଜାଣିଲ, ଯିଏ ଯାହା ଆତ୍ମା କଥା ଜାଣିଥାଏ, ମଲାପରେ ତା' ଆତ୍ମା ତାଆରି ଦିହକୁ ଆସେ ।

ଗାଁ' ଲୋକେ ପରସ୍ପର ମଧ୍ୟରେ ଏଭଳି ନାନା ଆଲୋଚନା କରି ଧପାଲୁଥିଲେ ରଘୁ ନାହାକଙ୍କ ଘରମୁହାଁ ।

ମାଛର ମଝିଖଣ୍ଡ ଭଳି ଗାଆଁ ମଝାମଝି ରଘୁ ନାହାକଙ୍କ ଘର । ଅଧା କୋଠା, ଅଧା ଛପର । ପିଅନ ଚାକିରିର ନଅଣ୍ଟିଆ ଜୀବନରେ ବହୁ ଅଭାବ ଅନଟନକୁ ସାମନା କରି ମଧ୍ୟ ରଘୁ ନାହାକ ଦୁଇ ପୁଅକୁ ଢ଼େର୍ ପାଠ ପଢ଼େଇଲେ । ଝିଅକୁ ସାଧ୍ୟମତେ ଯାନି-

*ସୁରେନ୍ଦ୍ର ନାଥ ସାହୁ*

ଯଉତୁକ ଦେଇ ବଡ଼ ଘରେ ବାହା ଦେଲେ । ଏସବୁ କାମ କରୁକରୁ ତାଙ୍କ ଘରକାମଟା ଅଧାରେ ଅଟକିଗଲା । ଅବୋଲକରା କାହାଣୀର ଅଂଟା ତଳକୁ ଅଧା-ପଥରର ଅଭିଶପ୍ତ ମଣିଷ ଭଳି ଘରର ସାମନା ଅଧକ କୋଠା, ପଛ ଖଞ୍ଜାକ ଚାଳ ଛପର !

ସେଇ ଘର ଆଗରେ କ୍ରମେ ଭିଡ଼ ଜମୁଥିଲା କୌତୁହଳୀ ଗାଁ' ଲୋକଙ୍କର ।

ଗାଆଁ କହିଲେ, ଦେଢ଼'ଶ ଖଣ୍ଡେ ପରିବାରକୁ ନେଇ ଚକଡ଼ାଏ ବୋଲି ଜନବସତି, 'କେନ୍ଦୁଆପଲ୍ଲୀ' । ଜାପାନୀ ପ୍ରଣାଳୀ ଧାଡ଼ିରୁଆ ଭଳି ସିଧାସିଧା ଆଠଦଶ ସାହି ଛପର ଘର । ରଘୁ ନାହାକଙ୍କୁ ବାଦ୍ ଦେଲେ 'କେନ୍ଦୁଆପଲ୍ଲୀ'ର ସମସ୍ତେ ଭାଗଚାଷି ଆଉ ଦିନ ମଜୁରିଆ । ୧୯୪୧ ମସିହାରେ ମାଇନର୍ ପାସ୍ କରି ସରକାରି ଅଫିସରେ ପିଅନ୍ ଚାକିରି କରିଥିବା ରଘୁ ନାହାକ ଅବଶ୍ୟ ଗାଆଁର ଜଣେ ଶିକ୍ଷିତ,ସଂପନ୍ନ ଲୋକରେ ଗଣା ହେଉଥିଲେ । ପାଠର ମର୍ଯ୍ୟଦା ଜାଣିଥିଲେ ବୋଲି ସେଭଳି ଗୋଟେ ନିପଟ ମଫସଲରେ ରହି ମଧ୍ୟ ସେ ଦୁଇ ପୁଅକୁ ଉଚ୍ଚ ଶିକ୍ଷିତ କରେଇଲେ । ପିଲାଙ୍କ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ସାରା ଜୀବନ ସେ ଯେଉଁ କଷ୍ଟ ଉଠେଇଛନ୍ତି, ସେ'କଥା ଲେଖିଲେ ପୁରାଣଟିଏ ହେବ । ସଂସାରର ସବୁ ଚପରାସି-ବାପାଙ୍କ ଭଳି ତାଙ୍କର ବି ସ୍ୱପ୍ନ ଥିଲା, ପିଲାମାନେ ବଡ଼ ହେଲେ ଦିନେ ଅଫିସର-ପ୍ରଫେସର ହେବେ । ଦେଶବିଦେଶ ବୁଲିବେ ।

ଯା'ହଉ, ଦିନେ ତାଙ୍କ ଅଭିଳାଷ ପୂରଣ କଲେ ଠାକୁରେ । ଦୁଇପୁଅ ବିଦେଶୀ କୋମ୍ପାନୀରେ ଉଚ୍ଚ ପଦପଦବୀରେ ଚାକିରି କଲେ । ଲକ୍ଷ ଲକ୍ଷ ଟଙ୍କା ଦରମା ପାଇଲେ ! ଅଜାତି ହୁଅନ୍ତୁ ପଛେ, ନିଜ ପସନ୍ଦର ଝିଅ ବାହା ହେଲେ । ସୁନ୍ଦରୀ, ସୁକୁମାରୀ ପତ୍ନୀମାନଙ୍କୁ ଧରି ଦେଶବିଦେଶ ବୁଲିଲେ ।

ଏପଟେ ରଘୁ ନାହାକ ପିଅନ ଚାକିରିରୁ ଅବସର ନେଇ ନିଜ ରୋଗିଣା ପତ୍ନୀକୁ ଧରି 'କେନ୍ଦୁଆପଲ୍ଲୀ'ର ସେ ଅଭିଶପ୍ତ ଅଧା-କୋଠାରେ ଦିନ କାଟିଲେ । ବାର୍ଦ୍ଧକ୍ୟ ସହିତ ରୋଗ-ବଇରାଗମାନେ ତାଙ୍କ ଘରେ ନିତି କୁଣିଆ । ପେନସନ୍ ଯାହା ମିଳେ, ସେତିକିରେ ଦୁଇପ୍ରାଣୀଙ୍କର ଚଳିବା କାଠିକର ପାଠ । ସେଥିରେ ପୁଣି ବୁଢ଼ୀର ଚିକିତ୍ସା ଖର୍ଚ୍ଚ !

ପୁଅ ଦୁହିଁଙ୍କୁ ପିଲାଟିବେଳୁ ରଘୁ ଖୁବ୍ ହିସାବରେ ଚଳିବା ଶିଖେଇଛନ୍ତି, ତେଣୁ ଦୁଇପୁଅ ହିସାବ କରି ଦେଖନ୍ତି, ବୁଢ଼ାବୁଢ଼ୀ ଦୁଇ ପ୍ରାଣୀ, ମଫସଲ ଜାଗାରେ ଚଳିବାପାଇଁ ବାପାଙ୍କ ପେନ୍‌ସନ୍ ଟଙ୍କା ଢେ'ର୍ । ଆଉ ଅଧିକ ଅର୍ଥ ପଠେଇଲେ ଭାଇବନ୍ଧୁ ଭାଗ ବସିବେ, ନ'ହେଲେ ଚୋର ଖଂଟ ଖାଇବେ । ତଥାପି ରଘୁ ନାହାକଙ୍କୁ ହତାଶ କି ଦୁଃଖି ହେବାର କେହି କେବେ ଦେଖିନି । ଗାଆଁର କେହି ପୁରୁଖା ଲୋକ ପିଲାମାନଙ୍କ ବିଷୟରେ ପଚାରିଲେ ରଘୁ ଛାତି ଫୁଲେଇ କହନ୍ତି, "ପିଲେ ଯେ'ଝା ଜାଗାରେ ଖୁଉବ୍ ଭଲରେ ଅଛନ୍ତି । ଝିଅ

'ରେଖା' ବଡ଼ଘରେ ବୋହୂ ହେଇଚି । ସାନପୁଅ ପ୍ରକାଶକୁ ତା' କୋମ୍ପାନୀ ଆମେରିକା ପଠେଇଚି । ବଡ଼ପୁଅ ପ୍ରତାପ ଦିଲ୍ଲୀରେ ଗୋଟେ ଫ୍ଲାଟ୍ କିଣିବ ବୋଲି କହୁଥିଲା ।"

ରଘୁ ନାହାକ ଖୁବ୍ ଦାମ୍ଭିକତାର ସହିତ ଏ କଥା ବାହାରେ କହନ୍ତି । କିନ୍ତୁ ଘରକୁ ଆସିଲେ ଘରର ଦରଖଣ୍ଡିଆ ଛାତକୁ ଅନେଇ ଦୀର୍ଘ ନିଃଶ୍ୱାସ ଛାଡ଼ନ୍ତି । ପିଲାଙ୍କ ସ୍ୱପ୍ନକୁ ରୂପ ଦେଉଦେଉ ତାଙ୍କ ସ୍ୱପ୍ନ କେମିତି ବିରୂପ ବିକୃତ ହେଇ ଅଧାରେ ରହିଗଲା, ଦେଖନ୍ତି ସେ । ଖଣ୍ଡିଆ ଛାତରୁ ଲମ୍ବିଥିବା ବିକଳାଙ୍ଗ ଲୁହାଛଡ଼ମାନେ ଖତେଇ ହୁଅନ୍ତି ରଘୁଙ୍କ ଭଳି ଜଣେ ଅପାରଗ ଅଘରି ମଣିଷକୁ ଦେଖି ।

ରଘୁ ଭାବିଥିଲେ, ରୂପକଥାର ସେ ଅଭିଶପ୍ତ ରଜାପୁଅକୁ କେହିଜଣେ ଗନ୍ଧର୍ବ ଆସି ଛୁଇଁଦେବାରୁ ସିଏ ଯେମିତି ଅଧା ପଥରରୁ ପୂରା ମଣିଷ ପାଲଟିଗଲା, ସେମିତି ତାଙ୍କ ପୁଅମାନେ ଆସି ଦିନେ ନିଶ୍ଚୟ ଏ ଘରକୁ ଶାପମୁକ୍ତ କରିଦେବେ । ତାଙ୍କ ସ୍ୱପ୍ନର ଘରକୁ ଦିନେ ପୂର୍ଣ୍ଣରୂପ ମିଳିବ; କିନ୍ତୁ ତାହା ସମ୍ଭବ ହେଲାନି ।

ରଘୁ ଅବସର ନେବାର ଦଶବର୍ଷ ଭିତରେ ପୁଅବୋହୂମାନେ ଘରକୁ ଆସିଥିଲେ ମାତ୍ର ତିନିଥର । ଝିଅଟା ବଡ଼ଘରେ ସିନା ବୋହୂ ହେଇଗଲା, ହେଲେ ସେ ଘରର ସମ୍ବନ୍ଧି ହେବାପାଇଁ ପିଅନ ରଘୁ ନାହାକଙ୍କ ଉଚ୍ଚତା ପାଇଲାନି । ଝିଅ ରେଖା ଏବେ ସେ ଘରେ ପଞ୍ଜୁରୀ ଭିତର୍ ଶୁଆ ! ଗତବର୍ଷ ବୁଢ଼ୀ ମଲାବେଳକୁ ସେମାନେ ତାକୁ କେବଳ ଦିନକ ପାଇଁ ପଠେଇଥିଲେ ବାପ ଘରକୁ । ଗଲାବେଳେ ରେଖା ବାପାଙ୍କ ହାଡୁଆ ଛାତିରେ ମୁଣ୍ଡ ରଖି ଗୋଟେ ଦୀର୍ଘଶ୍ୱାସ ଛାଡ଼ିଥିଲା । ରଘୁ ବୁଝିପାରିଥିଲେ, ତା' ନିଃଶ୍ୱାସ ବାୟୁରେ କେତେ ଅସହାୟତାର ଅଣୁ ପରମାଣୁ ଉଡ଼ି ବୁଲୁଚନ୍ତି !

ମା' ମରିବା ଖବର ପାଇ ମଧ୍ୟ ସାନପୁଅ ଆମେରିକାରୁ ଆସିପାରିନଥିଲା । ବଡ଼ ପୁଅ ବୋହୂ ଅବଶ୍ୟ ତୃତୀୟ ଦିନରେ ଆସି ପହଂଚିଲେ ଦିଲ୍ଲୀରୁ । ସେତେବେଳକୁ ବୁଢ଼ୀର ଧରମପୁଅ 'ଗଉରା' ଗାଆଁ ଲୋକଙ୍କୁ ଧରି ସବୁ କାମ ସାରିଦେଇଥିଲା । ମୁଖାଗ୍ନି ଦେବାଠୁଁ ଆରମ୍ଭ କରି ପ୍ରେତକ୍ରିୟା ଧରିବା ପର୍ଯ୍ୟନ୍ତ !

ସାନବୋହୂ 'ସୁସ୍ମିତା' ଅଜାତିର ହେଲେ ବି ଓଡ଼ିଆ ଝିଅ । ତା'ସ୍ୱାମୀ ତିନି ବର୍ଷ ପାଇଁ ଆମେରିକାରେ, ଆଉ ସିଏ ବାଙ୍ଗାଲୋରରେ ଚାକିରି କରୁଚି । ତା'ର ଚାରି ବରଷର ପୁଅଟିଏ, 'ଗୋଲୁ' । ଚାକିରିରୁ ଛୁଟିନେଇ ଗୋଲୁକୁ ଧରି ସେ ଆସିଥିଲା । ମାସେ କାଳ ରହିଲା ପତ୍ନୀହରା ଶ୍ୱଶୁର ପାଖେ । ନିଜ ବାପା ଭଳି ସେବାଯତ୍ନ କଲା । ଶ୍ୱଶୁରଙ୍କ ଦୁଃଖ ବୁଝିଲା । ସେ ଘରର ଇତିହାସ ପଢ଼ିଲା । ଭୂଗୋଳ ଦେଖିଲା । ରଘୁ ଜାଣିପାରିଲେ, ଏ ବୋହୂଟା ଭାରି ଭଲ । ସଂସ୍କାରିଘର ଝିଅଟେ ।

*ସୁରେନ୍ଦ୍ର ନାଥ ସାହୁ*

ଫେରନ୍ତା ଟିକଟ କରିବା ପୂର୍ବରୁ ବୋହୂ ଶ୍ୱଶୁରଙ୍କୁ ପ୍ରସ୍ତାବ ଦେଇଥିଲା, "ବାପା ! ଚାଲନ୍ତୁ ବାଙ୍ଗାଲୋର, ମୋ' ସାଙ୍ଗରେ ରହିବେ । ଆପଣ ଏଠି ଏକା, ମୁଁ ବି ସେଠି ଏକା । ଏ ବୟସରେ ଆପଣଙ୍କର ସେବା ସହାୟତା ଲୋଡ଼ା ! ଗୋଲୁକୁ ବି ସାଙ୍ଗଟିଏ ଦରକାର ।"

ବୋହୂ କଥା ଶୁଣି ରଘୁ ନାହାକଙ୍କ ପେଜୁଆ ଆଖିରୁ ଦି'ଟୋପା ଲୁହ ଗଡ଼ି ପଡ଼ିଲା । ସେ' ନାତି ଟୋକାକୁ ଛାତିରେ ଚାପି ଧରି କହିଲେ, "ମା' ! ଏ ବୟସରେ କୋଉ ବାପା ମା' ଭଲା ନ' ଚାହିଁବେ ନାତିନାତୁଣୀମାନଙ୍କ ସାଙ୍ଗରେ ହସଖୁସିରେ ଦିନ କାଟିବାକୁ? ହେଲେ ସେଇଟା ତୋ' ଶାଶୁ ଭାଗ୍ୟରେ ନ'ଥିଲା । ତୁ ଡାକୁଚୁ, ଏଇଟା ମୋ' ପାଇଁ ବଡ଼ କଥା । ହେଲେ ମା', ମୁଁ କେମିତି ଯାଇପାରିବି ଏ ଘର ଛାଡ଼ି ? ଏଇଟା ଆମ ଶିରୀଘର ! ଏ'ଘରେ ଈଶାଣ ଅଛି । ଦେବତା ଅଛି । ଆମ ପରମ୍ପରା ଅନୁସାରେ ଏ ମଲାଘରେ ବର୍ଷେ ପର୍ଯ୍ୟନ୍ତ ଦୀପ ଜଳିବାକୁ ପଡ଼ିବି । ପ୍ରତିଦିନ ସକାଳ ସଂଧ୍ୟାରେ । ମତେ ଏ ଘରେ  ରହି ସେ ଦାୟିତ୍ୱ ତୁଲେଇବାକୁ ପଡ଼ିବ, ମା' ।"

"ହେଲେ ବାପା ! ଆପଣଙ୍କ ଦେହ ପା' ? ଖାଇବା ପିଇବା ..... ? ?"

"ତୁ ସେଥିପାଇଁ ମୋଟେ ଚିନ୍ତା କରନା ମା' ! ସେଥିପାଇଁ ଗଉରା ଅଛି । ସିଏ ଆମ ରକ୍ତସଂପର୍କରେ କେହି ନ'ହେଲେ ବି ପୁଅଠୁ ଅଧିକ । ଅନାଥ ଅରକ୍ଷିତ ହେଇ ଗାଆଁ ଦାଣ୍ଡରେ ବୁଲୁଥିଲା । ତୋ' ଶାଶୁ ତାକୁ ଧରମପୁଅ କରି ଘରକୁ ଆଣିଲା । ଗଉରା ଆସିବା ପରେ ମୁଁ ଜାଣିଲି, ରକ୍ତ ସଂପର୍କଠୁଁ ଆତ୍ମାର ସଂପର୍କ କେତେ ନିବିଡ଼ । ତୋ' ଶାଶୁ ଦେଢ଼ମାସ କାଳ ଶେଯରେ ପଡ଼ି ଗୁହମୂତରେ ଘାଂଟି ହେଲା, କୋଉ ପୁଅଝିଅ ଆସି ତା'ର ସେବା କରୁଥିଲେ ? ବାପା ମାଆ ଭଳି ସେବା କରୁଥିଲେ ଏଇ ଗଉରା ଆଉ ତା' ଭାରିଯା । ସେ ଝିଅଟା ମଧ୍ୟ ମନ ଚିହ୍ନିବାରେ ମାଆ ଠୁଁ ଅଧିକା । ଆମକୁ ଏ ସ୍ୱାମୀ ସ୍ତ୍ରୀ ହଳକ କୋଉ ଜନମର ଋଣ ଶୁଝୁଚନ୍ତି ନା ଆମକୁ ଋଣି କରୁଚନ୍ତି କେଜାଣି ! ଏମାନଙ୍କର ଘରଦ୍ୱାର ନାହିଁ । ଆମ ଭରସାରେ ପଡ଼ିଛନ୍ତି । ତୁ ଗଲା ପରେ ସେମାନେ ଏଇ ଘରେ ଆସି ରହିବେ । ମୋ' ଦୁଃଖସୁଖ, ହାନିଲାଭ, ଜୀବନମରଣରେ ଭାଗି ହେବେ । ତମେମାନେ ତ ବିଦେଶରେ ରହିଲ, ଏ ଗାଁ ମାଟିକୁ ଆଉ କ'ଣ ଆସିବ ?  ଭବିଷ୍ୟତରେ ଏ ଘର କଥା ବୁଝିବ କିଏ ? ଗଉରା ଏକା ମୋ' ସାହା ଭରସା । ମା' ! ତୁ ମୋ'ପାଇଁ ମୋଟେ ଚିନ୍ତା କରନା । ଭଲରେ ଭଲରେ ଯା' । ତୋ'ଶାଶୁର ବର୍ଷକିଆ ବେଳକୁ ତ ପ୍ରକାଶ ଆମେରିକାରୁ ଫେରିଆସିଥିବ । ସେତିକିବେଳେ ତମେ ସମସ୍ତେ ମିଶିକି ଆସିବ ।" ରଘୁବୁଢ଼ା ବୋହୂକୁ ସେଦିନ ଏତିକି କହି ବିଦାୟ ଦେଇଥିଲା ।

ହେଲେ ବିଧିର ବିଧାନକୁ କିଏ ଟାଳିପାରିବ ? ବୁଢ଼ୀର ବର୍ଷିକିଆ ଆଗରୁ ବୁଢ଼ା ଚାଲିଗଲା । କାଲି ତା' ବା'ର ପତ୍ର ପଡ଼ିଲା । ପ୍ରେତ କର୍ମ ସରିଲା । ଆଜି ତେ'ର ଦିନ । ଯା'

ହଉ ସାନପୁଅ ପ୍ରକାଶ ମାଆ ମଲାବେଳକୁ ଆସିନଥିଲା, ବାପା ବେଳକୁ ସ୍ତ୍ରୀ ପିଲାଙ୍କୁ ନେଇ ବାଙ୍ଗାଲୋରରୁ ଆସିଛି । ବଡ଼ପୁଅ ପ୍ରତାପ ମଧ୍ୟ ବାପାଙ୍କ ମଲା ଖବର ଶୁଣିବାକ୍ଷଣି ଉଡ଼ାଜାହାଜରେ ତା' ପିଲାମାନଙ୍କୁ ଧରି ଆସିଚି । ଝିଅ ବି ଆସିଛି । ବୁଢ଼ାର ବଡ଼ ଭାଗ୍ୟ ।

-ହଁ..... ! ବୁଢ଼ା ଭାଗ୍ୟ କରିଥିଲା ବୋଲି ଏମିତିକା କୁଳାଙ୍ଗାର ପୁଅ ଯୋଡ଼େ ପାଇଚି । ନ'ହେଲେ ବାପାର ଜୁଇ ଶୀତଳ ହଉହଉ ଘର ବିକିବା ପାଇଁ ଗରାଖ ଡାକି ଆଣି ପିଣ୍ଡାରେ ବସେଇଥାନ୍ତେ କି କହୁନ ?

-କି'କଥା ! ପିଲେ ଘର ବିକିଦେବେ ? ହେଲେ ବୁଢ଼ାର ଆତ୍ମା କ'ଣ ସହଜେ ସେ ଘର ଛାଡ଼ି ଯିବ ?

-ସେଇଥିପାଇଁ ତ ବୋହୂ ଦିହକୁ ଆସିଚି ବୁଢ଼ା ! ଗଉରାଟା ପାଇଁ ତା'ର ବଡ଼ ଚିନ୍ତା ଥିଲା ।

-ଆହା ! ବିଚରା ଗଉରା ! ସେ ଘର ଖଣ୍ଡିକୁ ଆଶରା କରି ବୁଢ଼ାବୁଢ଼ୀଙ୍କୁ ସେବା କରି ପଡ଼ିଥିଲା ହୋ' । ଘରଟା ବିକିଦେଲେ ଏବେ ସେ ଯିବ କୁଆଡ଼େ ତା' ଗର୍ଭିଣୀ ଭାରିଯାକୁ ଧରି ?

-ଆହେ ! ବୁଢ଼ାବୁଢ଼ୀଙ୍କ ଅସଲ ପୁଅ ହଉଚି ଗଉରା ! ଏମାନେ ନୁହନ୍ତି । ଯୋଉ ପୁଅ ମା'ବାପାଙ୍କ ଶେଷ କାଳରେ ତାଙ୍କୁ ଘର କୋଣେ ପକେଇ ବିଦେଶରେ ଅୟସ କରିବ, ପଇସା କମେଇବ । ଶେଷ ନିଃଶ୍ୱାସ ଗଲାବେଳେ ବାପା ମା' ପାଟିରେ ପାଣି ଟୋପେ ଯୋ'ପୁଅ ନ'ଦେଇ ପାରିବ, ସିଏ କି ପୁଅ ହୋ ? ମଲା ପରେ ଖାଲି ପିଣ୍ଡ ବାଢ଼ିଦେଲେ ପୁଅ ହେଇଗଲା ? ବୁଝିଲ, ସେମିତି କହିଲେ ଗଉରା ନିଜ ପୁଅଠୁ ବି ଅଧିକ । ତା'ର ମଧ୍ୟ ହକ୍ ଅଛି ଏ' ଘରେ ।

- ହକ୍ କଥା କହିବାକୁ ଆମେ କିଏ ହେ' ? ସେଥିପାଇଁ ତା ବଡ଼ ପୁଅ ପରା ଓକିଲ ଡାକିଚି । ଓକିଲ ଆଗରେ ଘର କିଣା ବିକାର ଦଲିଲି ଲେଖା ହବ । ଶୁଣୁଛି, ବାର ଲକ୍ଷ ଟଙ୍କାକୁ ଧାର୍ଯ୍ୟ ହେଇଚି ଘର । ଦି'ଭାଇ ସେ ଟଙ୍କା ଭାଗ କରି ନେଇ ଫୁର୍ କିନା ଉଡ଼ିଯିବେ ଯେ ଝା' ବାଟରେ ।

ଏଭଳି ନାନା ଆଲୋଚନା ସମାଲୋଚନା ଭିତରେ ଲୋକେ ରୁଣ୍ଡ ହେଇଥିଲେ ରଘୁ ନାହାକଙ୍କ ଦାଣ୍ଡରେ ।

ଦାଣ୍ଡଘର ପଟା ଖଟିଆଟି ଉପରେ ବୋହୂ ଦେହରେ ସବାର ହେଇ ଗୁମ୍ ମାରି ବସିଥିଲା ରଘୁ ନାହାକର ପ୍ରେତାତ୍ମା । ସେଇ ଖଟିଆ ଉପରେ ପଡ଼ି ପଡ଼ି ବୁଢ଼ା ପ୍ରାଣ ଛାଡ଼ିଥିଲା । ବୋହୂକୁ ଘେରି ଜମା ହେଇଥିଲେ ସାହି ମାଇପିଏ ।

*ସୁରେନ୍ଦ୍ର ନାଥ ସାହୁ*

---

ହୁଁ.....ଉଁ........ ହୁଁ.....ଉଁ........ ହୁଁ.....ଉଁ........!

"ଠିକ୍ ଏମିତି କୁନ୍ଥଉଥିଲା ବୁଢ଼ା ଶେଷ ଅବସ୍ଥାରେ । ସପ୍ତାହେ କାଳ ଭୋଗିଲା କଷ୍ଟ !" ସ୍ତ୍ରୀ ଲୋକମାନେ ପରସ୍ପର ଆଲୋଚନା କଲେ ।

ଅବିକଳ ରଘୁ ନାହାକର କଷ୍ଟଦାୟି ଗମ୍ଭୀର କଣ୍ଠସ୍ୱର ଶୁଭୁଥିଲା ବୋହୂଟିର କୋମଳ କଣ୍ଠରୁ ! ହୁଁ.....ଉଁ...... ହୁଁ.....ଉଁ.....ହୁଁ.....ଉଁ..... !

ସମସ୍ତଙ୍କ ମନରେ ଉଚ୍ଚାଟ, ଅନେକ କୌତୂହଳ, ବୁଢ଼ା ମରି ଆଜିକି ତେର ଦିନ ! ତା' ପ୍ରେତାତ୍ମା ବୋହୂ ଦିହକୁ ଆସିଚି ! କାଇଁକି ଆସିଚି ! କ'ଣ କହିବ !!

ସହସା ହୋମ କୁଣ୍ଡରେ ଘିଅ ଢାଳିଲେ ହୁତାଶନ ଉଠିବା ଭଳି ହୁ'ଧାପରେ ଉଠିପଡ଼ିଲା ବୋହୂ ଗୋଟେ କିଳିକିଳା ରଡ଼ି ଛାଡ଼ି ! ସେ ରଡ଼ିରେ ଚମ୍‌କିପଡ଼ି ପଛକୁ ଘୁଞ୍ଚି ଗଲେ ତାକୁ ଘେରିଥିବା ମାଇପିମାନେ ।

ତା' ପ୍ରଚଣ୍ଡ ରୂପ ଦେଖି ଛାନିଆଁ ସମସ୍ତେ ! ସେତେବେଳକୁ ବୋହୂ ଆଉ ବୋହୂ ଅବସ୍ଥାରେ ନ'ଥିଲା । ତା' ସମଗ୍ର ସତ୍ତାକୁ ବୋଧେ କବଳିତ କରିସାରିଥିଲା ରଘୁ ନାହାକର ପ୍ରେତାତ୍ମା ! ଦାନ୍ତ କଡ଼ମଡ଼ କରି ଅନେଇଲା ସେ ଚାରି ଆଡ଼କୁ । ଗୋଟେ ହୁଙ୍କାର ଦେଇ ଝପଟି ଆସିଲା ଦାଣ୍ଡ ପିଣ୍ଡା ଉପରକୁ । କେଶପାଶ ଅଣାୟତ୍ତ ! ସଯତ୍ନବର୍ଦ୍ଧିତ କଳା ମଚ୍‌ମଚ୍ ମୁକୁଳା ବାଳର ଅନ୍ଧାରି ଗୁମ୍ଫା ଭିତରେ ଆଖି ଯୋଡ଼ିକ ତା'ର ଜଳୁଥିଲା ରଢ଼ ନିଆଁ ଭଳି ! ଉଦ୍ଦଣ୍ଡ ବେତାଳର ସିନ୍ଦୂର ବୋଳା ବେତ ଭଳି କମ୍ପୁଥିଲା ତା' ହାତଗୋଡ଼ ! ଅଗ୍ନିଶିଖା ଭଳି ଚକ୍‌ଚକ୍ କରୁଥିଲା ତା' ସ୍ୱେଦସିକ୍ତ ଉଜ୍ଜ୍ୱଳ ଶରୀର !

ଲୋକେ ଜାଣିଲେ, ବୋହୂ ଏବେ ତା' ଅକ୍ତିଆର ବାହାରେ ! ଏଭଳି ଦୃଶ୍ୟ ସହିତ ଅବଶ୍ୟ ସେମାନେ ଅଭ୍ୟସ୍ତ !

ଏଥର ପ୍ରେତାତ୍ମା ଠିକ୍ ରଘୁ ନାହାକ ଭଳି ଗଳା ଖଙ୍କାରିଲା । ପିନ୍ଧିଥିବା ସିଫନ୍ ଶାଢ଼ି ଖଣ୍ଡିକୁ ଜଙ୍ଘ ପର୍ଯ୍ୟନ୍ତ ଟେକିଦେଇ ରଘୁବୁଢ଼ା ଷ୍ଟାଇଲ୍‌ରେ କଛାଟେ ମାରିଲା । ଛାତିଉପରୁ ଖୋଲିଆଣିଲା ପଣତ ଏବଂ ତାକୁ ଖୋର୍ଦ୍ଧାଗାମୁଛା ଭଳି ଗୁଡ଼େଇଦେଲା ଅଣ୍ଟାରେ । ଏ ଦୃଶ୍ୟ ଦେଖି ବୟୋଜ୍ୟେଷ୍ଠମାନେ ଲଜ୍ଜାରେ ମୁହଁ ବୁଲେଇନେଲେ । ସଂଭ୍ରମତାର ଆଭରଣ ତଳେ ନିଜକୁ ଆବୃତ ରଖୁଥିବା ବୋହୂଟିର ଉନ୍ମୁକ୍ତ ଜାନୁଯୌବନ ଦେଖି ମହିଳାଏ ବି ଆଖି ତଳକୁ କରିଦେଲେ ।

ଏଥର ବୋହୂ କଣ୍ଠରୁ ଶୁଭିଲା ରଘୁ ନାହାକ ଅଶାନ୍ତ ଅତ୍ମାର ଉଚ୍ଚାଟ କଣ୍ଠସ୍ୱର, "ହୁଁ...ହୁଁଃ ହୁଁଃ ହୁଁଃ ! ହୁଁ...ହୁଁଃ ହୁଁଃ ହୁଁଃ ! କୁଆଡ଼େ ଗଲା ସେ ହାରାମଜାଦା ? ଆରେ ଏ

ପ୍ରତାପ..! ଆରେ କୁଳାଙ୍ଗାର ପ୍ରକାଶ ! ହୁଁ...! ଆସ.....ରେ'...ମୋ' ଆଗକୁ ଆସ....! ଘର ବିକିବାକୁ ଆସିଚ ନାଇଁ ରେ ? ହୁଁ...ହୁଁଃ ହୁଁଃ ହୁଁଃ ! ହୁଁ...! ମୋ' ଘର ବିକିବ.....ହାରାମି ! କଞ୍ଚା ଖାଇଯିବିରେ....କଞ୍ଚା ଖାଇଯିବି ତମ ସମସ୍ତଙ୍କୁ ! ପ୍ରଥମେ ତମ ପିଲା ମାଇପଙ୍କୁ ଖାଇବି..... ତା' ପରେ..! ହିଁଃ...ହିଁଃ..ହିଁଃ..ହିଁଃ..! ଛାଡ଼ିବିନି ତମ ଦି'ଟାକୁ !

ଘରର ଜବାନ୍ ବୋହୂଟା ଅର୍ଦ୍ଧଉଲଗ୍ନ ଅବସ୍ଥାରେ ଦାଣ୍ଡରେ ଠିଆ ହେଇ ଯେଉଁଭଳି ଚିତ୍କାର କରୁଥିଲା, ତା' ଆଗକୁ ଯିବାପାଇଁ ସାହସ କୁଳଉନଥିଲା ଗାଁ'ର କୋଉ ମରଦର ! ତଥାପି ମାଗତା ଭୋଇ ଭିଡ଼ ଆଡ଼େଇ ମାଡ଼ିଗଲା । ରଘୁ ନାହାକର ସିଏ ଅତି ଘନିଷ୍ଠ । ରଘୁଆକୁ ସେ ବଡ଼ଭାଇ ଭଳି ମାନେ । ଝପଟି ଯାଇ ସେ ବୋହୂର ହାତ ଦି'ଟା ଧରି ପକେଇ କହିଲା, "ରଘୁଆ'ନ୍ନା....ଏ' ରଘୁଆ'ନ୍ନା ! ଶାନ୍ତ ହ' ଟିକେ ! ନିଜ ପିଲାଙ୍କ ଉପରେ ଏତେ କୋପ କାଇଁକି କରୁଚୁ ? ସେମାନେ ପରା ତୋ' ରକ୍ତର ?"

ପ୍ରତାପ ଆଉ ପ୍ରକାଶ କରପତ୍ର ଯୋଡ଼ି ଠିଆ ହେଇଥିଲେ ପ୍ରେତାତ୍ମାଠୁଁ ନିରାପଦ ଦୂରତାରେ । ବରଡ଼ାପତ୍ର ପରି ଥରୁଥିଲା ହାତଗୋଡ଼ ! କମ୍ପୁଥିଲା କଲିଜା ! ପ୍ରତାପ ଆଖି ଉଠାଇ ଅନେଇ ପାରୁନଥିଲା ନିଜ ଭାଇବୋହୂର ମୁକୁଳା ଅବୟବକୁ । ନିଜ ଶାନ୍ତ ସ୍ୱଭାବର ପତ୍ନୀର ଏଭଳି ଉଦ୍ଦଣ୍ଡ ରୂପ କଳ୍ପନା ବି କରିପାରୁନଥିଲା ପ୍ରକାଶ ! ବଡ଼ ଜାଆଟି ତା' ଝିଅକୁ ଧରି ଲୁଚିପଡ଼ିଥିଲା ଯାଇ କୋଉ ପଡ଼ିଶା ଘର ଭାଡ଼ି ତଳେ ।

ପ୍ରେତାତ୍ମା ଅଟ୍ଟହାସ କଲା ! ହିଁଃ.... ହିଁଃ.... ହିଁଃ.... ହିଁଃ.....! ଏମାନେ ମୋ' ରକତ ? ମୋ' ପିଲା !! ଛିଃ....! ଛିଃ....!! ଏମାନଙ୍କୁ ମୋ'ର ବୋଲି କହିବାକୁ ମତେ ଲଜ୍ଜ୍ୟା ଲାଗୁଚି ରେ ! ଆରେ.....ମାଗତା ! ଜୀବନ ସାରା ଖଟିଖଟି, ଋଣକରଜ କରି ମୁଁ କ'ଣ କରିନଥିଲିରେ ଏ ଅମଣିଷ ଗୁଡ଼ାକ ପାଇଁ ? ହେଲେ ଜନମକଲା ମା' ପାଟିରେ ମଲା ବେଳକୁ ପାଣି ଟୋପେ କିଏ ଦେଲା ? ବୁଢ଼ୀ ମାସେ କାଳ ଶେଯ ଧରି ପଡ଼ିଲା । ମୁଁ ପଡ଼ି ପଡ଼ି ମଲି । ସେବା ତ ଦୂରର କଥା, କିଏ ଦିନେ ଆସି ଦେଖି ଯାଇଥିଲେ ? ହିଁଃ....ହିଁଃ....ହିଁଃ....ହିଁଃ....! ଶଳେ ଏବେ ଆସିଛନ୍ତି ମତେ ବେ-ଘର କରିବାକୁ । ମତେ ମଶାଣିରେ ଫିଙ୍ଗିଦେଇ ମୋ' ବାସଟାକୁ କବଜା କରିଦବ ନାଇଁ ? କଲ.......! କେତେ ଦମ୍ ଅଛି ବିକିଲ ମୋ' ଘରକୁ ! ହିଁଃ....ହିଁଃ....ହିଁଃ....ହିଁଃ....! କାହାକୁ ରଖେଇ ଦେବିନି ଏ ଘରେ...କାହାକୁ ବିକେଇ ଦେବିନି ମୋ' ଘର ! ହିଁଃ....ହିଁଃ....ହିଁଃ....ହିଁଃ....! ଗଉରା........ଗଉରା ଛଡ଼ା ମୁଁ କାହାକୁ ବି ସ୍ଥାନ ଦେବିନି ଏ ଘରେ । ଯିଏ କିଣିବ, ରକତ ବାନ୍ତି କରି ମରିବ ! ଯିଏ ବିକିବ ଶୋଷି ପିଇଯିବି ତା'ରକତ ! ଛାଡ଼ିବିନି ମୁଁ !" ଉତ୍‌କ୍ଷିପ୍ତ ଗୋଖର ଭଳି ଫଁ.....ଫଁ ଗର୍ଜୁଥିଲା ରଘୁ ନାହାକର ଅଶାନ୍ତ ପ୍ରେତାତ୍ମା !

*ସୁରେନ୍ଦ୍ର ନାଥ ସାହୁ*

"ହଉ...ହଉ ! ଆ' ରଘୁଆ ନ୍ନା' ଆ'...ବସ୍ !" କହି ମାଗତା ଭୋଇ ରଘୁଆର ପ୍ରେତକୁ ଟାଣିଟାଣି ପିଣ୍ଡାତଳ ଚଉଁରା ମୂଳକୁ ନେଇଗଲା । ସେଠି ଜୋର୍ କରି ବସେଇଦେଲା ସେ । ପ୍ରେତ ଲାଗିବା ଲୋକକୁ କାବୁ କରିବା ଉପାୟଟି ତାକୁ ମାଲୁମ୍ । ପ୍ରେତ ଯେଡ଼େ ଉଦ୍ଦଣ୍ଡ, ପ୍ରଚଣ୍ଡ ଅବସ୍ଥାରେ ଥାଉ, ବୃନ୍ଦାବତୀ ମୂଳେ ବସିଲେ କିଛିଟା ଶାନ୍ତ ପଡ଼ିଯାଏ । ସିଏ ବୁଝେଇଲା, "ରଘୁଆ ନ୍ନା' ! ତୋ' ଅନ୍ତେ ସେ ଘରକୁ ପିଲେ ବିକିଲେ କି ଭାଙ୍ଗିଲେ ସେଥିପାଇଁ ତୁ ଏତେ ଅଶାନ୍ତ କାଇଁକି ହଉଚୁ ? ନିଜକୁ କଷ୍ଟ କାଇଁକି ଦଉଚୁ ? ଆସିଚୁ ଯେତେବେଳେ ପଣାପାଣି ଟୋପେ ପିଇକି ତୁ ତୋ'ବାଟରେ ଶାନ୍ତିରେ ଯା' !"

ତା'ପରେ ମାଗତା ଭିତର ଖଞ୍ଜା ଆଡ଼େ ଅନେଇ କୁହାଟ ଛାଡ଼ିଲା, "ଆରେ.. ! ଘରେ କିଏ ଅଛ ପଣାପାଣି ଟିକେ ଝଅଟ୍ ଆଣ ! ନ'ହେଲେ ଶାନ୍ତିରେ ଯିବନି ମୋ' ରଘୁଆ ନ୍ନା !"

ଏତିକି ଶୁଣିଚି କି ନାଇଁ ପ୍ରେତାତ୍ମା ପୁଣି ଥରେ ବିକଟ ଚିତ୍କାର କରି ଭୁସ୍ କିନା ଉଠିପଡ଼ିଲା ବସିବା ସ୍ଥାନରୁ । ସେ କୋମଳାଙ୍ଗୀ ବୋହୂଟି ଦିହକୁ ଏତେ ବଳ କୁଆଡୁ ଆସିଲା କେଜାଣି, ଧକ୍କାଟିଏ ମାରିଲା ସେ ମାଗତାକୁ ! ଭାଗ୍ୟ ଭଲ, ମାଗତା ତଳେ ପଡୁପଡୁ ସଂଭାଳିନେଲା ନିଜକୁ ।

ଅଟ୍ଟହାସ କଲା ପ୍ରେତ, "ହିଁଃ...ହିଁଃ....ହିଁଃ....ହିଁଃ... ! ମତେ ଭଗଉଚୁ ମାଗତା ? ମତେ ଆଉ ମୋ' ଭିଟାମାଟିକୁ ମୂଳପୋଛ କରିବାକୁ ଆସିଛନ୍ତି ଏ କୁଳାଙ୍ଗାର ଦି'ଟା । ଆରେ... ! ମାସ ପୂରିଲେ ଲକ୍ଷ ଲକ୍ଷ ଟଙ୍କା ଦରମା ପାଉଚ । ଲଜ୍ଜ୍ୟା ଲାଗୁନି ଶଳେ...... ! ଟଙ୍କା କେଇଟା ପାଇଁ ବାପାର ନାଁ ଲିଭେଇ ପଳେଇବ ଗାଆଁରୁ ? ଏତେ କଷ୍ଟ କରି ମୁଁ ନିଜ ମୁଣ୍ଡରେ ଇଟା, ପଥର ବୋହି ଠିଆ କରିଚି ଏ ଘରକୁ । ସିଏ ପୁଣି ତମମାନଙ୍କପାଇଁ ଦରଖଣ୍ଡିଆ ହେଇ ରହିଗଲା । ହିଆଳିପେ' ଏଡ଼େ ବଡ଼ବଡ଼ ଚାକିରି କଲ, କେବେ ଇଟା ଖଣ୍ଡେ ପକେଇଚ ଘରେ ? ଏବେ ଆସିଚ ଭାଗ ବାଂଟି ନେବାକୁ ? ହିଁଃ...ହିଁଃ...ହିଁଃ.. ହିଁଃ."

"ରଘୁଆ ନ୍ନା ! ସବୁର୍ କର୍.....ଶାନ୍ତ ହ' ! ମୁଁ କଥା ଦଉଚି, ଆମେ ଗାଁ ଲୋକେ ମେଳି ହେଇ ବିକିରି କରେଇ ଦବୁନି ତୋ' ଘର ! କେହି କିଣି ପାରିବେନି । ତୁ କ'ଣ ଚାହୁଚୁ କହ ?" ମାଗତା ଆଶ୍ୱାସନା ଦେଲା ।

ଏ ପଦିକ କଥାରେ ଶାନ୍ତ ପଡ଼ିଲା ପ୍ରେତାତ୍ମା ! ତପସ୍ୱୀଟେ ଭଳି ସେ ଆଖି ବନ୍ଦ କରି ଚଉଁରା ପିଣ୍ଡି ଉପରେ ବସିଲା । ଆଖିରୁ ନିଗିଡ଼ି ପଡ଼ିଲା ଦି'ଧାର ଲୁହ ! କୋହଭରା କଣ୍ଠରେ କହିଲା, "ମାଗତା ! କହ ସେମାନଙ୍କୁ, ଯାହା ତ ମୋ' ପାଇଁ କ୍ରିୟାକର୍ମ କଲେ । ଏବେ ବାହାରନ୍ତୁ ମୋ' ଘରୁ । କାଲି ସକାଳ ବେଳକୁ ମୁଁ ସେମାନଙ୍କ ମୁହଁ ଦେଖିବାକୁ

ଚାହୁଁନି । କାଲିଠୁଁ ଗଉରା ଆସି ରହିବ ଏ ଘରେ । ମୋ'ପାଇଁ ବର୍ଷ ସାରା ଦୀପ ଜାଳିବ ଘରେ । ବର୍ଷକିଆ କରିବ । ପିଣ୍ଡ-ପାଣି ଦବ । ଗଉରା ମୋ' ବର୍ଷକିଆ କରିବ । ପିଣ୍ଡ ବାଢ଼ିବ ! ହିଁଃ....ହିଁଃ....ହିଁଃ....ହିଁଃ.... ! ଗଉରା ମୋ' ପୁଅ । ଗଉରା ମୋ' ପୁଅ !" କହି କହି ସେଇ ଚଉଁରା ମୂଳେ ଗଛ କାଟିଲା ଭଳିଆ ପଡ଼ିଗଲା ପ୍ରେତାତ୍ମା କବଳିତ ବୋହୂ !

ସତେ ଯେମିତି ବାପାର ପ୍ରେତ ଆସି ଶୋଷି ନେଇଥିଲା ଦୁଇ ପୁଅଙ୍କ ମୁହଁରୁ ସବୁତକ ରକ୍ତ ! ପ୍ରତାପ ଓ ପ୍ରକାଶର ମୁହଁଟିମାନ ଚିପୁଡ଼ା ଲେମ୍ବୁର ଚୋପା ଭଳି ଶେଠା ପଡ଼ି ଯାଇଥିଲା । ଆଜ୍ଞାବହ ମୁଦ୍ରାରେ ଉଭୟେ ଆସି ଠିଆହେଲେ । ମାଗତା କହିଲା, "ଅନେଇଚ କ'ଣ ? ଆଉ ଘର ବିକିବା ନା ଧରିବନି ।"

"ନା' କକା ! ବାପା ଯଦି ଚାହୁଁ ନାହାନ୍ତି, ଆମେ କାଇଁକି ବିକିବୁ ଘର ?" ପ୍ରତାପ କହିଲା ।

"ଆମେ ଆଜି ହିଁ ଘର ଛାଡ଼ି ପଳେଇବୁ କକା ।" ଚଉଁରାମୂଳେ ଚେତାଶୂନ୍ୟ ହେଇ ପଡ଼ିଥିବା ପତ୍ନୀର ଅନାବୃତ ଦେହ ଉପରେ ଚଦରଟେ ଢ଼ାଙ୍କିଦେଇ କହିଲା ପ୍ରକାଶ ।

"ନାଇଁରେ ପିଲେ ! ରଘୁଆ ନ୍ନା ବୋହୂଟା ଦିହକୁ ଆସି ଯେତେ କଷ୍ଟ ଦେଇଚି, ଯାକୁ ସାଷ୍ଟାମ ହେବାପାଇଁ ରାତିଏ ଲାଗିବ । ଆଜି ରାତିଟା ରହିଯାଅ । ସକାଳେ ଯିବ ।" ମାଗତା ପ୍ରସ୍ତାବ ଦେଲା ।

ପରଦିନ ଭୋର ପାଞ୍ଚଟା ବେଳକୁ ରଘୁ ନାହାକଙ୍କ ଦାଣ୍ଡରେ ଲାଗିଲା ଦୁଇଟା କାର୍ ! ଗଉରା ଏବଂ ତା' ସ୍ତ୍ରୀ ବିନୀତ ଭଙ୍ଗିରେ ଠିଆ ହେଲେ ଆସି ଦାଣ୍ଡ ମୁହଁରେ । ଦୁଇଭାଇ ମୁଣ୍ଡ ପୋତିପୋତି ନିଜର ଜିନିଷପତ୍ର ଧରି ବାହାରିଲେ ଘରୁ । ପଛେପଛେ ପିଲାମାନେ । କାଲିର ଘଟଣା ପାଇଁ ଲଜ୍ଜାରେ ସାଙ୍କୁଡ଼ି ଯାଇଥିଲା ସାନବୋହୂ ସୁସ୍ମିତା । ମୁଣ୍ଡରେ ଓଢ଼ଣା ଢ଼ାଙ୍କି ଆସିଲା । ଗାଡ଼ିରେ ବସିବା ପୂର୍ବରୁ ସମସ୍ତଙ୍କ ଅଲକ୍ଷ୍ୟରେ ଖଣ୍ଡେ ଚାରିଚଉତା କାଗଜ ଗଉରା ହାତରେ ଗୁଞ୍ଜିଦେଇ ଚାଲିଗଲା ।

ଗାଡ଼ି ଗାଁ' ଛାଡ଼ିବା ପରେ ଗଉରା ଘର ଭିତରକୁ ଆସି ଦେଖିଲା, ସେଇଟା ଖଣ୍ଡେ ଚିଠି ! ତା'ରି ଉଦ୍ଦେଶ୍ୟରେ ସୁସ୍ମିତା ଭାଉଜ ଲେଖିଛନ୍ତି ! "ଗଉରା ଭାଇ ! ଏ ଚିଠି ତୁମ ଆଉ ମୋ' ଭିତରେ ଗୁପ୍ତ ରହୁ ! ତମ ପ୍ରକାଶ ଭାଇ ମୋତେ ବିବାହ କରିବା ପୂର୍ବରୁ ନିଜ ଘର ପରିବାର, ବାପା ମା'ଙ୍କ ବିଷୟରେ କିଛି ମିଛ ଆଉ କିଛି ଭୁଲ କହିଥିଲେ । ଧୀରେଧୀରେ ମୁଁ ସବୁ ଜାଣିଲି । ଗତ ଥର ଶାଶୁମା'ଙ୍କ ଦେହାନ୍ତ ସମୟରେ ଆସି ଏଠି ମାସେ ରହିବାରୁ ଜାଣିପାରିଲି ଏ ଘରର ଦୟନୀୟତା, ବାପା ମା'ଙ୍କ ଅସହାୟତା ବିଷୟରେ । ତମ ବିଷୟରେ । ରକ୍ତ ସଂପର୍କ ନଥିଲେ ମଧ୍ୟ ବୁଢ଼ା ବୁଢ଼ୀଙ୍କ ପାଖରେ ରହି ତମେ ହିଁ ପ୍ରକୃତ ପୁଅର କର୍ତ୍ତବ୍ୟ କରିଛ । ଏ ଦୁଇଭାଇ ଏଡ଼େ ସ୍ୱାର୍ଥପର ଓ ଅମଣିଷ ବୋଲି ମୁଁ ଜାଣିନଥିଲି ।

ବାପାଙ୍କ ମୃତ୍ୟୁ ଖବର ପାଇବା ପରେ ଏ'ଦୁହେଁ ଟେଲିଫୋନ୍‌ରେ କଥା ହେଇ ଗାଁ ଘରଟିକୁ ବିକିଦେବାପାଇଁ ସ୍ଥିର କରିଦେଲେ । ମୁଁ ଦେଖିଲି, ଘର ବାପାଙ୍କ ଲହୁଲୁହରେ ତୋଳା ହେଇଚି । ଘରର ପ୍ରତିଟି ବାଲିରେଣୁରେ ବାପାଙ୍କ ଆତ୍ମା ବାସ କରୁଛି । ଘର ବିକିଦେଲେ ସେ କେବେ ବି ଶାନ୍ତି ପାଇବେନି । ତା'ଛଡ଼ା ତମ ପ୍ରତି ମଧ୍ୟ ଘୋର ଅନ୍ୟାୟ ହେବ । ମୁଁ ଭାବିଲି ଏ ପରିସ୍ଥିତିରେ ମତେ ହିଁ କିଛି କରିବାକୁ ପଡ଼ିବ ।

ମୁଁ ଜାଣିଥିଲି, ତମ ଗାଁ'ରେ ଝିଅ ବୋହୂଙ୍କ ଦେହକୁ ଠାକୁରାଣୀ, ମଙ୍ଗଳା, ଗ୍ରାମଦେବତୀ ଇତ୍ୟାଦି ଆସନ୍ତି । ମଲାଲୋକ ପ୍ରେତ ହେଇ ବି ଆସେ । ଆମେ ଶିକ୍ଷିତମାନେ ଏ ସବୁରେ ମୋଟେ ବିଶ୍ୱାସ କରୁନା । ତୁମାନଙ୍କପାଇଁ ଏ ସବୁ ସତ ହେଇପାରେ, ହେଲେ ଆମପାଇଁ ମିଛ ପ୍ରହସନ ! ଏହା ଗୋଟେପ୍ରକାର ଅନ୍ଧବିଶ୍ୱାସ ଓ ଅପସଂସ୍କୃତିର ପ୍ରସାର ବୋଲି ଆମେ କହୁ । ମୁଁ ମଧ୍ୟ ତାହା ହିଁ ଭାବେ ଏବଂ ଏହାର ନକାରାତ୍ମକ ଦିଗଟିକୁ ହିଁ ଦେଖେ । କିନ୍ତୁ ଏବେ ଚିନ୍ତାକଲି, ଯେହେତୁ ଏଭଳି ଘଟଣାକୁ ଗାଁ'ର ଶହଶହ ଲୋକ ବିଶ୍ୱାସ ଓ ପୂର୍ଣ୍ଣ ସମର୍ଥନ କରୁଛନ୍ତି, ତେଣୁ ଏହାକୁ ସକାରାତ୍ମକ ଦିଗରେ ପ୍ରୟୋଗ କରି କିଛି ଉପକାର ବି କରାଯାଇ ପାରେ ।

ଗଉରା ଭାଇ ! ମୁଁ ମୋ' କଲେଜ୍ ଜୀବନରେ ଡ୍ରାମାରେ ଅଭିନୟ କରି ଅନେକ ମାନସମ୍ମାନ ଓ ପୁରସ୍କାର ପାଇଛି । ହେଲେ କାଲିର ଅଭିନୟ ହିଁ ମୋ' ଜୀବନର ସର୍ବଶେଷ୍ଠ ଅଭିନୟ ବୋଲି ମୁଁ କହିବି । ସେ ଅଭିନୟରେ ଶ୍ୱଶୁରଙ୍କ ଆତ୍ମାକୁ ଶାନ୍ତି ଦେଇ, ତମକୁ ଘରର ଦଖଲ-ଅଧିକାର ଦେଇ ସବୁଠୁ ବଡ଼ ପୁରସ୍କାର ପାଇଛି ମୁଁ । ଭାଉଜଙ୍କୁ ନେଇ ସୁଖରେ ରହିବ । ଇତି- ସୁସ୍ମିତା ଭାଉଜ ।

ଗଉରା ଚିଠିଟିକୁ ପଢ଼ି ସ୍ଥାଣୁ ପାଲଟିଯାଇଥିଲା ! ଆଖିରୁ ତା'ର କୃତଜ୍ଞତାର ଦୁଇଧାର ଲୁହ ଗଡ଼ିପଡ଼ିଲା ସୁସ୍ମିତା ଭାଉଜଙ୍କ ଉଦ୍ଦେଶ୍ୟରେ । ଗାଡ଼ି ଯେଉଁ ଦିଗରେ ଯାଇଥିଲା ସେହି ଦିଗକୁ ଯୋଡ଼ହସ୍ତ ହୋଇ ପ୍ରଣାମ କଲା ସେ ଏବଂ ଚିଠିଟାକୁ ଟିକ୍‌ଟିକ୍ କରି ଚିରି ପବନରେ ଉଡ଼େଇ ଦେଲା ।



# ଅନ୍ଧାରର ମୁହଁ

'ସୌଭାଗ୍ୟ ଭବନ'

'ପଣ୍ଡିତ ବାନାମ୍ବର ତ୍ରିପାଠି (ଜ୍ୟୋତିଷାଚାର୍ଯ୍ୟ) ପ୍ଲଟ୍ ନଂ: ୫୫୦/୫୧, ଅନନ୍ତ ବିହାର'

ସହର ଉପକଣ୍ଠରେ ଗଢ଼ି ଉଠୁଥିବା ଅନେକ ସାଧାରଣ କୋଠା ଭିତରେ ଜ୍ୟୋତିଷାଚାର୍ଯ୍ୟ ବାନାମ୍ବର ତ୍ରିପାଠିଙ୍କ 'ସୌଭାଗ୍ୟ ଭବନ' ଦିଶୁଥିଲା ଦାସଦାସୀଙ୍କ ଗହଣରେ ପାଟରାଣୀ ଭଳି ।

ବିଶାଳ ଲୁହା ଫାଟକ ଉପରେ ଝୁଲୁଥିବା ନାମଫଳକଟି ବେଶ୍ ବଡ଼ ଆଉ ସୁଦୃଶ୍ୟ । ସେଥିରେ ଖଞ୍ଜା ହୋଇଥିବା ସୁନେଲି ରଙ୍ଗର ସୁନ୍ଦରୀ ଅକ୍ଷରମାନେ ସ୍ମିତହାସ ପୂର୍ବକ ସ୍ୱାଗତ କରୁଥିଲେ ଭାଗ୍ୟବାଦୀ ଆଗନ୍ତୁକମାନଙ୍କୁ ।

ସକାଳୁ ସଞ୍ଜ ଯାଏ ଭିଡ଼ ଜମେ 'ସୌଭାଗ୍ୟ ଭବନ' ଆଗରେ । କାହିଁ କେତେଆଡୁ ଆସନ୍ତି ଆଶାୟୀ ପ୍ରାର୍ଥିମାନେ । ଜ୍ୟୋତିଷଙ୍କ ଗଣନା ଓ ଭବିଷ୍ୟବାଣୀ ଉପରେ ଅଖଣ୍ଡ ବିଶ୍ୱାସ ସେମାନଙ୍କର । ରାତି ପାହିବା ମାତ୍ରେ ଦୁଇ ଓ ଚାରିଚକିଆମାନଙ୍କ ଧାଡ଼ି ଲାଗେ ଭବନ ଆଗରେ । ଆସୁଥିବା ପ୍ରାର୍ଥିମାନଙ୍କ ଭିତରୁ ଅଧିକାଂଶ ମଧ୍ୟବିତ୍ତ ଓ ତା'ଉପର ଶ୍ରେଣୀର ଲୋକ । ଗରିବଗୁରୁବା କଦବା କ୍ୱଚିତ୍ । ନେତା, ମନ୍ତ୍ରୀ ଓ ଅତିବିଶିଷ୍ଟମାନଙ୍କ ଗାଡ଼ି ବି ଲାଗେ ବେଳେବେଳେ । ବିଶେଷକରି ନିର୍ବାଚନ ଋତୁରେ ।

ଯେତେ ବିଶିଷ୍ଟ ହେଲେ ବି ଜ୍ୟୋତିଷଙ୍କ ନିକଟକୁ ଆସୁଥିବା ପ୍ରତ୍ୟେକ ଲୋକର ଆଖି ଦିଶୁଥାଏ ଦିଗହରା ନାବିକର ଆଖିଭଳି ଅସହାୟ । କୁଆଡୁ କିଛି ଥଳକୂଳ ନ' ମିଳିଲେ ଲୋକେ ଆସନ୍ତି ଜ୍ୟୋତିଷଙ୍କ ପାଖକୁ । ଜ୍ୟୋତିଷାଚାର୍ଯ୍ୟ ବାନାମ୍ବର ତ୍ରିପାଠି ବୋଧେ ବତିଘରଟିଏ । ସେ କର, କପାଳ, କୋଷ୍ଠି ଗଣନା କରି ବାଟ ବତାଇଦିଅନ୍ତି ।

ଦିନେ ଗୋଟେ ଧୂଳିଧୂସରିତ ଧଳା 'ବୋଲେରୋ' ଗାଡ଼ି ଆସି ଦୀର୍ଘ ନିଃଶ୍ୱାସ ଛାଡ଼ିଲା ଫାଟକ ଆଗରେ । ମନେ ହେଉଥିଲା ଗାଡ଼ିଟା ଅନେକ ଦୂରରୁ ଆସିଛି । ତିନିଜଣ ସମବୟସ୍କ ବନ୍ଧୁ ନିଜନିଜ ହ୍ୟାଣ୍ଡବେଗ୍ ଧରି ଓହ୍ଲାଇଲେ ଗାଡ଼ିରୁ ଏବଂ ସୌଭାଗ୍ୟ ଭବନ ଭିତରକୁ ଗଲେ ।

ଡ୍ରାଇଭର୍ ସଦାନନ୍ଦ ଗାଡ଼ିଟିକୁ ପାଚେରି କଡ଼େ ଠିଆକରି ପାଖରେ ଥିବା ଗଛ ଛାଇକୁ ଗଲେ ବିଶ୍ରାମ ନେବାପାଇଁ । ଗଛମୂଳେ ସିମେଣ୍ଟ୍ ବେଞ୍ଚ୍ ଉପରେ ବସି ଜଣେ ମଉସା

*ସୁରେନ୍ଦ୍ର ନାଥ ସାହୁ*

ଶ୍ରେଣୀୟ ବ୍ୟକ୍ତି ଖଣ୍ଡେ ପୁରୁଣା, ଅଧାଚିରା ଖବର କାଗଜରୁ ରାଶିଫଳ ଦେଖୁଥିଲେ । ଅନେକ ହାତର ଅତ୍ୟାଚାରରେ ତଳିତଳାନ୍ତ ପୁରୁଣା କାଗଜ ଖଣ୍ଡିକ ଭଳି ତାଙ୍କ ଚେହେରା ମଧ୍ୟ ଲୋଚାକୋଚା ହେଇସାରିଥିଲା ବୟସର ଅତ୍ୟାଚାରରେ । ତେଲଛିଟା ଲାଗିଥିବା ତାଙ୍କ ଖାକି ପୋଷାକ ଦେଖିଲେ ମନେ ହେଉଥିଲା, ସେ ମଧ୍ୟ ଜଣେ ଡ୍ରାଇଭର ହେଇଥିବେ, ଅନ୍ୟ କୌଣସି ଗାଡ଼ିର ।

"କୋଉଠୁ ଆସିଲ ବାପ ?" ପେପର୍ ଦେଖା ସ୍ଥଗିତ ରଖି ପଚାରିଲେ ସେ ସଦାନନ୍ଦଙ୍କୁ ।

"ଭଦ୍ରକରୁ ଆସିଲି ମଉସା ! ......ଆଉ ତମେ ?" ଜିଜ୍ଞାସା କଲେ ସଦାନନ୍ଦ ।

"ମୋ' ଗାଡ଼ି ଏଇ କଟକରୁ ଆସିଛି ।" ପେପରଟିକୁ ଫୋଲ୍ଡ୍ କରୁକରୁ କହିଲେ ଭଦ୍ରବ୍ୟକ୍ତି । ଗପସପ କରିବା ପାଇଁ ସିଏ ବୋଧେ ଜଣେ ସାଙ୍ଗ ଖୋଜୁଥିଲେ । ପଚାରିଲେ, "ଭଦ୍ରକରୁ ଭୋ'ରୁ ଭୋ'ରୁ ବାହାରିଥିବ, ନାଇଁ ? ନଅଟା ବାଜିନି ପହଂଚିଗଲ !"

"ହଁ ! ସାଢ଼େ ପାଞ୍ଚଟାରେ ବାହାରିଲୁ । ବାଟରେ ଜଳଖିଆ ଖାଇବାକୁ ଅଧଘଣ୍ଟା ଅଟକିଲୁ । ଆଚ୍ଛା ମଉସା ! କାହିଁ କେତେ ଦୂରରୁ ଲୋକେ ଏଠାକୁ ଆସୁଛନ୍ତି, ନାଇଁ ?" ପଚାରିଲେ ସଦାନନ୍ଦ ।

"ଦୂରରୁ ମାନେ ! ! ଲୋକେ ଝାଡ଼ଖଣ୍ଡ, ଆନ୍ଧ୍ରରୁ ବି ଆସୁଛନ୍ତି ।" କହି ସେ ଟିକିଏ ଘୁଞ୍ଚି ବସିଲେ ଏବଂ ସଦାନନ୍ଦଙ୍କୁ ଜାଗା ଟିକିଏ ଦେଲେ ପାଖରେ ବସିବାପାଇଁ ।

ସଦାନନ୍ଦ ବସୁବସୁ କହିଲେ, "ଓଃ ! ଏ ଆଧୁନିକ ବିଜ୍ଞାନ ଯୁଗରେ ମଧ୍ୟ ଲୋକଙ୍କର ଜ୍ୟୋତିଷ ଗଣନା ଆଉ ଭାଗ୍ୟଫଳ ଉପରେ କି ବିଶ୍ୱାସ !"

"କାଇଁକି... ! ତମର ଏ ସବୁରେ ବିଶ୍ୱାସ ନାଇଁ ନା' କ'ଣ ?" ପଚାରିଲେ ସେ ।

"ଦେଖ ମଉସା ! ବିଶ୍ୱାସ କରିବା, ନ'କରିବାଟା ନିଜ ଉପରେ ନିର୍ଭର କରେ । ହେଲେ ମୁଁ ଯେତିକି ଜାଣିଚି, ଯେଉଁ ଦେଶ ଯେତେ ଉନ୍ନତ, ଯେତେ ପ୍ରଗତିଶୀଳ ସେ ଦେଶର ଲୋକେ ଭାଗ୍ୟବାଦ ଠାରୁ ସେତେ ଦୂରରେ । ଭାଗ୍ୟ ଅପେକ୍ଷା କର୍ମନିଷ୍ଠା ଉପରେ ସେମାନଙ୍କର ଅଧିକ ବିଶ୍ୱାସ ।"

"ହଁ.....ହେଇଥବ ।" ମଉସା ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, "ହେଲେ ମୁଁ ନିଜ ବା'ଷଠି ବର୍ଷର ଜୀବନକାଳ ଭିତରେ ଯାହା ଦେଖିଲି, ଭାଗ୍ୟ ବୋଲାଉଥିବା ସେ ଅଦୃଶ୍ୟ ଶକ୍ତିଟି ବଡ଼ ବଳବାନ୍ । ଭାଗ୍ୟ ସାଥ୍ ଦେଲେ ଫକିର ବି ରାଜା ବନିଯାଇ ପାରେ ଆଉ ଭାଗ୍ୟ ମୁହଁ ମୋଡ଼ିଦେଲେ ମୁକେଶ୍ ଅମ୍ବାନୀ ଭଳି କୁବେର ବି ଦାଣ୍ଡର ଭିକାରି ହେଇଯାଇ ପାରେ !"

ସଦାନନ୍ଦ ସ୍ମିତହାସପୂର୍ବକ ଯୁକ୍ତି ବାଢ଼ିଲେ "ମଉସା ! ମୁଁ କହିବି, ସେଇଟା ଭାଗ୍ୟର ଖେଳ ନୁହେଁ, ବରଂ ସମୟ ଓ ପରିସ୍ଥିତିର ପ୍ରଭାବ । ଅବଶ୍ୟ ତମେ ଯଦି କୋଉ ନିର୍ଦ୍ଦିଷ୍ଟ ଲୋକ ସଂପର୍କରେ କହୁଚ, ସେଇଟା ତମ ନିଜର ଦୃଷ୍ଟିଭଙ୍ଗୀ ।"

"ଜଣେ କାହିଁକି ହୋ' ! ଏମିତିକା ଅନେକ ଲୋକ ଅଛନ୍ତି ଦୁନିଆରେ, ଯେଉଁମାନେ କି ଆଜି ଭାଗ୍ୟବଳରେ ବଳିୟାନ !" ତା'ପରେ ମଉସା ଚାରିଆଡ଼କୁ ଟିକିଏ ଦୃଷ୍ଟି ପହଁରେଇ ଆଣି ଅପେକ୍ଷାକୃତ ନିମ୍ନ କଣ୍ଠରେ କହିଲେ, "ଆଉ କାହା କଥା ଛାଡ଼ ହୋ' ! ତମେ ଏ ବାନାମ୍ବର ଜ୍ୟୋତିଷଙ୍କ କଥା ଦେଖୁନ ! ଅନ୍ୟମାନଙ୍କ ଭାଗ୍ୟରେଖା ପଢୁପଢୁ ଭାଗ୍ୟ ଆଜି ତାଙ୍କୁ କେଉଁଠୁ ଆଣି କେଉଁଠି ବସେଇଚି !"

"ଦେଖ ମଉସା ! ପଣ୍ଡିତ ମହାଶୟଙ୍କ ବିଷୟରେ ମୁଁ ତ ବେଶିକିଛି ଜାଣିନି । ସେ ଜଣେ ବିଖ୍ୟାତ ଜ୍ୟୋତିଷ ବୋଲି ଯାହା ଶୁଣିଛି ।" ସଦାନନ୍ଦ ନିଷ୍କପଟ ଭାବେ କହିଲେ ।

"ତମ ନାଁ ଟା କ'ଣ କହିଲ ବାବୁ ?" ପଚାରିଲେ ମଉସା ।

"ମୋ' ନାଁ ସଦାନନ୍ଦ ଘଡ଼େଇ ।"

"ହଁ, ବାପା ସଦାନନ୍ଦ ! ତମେ ତ ଭଦ୍ରକିଆ ପିଲା, ତମେ କେମିତି ଜାଣିବ ? ହେଲେ ବାନାମ୍ବର ତ୍ରିପାଠିଙ୍କୁ ମୁଁ ପରା ଦୀର୍ଘ ପଇଁଚାଳିଶି ବର୍ଷ ହେଲା ଦେଖି ଆସୁଛି ଏ ରାଜଧାନୀରେ । ୧୯୪୮ରେ ଭୁବନେଶ୍ୱର ରାଜଧାନୀର ମୁକୁଟ ପିନ୍ଧିଲା । ତା' ଆଗରୁ ଲୋକେ ଭୁବନେଶ୍ୱରକୁ ବାଟ ଜାଣିନଥିଲେ କି ବାନାମ୍ବରଙ୍କ ନାଁ ଶୁଣିନଥିଲେ । ସେ ସମୟର କିଛି ଲୋକ ତାଙ୍କୁ 'ବାନା-ନ୍ନା' ନାଆଁରେ ଜାଣିଥିଲେ । ସଚିବାଳୟ ନୂଆ କରି ଗଢ଼ା ହେଲା, ସେ ବିଲ୍ଡିଂର ପଛପାଖିଆ ଗେଟ୍ ପାଖରେ ଥିଲା ଗୋଟେ ବୁଢ଼ା ଓସ୍ତଗଛ । ସେ ଗଛମୂଳେ ନନା ଚିତା ଚଇତନ କାଟି କାନ୍ଧରେ ହଳଦିଆ ପାଣିଗାମୁଛା ଖଣ୍ଡେ ପକେଇ, କଳରେ ପାନଖିଲଟେ ଜାକି ଯଜମାନଙ୍କ ଅପେକ୍ଷାରେ ବସନ୍ତି । ପାଖରେ ଥାଏ କିଛି ଅନାବନା ଚଟିବହି ଆଉ କୋହିନୂର ପାଞ୍ଜିଟେ । ପୁଟୁଳିରେ କିଛି ଜଡ଼ିବୁଟି ଔଷଧ, ଗଣ୍ଡାଏ ତାବିଜ୍, ମୁଦି , ଏମିତି ଅନେକ କିଛି ଗ୍ରହ ପ୍ରଭାବକାରୀ ଚିଜ ! ଯିବା ଆସିବା ଲୋକେ ନତୁବା ସେକ୍ରେଟାରିଏଟ୍‌ର ଟୋକା ବାବୁମାନେ ବେଳେବେଳେ ତାଙ୍କ ପାଖରେ ଆସି ବସନ୍ତି । ହାତ ଦେଖେଇ ଆଗତ ଭବିଷ୍ୟତ କଥା ଶୁଣନ୍ତି । ସେ ଥିଲା ଅଣି, ଦୋ'ଅଣିର ଯୁଗ । ତଥାପି ନନାଙ୍କର ଗୋଟେ ଦିନରେ ତିନି/ଚାରି ଟଙ୍କା ରୋଜଗାର ହେଇଯାଏ । ମୁଁ ବି ତାଙ୍କୁ କେତେଥର ହାତ ଦେଖେଇଚି । ମୁଁ ଯେଉଁ ସମୟର କଥା କହୁଚି, ସେତେବେଳେ ବାନାନ୍ନା ଯୁବକ । ମୋର ବି ଟୋକା ବୟସ । ଏ ସହର ନୂଆରୂପ ନେଇ ଗଢ଼ା ଚାଲିଥାଏ । ମୁଁ ଷ୍ଟିଅରିଂ ଧରିବା ଶିଖୁଥିଲି । ହ୍ୱିଲିସ୍ ଜିପ୍ ଡ୍ରାଇଭିଂରୁ ମୋ' ଡ୍ରାଇଭରି ଜୀବନ ଆରମ୍ଭ । ସେ'କାଳୁଁ ଅଜିଯାଏ କଟକ, ଭୁବନେଶ୍ୱର, ଖୋର୍ଦ୍ଧା, ଯାଜପୁରୁ, ପୁରୀ, କୋଣାର୍କ ଭିତରେ ମୋ'ଗାଡ଼ି କେତେ ହଜାରଥର ଗଡ଼ିଲାଣି, ହିସାବ ନାଇଁ । ଯେତେବେଳେ ଯୋ' ଗାଡ଼ି ମିଳିଲା । ଯୋ' ଗାଡ଼ିମାଲିକ ଯୁଆଡ଼େ ଡାକିଲା । କିଛି ବାଛ ବିଚାର ନାଇଁ । ଷ୍ଟିଅରିଂ ମୋଡ଼ିମୋଡ଼ି ହାତ ବିଣ୍ଡି ପଡ଼ିଗଲା । ଡିଜେଲ୍, ମୋବିଲ୍‌ରେ ଗାଧେଇଗାଧେଇ ଚୁଟି ସବୁ ଝଡ଼ିଗଲା, ହେଲେ ଏ ଦୀନବନ୍ଧୁ ମଲ୍ଲିକ

ଦାନାମୁଠେ ପାଇଁ ଆଜିଯାଏଁ କାହା ଆଗରେ ହାତ ପତେଇନି । ସେତେବେଳେ ମୋ'ର କ'ଣ କମି ବାବୁଭାୟା ଚିହ୍ନାଥିଲେ ସେକ୍ରେଟେରିଏଟରେ ? ହେଲେ ସରକାରୀ ଚାକିରି ଖଣ୍ଡେ ପାଇଁ ମୁଁ କାହା ଆଗରେ ଗୋଡ଼ଭାଙ୍ଗି ଠିଆ ହେଇନି । ନିଜେ ମଧ୍ୟ ଗାଡ଼ି ଖଣ୍ଡେ କରିପାରିଲିନି । ପର ଗାଡ଼ି ଚଲେଇ ଚଲେଇ ଜୀବନଟା ସରିଗଲା । ଜୀବନସାରା ଖଟିଖଟି ମଧ୍ୟ ମୁଁ ଆଜି ଯୋଉ ଭଡ଼ାଟିଆ ଡ୍ରାଇଭରକୁ ସେଇ ଡ୍ରାଇଭର ! ହେଲେ ବାନାନ୍ନା...... ? ବାନାନ୍ନା ଯା ଭିତରେ ଜ୍ୟୋତିଷାଚାର୍ଯ୍ୟ, ପଣ୍ଡିତ ବାନାମ୍ବର ତ୍ରିପାଠି ହେଇସାରିଲେଣି ! ଯାକୁ ଭାଗ୍ୟର ଖେଳ କହିବନିତ ଆଉ କ'ଣ ?" ଭାଗ୍ୟବାଦ ସପକ୍ଷରେ ଗୋଟେ ଦୀର୍ଘ ଭାଷଣ ଦେଇ ଅଟକିଲେ ମଉସା ।

ସଦାନନ୍ଦ ଦୀନବନ୍ଧୁଙ୍କ ଦୁଇ ହାତକୁ ଭିଡ଼ିଧରି କହିଲେ, "ମଉସା ! ଡ୍ରାଇଭରି ବିଦ୍ୟାରେ ତମେ ତ ମୋର ଗୁରୁତୁଲ୍ୟ । ସବୁ ଠିକ୍‌ଠିକ୍ କହିଲ ଯେ, ହେଲେ ଶେଷରେ ଭାଗ୍ୟକୁ ଟାଣି ଆଣି କାହିଁକି ଯୋଡ଼ିଲ ଜୀବନ ସାଙ୍ଗରେ । ଆତ୍ମବିଶ୍ୱାସ ନଥିବା ଲୋକେ ସବୁବେଳେ ଭାଗ୍ୟର ମଙ୍ଗ ଧରି ଜୀବନ ବୈତରଣୀ ପାରି ହେବାକୁ ଚେଷ୍ଟା କରନ୍ତି । ତମେ ତ ସାରା ଜୀବନ ନିଜ କର୍ମନିଷ୍ଠା ଉପରେ ଭରସା କରି ବାଟ ଚାଲିଲ । କେବେ ହାରିନ କି ଭାଙ୍ଗି ପଡ଼ିନ । ଭାଗ୍ୟ ତମର କ'ଣ କରିବ ? ବରଂ ଭାଗ୍ୟ ନିଜେ ହାରମାନିବ ତମଭଳି କର୍ମବୀର ମଣିଷ ଆଗରେ !"

ଦୀନବନ୍ଧୁ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ "ହଃ ! ଛାଡ଼ ହୋ' ! କ'ଣ ମିଳିଲା ସେ ବୀର ପଣିଆରୁ ? ଯେଉଁଠି ସେଇଠି ତ ସରିଗଲା ଜୀବନଟା !"

"ମଉସା ! ତମଭଳି ଜଣେ ସ୍ୱାଧୀନଚେତା ମଣିଷ ମୁହଁରେ ଏ ହତାଶିଆ କଥା କିଛି ଭଲ ଲାଗୁନି ।" କହିଲେ ସଦାନନ୍ଦ ।

"ତମେ ଯାହା କହ ସଦାନନ୍ଦ ! ମଣିଷର ଭାଗ୍ୟ ବୋଲି କିଛି ଅଛି ନା ! ନ'ହେଲେ ରାଜପଥ କଡ଼େ ପାଞ୍ଜି-ପୋଥି ଧରି ବସୁଥିବା ଲୋକଟାକୁ ଆଜି ରାଜ ଉଆସରେ ବସେଇଲା କିଏ କହୁନ ?"

"ମଉସା ! ତମ ବିଚାର ଆଉ ମୋ' ବିଚାର ଭିତରେ ଟିକିଏ ଫରକ ରହିଯାଉଚି । ଠିକ୍ ଅଛି, ମୁଁ ତମକୁ ଗୋଟେ ଘଟଣା କହୁଚି ଶୁଣ । ମୋ'ର ଦି'ଜଣ ସାଙ୍ଗ । ଗାଆଁରେ ଛୋଟ ମୋଟ ବ୍ୟବସାୟ କରି ଚଳୁଥିଲେ । ଯୋଗକୁ ଗାଁ' ମୁଣ୍ଡରେ ଗୋଟେ ସରକାରୀ ମଦ ଦୋକାନ ଖୋଲିଲା । ଦୁଇ ସାଙ୍ଗ ସେଠି ଦୋକାନ ଦେଲେ । ଜଣେ ମଦ ଦୋକାନ ପାଖେ ସିଝା ଅଣ୍ଡା ଆଉ ଚେନାଚୁର୍ ବିକିବା ଆରମ୍ଭ କଲା । ଆର ଜଣକ ସେଠି ଦହିଲସି ଆଉ ଫଳଜୁସ୍ ଦୋକାନ ଦେଲା । ବର୍ଷେ ଦି'ବର୍ଷ ପରେ ଦେଖିଲା ବେଳକୁ ପ୍ରଥମ ସାଙ୍ଗ ହେଲାଣି ବିରାଟ ଢ଼ାବାର ମାଲିକ । ଆଉ ଦ୍ୱିତୀୟ ସାଙ୍ଗ ଦେବାଳିଆ । ଜଣେ କୋଟିପତି, ଆରଜଣକ

କପର୍ଦ୍ଦକ ଶୂନ୍ୟ ! କହିଲ ମଉସା, ଦୁଇବନ୍ଧୁଙ୍କର ଏ ଉତ୍‌ଥାନ ପତନ ପାଇଁ ସେମାନଙ୍କ ଭାଗ୍ୟ ଦାୟୀ ନା' କର୍ମ ଦାୟୀ ?"

ମଉସା ତିର୍ଯ୍ୟକ ଚାହାଣୀରେ ଅନେଇ କହିଲେ, "କିହୋ' ମଦୁଆଙ୍କୁ ଲୋଡ଼ା ଚଟ୍‌ପଟି ପାଟି ଟକଳା ଜିନିଷ । ମଦ କୋଠି ପାଖରେ ଚାଟ୍ ଚେନାଚୁର୍ ବେପାର ସିନା ଚାଲିବ, ସେଠି ଫଳରସ, ଦହିଲସି ପିଇବ କିଏ ? ଏଭଳି ବେପାର କରି ବୁଡ଼ିଗଲେ ଭାଗ୍ୟକୁ ନିନ୍ଦିବ ?"

"ମୋ' କହିବା କଥା ମଧ୍ୟ ଠିକ୍ ସେୟା, ମଉସା । ଭାଗ୍ୟ ବୋଲି କିଛି ନାହିଁ । ସବୁ ନିଜନିଜ କର୍ମର ପ୍ରତିଫଳ । ହେଲେ ମଦୁଆଙ୍କୁ ଚଟ୍‌ପଟି ଚାଖଣା ଯେମିତି ରୁଚିକର ଲାଗେ ଭାଗ୍ୟବାଦୀମାନଙ୍କୁ ସେମିତି ଭବିଷ୍ୟବାଣୀ ଶୁଣିବାକୁ ଭଲଲାଗେ । ଆଉ ଆମ ସମାଜରେ ଆଜି କର୍ମନିଷ୍ଠ ମଣିଷଙ୍କ ଅପେକ୍ଷା ଭାଗ୍ୟବାଦୀଙ୍କ ସଂଖ୍ୟା ବହୁତ ଅଧିକ । ଏମାନଙ୍କ ଭିତରେ ଅଧିକାଂଶ କର୍ମକୋଡ଼ି ଆଉ ଧର୍ମଭୀରୁ । ଠିକ୍ ବାଟରେ କର୍ମ ନ'ରି ସର୍ଟକଟ୍ ବାଟରେ କୁଆଡୁ ପୁଳେ ମିଳିଯିବ ସେଥିପାଇଁ ନାନା ଉପାୟ ଖୋଜୁଥାନ୍ତି ଏମାନେ । ସେଥିପାଇଁ ବିଭିନ୍ନ ଠାକୁର ଠାକୁରାଣୀଙ୍କୁ ମାନସିକ ଯାଚିବାଠୁଁ ଆରମ୍ଭ କରି ମନ୍ତୁରା ତାବିଜ୍, ରତ୍ନପଥର ମୁଦି, ମାଳି ପିନ୍ଧି ଗ୍ରହ ନକ୍ଷତ୍ରମାନଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥାନ୍ତି । ସମସ୍ୟା ଆସିଲେ ସମାଧାନର ବାଟ ନ'ଖୋଜି ସିନ୍ଦୂରବୋଳା ପଥର ଆଗରେ ମୁଣ୍ଡ ପିଟୁଥାନ୍ତି । ୟା'ର ସୁଯୋଗ ନେଇ କିଛି ଚତୁର ଲୋକ ବେପାର ଚଳେଇଛନ୍ତି । ଯେଉଁ ସମାଜରେ ଧର୍ମଭୀରୁ, ଅନ୍ଧବିଶ୍ୱାସୀ, ଦୁଷ୍ଟ ପରମ୍ପରାବାଦୀଙ୍କ ସଂଖ୍ୟା ଯେତେ ଅଧିକ ସେ ସମାଜରେ କିଛି ବୁଦ୍ଧିଆ ଲୋକ ଦେବଦେବୀଙ୍କ ନାଁ ନେଇ, ଗ୍ରହନକ୍ଷତ୍ରଙ୍କ ଭୟ ଦେଖେଇ ଏମିତି ବେପାର ଚଳେଇଥିବେ । ୟା'ର ଭୁରିଭୁରି ପ୍ରମାଣ ଆମେ ସବୁଠି ଦେଖୁଚେ ।"

ଦୀନବନ୍ଧୁ ନିଜେ ଜଣେ ଶ୍ରମନିଷ୍ଠ ମଣିଷ ହେଲେ ସୁଦ୍ଧା ଜୀବନରେ ସେ ବିଫଳତା ଅନେକ ଚାଖିଚନ୍ତି । ତେଣୁ ତାଙ୍କ ଯୁକ୍ତି ହେଲା, ସଦାବେଳେ ଭାଗ୍ୟ ହିଁ ଆମର ନିୟନ୍ତା ! ନିୟତି ରୂପକ ବୃକ୍ଷରେ ଲଟେଇ ହେଇ ରହିଥାଏ ତାଙ୍କ ଦୁର୍ବଳ ମନଲତାଟି ! ତେଣୁ ସଦାନନ୍ଦଙ୍କ ହେତୁବାଦୀ ଯୁକ୍ତି ଶୁଣିବାକୁ ଆଉ ଧୈର୍ଯ୍ୟ ନଥିଲା ତାଙ୍କର । ସେ ସିମେଣ୍ଟ ବେଞ୍ଚ ଉପରୁ ଝାଡ଼ିଝୁଡ଼ି ହୋଇ ଉଠି ଥଟାଳିଆ ସ୍ୱରରେ କହିଲେ, "ତା'ମାନେ ତମେ କହୁଚ ଭାଗ୍ୟ ବୋଲି କିଛି ନାହିଁ! ବାପା ସଦାନନ୍ଦ ! ମୁଁ ଜାଣିପାରୁଚି, ମୋ' ଭଳି ତମେ ଗାଡ଼ି ଷ୍ଟିଅରିଂ ଧରିଚ ସିନା ହେଲେ ବଡ଼ ପାଠୁଆ ହେଇଥିବ । ବୁଦ୍ଧି ଜ୍ଞାନ ଭରିକି ରଖିଛ ମୁଣ୍ଡରେ । ତା' ବୋଲି ତମେ କହିଦେବ ଜ୍ୟୋତିଷ ବିଦ୍ୟା ମିଛ ବୋଲି !"

ସଦାନନ୍ଦ ବୁଝେଇବାକୁ ଚେଷ୍ଟାକଲେ, "ଦେଖ ମଉସା, ମୁଁ ଯାହା ଜାଣିଛି, ଅସଲ ଜ୍ୟୋତିଷ ପାଠ ଅଲଗା । ସେ ହଉଚି ଆମ ବେଦଶାସ୍ତ୍ରରେ ଥିବା ଜ୍ୟୋତିଷ ବିଦ୍ୟା । ଆଗ

କାଳର ଜ୍ୟୋତିଷବିଜ୍ଞାନୀମାନେ ସେ ବିଦ୍ୟାକୁ ଆୟତ୍ତ କରି ଆମ ଅନ୍ତରୀକ୍ଷ ଜଗତର ସ୍ଥିତି ଆଉ ସୂର୍ଯ୍ୟ, ଚନ୍ଦ୍ର ଆଦି ଗ୍ରହ ନକ୍ଷତ୍ରମାନଙ୍କ ଚଳନ ବିଷୟରେ ଗବେଷଣା କରୁଥିଲେ । ମହାକାଶର ଅନେକ ରହସ୍ୟ ଜାଣୁଥିଲେ । ସେମାନେ ପାଞ୍ଜିପତ୍ର ଦେଖି ଜାତକ ବିଚାର କରୁନଥିଲେ କି ମୁଦି,ମାଳି, ତାବିଜ୍ ବିକି ଗ୍ରହରିଷ୍ଟ ଖଣ୍ଡନ କରୁନଥିଲେ ?"

ମଉସା ପୁଣିଥରେ ସଦାନନ୍ଦଙ୍କ ପାଖରେ ବସିବାର ଉପକ୍ରମ କରୁକରୁ ନରମ ଗଳାରେ କହିଲେ, "ତମ କଥା ଗୁଡ଼ାକ ଗହିରେଇକି ଦେଖିଲେ କିଛି ବେଠିକ୍ ଲାଗୁନି ଯେ ସଦାନନ୍ଦ, ହେଲେ ମନଟା କାଇଁକି ସହଜେ ମାନୁନାଇଁ ହେ' ।"

"ମାନିବନାଇଁ ମଉସା ! ସହଜେ ମାନିବନି ମନ । କାରଣଟା କ'ଣ ଜାଣିଚ ? କାରଣ ତମ ମନଗଛର ଚେର ଯାଇ ଲମ୍ବିଚି ତମ ବାପା, ଜେଜେବାପା, ପଣିଜେଜେମାନଙ୍କ ଗହିରା ଜମି ପର୍ଯ୍ୟନ୍ତ । ଆମ ପୂର୍ବପୁରୁଷମାନଙ୍କ ମାଟିରୁ ରସ ଟାଣି ଆମ ମନ ହୃଷ୍ଟପୁଷ୍ଟ ହେଇଚି । ମନର ଶାଖାପ୍ରଶାଖା ଲମ୍ବିଛି ଅନେକ କୁସଂସ୍କାର ଆଉ ଅନ୍ଧବିଶ୍ୱାସ ଭରା ଆମର ଏ ସମାଜ ଭିତରେ । ବୁଝିଲ ମଉସା ! ରାସ୍ତା କଡ଼ ଗଛମୂଳେ ସିନ୍ଦୂର ବୋଳା ପଥରଟେ ଦେଖିଲେ ବିଶ୍ୱାସରେ ମୁଣ୍ଡିଆଟେ ମାରିବା ଆମେ ବାପା, ଜେଜେବାପାଙ୍କଠୁଁ ଶିଖିଚେ । ଚାକିରି ଖଣ୍ଡେ ପାଇଁ ଠାକୁରାଣୀ ପାଖରେ ମାନସିକ ଯାଚିବା ମାଆଙ୍କଠୁଁ ଶିଖିଚେ । ଗାଡ଼ି ଆଗରେ ବିଲେଇଟେ ବାଟ କାଟି ଚାଲିଗଲେ ଇଞ୍ଜିନ୍ ବନ୍ଦ କରି ଟିକେ ଅଟକିଯିବା ଆମେ ସାଙ୍ଗ ଡ୍ରାଇଭରଠୁଁ ଶିଖିଚେ । ଏ ଯେତେ ସବୁ ଅହେତୁକ ବିଶ୍ୱାସ ଆମେ ନିଜ ଘର, ପରିବାର ଆଉ ସମାଜରୁ ହିଁ ଆପଣେଇଚେ । ହଜାର ହଜାର ବର୍ଷ ଧରି ଏଭଳି ଅନେକ କୁସଂସ୍କାର ଆମ ଦେହ, ମନ, ବୁଦ୍ଧି ବିବେକକୁ କାବୁ କରି ରଖିଚି । ସେଥିରୁ ଆମକୁ କ'ଣ ଏଡ଼େ ସହଜେ ମୁକ୍ତି ମିଳିଯିବ ? ମୁଁ ତମକୁ ଦି'ପଦ କହିଦେଲି ବୋଲି ତମ ମନ ମାନିଯିବ ?"

ମଉସା ଟିକେ ସଳଖି ବସି କହିଲେ, "ବାପ ସଦାନନ୍ଦ ! ଆମେ ତ ହେଲୁ ମଳିମୁଣ୍ଡିଆ, ଅଧା ପାଠୁଆ । ହେଲେ ନିଜ ଭାଗ୍ୟ-ଅଭାଗ୍ୟ, ଆଗତ-ଭବିଷ୍ୟତ କଥା ଟିକେ ଜାଣିବାପାଇଁ କେଡ଼େ କେଡ଼େ ରଥୀ ମହାରଥୀ ଆସି ବାନାମ୍ବର ଜ୍ୟୋତିଷଙ୍କ ଦୁଆରେ ଲାଇନ୍ ଲଗଉଚନ୍ତି ଜାଣିଚ ?"

ସଦାନନ୍ଦ ହସ ଅଟକେଇ କହିଲେ, "ଏବେ ମୋ' ଗାଡ଼ିରେ ଯେଉଁ ତିନିଜଣ ଯୁବକ ଆସି ଭିତରକୁ ଗଲେ, ସେମାନେ ବି ଏଇଥିପାଇଁ ଆସିଚନ୍ତି ।"

"ମାନେ ? ତିନିଜଣଯାକ ତ ଶିକ୍ଷିତ ଭଳି ଜଣାପଡୁଛନ୍ତି ।" ମଉସା କହିଲେ ।

"ଖାଲି କ'ଣ ଶିକ୍ଷିତ ? ଉଚ୍ଚ ଶିକ୍ଷିତ । ସେ କଳା ଜର୍ସି ପିନ୍ଧିଥିବା ଯୁବକ, ଯିଏ ପ୍ରଥମେ ଗାଡ଼ିରୁ ଓହ୍ଲେଇଲେ, ସିଏ ଜଣେ ଇଞ୍ଜିନିୟର୍ । ଭଲ ଦରମାରେ ଚାକିରି କରିଛନ୍ତି ।

ଏବେ ତାଙ୍କୁ ବିଦେଶରୁ ଗୋଟେ ଅଫର୍ ଆସିଚି । ବାବୁ ଦ୍ୱନ୍ଦ୍ୱରେ ପଡ଼ିଚନ୍ତି, ଦେଶରେ ରହିବେ କି ବିଦେଶ ଯିବେ ? କୋଉ ଚାକିରିଟା ତାଙ୍କ ଜାତକ ପାଇଁ ଶୁଭପ୍ରଦ ? ସେ କଥା ଜ୍ୟୋତିଷ ଗଣନା କରି କହିବେ । ଜ୍ୟୋତିଷଙ୍କ ଭବିଷ୍ୟବାଣୀ ଉପରେ ବାବୁଙ୍କ ଭବିଷ୍ୟତ ନିର୍ଭର ।

ଆଉ ସେ ଧଳା ଟି-ସାର୍ଟ ପନ୍ଧିଥିବା ଯୁବକ ହେଲେ ଜଣେ କୋଟିପତି । ବାପା ଯଥେଷ୍ଟ ସମ୍ପତ୍ତି ରଖିଦେଇ ଯାଇଚନ୍ତି । ଇଏ ଏବେ ବାଟ ପାଉ ନାହାନ୍ତି କୋଉ ବାଟରେ ଅର୍ଥ ଲଗେଇ ତାଙ୍କ ଜୀବନଯାତ୍ରା ଆରମ୍ଭ କରିବେ । ନିଜ ଜାତକ ଅନୁସାରେ କେଉଁ ବ୍ୟବସାୟ କଲେ ସେ ଜୀବନରେ ଉନ୍ନତି କରିପାରିବେ ! କେଉଁ ଗ୍ରହକୁ ସନ୍ତୁଷ୍ଟ କରି ସେ ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତର ମୂଳଦୁଆ ପକେଇବେ ? ତା' ଉପାୟ ସେ ଜ୍ୟୋତିଷଙ୍କୁ ପଚାରିବାକୁ ଆସିଚନ୍ତି ।"

ତୃତୀୟ ଯୁବକ, ସବୁଠୁ ପାଠୁଆ ! ଓ.ଏ.ଏସ୍ ପରୀକ୍ଷା ଦେବାପାଇଁ ସେ ପ୍ରସ୍ତୁତ ହଉଚନ୍ତି । ପଢ଼ାପଢ଼ି ଠିକ୍ ଚାଲିଚି, ହେଲେ ବାବୁଙ୍କ ମନରେ ଟିକେ ଶଙ୍କା ରହୁଚି । ପାଠକୁ ନୁହେଁ, ଭାଗ୍ୟକୁ ତାଙ୍କର ଭାରି ଡ଼ର ! ସେ କହିବା କଥା ହେଲା, ମଣିଷର ଯେତେ ବୁଦ୍ଧି, ଜ୍ଞାନ ଥାଉ, ଭାଗ୍ୟ ସପୋର୍ଟ ନ'କଲେ ଜଣେ ଓ.ଏ.ଏସ୍ ଭଳି ପଦ ପାଇବା ଅସମ୍ଭବ ! ତେଣୁ ସେ କୌଣସି ଉପାୟରେ ନିଜ ଭାଗ୍ୟଦେବୀଙ୍କୁ ପ୍ରସନ୍ନ କରିବାର ସୂତ୍ରଟି ଜାଣିବାପାଇଁ ଜ୍ୟୋତିଷଙ୍କ ପାଖକୁ ଆସିଛନ୍ତି ।"

ମଉସା କହିଲେ, "ଦେଖିଲ ତ ବାବୁ ! କେଡ଼େକେଡ଼େ ଲୋକ ଭାଗ୍ୟ ଉପରେ ଭରସା କରି ବାଟ ଚାଲୁଚନ୍ତି ଆଉ ଆମଭଳି ଅଭାଗାମାନେ ଯିବେ କୁଆଡ଼େ ?" ଏତିକି କହି ସେ ଠାରରେ ଦେଖେଇଲେ "ହେଇଟି ! ଫାଟକ ଆଡ଼କୁ ଅନା, ତମର ତିନି ବାବୁ କାମ ସାରି ଭିତରୁ ଫେରିଲେଣି । ଏମାନେ ବୋଧେ ଦି' ହଜାରିଆ ଟିକଟ କରିଥିଲେ । ନ'ହେଲେ ଲୋକେ ରାତି ଅଧରୁ ଆସି ଲାଇନ୍ ଲଗେଇ ବସିଚନ୍ତି, ଆଉ ଏଡ଼େବେଗି ୟାଙ୍କ କାମ ସରିଗଲା କିମିତି ?"

ସଦାନନ୍ଦ ବେଞ୍ଚରୁ ଉଠି ଚପଲ୍ ପିନ୍ଧୁପିନ୍ଧୁ କହିଲେ, "ହଁ ! ଆମ ବାବୁମାନେ ଦି'ହଜାର ଲେଖା ଫିଜ୍ ଦେଇ ଅନ୍‌ଲାଇନ୍ ବୁକିଂ କରିଥିଲେ । ସେଥିପାଇଁ ପଣ୍ଡିତେ ୟା'ଙ୍କ କଥା ଆଗ ବୁଝିଦେଲେ । ତମେତ ଜାଣିଚ, ଆଜିକାଲି ସବୁ ଅନ୍‌ଲାଇନ୍‌ରେ । ଠାକୁରଙ୍କ ଦର୍ଶନୀ ଟିକଟଠୁଁ ଆରମ୍ଭ କରି ସିନେମା ଟିକଟ୍ ପର୍ଯ୍ୟନ୍ତ ସବୁଠି ଅନଲାଇନ୍ ବାଲାଙ୍କୁ ଆଗୁଆ ସୁଯୋଗ ! ହଉ ମଉସା ! ବାବୁମାନେ ଡାକିଲେଣି । ମୁଁ ଆସୁଚି । ଆଉଥରେ କେବେ ଏମିତି ଦେଖା ହେଇପାରେ । ମନେ ରଖିଥିବ ।" ସଦାନନ୍ଦ ଦୀନବନ୍ଧୁ ମଉସାଙ୍କୁ ନମସ୍କାର କରି ବିଦାୟ ନେଲେ ।

ହେଲେ ସେ ବିଦାୟ ଗୋଟେ ଅବିସ୍ମରଣୀୟ ବିଦାୟରେ ପରିଣତ ହେବ ବୋଲି କିଏ ଜାଣିଥିଲା ! !

*ସୁରେନ୍ଦ୍ର ନାଥ ସାହୁ*

---

ତା'ପରଦିନ ଓଡ଼ିଶା ବନ୍ଦ୍ ! ଭୁବନେଶ୍ୱର, କଟକ ସମେତ ପ୍ରାୟ ସବୁ ସହରରେ ଅଖଚକ ଅଚଳ ! ଦୀନବନ୍ଧୁ ମଉସା କଟକ ସହର ବାସିନ୍ଦା । ବଡ଼ ଡାକ୍ତରଖାନା ପାଖ ବସ୍ତିରେ ଘର । ହରତାଳ ପାଇଁ ତାଙ୍କ ହାତ ବି ସେଦିନ ବନ୍ଦ୍ । ଏମିତି କେବେ ଗାଡ଼ି ଜଞ୍ଜାଳରୁ ଟିକେ ମୁକ୍ତି ମିଳିଲେ ଦୀନବନ୍ଧୁଙ୍କ ବାଡ଼ି ବଗିଚାରେ ଲାଗିଯାଆନ୍ତି । ସକାଳୁସକାଳୁ ବସ୍ତିମୁଣ୍ଡ ନୀଳ ସାହୁ କେବିନ୍‌ରେ ଢ଼ୋକେ ଚାହା ପିଇ, ସେଦିନର ପେପର ଉପରେ ଟିକେ ଆଖି ପକେଇ ଦିଅନ୍ତି । କହିବାକୁ ଗଲେ ପେପର ଦେଖାଟା କେବଳ ବାହାନା, ଅସଲରେ ଦୈନିକ ରାଶିଫଳ ଉପରେ ତାଙ୍କ ନଜର । ସେଦିନ ମଧ୍ୟ ଦୀନବନ୍ଧୁ ଚାହା ଢ଼ୋକେ ପିଇ ଆଖି ବୁଲେଇ ଆଣିଲେ ତାଙ୍କ ଜନ୍ମରାଶି 'ତୁଳା'ର ବିବରଣୀ ଉପରେ । ଲେଖା ଥିଲା,'ଆପଣଙ୍କ ରାଶିର ତୃତୀୟରେ ଚନ୍ଦ୍ରଙ୍କ ଚଳନ ହେତୁ କର୍ମକ୍ଷେତ୍ରରେ ଅଗ୍ରଗତି କରିବେ । ଦୂରଯାତ୍ରା କରି ପାରନ୍ତି । ପରିବାରରେ ସୌଖ୍ୟ ବୃଦ୍ଧି ପାଇବ । ସ୍ୱର୍ଣ୍ଣ ଅଳଙ୍କାର କ୍ରୟଯୋଗ ଅଛି । ଯୁବକମାନେ କର୍ମତତ୍ପର ହେବେ । ମହିଳାମାନେ ଗୃହ କାର୍ଯ୍ୟରେ ବ୍ୟସ୍ତ ରହିବେ । ଆଜି କର୍ମକ୍ଷେତ୍ରକୁ ଗଲାବେଳେ ପକେଟରେ ହଳଦିଆ ଫୁଲଟେ ରଖି ଘରୁ ବାହାରନ୍ତୁ । ଶୁଭଫଳ ମିଳିବ !'

ଦୀନବନ୍ଧୁଙ୍କୁ ନୀଳସାହୁର ଚାହାଟା ଭଲ ଲାଗିଲାନି ନା ସେ ଦିନର ରାଶିଫଳଟା ଅରୁଚିକର ଲାଗିଲା କିଛି ବୁଝି ହେଲାନି, କିନ୍ତୁ ମୁହଁଟା ତାଙ୍କର ବାସି-ତୋରାଣୀ ପିଇବା ଭଳି ଆମ୍ବିଲେଇଗଲା । ଅଭ୍ୟାସ ବଶତଃ ସେ ପୃଷ୍ଠା ଓଲଟେଇଲେ । ଅକସ୍ମାତ୍ ଅଟକିଗଲେ 'ମର୍ମନ୍ତୁଦ ସଡ଼କ ଦୁର୍ଘଟଣା' ଲେଖାଥିବା ଗୋଟେ ସମ୍ବାଦ ଉପରେ । ଘଟଣାଟା ପଢ଼ିବା ମାତ୍ରେ ସେ ଚମକିପଡ଼ିଲେ !

'ଗତକାଲି ଭୁବନେଶ୍ୱରରୁ ଭଦ୍ରକ ଅଭିମୁଖେ ଯାଉଥିବା ଗୋଟେ ଧଳା ବୋଲେରୋ ଚଣ୍ଡିଖୋଲ ଛକ ନିକଟରେ ଦୁର୍ଘଟଣାଗ୍ରସ୍ତ । ଘଟଣା ସ୍ଥଳରେ ଦୁଇଜଣ  ଏବଂ ହସପିଟାଲ ନେବା ବାଟରେ ଆଉଜଣେ ଯାତ୍ରୀଙ୍କ ମୃତ୍ୟୁ । ଗୁରୁତର ଅବସ୍ଥାରେ ଡ୍ରାଇଭର ସଦାନନ୍ଦ ଘଡ଼େଇ କଟକ ବଡ଼ ଡାକ୍ତରଖାନାରେ ଚିକିତ୍ସାଧୀନ !'

ସମ୍ବାଦଟାକୁ ପୁଣିଥରେ ଆମୂଳଚୂଳ ପଢ଼ି ଦୀନବନ୍ଧୁ ନଥି କିନା ବସିପଡ଼ିଲେ କାଠବେଞ୍ଚ୍ ଉପରେ । ଆଖି ଆଗରେ ତାଙ୍କର ନାଚିଉଠିଲା ଗତକାଲି ସଦାନନ୍ଦ ଓ ତାଙ୍କଭିତରେ ହେଇଥିବା ଆଲୋଚନା ବେଳର ଦୃଶ୍ୟ ! ମାତ୍ର କେଇ ଘଣ୍ଟାର ବ୍ୟବଧାନ ! ଲୋକଟା କେଡ଼େ ଦାଣ୍ଡରେ ଯୁକ୍ତି କରୁଥିଲା ଭାଗ୍ୟ ଫାଗ୍ୟ କିଛି ନାହିଁ ବୋଲି, ହେଲେ ବିଚରା ଭାଗ୍ୟ ହାତରୁ ମୁକୁଳେଇ ପାରିଲାନି ନିଜକୁ !

ସେଠୁ ସେ ହଠାତ୍ କିଏ ହାତଠାରି ଡାକିଲା ଭଳିଆ ଉଠିଲେ ଏବଂ ପେପରଟାକୁ ଫୋପାଡ଼ିଦେଇ ଧାଇଁଲେ ଡାକ୍ତରଖାନା ଆଡ଼କୁ । ବେଶି ଦୂର ନୁହେଁ ବଡ଼ ଡାକ୍ତରଖାନା । ହସପିଟାଲ୍‌ରେ ପହଞ୍ଚି ଦୁର୍ଘଟଣାଗ୍ରସ୍ତ ସଦାନନ୍ଦ ଘଡ଼େଇଙ୍କୁ ଠାବ କରିବାରେ କିଛି ଅସୁବିଧା ହେଲାନି ତାଙ୍କୁ ।

ସଦାନନ୍ଦଙ୍କୁ ଅତି ଉଦ୍‌ବେଗ ଜନକ ଅବସ୍ଥାରେ ଆଡମିଟ୍ କରାଯାଇଥିଲା ହସ୍ପିଟାଲରେ । ଡାକ୍ତରମାନଙ୍କ ବହୁ ଚେଷ୍ଟା ପରେ ତାଙ୍କ ଅବସ୍ଥା କ୍ରମଶଃ ସୁଧୁରୁଥିଲା । ସେ ସଚେତ ଅବସ୍ଥାରେ ଥିଲେ ଏବଂ ଯନ୍ତ୍ରଣାରେ ଛଟପଟ ହଉଥିଲେ । ହଠାତ୍ ସାମନାରେ ଦୀନବନ୍ଧୁ ମଉସାଙ୍କୁ ଦେଖି ଆଖି ତାଙ୍କର ଟିକେ ଉଜ୍ଜ୍ୱଳି ଉଠିଲା । ଦୀନବନ୍ଧୁ ପାଖକୁ ଗଲେ ଏବଂ ତାଙ୍କ ହାତଟାକୁ ଆଉଁଶିଦେଇ କହିଲେ, "ସବୁ ଭାଗ୍ୟରେ ବାପା ! ଆମେ ତାକୁ ମାନିବା କି ନ'ମାନିବା, ସେଇଟା ଅଲଗା କଥା । କିନ୍ତୁ ତା' କବଜାରୁ ମଣିଷକୁ ନିସ୍ତାର ନାଇଁ !"

ମଉସାଙ୍କ ଅସ୍ୱଷ୍ଟ ଭାଷା ସଦାନନ୍ଦ ବୁଝି ପାରିଲେ କି କ'ଣ, ଠଓ ତାଙ୍କର ଥରି ଉଠିଲା । ଯନ୍ତ୍ରଣାକ୍ଲିଷ୍ଟ ଓଠରେ ସେ ଯାହା କହିଲେ ତା' ସାରମର୍ମ ଏହିଭଳି, 'ମଉସା ! ତମେ ଭାବନି ଯେ, କୌଣସି ଦୁଷ୍ଟଗ୍ରହର ପ୍ରଭାବରେ ମୋ'ର ଏଭଳି ଅବସ୍ଥା ହେଲା । ପୃଥିବୀରେ ପ୍ରତି ସେକେଣ୍ଡକୁ ଶହଶହ ଗାଡ଼ିଦୁର୍ଘଟଣା ହୁଏ, ହଜାରହଜାର ଲୋକ ମରନ୍ତି, ସେ ସବୁ ଦୁଷ୍ଟ ଗ୍ରହମାନଙ୍କ ରାଗରୋଷରୁ ହୁଏ ବୋଲି ଭାବିବା ଠିକ୍ ନୁହେଁ । ପ୍ରତି ଦୁର୍ଘଟଣା ପଛରେ କିଛି କାରଣ ଥାଏ । ମୋ' ଗାଡ଼ି ଦୁର୍ଘଟଣାର କାରଣ କ'ଣ, ସେକଥା ମୁଁ ଜାଣିଚି । ହେଲେ ମଉସା ! ମୋ' ଭୁଲ ପାଇଁ ତିନି ତିନିଟା ନିରୀହ ଜୀବନ ଚାଲିଗଲା, ସେତିକି ଯାହା ଦୁଃଖ !'

ଦୀନବନ୍ଧୁ ଆଶ୍ୱାସନା ଦେବା ଭଙ୍ଗିରେ ସଦାନନ୍ଦଙ୍କ ଛାତିକୁ ଆଉଁଶିଦେଇ କହିଲେ, "ସେମାନଙ୍କ ଅକାଳମୃତ୍ୟୁ ଯୋଗ ଥିଲେ ଆମେ କ'ଣ କରିପାରିବା କହିଲୁ ବାପା ? ସବୁ ନିୟତି ହାତର ଖେଳ ।"

ସଦାନନ୍ଦ ଗୋଟେ ଛାତିଥରା ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, "ମଉସା ! ମୁଁ ମରିଗଲେ ମୋ'ର ଗୋଟେ ଅବସୋସ୍ ରହିଯିବ । କିନ୍ତୁ ଯଦି ବଞ୍ଚେ, ତା'ହେଲେ ଥରେ ଯାଇ ଜ୍ୟୋତିଷ ବାନାମ୍ବର ତ୍ରିପାଠିଙ୍କୁ ଗୋଟେ କଥା ପଚାରିବି !"

"ଏଭଳି ଅବସ୍ଥାରେ ଜ୍ୟୋତିଷ ପାଖରୁ ଭାଗ୍ୟ, ଭବିଷ୍ୟକଥା ଜାଣି ଆଉ ଲାଭ କ'ଣ ବାପା ? ଯାହା ଘଟିବାର ଥିଲା ତ ଘଟି ସାରିଲାଣି ।" ଦୀନବଂଧୁ ଆଶ୍ୱାସନା ଦେଲେ ।

"ମୋ' କଥା ନୁହେଁ ମଉସା ! ସେଇ ତିନିଜଣ ଯୁବକଙ୍କ ବିଷୟରେ ପଚାରିଥାନ୍ତି ।"

"ସେମାନେ ତ ସେପାରିକୁ ଚାଲିଗଲେଣି, ସେମାନଙ୍କ ବିଷୟରେ ଜାଣିବାକୁ ଆଉ କ'ଣ ବାକି ରହିଲା ଯେ ତୁ ଜ୍ୟୋତିଷଙ୍କୁ ପଚାରିବୁ ?"

ସଦାନନ୍ଦଙ୍କୁ ଲାଗୁଥିଲା, ଥରେ ନିଃଶ୍ୱାସ ନେଲେ ଛାତିରେ ମହଣେ ଓଜନର ପଥର ଉଠେଇବା ଭଳି । ପଦେ କଥା କହିଲେ ସେ ଅଣନିଃଶ୍ୱାସି ହୋଇ ଉଠୁଥିଲେ । ତଥାପି ବଡ଼ କଷ୍ଟରେ ସେ କହିଲେ, "ମଉସା ! ସେ ତିନିଜଣ ମୋ' ଗାଡ଼ିରେ ବସି ଆଲୋଚନା କରୁଥିଲେ । ମୁଁ ଶୁଣିଛି । ତିନିଜଣଯାକ ନିଜନିଜ ଉଜ୍ଜ୍ୱଳ ଭବିଷ୍ୟତ କଥା ଜ୍ୟୋତିଷଙ୍କ ପାଖରୁ ଶୁଣି ଖୁସି ହଉଥିଲେ । ଇଞ୍ଜିନିୟର ବାବୁଙ୍କୁ ଜ୍ୟୋତିଷ କହିଥିଲେ, ବିଦେଶ ଗଲେ ତାଙ୍କ ଭବିଷ୍ୟତ ଅତି ଉଜ୍ଜ୍ୱଳ ! ଅବଶ୍ୟ ସେଠି ଜଏନ୍ କରିବାର ତିନିମାସ ତିନିଦିନ ପରେ ଗୋଟେ ଗ୍ରହଦୋଷ

ଆସିପାରେ । ଯାର ପ୍ରତିକାର ପାଇଁ ଜ୍ୟୋତିଷ ତାଙ୍କୁ ଗୋଟେ 'ଗ୍ରହ-ମୁଦ୍ରିକା' ଦେଇଥିଲେ । ବିଦେଶ ଗଲାପରେ ଶନିବାର ଦେଖି କାଣି ଆଙ୍ଗୁଠିରେ ପିନ୍ଧିବାପାଇଁ କହିଥିଲେ । ଦାମ୍ ସତର ହଜାର ଟଙ୍କା । ସେ ଖଣ୍ଡିକ ସିଏ ଧରିଥିଲେ ।

ଦ୍ୱିତୀୟ ଯୁବକକୁ ଜ୍ୟୋତିଷ କହିଥିଲେ, ମାଟିରୁ ବାହାରୁଥିବା ଯେ କୌଣସି ବସ୍ତୁକୁ ନେଇ ବ୍ୟବସାୟ କଲେ ତାଙ୍କ ଭାଗ୍ୟ ସୂର୍ଯ୍ୟଭଳି ଚମକିବ ! କିନ୍ତୁ ପ୍ରଥମେ ନବରତ୍ନ ଖଚିତ 'ଶ୍ରୀ-ଯନ୍ତ୍ର'ରେ ଧନଲକ୍ଷ୍ମୀଙ୍କୁ ସ୍ଥାପନ କରି ନବଗ୍ରହ ପୂଜାଟିଏ କରିବାକୁ ପଡ଼ିବ । ତା'ପରେ ବ୍ୟବସାୟ ଆରମ୍ଭ ହେବ । ତେଣୁ ସେ ବାର ହଜାର ଟଙ୍କା ଦେଇ ଶ୍ରୀ-ଯନ୍ତ୍ରଟିଏ କିଣି ଧରିଥିଲେ ।

ଓ.ଏ.ଏସ୍ ପ୍ରାର୍ଥୀ ମଧ୍ୟ ନିଜ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଚଉଦ ହଜାର ଟଙ୍କା ଦେଇ କିଛି ଗୋଟେ ସୌଭାଗ୍ୟ ମୁଦ୍ରିକା କିଣିଥିଲେ । ସମସ୍ତଙ୍କ ହାତରେ ଥିଲା ନିଜନିଜ ସୁନେଲୀ ଭବିଷ୍ୟତର ଲମ୍ବା ଚିଠା, ଅନେକ ସ୍ୱପ୍ନ ! ହେଲେ....."

"ହେଲେ ଆଉ କ'ଣ ? ଉଜ୍ଜ୍ୱଳ ଭବିଷ୍ୟତ ଭୋଗ କରିବାପାଇଁ ମଣିଷର ଲମ୍ବା ଆୟୁଷ ଥିବା ଦରକାର ! ଏମାନେ ତିନିଜଣଯାକ ତ କପାଳରେ ଅଳ୍ପ ଆୟୁଷ ଲେଖି ଆଣିଛନ୍ତି । ଆଉ ଭୋଗ କରିବେ କ'ଣ ?"

ସଦାନନ୍ଦ କହିଲେ, "ମଉସା ! ପଣ୍ଡିତ ମହାଶୟଙ୍କୁ ମୁଁ ସେଇ କଥା ହିଁ ପଚାରିଥାନ୍ତି ! ସିଏ ଯଦି ଗଣନା କରି ଦୀର୍ଘ ଜୀବନର ଭବିଷ୍ୟ ସୂଚନା ଦେଇପାରୁଛନ୍ତି, କାହାର କେତେବେଳେ ବିପଦ ଆପଦ ପଡ଼ିବ, ସେଥିପାଇ ପ୍ରତିକାର ବି ବତାଉଛନ୍ତି, ତା'ହେଲେ ତାଙ୍କ ଘରୁ ବାହାରିବାର ମାତ୍ର ଦେଢ଼ଘଣ୍ଟା ଭିତରେ ଏତେବଡ଼ ଦୁର୍ଘଟଣାଟେ ଘଟିଗଲା । ସେଥିରେ ତିନିଜଣଯାକ ମରିଗଲେ । ପଣ୍ଡିତେ ଜ୍ୟୋତିଷ ବିଦ୍ୟାରୁ ଏଇଟା କେମିତି ଜାଣିପାରିଲେନି ? ଯଦି ସେତିକି ସେ ଜାଣି ପାରନ୍ତେ, ତା'ହେଲେ ତିନିତିନିଟା ଅମୂଲ୍ୟ ଜୀବନ ଅକାଳ ମରଣ ମୁହଁରୁ ରକ୍ଷା ପାଇ ଯାଆନ୍ତାନି ? ପଣ୍ଡିତଙ୍କୁ ମୋ' ପଚାରିବା କଥା, ତାଙ୍କ ଭବିଷ୍ୟବାଣୀ ଏଠି ବାଟବଣା ହେଇଗଲା, ନା କେବଳ ରାଶି ନକ୍ଷତ୍ରର ଖେଳ ଦେଖେଇ ସେ ସମାଜକୁ ବାଟବଣା କରି ଚାଲିଛନ୍ତି ?"

ସଦାନନ୍ଦଙ୍କ ଯୁକ୍ତିକୁ ଦୀନବନ୍ଧୁ ଆଜି ପୁଣିଥରେ ଗହିରେଇକି ଦେଖିଲେ, କଥାଟା କିଛି ବେଠିକ୍ ଲାଗିଲାନି ତାଙ୍କୁ । ଏଥର ମନ ବି ଠିକ୍ ବୁଝିପାରିଥିଲା ବୋଧେ, କାରଣ ତାଙ୍କ ମଳିନ ମୁହଁଟି କ୍ରମଶଃ ଉଜ୍ଜ୍ୱଳ ଦିଶିବାକୁ ଆରମ୍ଭ କଲା ।



# ଗୋଟିଏ କାନୁଘଣ୍ଟା ଓ ଦୁଇଟି କଣ୍ଟାର କାହାଣୀ

ଭଙ୍ଗା କୋଠାର କାନୁ ତଳେ ଚାପି ହୋଇ ସମସ୍ତଙ୍କ ଅଲକ୍ଷ୍ୟରେ ବଂଚି ରହିଥିବା ବିବଶ ପ୍ରାଣୀଟିଏ ଭଳି ଅସହାୟ ଦିଶୁଥିଲେ ଭବାନୀଶଙ୍କର ଦାସ ! ରାତିର ଅବଶିଷ୍ଟ ପ୍ରତିଟି ସେକେଣ୍ଡ ତାଙ୍କପାଇଁ ଥିଲା ଅତ୍ୟନ୍ତ ବ୍ୟଥିତ ଓ ବିଡ଼ମ୍ବିତ ! ଠିକ୍ ଭାବେ କହି ହେବନି, ମଧ୍ୟରାତ୍ରିର ନିଃସଙ୍ଗ ମୁହୂର୍ତ୍ତଗୁଡ଼ିକୁ ସେ କାଟୁଥିଲେ ପତ୍ନୀଙ୍କର ଅପ୍ରତ୍ୟାଶିତ ମୃତ୍ୟୁ ପ୍ରତୀକ୍ଷାରେ ନା ରୂପାନ୍ତରିତ ଗୋଟେ ନୂଆ ଜୀବନର ପ୍ରତ୍ୟାଶାରେ ! ସୁଭଦ୍ରା ମୃତବତ୍ ପଡ଼ିଥିଲେ ଶେଯରେ ।

କେବେକେବେ ଏମିତି ବି ସମୟ ଆସେ, 'ଜୀବନ ଓ ମୃତ୍ୟୁ'ର ଦୋ'ଛକିରେ ଠିଆ ହୋଇ ମଣିଷ ସ୍ଥାଣୁ ପାଲଟିଯାଏ । ହାତରୁ ସବୁ ଗୋଟି ଖସିଗଲା ପରେ ମଣିଷ କିଂକର୍ତ୍ତବ୍ୟବିମୂଢ଼ ! ଭବାନୀବାବୁ ଠିକ୍ ସେମିତି ସ୍ଥିତିରେ ହିଁ ବସିଥିଲେ ମୁମୂର୍ଷୁ ପତ୍ନୀଙ୍କ ଶଯ୍ୟା ନିକଟରେ । ରାତି ସାରା । ସ୍ତବ୍ଧ-ନିର୍ବାକ୍ ! ଜଳାଶୟ ମଝିରେ ଦୀପଦଣ୍ଡି ଭଳି ଏକଦମ୍ ଏକ୍ଲା ! ପାଖରେ କେହି ନାହିଁ । ପୁଅ ଭବେଶ୍ କାଲିଫର୍ଣ୍ଣିଆରେ । ଝିଅ-ଜୋଇଁ ମୁମ୍ବାଇରେ । ଆଗକୁ ହାତ ବଢ଼େଇଲେ ଆଉ କିଏ ଅଛି ତାଙ୍କର ? ପଛର ସବୁ ସଂପର୍କ ତ ଗାଆଁରେ କୋଉ କାଳୁଁ ଛାଡ଼ି ଆସିଛନ୍ତି ! ଆଉ ଏ ମହାନଗରୀରେ ସଂପର୍କ କହିଲେ, କଲୋନୀରେ ତାଙ୍କଭଳି କିଛି ବର୍ଷିୟାନ୍ ବନ୍ଧୁ ଏବଂ ଦୁଇ ଚାରିଟା ଅଣୁପରିବାର !

ପତ୍ନୀଙ୍କ ନିଶ୍ଚଳ ଦେହଟି ଆଡ଼େ ଚାହିଁ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ଭବାନୀବାବୁ । କିଛି ବୁଝି ପାରୁନଥଲେ ସେ, ହଠାତ୍ କେମିତି, କ'ଣ ସବୁ ଘଟିଗଲା ! !

ଆଜି ଅପରାହ୍ନ ଚାରିଟା ସମୟର ଘଟଣା । ଖରାବେଳ ଖିଆ ପରେ ଟି.ଭି. ଦେଖୁଦେଖୁ ଘଡ଼ିଏ ଗଡ଼ପଡ଼ ହେବା ସ୍ୱାମୀ ସ୍ତ୍ରୀଙ୍କ ଅଭ୍ୟାସ । ଘରେ ତ କେହି ନାହିଁ । ବୁଢ଼ା, ବୁଢ଼ୀ ଦୁହେଁ ଦିନ ସାରା ବସି ଆଉ କ'ଣ କରିବେ ? ଆଜି ବି ସେମିତି ଗଡୁଥିଲେ । ଚାରିଟା ବାଜିବାରୁ ସୁଭଦ୍ରାଦେବୀ ଉଠିଲେ । ହଠାତ୍ କ'ଣ ହେଲା କେଜାଣି ଶେଯରୁ ଉଠୁଉଠୁ ସେ ଅଚେତ ହୋଇ ତଳେ ପଡ଼ିଗଲେ । ଚେତା ବୁଡ଼ିଗଲା । ଭବାନୀ ବାବୁ ହଠାତ୍ ହଡ଼ବଡ଼େଇଗଲେ । ସୁଭଦ୍ରାଙ୍କୁ କୋଳେଇ ଧରି ତଳ ଫ୍ଲୋର୍‌ରେ ରହୁଥିବା ସୁବାସ ବାବୁଙ୍କୁ ଖୁବ୍ ଜୋରରେ ଡାକ ପକେଇଲେ । ସୁବାସ ବାବୁଙ୍କ ସାଙ୍ଗରେ ତାଙ୍କ ପତ୍ନୀ ଅଞ୍ଜଳି ଏବଂ

*ସୁରେନ୍ଦ୍ର ନାଥ ସାହୁ*

କରୁଣାକର ବାବୁ ବି ଆସି ପହଂଚିଗଲେ । ପ୍ରକୃତରେ ଘଟଣା କ'ଣ ଜାଣିବାର କିଛି ଉପାୟ ନଥିଲା । ଆଗରୁ ତ ଏମିତି କେବେ ହେଇନି ସୁଭଦ୍ରାଙ୍କର, ଜାଣିବେ କ'ଣ ?

ସୁବାସବାବୁ ଥଣ୍ଡାପାଣି ଦି'ଆଞ୍ଜୁଳା ଆଣି ସୁଭଦ୍ରାଙ୍କ ମୁହଁରେ, ତାଲୁରେ ଛାଟିଲେ । କିଛି ପ୍ରତିକ୍ରିୟା ନାହିଁ । ଘନଘନ ଖର ନିଃଶ୍ୱାସ ଚାଲିଚି, କିନ୍ତୁ ଚେତା ଫେରୁନି । ସମସ୍ତଙ୍କ ମୁହଁରେ ହତାଶାର କଳାଛାଇ । ଏବେ ହଠାତ୍ କିଛି କରି ହବନି । କୋଉ ମେଡ଼ିକାଲକୁ ବି ନେଇ ହବନି । କାରଣ ଆଜି ସକାଳୁ ହିଁ ଆରମ୍ଭ ହେଇଚି ରାଜ୍ୟ ଡାକ୍ତରୀ ସଂଘର ସମୂହ ହରତାଳ । ପ୍ରାଇଭେଟ୍ ନର୍ସିଂହୋମ୍, ସରକାରି ଡାକ୍ତରଖାନା, ସବୁଠି ଚାଲିଚି ଡାକ୍ତରଙ୍କ 'ଷ୍ଟେଥୋଛୋଡ଼ୋ' ଆନ୍ଦୋଳନ । ବିଭିନ୍ନ ହସପିଟାଲ୍‌ରେ ଗଣ୍ଡଗୋଳ ଆରମ୍ଭ ହୋଇଗଲାଣି ! ତଥାପି ସୁବାସବାବୁ ପାଖ ମେଡ଼ିକାଲର ଆମ୍ବୁଲାନ୍ସକୁ ଫୋନ୍ ଲଗାଗଲେ । କିନ୍ତୁ ସିଏ 'ଆଉଟ୍ ଅଫ୍ ରିଚ୍' ! ବାରମ୍ବାର ସେଇ ଏକା ଘୋଷଣା । କରୁଣାକର ବାବୁ ପ୍ରାଇଭେଟ୍ ଗାଡ଼ି ଡାକିବାକୁ ଯାଉଥିଲେ, ଏତିକିବେଳେ ଅଯାଚିତ ଅଶୀର୍ବାଦ ଭଳି ପହଂଚିଗଲେ ସଦାନନ୍ଦ ପହି ! ପହିବାବୁଙ୍କୁ ଦେଖି ଭବାନୀବାବୁ ଟିକେ ଆଶ୍ୱସ୍ତ ହେଲେ । ସବୁଠୁ ବଡ଼କଥା ହେଲା ପ୍ରଖ୍ୟାତ ନ୍ୟୁରୋସର୍ଜନ୍ ଡକ୍ଟର ପ୍ରଦୀପ ମହାନ୍ତି ପହିବାବୁଙ୍କର ଘନିଷ୍ଠ ବନ୍ଧୁ । ଏଇ କଲୋନୀରେ ହିଁ ରହନ୍ତି । ଯା'ହେଉ ଡ. ମହାନ୍ତି ଷ୍ଟ୍ରାଇକ୍ କ୍ୟାମ୍ପକୁ ନ'ଯାଇ ଘରେ ଥିଲେ । ପହିବାବୁଙ୍କ ଅନୁରୋଧ ରଖି ତତ୍‌କ୍ଷଣାତ୍ ଆସି ପହଂଚିଲେ । ଟ୍ରିଟମେଂଟ୍ ଆରମ୍ଭ ହେଲା ।

ଡାକ୍ତରଙ୍କ ଯତ୍ପରୋନାସ୍ତି ଚେଷ୍ଟା ପରେ ବି ଆଖି ଖୋଲିଲେନି ସୁଭଦ୍ରା । ବେଳେବେଳେ ପଲସ୍ ରେଟ୍ ବଢ଼ି ଯାଉଥିଲା । ଡାକ୍ତର ମହାନ୍ତି କହିଲେ, "ଏ ଗୋଟେପ୍ରକାର ସେମି କୋମାଟିକ୍ ପ୍ରବ୍ଲେମ୍ ! ବେଶ୍ କିଛି ଘଣ୍ଟା ପର୍ଯ୍ୟନ୍ତ ରୋଗୀ ଏ ଅବସ୍ଥାରେ ରହିପାରେ । ତା' ଭିତରେ ହଠାତ୍ କିଛି ଅଘଟଣ ଘଟିଯିବାର ବି ସମ୍ଭାବନା ଥାଏ । ଅବଶ୍ୟ ତା' ପ୍ରିକସନ୍ ମୁଁ ନେଇଚି । ତେବେ ଇମିଡିଏଟ୍‌ଲି ଗୋଟେ ବ୍ରେନ୍ ଏମ.ଆର୍.ଆଇ ହେବା ଦରକାର !"

ଡାକ୍ତରଙ୍କ କଥା ଶୁଣିବାମାତ୍ରେ ପହିବାବୁ ଅଣ୍ଟା ଭିଡ଼ି ବାହାରିପଡ଼ିଲେ ।

ସଦାନନ୍ଦ ପହି । ବୟସ ଯଦିଓ ସତୁରି ଟପିଲାଣି, ତଥାପି ଯୁବ ସୁଲଭ ଉଦ୍ଦାମତା ତାଙ୍କ ଭିତରେ ଖୁନ୍ଦି ହୋଇ ରହିଚି । କଲୋନୀରେ ହଠାତ୍ କାହାର କିଛି ଡାକ୍ତରୀ ସହାୟତା ଦରକାର, କାହାକୁ ବ୍ଲଡ୍ ଡୋନୋର୍‌ଟେ ଦରକାର, କାହାର ହସପିଟାଲ ଯିବାପାଇଁ ଗାଡ଼ି ଦରକାର ତ ଅକୁଣ୍ଠିତ ସହଯୋଗର ହାତ ବଢ଼ାଇଦେବେ ପହିବାବୁ । ଏଭଳି ପରୋପକାର କାମରେ ସଦାବେଳେ ସେ ଏତେ ବ୍ୟସ୍ତ ଯେ, ବାର୍ଦ୍ଧକ୍ୟ ତାଙ୍କ କେଶାଗ୍ର ଛୁଇଁବାକୁ ବି ସାହସ କରେନି । ଆଜିର ଏ ସ୍ୱାର୍ଥସର୍ବସ୍ୱ ସମାଜରେ ପହିବାବୁଙ୍କ ଭଳି ପରଘରେ ସୁଖ ବାଣ୍ଟୁଥିବା ମଣିଷ ଖୁବ୍ କମ ମିଳନ୍ତି ।

ଏମ.ଆର.ଆଇ ପାଇଁ ପହିବାବୁଙ୍କ ସହିତ ତାଙ୍କରି ଗାଡ଼ିରେ ସଂଜ୍ଞାହୀନ ସୁଭଦ୍ରାଙ୍କୁ ଧରି ଭବାନୀ ବାବୁ ଧାଇଁଲେ 'ଶୁଭମ୍' ଡାଇଗ୍ନୋଷ୍ଟିକ୍ । ସେଠୁ କାମ ସାରି ଫେରୁଫେରୁ ରାତି ଆଠଟା । ସୁଭଦ୍ରାଙ୍କ ପରିସ୍ଥିତରେ କିନ୍ତୁ କିଛି ବି ପରିବର୍ତ୍ତନ ନାହିଁ । ଦୀର୍ଘ ଚାରିଘଣ୍ଟା ଧରି କାଠ ଗଡ଼ଟେ ଭଳି ସେମିତି ପଡ଼ିଛନ୍ତି । ବେଳେବେଳେ ନିଃଶ୍ୱାସର ପ୍ରଖରତା ବଢ଼ିଯାଉଛି । ଟିକେ ଭିଡ଼ିମୋଡ଼ି ହେଉଛନ୍ତି, ପୁଣି ସ୍ଥିର !

ଡା.ମହାନ୍ତି ଏମ.ଆର.ଆଇ ରିପୋର୍ଟ ଦେଖି କହିଲେ, "ଦେଖନ୍ତୁ ଭବାନୀ ବାବୁ ! ପରିସ୍ଥିତି ଟିକେ ଜଟିଳ ! ତା'ମାନେ ଫିଫ୍‌ଟି ଫିଫ୍‌ଟି ଚାନ୍‌ସ ! ! ଅନ୍ୟ କୌଣସି ସମୟ ହେଇଥିଲେ ଆମେ ରୋଗୀକୁ ତୁରନ୍ତ ଡାକ୍ତରଖାନା ନେଇଯାଆନ୍ତେ । କିନ୍ତୁ ଆଜିର ପରିସ୍ଥିତି ଭିନ୍ନ । ହରତାଳ ଏବେ ବି ଚାଲିଚି । କିଛି କରିହବନି । ଅନେକ ସିରିଏସ୍ ରୋଗୀ ବିଭିନ୍ନ ଡାକ୍ତରଖାନା ବାହାରେ ପଡ଼ିଛନ୍ତି । କିନ୍ତୁ ଖବର ଆସୁଛି, ଖୁବ୍ ଶୀଘ୍ର କିଛି ଗୋଟେ ଫଇସଲା ହୋଇ ରାତି ଭିତରେ ଷ୍ଟ୍ରାଇକ୍ କଲ୍‌ଅଫ୍ ହେଇଯିବ । ସୁଭଦ୍ରାଦେବୀଙ୍କ ପାଇଁ ବରଂ ମୁଁ ରିସ୍କ ନଉଚି । ରାତିଟା ସେ ଘରେ ହିଁ ରହନ୍ତୁ । ସାଲାଇନ୍ ଲାଗିବା ଆଉ ଦରକାର ନାହିଁ । ମୁଁ ତାକୁ ଖୋଲିଦଉଚି । ଗୋଟେ ଇନ୍‌ଟ୍ରାଭେନସ୍ ଇନ୍‌ଜେକସନ୍ ଦେଇଛି । ଦେଖନ୍ତୁ, ମୋ' ଦ୍ୱାରା ଯାହା ହେବା କଥା ସବୁ ମୁଁ କରିଛି । ଏବେ ଯେଉଁ ମେଡ଼ିସିନ୍‌ଟା ଆପ୍ଲାଇ କରିଚି, ସେଇଟା ରେସ୍‌ପଣ୍ଡ୍ କରିବାକୁ ଯଥେଷ୍ଟ ସମୟ ଲାଗିବ । ପ୍ରାୟ ଆଠ ଘଣ୍ଟା ! ଏବେ ରାତି ଦଶଟା ବାଜିଲା । ତା' ମାନେ ସକାଳ ଛଅଟା ପରେ ହିଁ କିଛି ଗୋଟେ ଆଶା କରାଯାଇ ପାରେ । ତା'ପୂର୍ବରୁ ଆଦୌ ନୁହେଁ, କିନ୍ତୁ ରାତି ତମାମ୍ ତାଙ୍କୁ ଟିକେ ଜଗି ବସିବାକୁ ପଡ଼ିବ । କହି ହେବନି, କାଳେ କିଛି ଅଘଟଣ ଘଟିଯାଇପାରେ ! ପେସେଣ୍ଟର ଏଭଳି କ୍ରିଟିକାଲ୍ ଅବସ୍ଥାରେ ମେଡ଼ିସିନ୍ ଆଦୌ ରେସପଣ୍ଡ୍ ନ'କରିବା ସଂଭାବନା ବି ଥାଏ ! ସେଇଟା ହିଁ ଅସୁବିଧା ! କିନ୍ତୁ ଆମେ ସେ ନକାରାତ୍ମକ ବିଚାର ମନକୁ ଆଣିବାନି ! ବରଂ ଈଶ୍ୱରଙ୍କୁ ପ୍ରାର୍ଥନା କରିବା, ସକାଳୁ ସୁଭଦ୍ରାଦେବୀ ଖଟ ଉପରେ ଉଠି ବସନ୍ତୁ ! ହଉ ଭବାନୀବାବୁ, ଟେକ୍ କ୍ୟାର୍ ! ଏଥର ମୁଁ ଆସୁଚି ।" କହି ଡ. ମହାନ୍ତି ଉଠିଲେ ।

ଭବାନୀବାବୁ ବିନମ୍ରତାର ସହିତ ଦୁଇହାତ ଯୋଡ଼ି କହିଲେ, "ଡକ୍ଟର ! ଆପଣମାନଙ୍କୁ ଈଶ୍ୱରଙ୍କ ଦ୍ୱିତୀୟ ଅବତାର କାହିଁକି କୁହାଯାଏ, ଏହାର ସତ୍ୟତା ମୁଁ ଆଜି ଉପଲବ୍ଧି କଲି । ଆପଣଙ୍କ ଉପରେ ମୋର ପୂରା ଭରସା ଅଛି । ଈଶ୍ୱରଙ୍କ ଉପରେ ବି । ମୁଁ ରାତି ସାରା ବସି ପତ୍ନୀଙ୍କ ପାଇଁ ପ୍ରାର୍ଥନା କରିବି । ପ୍ଲିଜ୍ ଆପଣମାନେ ଘରକୁ ଯାଆନ୍ତୁ ।"

ଏତିକିବେଳେ ପହିବାବୁ ଉଠିଆସି କହିଲେ, "ଭବାନୀବାବୁ ! ଆପଣ ନିଜକୁ ମୋଟେ ଏକା ଭାବନ୍ତୁନି । ରାତିରେ ମୁଁ ବି ରହିବି ଆପଣଙ୍କ ସହିତ ।"

ଭବାନୀବାବୁ ତାଙ୍କ ଦୁଇ ହାତକୁ ଭିଡ଼ିଧରି କହିଲେ, "ପହିବାବୁ ! ବହୁତ ବହୁତ ଧନ୍ୟବାଦ ଆଜ୍ଞା ! ଆପଣଙ୍କ ସହାୟତା ମୁଁ ଭୁଲିପାରିବିନି । ଆଉ ମତେ ଅଧିକ ଋଣି କରନ୍ତୁ ନାହିଁ । ଡାକ୍ତରବାବୁଙ୍କୁ ଧରି ଆପଣ ବି ଘରକୁ ଯାଆନ୍ତୁ ବିଶ୍ରାମ ନେବେ । ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁନି । ରାତିରେ କିଛି ଅସୁବିଧା ହେଲେ ମୁଁ ଆପଣଙ୍କୁ ନିଶ୍ଚୟ ଫୋନ୍ କରିବି ।"

"ହଉ, ଭବାନୀବାବୁ ! ଆପଣ ଚିନ୍ତା କରନ୍ତୁନି । ପାଖରେ ପୁଅ,ଝିଅ କିବା ନିଜର କେହି ନାହାନ୍ତି ବୋଲି ହତାଶ ହୁଅନ୍ତୁନି । ମୋର ବିଶ୍ୱାସ, ମ୍ୟାଡ଼ମ୍‌ଙ୍କର କିଛି ହବନି । ଭାବିନିଅନ୍ତୁ ଯେ, ସିଏ ଗାଢ଼ ନିଦରେ ଶୋଇପଡ଼ିଛନ୍ତି । ସକାଳେ ଉଠିବେ । କିନ୍ତୁ ଡ. ମହାନ୍ତି ଯାହା କହୁଛନ୍ତି, ସକାଳ ପର୍ଯ୍ୟନ୍ତ ଆପଣ ଟିକିଏ ସଜାଗ ରହିବେ । ଛ'ଟା ପରେ ମୁଁ ନିଜେ ଡାକ୍ତରଙ୍କୁ ଧରି ପୁଣି ଆସିବି ।" ପହିବାବୁ ଏତିକି କହି ଡ. ମହାନ୍ତିଙ୍କ ସହିତ ବିଦାୟ ନେଲେ ।

ଉଭୟେ ଚାଲିଗଲା ପରେ ଭବାନୀବାବୁ ନିଜ ଘରଟି ଭିତରେ ହୋଇଗଲେ ସଂପୂର୍ଣ୍ଣ ଏକଲା ! ଆଖି ଆଗରେ ପ୍ରିୟତମା ପତ୍ନୀଙ୍କ ସଜ୍ଞାହୀନ ଶରୀର ! ରାତି ତମାମ୍ ସେ ଏମିତି ପଡ଼ି ରହିବେ ! ଆଉ ତାଙ୍କୁ ଜଗି ବସିବାକୁ ପଡ଼ିବ ସାରା ରାତି, ସତର୍କତାର ସହିତ । କାରଣ କାଳେ କିଛି ଅଘଟଣ ଘଟିଯାଇପାରେ ! କିନ୍ତୁ ବିଡ଼ମ୍ବନାର କଥା, ମଣିଷ ଯେତେ ସତର୍କ ରହିଲେ ବି ମୃତ୍ୟୁକୁ ଅଟକେଇ ପାରିବନି ? ସୁଭଦ୍ରା ଅଧାବାଟରେ ମୋ' ହାତ ଛାଡ଼ି ଯିବାକୁ ଚାହୁଁଚନ୍ତି । ଯଦି ସେମିତି କିଛି ହୁଏ, ସୁଭଦ୍ରା ବିନା ମୋ' ଅବଶିଷ୍ଟ ଜୀବନ କେମିତି କଟିବ କିଏ ଜାଣେ ! ଏଭଳି କିଛି ଅଶୁଭ ଭାବନା ଭବାନୀବାବୁଙ୍କ ଅସୁସ୍ଥ ମନକୁ ବିଚଳିତ କରୁଥିଲା ।

ଅଚାନକ ଦୃଷ୍ଟି ତାଙ୍କର ସ୍ଥିର ହୋଇଗଲା ଆଖି ସାମନାରେ ଝୁଲୁଥିବା କାନ୍ଥଘଣ୍ଟାଟି ଉପରେ । ଆଶ୍ଚର୍ଯ୍ୟ ହେଲେ ସେ, କାରଣ ସେ ଜାଣିପାରି ନାହାଁନ୍ତି ଘଣ୍ଟାର ମିନିଟ୍ କଣ୍ଟାଟି କେତେବେଳେ ଖସିପଡ଼ିଛି । କେବଳ ଘଣ୍ଟାକଣ୍ଟା ଚାଲିଛି । ତେଣୁ ସମୟ ଠିକ୍ ଜାଣିହେଉନି । ସେ ଭାବିଲେ, ମିନିଟ୍ କଣ୍ଟା ବିନା ଘଣ୍ଟା କଣ୍ଟା କେଡ଼େ ଅସହାୟ ସତରେ ! ! ନିରନ୍ତର ସାଙ୍ଗ ହେଇ ଚାଲିବାପାଇଁ ଘଡ଼ିରେ ଉଭୟେ ଖଞ୍ଜା ହୋଇଥାନ୍ତି । ତା' ଭିତରୁ ଯଦି ଗୋଟିଏ ଖସିପଡ଼େ ଅନ୍ୟଟିର ସ୍ଥିତି ମୂଲ୍ୟହୀନ ! ଭବାନୀବାବୁ ସେ ନିଃସଙ୍ଗ ଘଣ୍ଟାକଣ୍ଟାଟି ଭଳି ନିଜକୁ ଅସହାୟ ଅନୁଭବ କଲେ ଏବଂ ଦୀର୍ଘଶ୍ୱାସ ଛାଡ଼ିଲେ ।

ତାଙ୍କୁ କେହିଜଣେ କହିଥିଲେ, ବନ୍ଦ ଥିବା କାନ୍ଥଘଣ୍ଟା କିମ୍ବା ଗୋଟିଏ କଣ୍ଟାରେ ଚାଲୁଥିବା ଘଣ୍ଟା ଘର ପାଇଁ ଭାରି ଅଶୁଭ ! ଭବାନୀବାବୁ ଚେତାବନୀଟିକୁ ସ୍ମରଣ କରି ପ୍ରମାଦ ଗଣିଲେ । ସଙ୍ଗେସଙ୍ଗେ ସେ ଲମ୍ବା ଷ୍ଟୁଲ୍ ଗୋଟିକ ଆଣି ତା' ଉପରେ ଚଢ଼ିଲେ ଏବଂ ଖୋଲି ଆଣିଲେ କାନ୍ଥରୁ ଘଣ୍ଟାଟିକୁ । ସ୍କ୍ରୁ-ଡ୍ରାଇଭର୍ ଆଣି ତା' ଡାଏଲ୍ ଗ୍ଲାସ ଖୋଲିଲେ ଏବଂ ଖସିପଡ଼ିଥିବା ମିନିଟ୍ କଣ୍ଟାଟିକୁ ପୁଣି ଖଞ୍ଜିଦେଲେ । ଟାଇମ୍ ସେଟ୍ କରି ଯଥା ସ୍ଥାନରେ

ଟାଙ୍ଗିଦେଲେ ଘଣ୍ଟାଟିକୁ । ଷ୍ଟୁଲରୁ ଓହ୍ଲେଇ ସେ ଶାନ୍ତିରେ ନିଃଶ୍ୱାସ ମାରିଲେ, ସତେ ଯେମିତି ଏବେ ସବୁ ଅଶୁଭ ତାଙ୍କର ଖଣ୍ଡନ ହେଇଗଲା !

ତା'ସତ୍ତ୍ୱେ ଭବାନୀବାବୁଙ୍କ ମନରେ ବାରମ୍ବାର ପ୍ରଶ୍ନ ଉଠୁଥିଲା, ହଠାତ୍ ସୁଭଦ୍ରାଙ୍କର ଏମିତି କାହିଁକି ହେଲା ? ଏ କ'ଣ ବାର୍ଦ୍ଧକ୍ୟ ଜନିତ ମାନସିକ ବେମାରୀ ନା' ଅତ୍ୟଧିକ ଡିପ୍ରେସନ୍ ଯୋଗୁଁ ମସ୍ତିଷ୍କର ଜଡ଼ତା ? ସୁଭଦ୍ରା କ'ଣ ପୁଅଝିଅ, ନାତିନାତୁଣୀଙ୍କଠୁଁ ଦୂରେଇ ରହି ମାନସିକ ଭାବେ ଭାଙ୍ଗି ପଡ଼ିଲେଣି ଅଥଚ୍ ଉପରକୁ କିଛି କହୁ ନାହାଁନ୍ତି ! ଏଭଳି ନାନା ପ୍ରଶ୍ନ ଓ ଅନେକ ଦୁଶ୍ଚିନ୍ତାର ସିପାହୀମାନେ ଭବାନୀବାବୁଙ୍କ ମୁଣ୍ଡ ଭିତରେ ପ୍ୟାରେଡ୍ କରିବାକୁ ଲାଗିଲେ ।

ଜୀବନରେ ଏମିତି ଗୋଟେ ସମୟର ସାମନା କରିବେ ବୋଲି ସିଏ ସ୍ୱପ୍ନରେ ବି ଭାବିନଥିଲେ । ଦୀର୍ଘ ଚାଳିଶି ବର୍ଷର ଦାମ୍ପତ୍ୟ ଭିତରେ କେବେ କେମିତି ଛୋଟମୋଟ ସ୍ୱାସ୍ଥ୍ୟ ସମସ୍ୟା ଛଡ଼ା ସ୍ୱାମୀ,ସ୍ତ୍ରୀ କାହାର କିଛି ଅସୁବିଧା କେବେ ହେଇନି । ଚାକିରିରୁ ଅବସର ନେବା ପ୍ରାୟ ପନ୍ଦର ବର୍ଷ ହେଲାଣି । ଯା' ଭିତରେ ସାମୟିକ ଜ୍ୱର,ଥଣ୍ଡା କିବା ସୁଭଦ୍ରାଙ୍କ ଆଣ୍ଠୁ , ଗଣ୍ଠି ଦରଜ ପାଇଁ ବେଳବେଳେ ତାଙ୍କୁ ଡାକ୍ତରଖାନା ଦେଖିବାକୁ ପଡ଼େ । ନଚେତ ପିଞ୍ଜରା ଭିତରେ ଶୁଆ,ସାରୀ ଯୋଡ଼ି ଭଳି ବୁଢ଼ାବୁଢ଼ୀଙ୍କ ଦିନ ଦୁଃଖେ ସୁଖେ ବିତି ଯାଉଥିଲା । ପିଲାମାନେ ଦୂରଦୂରାନ୍ତରରେ ରହିଲେ ସୁଦ୍ଧା କେବେ ସେମାନେ ନିଜକୁ ଏକେଲା କି ଅସହାୟ ମଣିନାହାନ୍ତି ।

ଭବାନୀବାବୁ ଆଖି ବନ୍ଦ କରି ଶୂନ୍ୟକୁ ହାତଯୋଡ଼ି ପ୍ରାର୍ଥନା କଲେ, " ଠାକୁରେ ! ମୋତେ ଅସହାୟ କରି ସୁଭଦ୍ରାଙ୍କୁ ମୋ'ଠୁ ଛଡ଼େଇ ନିଅନି ପ୍ରଭୁ । ମୋ' ସ୍ଥିତି ଦୋହଲିଯିବ । ମଧ୍ୟସ୍ୱର୍ଗର ତ୍ରିଶଙ୍କୁ ଭଳି ମୁଁ ଅସହାୟ ହେଇଯିବି । ମତେ ତମେ ସବୁ ଦେଇଛ, ହେଲେ ଏବେ ମୋ'ପାଖରେ କିଛି ନାହିଁ ପ୍ରଭୁ । ଧନ,ଜନ,ମାନସମ୍ମାନ ଯାହା ଦେଇଥିଲ, ଆଜି ସେ ସବୁ ମୋ'ପାଇଁ ଦୂରନ୍ତ ସ୍ୱପ୍ନ ! ଭଲମନ୍ଦରେ ସହାୟତାର ହାତ ବଢ଼େଇବ, ମଲାବେଳକୁ କାନ୍ଧ ଲଗେଇବ ବୋଲି ପୁଅଟିଏ ଦେଇଥିଲ । ହେଲେ ଆମେ ନିଜ ସ୍ୱପ୍ନକୁ ସାକାର କରିବାକୁ ଯାଇ ତାକୁ ଆମେରିକାର ପୋଷ୍ୟପୁଅ କରିଦେଇଛୁ । ପିଲାଟିବେଳୁ ପୁଅକୁ ଇଂରେଜୀ ଢ଼ାଞ୍ଚାରେ ପଢ଼େଇଲୁ, ବିଦେଶୀ ଛାଞ୍ଚରେ ଗଢ଼େଇଲୁ । ମାଆମାଟିକୁ ଛାଡ଼ି ଆକାଶରେ ଉଡ଼ିବାର ସ୍ୱପ୍ନ ଦେଖେଇଲୁ । ଆଜି ସେ ଆମେରିକାର ନାଗରିକତାକୁ ଆପଣେଇ ଆମପାଇଁ ସ୍ୱପ୍ନ ପାଲଟି ଯାଇଚି । ବିଦେଶିନୀ ବୋହୂ ଆଉ ନାତି, ନାତୁଣୀଙ୍କ ସହିତ ସିଏ ଆଜି କାଲିଫର୍ଣ୍ଣିଆ ବାସିନ୍ଦା । ଝିଅ ତ ସହଜରେ ପରଘରୀ ! ସିଏ ତା' ସ୍ୱାମୀ ଓ ସନ୍ତାନଙ୍କୁ ନେଇ ରହୁଚି ମୁମ୍ବାଇରେ । ପିଲାମାନେ ଯିଏ ଯା' ବାଟରେ ଆମଠୁ ଦୂରେଇ ଯାଇଛନ୍ତି । ଆମେ ନିଜେ ବି ଦୂରେଇ

ଅସିଛୁ ନିଜ ଗାଆଁ ମାଟିରୁ ସାତପୁରୁଷର ସମ୍ପର୍କ କାଟି । ନିଜ ଭାଇ,ବନ୍ଧୁଙ୍କୁ ପର କରି ସହରୀ ଜୀବନକୁ ଆପଣେଇ ନେଇଚୁ । ମୋର ଆଜି ଏଭଳି ପରିସ୍ଥିତି ଯେ, ପାତାଳକୁ ଗୋଡ଼ ପାଉନି କି ଆକାଶକୁ ହାତ ପାଉନି । ମୁଁ ପୂରାପୂରି ଅସହାୟ ପ୍ରଭୁ । ସହାୟ ହୁଅ ମତେ ! !"

ଭବାନୀବାବୁ ଈଶ୍ୱର ନାମକ ସେ ଅଦୃଶ୍ୟଶକ୍ତି ଉଦ୍ଦେଶ୍ୟରେ ନିଜ ହୃଦୟର ଆକୁତି ଜଣେଇ ଅଶ୍ରୁଳ ଆଖିରେ ପୁଣିଥରେ ଅନେଇଲେ କାନ୍ଥ ଘଣ୍ଟାକୁ । ଘଣ୍ଟା ଯଥାରୀତି ଚାଲିଥିଲା । ରାତି ଗୋଟାଏ ! ତା'ପରେ ବାଜିବ ଦୁଇଟା......ତା'ପରେ ତିନିଟା......ଚାରିଟା ! ଓଃ ! ଆହୁରି ଦୀର୍ଘ ପାଞ୍ଚ ଘଣ୍ଟାର ପ୍ରତୀକ୍ଷା ! !

ସୁଭଦ୍ରା ପୂର୍ବଭଳି ନିଶ୍ଚଳ ହୋଇ ପଡ଼ିଥିଲେ । ନିଃଶ୍ୱାସ ପ୍ରଶ୍ୱାସ ସ୍ୱାଭାବିକ ଗତିରେ ଚାଲିଥିଲା । ଭବାନୀବାବୁ ପାଖକୁ ଯାଇ ପଲସ୍ ରେଟ୍ ଦେଖିଲେ । ଆଖିପତା ଉପରକୁ ଉଠାଇଲେ । କିଛି ଜାଣିପାରିଲେନି । କାନ୍ଧକୁ ହଲେଇ କଅଁଳ ସ୍ୱରରେ ଡାକିଲେ, ସୁଭ......ଏ' ସୁଭ ! ସୁଭଦ୍ରା......! ! ଉଠିବ ? କିନ୍ତୁ ସାମାନ୍ୟତମ ପ୍ରତିକ୍ରିୟା ନଥିଲା ସୁଭଦ୍ରାଙ୍କର !

ହଠାତ୍ ତାଙ୍କର ମନେପଡ଼ିଗଲା ଡାକ୍ତରଙ୍କ ସତର୍କବାଣୀ ! "ରାତିରେ ପେସେଣ୍ଟ୍‌କୁ ମୋଟେ ଡିସ୍‌ଟର୍ବ କରିବେନି ! ପାଖରେ ବସି ଖାଲି ଅବଜର୍ଭ କରୁଥିବେ ।"

ଭବାନୀବାବୁ ଆଜ୍ଞାଧୀନ ଛାତ୍ରଟିଏ ଭଳି ନିରବରେ ଉଠିଗଲେ ଖଟିଆ ପାଖରୁ । ବାଲକୋନିରେ ପଡ଼ିଥିବା ବେତବୁଣା ଆରାମ ଚେୟାରଟା ଟେକି ଆଣି ସୁଭଦ୍ରାଙ୍କ ଖଟକୁ ଲଗେଇ ପକାଇଲେ । ପାଖରେ ପାଣି ଜଗ୍ ଆଉ ଗିଲାସଟା ଆଣି ରଖିଲେ । ଚେୟାର ଉପରେ ଦେହଟାକୁ ଟିକିଏ ଲମ୍ବେଇ ବସିଲେ । ଆରାମ୍ ଲାଗିଲା । ଆଜି ଚାରିଟା ପରଠୁଁ ଏପଟ ସେପଟ ଧାଁ-ଦଉଡ଼ କରି ସେ ପୂରା ଥକିପଡ଼ିଛନ୍ତି । ଏ ବୟସରେ ଆଉ କ'ଣ ବେଶି ପରିଶ୍ରମ କରିହଉଚି ? ତଥାପି ଯେନତେନ ପ୍ରକାରେ ସେ ମାଡ଼ି ଚାଲିଛନ୍ତି ।

ସୁଭଦ୍ରାଙ୍କର ଏ ଘଟଣା ପରଠୁଁ ସେ ପାଟିରେ ପାଣି ଟୋପେ ବି ଦେଇନାହାଁନ୍ତି । ତଥାପି ପେଟରେ ଭୋକ ନାହିଁ । ଏଇ କିଛିଦିନ ହେଲା ସ୍ୱାମୀ,ସ୍ତ୍ରୀ ଦୁହେଁ ଡାଏଟିଙ୍ଗ୍ କରୁଛନ୍ତି । ରାତିରେ ଦୁଇପଟ ରୋଟି ଆଉ ଅଳ୍ପ ସନ୍ତୁଳା କି ସାଲାଡ୍, ବାସ୍ ସେତିକି ! ସୁଭଦ୍ରା ତାଙ୍କ ମନ ଜାଣି ଦିଅନ୍ତି । ହେଲେ ଏବେ ତ ସିଏ ଜୀବନ ଓ ମୃତ୍ୟୁର ଯାଉଁଳି ଯନ୍ତାରେ ଲଟକି ରହିଛନ୍ତି । ଏଭଳି ସମୟରେ ଭବାନୀବାବୁଙ୍କ ପାଟିକୁ ଖାଦ୍ୟ ଯିବ କେମିତି ?

କେହି ଜଣେ ବିଦ୍ୱାନ୍ କହିଥିଲେ, ସଂସାରରେ ମଣିଷ କେବେ ବି ସାଥିହୀନ ନୁହେଁ । ଯେତେବେଳେ ସେ ନିଃସଙ୍ଗ ଅନୁଭବ କରେ, ଅତୀତର ସ୍ମୃତି ହିଁ ପାଲଟିଯାଏ ତା'ର ସାଥି ! ଠିକ୍ ଯେମିତି ଭବାନୀବାବୁଙ୍କ ନିଃସଙ୍ଗତା ଦେଖି ମାନସପଟକୁ ତାଙ୍କର ଓହ୍ଲାଇ ଆସିଥିଲେ ଅତୀତର କିଛି ତିକ୍ତ-ମଧୁର ସ୍ମୃତି ।

ନିଜ ଅଭିଜ୍ଞତାରୁ ସିଏ ଯାହା ଜାଣିଥିଲେ, ସାଧାରଣ ସଂସାରୀ ମଣିଷର ଜୀବନଟା ଗୋଟେ ଦୁର୍ବୋଧ୍ୟ ଗଣିତ ଭଳି ଜଟିଳ ! ଅନେକ ଭୁଲ, ଠିକ୍, କିଛି ସଂଶୋଧନ ଓ ସାଲିସ୍‌ର ହରଣ ଗୁଣନ ପରେ, ଶେଷରେ ଯେଉଁ ଉତ୍ତରଟି ମିଳେ ତାହା ବି କେବେକେବେ ଭୁଲ ହୋଇଯାଏ ! ଯେମିତି ଭବାନୀବାବୁ ଆଜି ଅନୁଭବ କରୁଛନ୍ତି !

ସେଦିନ ଚାକିରି ପାଇ ସହରକୁ ଆସିବା ପରେ ସହରର ଚାକଚକ୍ୟ ଦେଖି ଭବାନୀବାବୁ ନିଜ ଭିଟାମାଟିକୁ କେଡ଼େ ସହଜରେ ପାଶୋରିଦେଲେ । ସହରର ପେଟ୍ରୋଲ୍ ପୋଡ଼ା ବାସ୍ନା ତାଙ୍କୁ ଏମିତି ପାଗଳ କରିଦେଲା ଯେ, ଗାଁ ମାଟିର ମଧୁର ମହକ ସେ ଭୁଲିଗଲେ । ଗାଆଁରେ ବାପା, ବୋଉ, ଦାଦା, ଖୁଡ଼ି, ଜେଜେ ବାପା, ଜେଜେ ମା, ବଡ଼ବାପା, ବଡ଼ମା' ଆଉ ପନ୍ଦରଜଣ ଭାଇଭଉଣୀଙ୍କୁ ନେଇ ବିରାଟ ଯୌଥ ପରିବାର । ପରସ୍ପର ସ୍ନେହ,ପ୍ରେମ,ଶ୍ରଦ୍ଧା ଓ ବିଶ୍ୱାସରେ ଗୁନ୍ଥିହୋଇ ରହିଥିବା ଗୋଟେ ଫୁଲମାଳ ଭଳି ସୁନ୍ଦର, ସୁବାସିତ ! ମହାରଥୀମାନଙ୍କ ଘେରରେ ନିରାପଦ ଦୁର୍ଗ ଭଳି ବାପା ବଡ଼ବାପାମାନଙ୍କ ସୁରକ୍ଷାବଳୟ ଭିତରେ ବିଶାଳ ଘରପରିବାର ! ଏବେ ବି ଗାଁ'ରେ ଅନ୍ୟାନ୍ୟ ଭାଇମାନଙ୍କୁ ନେଇ ସେ ଘର ଅଛି । ପରିବାର ଅଛି । କିନ୍ତୁ ଭବାନୀବାବୁ ସରକାରୀ ଚାକିରିର ଛାତ ତଳେ ଆଧୁନିକ ଜୀବନକୁ ଆପଣେଇ ନେଇ ଗାଁ'ର ସଂପର୍କ ତୁଟେଇ ଦେଇଛନ୍ତି । ଯୌଥ ପରିବାରର ସୌହାର୍ଦ୍ଦ୍ୟ ଅପେକ୍ଷା ସହରର ଏକଘରିଆ ଜୀବନ ତାଙ୍କୁ ଭଲ ଲାଗିଥିଲା । ବାପା, ବୋଉଙ୍କ ଦେହାନ୍ତ ପରେ ନିଜ ଭାଗର ଘର,ବାଡ଼ି ସବୁ ବିକ୍ରି କରିଦେଲେ । ସେ ପଇସାରେ କିଣିଲେ ତାଳଗଛ ଅଗରେ ବାଇଚଢ଼େଇର ବସା ଭଳି ସାତ ମହଲା ଆପାର୍ଟମେଣ୍ଟ ଉପରେ ଫ୍ଲାଟ୍ ଘରଟିଏ । ଗାଆଁର ଚାଷଜମି ବିକି ଟଙ୍କାତକ ବ୍ୟାଙ୍କ୍‌ରେ ଫିକ୍ସ ଡିପୋଜିଟ୍ କରିଦେଲେ । ନିଜ ଭିଟାମାଟିରୁ ସଂପର୍କର ସୁଦୃଢ଼ ସୂତାକୁ ସେ ପୂରାପୂରି ଛିଣ୍ଡେଇଦେଲେ ।

ପନ୍ଦର ଭାଇ,ଭଉଣୀଙ୍କ ଭିତରେ ବଢ଼ି ଆସିଥିବା ଭବାନୀଙ୍କ ଭଳି ଲୋକ 'ଆମେ ଦୁଇ, ଆମର ଦୁଇ'ର ମୋହରେ ପଡ଼ି ପୁଅଟିଏ ଓ ଝିଅଟିଏ ପରେ ପିତୃତ୍ୱରେ ପୂର୍ଣ୍ଣଚ୍ଛେଦ ପକାଇଦେଲେ । ସିଏ ପୁଣି ଏତେ ସ୍ୱାର୍ଥପର ପାଲଟିଗଲେ ଯେ, ଦରମାରେ ତିନୋଟି ସ୍ପେସିଆଲ୍ ଇନ୍‌କ୍ରିମେଣ୍ଟ ପାଇବା ଲୋଭରେ ସୁଭଦ୍ରାଙ୍କ ପେଟକୁ ତିନିତିନିଥର ୱାସ୍ କରେଇ ଶେଷରେ ତାଙ୍କର ବର୍ଥକଣ୍ଟ୍ରୋଲ୍ ଲ୍ କରେଇଲେ । ସେଇ ଭବାନୀଶଙ୍କର ଦାସ ଆଜି ବସି ଭାବୁଛନ୍ତି, ଗୋଟେ ପୁଅ ସିନା ଚାଲିଗଲା ଆମେରିକା, ପାଖରେ ଯଦି ଆଉ ପୁଅ,ଝିଅ ଥାଆନ୍ତେ, ଏ ଅସମୟରେ କେହି କ'ଣ ଆସି ଠିଆ ରୁହନ୍ତେନି ପାଖରେ ? ସହାୟତାର ହାତ ବଢ଼ାନ୍ତେନି କେହି ? ସତରେ ବଡ଼ ବିଚିତ୍ର ଏ ଦୁନିଆ ! ଯାହା କାଲି ଠିକ୍ ଲାଗିଥିଲା, ଆଜି ଭାବିଲା ବେଳକୁ ଗୋଟେ ବିରାଟ ଭୁଲ୍ ଭଳି ମନେ ହେଉଚି । ଏଭଳି ଭୁଲ୍, ଯାହା ଆଉ ଏ ଜନମରେ ସଂଶୋଧିତ ହେବାର ନାହିଁ ।

*ସୁରେନ୍ଦ୍ର ନାଥ ସାହୁ*

---

ଭବାନୀବାବୁ ଏ ପର୍ଯ୍ୟନ୍ତ ପୁଅ ଭବେଶ୍ କିମ୍ବା ଝିଅ ସଂଘମିତ୍ରା, କାହାକୁ ବି ଫୋନ୍‌ରେ ଜଣାଇନାହାନ୍ତି ସୁଭଦ୍ରାଙ୍କର ଅଚାନକ୍ ଏ ଅଘଟଣ ବିଷୟରେ । ଭବେଶକୁ ଜଣେଇ ବା ଲାଭ କ'ଣ ? ସିଏ କ'ଣ ଖବର ଶୁଣିବାମାତ୍ରେ କାଲିଫର୍ଣ୍ଣିଆରୁ ଧାଇଁ ଆସିବ ? ସହଜେ ତ ସେ ବିଦେଶୀ, ଆସିଲେ ବା' ଏଠି କ'ଣ କରିପାରିବ ? ଭଗବାନ କରନ୍ତୁ, ସୁଭଦ୍ରା ସକାଳେ ପୂରା ସୁସ୍ଥ ହେଇଯାଆନ୍ତୁ । ଆଉ କେବେ ବି ସେମାନଙ୍କୁ ଜଣେଇବା ଦରକାର ପଡ଼ିବନି । କିନ୍ତୁ ମୋ' ଦୁର୍ଭାଗ୍ୟକୁ ଯଦି ତାଙ୍କର କିଛି ଅସୁବିଧା ହେଇଯାଏ ! ଓଃ.... ! ! ଆଗକୁ କିଛି ଭାବିବାକୁ ଥଳକୂଳ ପାଇଲେନି ଭବାନୀବାବୁ । ପତ୍ନୀଙ୍କ ଅବର୍ତ୍ତମାନରେ ନିଜ ସ୍ଥିତି କଥା ଭାବୁ ଭାବୁ ତାଙ୍କ ଭାବନାରାଜ୍ୟରେ ଛାଇଗଲା ଘନଘୋର ଅନ୍ଧକାର । ସତେ ଯେମିତି ଅନ୍ଧକାରର ଅଥଳ ସମୁଦ୍ର ବକ୍ଷରେ ଭବାନୀଶଙ୍କର ନାମକ ଦିଗହରା ପୋତଟି ନିଜ ଅସ୍ତିତ୍ୱ ହରାଇବାକୁ ଯାଉଛି । ନାନା ଦୁର୍ଭାବନା ଓ ଦୁଶ୍ଚିନ୍ତାର ରାକ୍ଷସମାନଙ୍କ ସହିତ ଯୁଝିଯୁଝି କ୍ଳାନ୍ତ ହୋଇପଡୁଥିଲେ ଭବାନୀବାବୁ ! ଆଖି ତାଙ୍କର ମାଡ଼ି ମାଡ଼ି ପଡୁଥିଲା । ଆଖି ଖୋଲି ସୁଭଦ୍ରାଙ୍କୁ ଦେଖିବାକୁ ଯେତେ ଚେଷ୍ଟା କଲେ ବି ନିୟନ୍ତ୍ରଣ ରଖି ପାରୁନଥିଲେ ସେ ଅବଶ ଆଖିପତା ଉପରେ ! କାନ୍ଥଘଣ୍ଟାଟି ସାବଲୀଳ ଗତିରେ ଚାଲିଥିଲା । ସେତେବେଳକୁ ରାତି ତିନିଟା !

କ୍ରମଶଃ ରାତ୍ରିର ଆୟୁଷ ସରି ଆସୁଥିଲା । ଭବାନୀବାବୁ ତନ୍ଦ୍ରାଚ୍ଛନ୍ନ ଅବସ୍ଥାରେ ଅନୁଭବ କରୁଥିଲେ ନିଜ ଭିତରର ଶୂନ୍ୟତାକୁ...... ! ନିଜ ଚତୁର୍ପାର୍ଶ୍ୱର ପରିବ୍ୟାପ୍ତ ନିସ୍ତବ୍ଧତାକୁ...... । ସେ ନିସ୍ତବ୍ଧତା ଭିତରେ ସେ କେବଳ ଶୁଣିପାରୁଥିଲେ ନିଜ ଛାତି ଭିତରର ଅସ୍ପଷ୍ଟ ସ୍ପନ୍ଦନ ଏବଂ ସମତାଳରେ ସୁଭଦ୍ରାଙ୍କ ଦୀର୍ଘଶ୍ୱାସ ! ତା' ସହିତ ସେ ଶୁଣିପାରୁଥିଲେ କାନ୍ଥଘଡ଼ିର କ୍ଲିକ୍ କ୍ଲିକ୍.....କ୍ଲିକ୍ କ୍ଲିକ୍.....କ୍ଲିକ୍ କ୍ଲିକ୍.....କ୍ଲିକ୍ କ୍ଲିକ୍ !

ସକାଳ ଠିକ୍ ସାଢ଼େ ଛଅ । ପହିବାବୁ ଡାକ୍ତର ମହାନ୍ତିଙ୍କୁ ସାଙ୍ଗରେ ଧରି ପହଂଚିଗଲେ ଭବାନୀବାବୁଙ୍କ ଦୁଆର ମୁହଁରେ । କଲିଂବେଲ୍ ବାରମ୍ବାର ବଜେଇବା ପରେ ଦୁର୍ବଳ ପାଦ ଘୋଷାରି ଯିଏ ଆସି କବାଟ ଖୋଲିଲେ ତାଙ୍କୁ ଦେଖି ନିଜେ ଡାକ୍ତର ବି ବିସ୍ମୟରେ ହତବାକ୍ ! ପହିବାବୁ ଖୁସିରେ ଗଦଗଦ୍ ହୋଇ କହିଲେ, "ଥେଙ୍କ୍ ଗଡ୍ ! ମ୍ୟାଡ଼େମ୍ ! ରାତିକ ଭିତରେ ଆପଣ ତ ପୂରା ଓ.କେ ହେଇଗଲେ ! ! ନିଜେ ଆସି କବାଟ ଖୋଲିଲେ !"

ସୁଭଦ୍ରାଦେବୀ ବିସ୍ମୟଭରା କଣ୍ଠରେ ପ୍ରଶ୍ନ କଲେ, "କାଇଁକି ମୋ'ର କ'ଣ ହେଇଥିଲା କି ? ଟିକେ ଅଧିକ ସମୟ ଶୋଇପଡ଼ିଥିଲି । ହେଲେ ଡାକ୍ତରବାବୁ ! ଆପଣ ଏଡ଼େ ସକାଳୁ ? କ'ଣ ସାର୍ ଡକେଇଥିଲେ ? କାହାର କ'ଣ ଦରକାର ପଡ଼ିଲା କି ? ଆସନ୍ତୁ, ଭିତରକୁ ଆସନ୍ତୁ । ଦେଖନ୍ତୁ, ସିଏ ତ ଆରାମରେ ଶୋଇଚନ୍ତି !"

ପହିବାବୁ କହିଲେ, "ଭବାନୀବାବୁ ରାତି ସାରା ଆପଣଙ୍କୁ ଜଗି ବସିଥିଲେ । କ୍ଳାନ୍ତ ହେଇଯାଇଥିବେ । ସିଏ ଶୋଇଥାନ୍ତୁ । କିନ୍ତୁ ମ୍ୟାଡ଼େମ୍ ! କାଲି ଘଟିଥିବା କଥା କ'ଣ ଆପଣଙ୍କୁ କିଛି ବି ମନେ ପଡୁନି ?"

ଇତି ମଧ୍ୟରେ ଡାକ୍ତର ମହାନ୍ତି ଆରାମ ଚେୟାର ଉପରେ ଶୋଇଥିବା ଭବାନୀବାବୁଙ୍କୁ ଦେଖିଲେ ଏବଂ ସଂଦିଗ୍ଧ ମନରେ ତାଙ୍କ ନାକ ପାଖରେ ହାତ ରଖି ଚମକି ପଡ଼ିଲେ । ପହିବାବୁଙ୍କ କାନରେ ଅନୁଚ୍ଚ କଣ୍ଠରେ କହିଲେ, "ସରି... ! 'ହି'ଇସ୍ ନୋ' ମୋର୍ !' ପହିବାବୁ ହଠାତ୍ କିଛି ବୁଝିପାରିଲେନି । କାରଣ ତାଙ୍କ ଦୃଷ୍ଟି ଯାଇ ଅଟକିଥିଲା କାନ୍ଥଘଣ୍ଟାଟି ଉପରେ । ଘଣ୍ଟାର ମିନିଟ୍ କଣ୍ଟା ଚାଲିଥିଲା; କିନ୍ତୁ ଘଣ୍ଟାକଣ୍ଟାଟି ଅଟକିଯାଇଥିଲା ଠିକ୍ 'ଚାରି' ପାଖରେ !!



**ଲଘୁଗଳ୍ପ**

# ପାକୁଆ ପୁରୁଷ

ବିଜ୍ଞ ପାଠକେ ଜାଣିଥିବେ, 'ମହାଭାରତ' ଭଳି ଗୋଟେ ବିରାଟ ଗ୍ରନ୍ଥକୁ 'ବ୍ୟାସଦେବ' ଡିଟେକ୍ସନ୍ ଡାକିଲେ ବୋଲି ଗଣେଶଜୀ ତାଙ୍କ କ୍ଷୀପ୍ର ଲେଖନୀରେ ଚଟାପଟ୍ ଲେଖି ପକେଇଥିଲେ, ନ'ହେଲେ ସେଥିରେ ଗଣେଶଜୀଙ୍କର ଖାସ୍ କିଛି ବାହାଦୁରି ନଥିଲା । ଠିକ୍ ସେମିତି, ସୁଦର୍ଶନ ବାବୁ ତାଙ୍କ ଜୀବନରେ ଘଟିଥିବା ଏହି ଅବିଶ୍ୱାସ୍ୟ ଘଟଣାଟା ମୋ' ଆଗରେ ଦିନେ ଓକାଳି ପକେଇଥିଲେ ବୋଲି ମୁଁ ଯାକୁ ଯଥାତଥା ଆପଣମାନଙ୍କ ଆଗରେ ପରଷିଦେଲି, ନଚେତ୍ ସତ କହୁଚି, ଏଥିରେ ମୋ କଲମର ବାହାଦୁରି କିଛି ବି ନାଇଁ ।

ଘଟଣାଟା ତା' ହେଲେ ଶୁଣନ୍ତୁ । ଆଜିଠୁଁ ପ୍ରାୟ ତିନି ବର୍ଷ ପୂର୍ବେ, ଅର୍ଥାତ୍ ୨୦୧୮ ଜାନୁଆରୀ ଅଠର ତାରିଖରେ ସୁଦର୍ଶନ ବାବୁ ସି.କୋ. ବ୍ୟାଙ୍କ ଯାଜପୁର ରୋଡ୍ ଶାଖାରୁ ବଦଳି ହେଇ ଆସି ଆମ ଆସିକା ବ୍ରାଂଚ୍‌ରେ ଜଏନ କଲେ । ଏହି ଅନତିବଡ଼ ଶାଖାର ଜଣେ ପୁରୁଖା ଗ୍ରାହକ ଭାବେ ମୋର ବେଶ୍ କାଟ୍‌ତି ଅଛି । ପରିବା ବଜାରରେ ଦେଶୀ କାଙ୍କଡ଼ ଭଳି ସାମ୍ପ୍ରତିକ ହିସାବରେ ମୋ'ଭାଉ ବି ଟିକେ ଚଢ଼ା । ସୁଦର୍ଶନ ବାବୁଙ୍କ ସହିତ ମୋର ପରିଚୟ ଦୀର୍ଘ ଦୁଇ ବର୍ଷର । ପରିଚୟରୁ ଏ ଦୁଇ ବର୍ଷ ଭିତରେ ଆମର ନିବିଡ଼ ବନ୍ଧୁତା ମଧ୍ୟ ହେଇଗଲା । ହେଲେ ମୁଁ କୌଣସି ଦିନ ସାମାନ୍ୟ ସୁରାକ୍ ପାଇନଥିଲି ଯେ, ପଚିଶି ବର୍ଷର ଏହି ସୁଠାମ ସୁନ୍ଦର, କଅଁଳ ଶ୍ମଶ୍ରୁବନ୍ତ ସଦ୍ୟ ଯୁବକ ଜଣକ ନିର୍ଘାତ ପାକୁଆଟେ ହେଇଥାଇ ପାରନ୍ତି ବୋଲି । କେବଳ ମୁଁ କାହିଁକି, ଏଠିକା ବ୍ରାଞ୍ଚର କେହି ଜଣେ ବି କର୍ମଚାରୀ ଏ ରହସ୍ୟ ଜାଣିନଥିଲେ । ଏମିତିକି ମିସ୍ ଛନ୍ଦା ବି ! (ସିଏ ଏବେ ଅବଶ୍ୟ ଜାଣି ସାରିବେଣି)

ସେଦିନ ସୁଦର୍ଶନ ବାବୁ ପ୍ରଥମକରି ମୋ'ଆଗରେ ଯେତେବେଳେ ଘଟଣାଟା କହିଲେ ମୁଁ ଆଦୌ ବିଶ୍ୱାସ କରି ପାରିଲିନି । କେମିତି କରିଥାନ୍ତି କହିଲେ ? ସୁବିଖ୍ୟାତ ଦନ୍ତମଞ୍ଜନ କମ୍ପାନୀର ବିଜ୍ଞାପନ ହିରୋ ଭଳି ତାଙ୍କ ଓଠ ଫାଙ୍କରୁ ଦୁଇଧାଡ଼ି ଚିକ୍‌ମିକିଆ ଦାନ୍ତ ଏଲ୍.ଇ.ଡି ବଲ୍‌ବ ଭଳିଆ ସଦାବେଳେ ଝଟକୁଛି ଯେତେବେଳେ, ତାଙ୍କୁ ପାକୁଆଟେ ବୋଲି ମୁଁ କେମିତି ବିଶ୍ୱାସ କରିଥାନ୍ତି ?

ହେଲେ ମୋ'ଦୋଦୁଲ୍ୟମାନ ବିଶ୍ୱାସକୁ ଦୃଢ଼ିଭୂତ କରିବାପାଇଁ ସେଦିନ ସେ କ'ଣ କଲେ ଜାଣନ୍ତି ? ପାଟି ଭିତରୁ ହଳକଯାକ ନକଲି ଦାନ୍ତସେଟ୍ ଖୋଲି ଆଣି ମୋ' ସାମନା

*ସୁରେନ୍ଦ୍ର ନାଥ ସାହୁ* ___________

ଟି'ପୟ ଉପରେ ଥୋଇଦେଲେ । ସେ ଦୃଶ୍ୟ ଦେଖି ସତେ ଯେମିତି ମୁଁ ଆକାଶରୁ ଖସି ପଡ଼ିଲି ! ହେ ଭଗବାନ୍ ! ଗଜାଭେଣ୍ଡିଆ ବୟସରେ ଲୋକଟାର ଏ କି ଅବସ୍ଥା ! ଯୁବା କାଳରେ ମଣିଷ ସଂପୂର୍ଣ୍ଣ ଦାନ୍ତଶୂନ୍ୟ ହେଇଗଲେ ଏଡ଼େ ବିକୃତ,ବିକଳାଙ୍ଗ ଓ ବିଭତ୍ସ ଦେଖା ଯାଇପାରେ, ଏ କଥା ମୁଁ କଳ୍ପନା ସୁଦ୍ଧା କରି ପାରୁନଥିଲି । ଭୟରେ ମୋ'ଆଖି ବୁଜି ହେଇଗଲା । ଅଏଲ୍ ପେଣ୍ଟିଙ୍ଗ୍‌ର ଶ୍ରୀକୃଷ୍ଣ ଭଳି ମୋ ବନ୍ଧୁଙ୍କ ଚେହେରା କେଡ଼େ ମାଧୁର୍ଯ୍ୟମୟ ! ସେଭଳି ଲୋଭନୀୟ ମୁଖମଣ୍ଡଳର ଏମନ୍ତ କରୁଣ ପରିଣତି ! ସେ ଦୃଶ୍ୟ ଆଉ ଅଧିକ ସମୟ ଦେଖିବାକୁ ମୋର ଆଉ ଧୈର୍ଯ୍ୟ ନଥିଲା । କାକୁସ୍ଥ ଅର୍ଜ୍ଜୁନ ବିଶ୍ୱରୂପଧାରୀ ସଖାଙ୍କୁ ନିଜର ଅସଲ ବଂଶୀଧାରୀ ରୂପକୁ ଫେରି ଆସିବାପାଇଁ ବାରମ୍ବାର ପ୍ରାର୍ଥନା କରିବାପରି ମୁଁ ବନ୍ଧୁଙ୍କୁ ଅନୁରୋଧ କଲି ଅତିଶୀଘ୍ର ନକଲି ଦାନ୍ତ ମାନଙ୍କୁ ପୁନର୍ବାର ପାଟିରେ ଧାରଣ କରି ପୂର୍ବବତ୍ ସାଧାରଣ ସୁଦର୍ଶନଙ୍କ ଭଳି ଦେଖାଯିବା ପାଇଁ ।

ବନ୍ଧୁ ଦାନ୍ତ ହଳକ ଖଞ୍ଜିବା ପରେ ମୁଁ ପ୍ରଶ୍ନ କଲି, "ଆଚ୍ଛା ସୁଦର୍ଶନ ବାବୁ ! ଅକାଳରେ ଆପଣଙ୍କର ଏ 'ପାକୁଆତ୍ୱ ପ୍ରାପ୍ତି' ର ରହସ୍ୟ କ'ଣ ? କୌଣସି ଯାନବାହନ ଦୁର୍ଘଟଣା ନା ଯାତ୍ରା ଭିଡ଼ରେ ଝିଅଙ୍କ ମେଳରେ ପଶି କିଛି ଅପ୍ରିତିକର କାମ କରିବା ପରର ଏ ଦୟନୀୟ ପରିଣତି............ ? ?"

ମୋ'କଥା ଶୁଣି ବନ୍ଧୁ ହସିଲେ । ହସିଲେ......ମାନେ, ଜବର୍ଦ୍ଦସ୍ତ ହସିଲେ । ଶତ ପ୍ରତିଶତ ଦାନ୍ତ ଦେଖେଇ ଆକର୍ଣ୍ଣବିସ୍ତୃତ ହସଟେ ହସିଲେ । ଆମେ ଜାଣିବାରେ ସେ ଟିକେ ହସକୁଣ୍ଠ ମଣିଷ । ହେଲେ ସେଦିନ ମୋ ପ୍ରଶ୍ନ ଶୁଣି ସେ କାହିଁକି କେଜାଣି ନିର୍ଭୟ, ନିଃଶଙ୍କୋଚରେ ଢ଼େର୍ ସମୟ ଧରି ହସିବାକୁ ଲାଗିଲେ । ସତେ ଅବା ଯୁଗଯୁଗ ଧରି ଅଟକି ରହିଥିବା ସବୁ ଆବଦ୍ଧ ହସକୁ ସେ ନକଲି ଦାନ୍ତର ଆନିକଟ ଉଠେଇ ଏକାଥରକେ ଭୁ..ଉ..ଉ..ଉସ୍ କିନା ଛାଡ଼ିଦେଲେ । ତା'ପରେ ହସ ସ୍ଥଗିତ ରଖି ଟିକେ ହାଲିଆ ମାରିଲେ । ତାଙ୍କ ମୁଖଭଙ୍ଗୀରୁ ମୁଁ ଅନୁମାନ କରି ପାରିଲି, ଭୀଷଣ କୋଷ୍ଠ କାଠିନ୍ୟ ଭୋଗୁଥିବା ରୋଗୀଟି ରାତିରେ ମେଞ୍ଚେ 'କାଏମ୍ ଚୂର୍ଣ୍ଣ' ଗିଳି ସକାଳେ ଟଏଲେଟ୍‌ରୁ ବାହାରିଲେ ତାକୁ ଯେମିତି ହାଲ୍‌କା ଲାଗେ, ୟାଙ୍କୁ ବି ସେମିତି ନିଶ୍ଚୟ ଲାଗୁଥବ ।

ତା ପରେ ସେ ସଫେଇ ଦେଲେ, "ନା'ବନ୍ଧୁ,ସେଭଳି କିଛି ଘଟିନି ମୋ'ଜୀବନରେ ! କିନ୍ତୁ ଯାହା ଘଟିଛି ସେ କଥା ଶୁଣିଲେ ଆପଣ ପରତେ ଯିବେନି । ତଥାପି ମୁଁ ଆପଣଙ୍କୁ ଜଣେ ଦରଦି ବନ୍ଧୁ ହିସାବରେ କହୁଚି ଶୁଣନ୍ତୁ......

ପ୍ରାୟ ଅଢ଼େଇ ବର୍ଷ ତଳର କଥା । ସେତେବେଳେ ମୁଁ ସଦ୍ୟ ବ୍ୟାଙ୍କ୍ ଚାକିରିଟା ପାଇ ଘରପାଖ ଯାଜପୁର ରୋଡ଼ ବ୍ରାଞ୍ଚରେ ଜଏନ୍ କରିଥାଏ । ଅଚାନକ୍ ଥରେ ଜ୍ୱରରେ ପଡ଼ିଲି । ଟାଇଫାଏଡ୍ ଜ୍ୱର ! ରୀତିମତ୍ ଚିକିତ୍ସା ଚାଲିଲା । ପ୍ରାୟ ତିନି ସପ୍ତାହର ସେବା

ଚିକିତ୍ସା ପରେ ଜ୍ୱରରୁ ମୁକୁଳିଲି । ହେଲେ ତା'ପରେ ଘଟିଲା ଗୋଟେ ଅଭାବନୀୟ ଘଟଣା ! ମୋ'ଛାମୁ ଦାନ୍ତ ଚାରିଟା ଭୀଷଣ ଯନ୍ତ୍ରଣା ସହିତ ଦୋହଲିବା ଆରମ୍ଭ କଲେ । ଜ୍ୱର ପାଇଁ ଔଷଧ ଖାଇଖାଇ ସେ ଯାଏଁ ମୋ'ଦେହରୁ ଔଷଧ ଗନ୍ଧ ଛାଡ଼ିନଥାଏ, ପୁଣି ଏ ଦାନ୍ତ ଯନ୍ତ୍ରଣା ପାଇଁ କିଏ ଗୁଡ଼େ ଔଷଧ ଖାଉଚି, ଏଭଳି ଭାବି ସମସ୍ୟାଟି ଉପରେ ମୁଁ ବିଶେଷ ଗୁରୁତ୍ୱ ଦେଲିନି । ଯନ୍ତ୍ରଣାକୁ ଚାପି ରଖିଲି ଭିତରେ ଭିତରେ । ତୃତୀୟ ଦିନ,ହଠାତ୍ ସକାଳୁ ଦେଖିବା ବେଳକୁ ଛାମୁ ଦାନ୍ତରୁ ଦୁଇଟି ଗଳିପଡ଼ିଥାନ୍ତି ଶୋଇବା ଶେଯରେ । ଛନ୍‌କା ପଶିଲା ମନରେ ମୋର । ବାପା ବୋଉ ଆତଙ୍କ ମଣିଲେ । ଏ ବୟସରେ ତ ଆଉ ନୂଆ ଦାନ୍ତ ଗଜୁରିବାର ସମ୍ଭାବନା ନାଇଁ । ଝଡ଼ି ପଡ଼ିଥିବା ଦାନ୍ତ ହଳକ ଧରି ମୁଁ ଦୌଡ଼ିଲି ଜଣେ 'ଦନ୍ତ ବିଶେଷଜ୍ଞ'ଙ୍କ ପାଖକୁ । ସେତେବେଳକୁ ଆଉ କିଛି ଦାନ୍ତ ବି ଦୋହଲିବା ଆରମ୍ଭ କରିଥାନ୍ତି । ବିଶେଷଜ୍ଞ ମହାଶୟ ପରୀକ୍ଷା ନିରୀକ୍ଷା କରି ସପ୍ତାହେ ପାଇଁ କିଛି ଔଷଧ ଦେଲେ । ମାତ୍ର ଫଳ କିଛି ମିଳିଲାନି । ବରଂ ସେ ସପ୍ତାହକ ଭିତରେ ଆଉ କିଛି ଦାନ୍ତ ଗଳି ପଡ଼ିଥାନ୍ତି । ଅଇନା ଆଗରେ ପାଟି ମେଲେଇ ନିଜକୁ ନିଜେ ଚାହିଁବା ବେଳକୁ ମୋ'ଆଖିରୁ ଲୁହ ଖସି ପଡ଼ିଲା ।

ମୋ'ର ଏମନ୍ତ ଦୟନୀୟ ଅବସ୍ଥା ଦେଖି କିଛି ବନ୍ଧୁ ଓ ଶୁଭେଚ୍ଛୁ ମୋତେ ପରାମର୍ଶ ଦେଲେ କଟକ ଯାଇ ଦାନ୍ତ ବିଭାଗର ନାଁ'କରା ପ୍ରଫେସର୍ ବୋଷ୍‌ଙ୍କ ସହିତ ସାକ୍ଷାତ୍ କରିବାପାଇଁ । ଧାଇଁଲି ମୁଁ । ପ୍ରଫେସର୍ ମହାଶୟ ତାଙ୍କ ପ୍ରାଇଭେଟ୍ କ୍ଲିନିକ୍‌ରେ ସୂକ୍ଷ୍ମ ପଦ୍ଧତି ପ୍ରୟୋଗ ପୂର୍ବକ ମୋ'ମାଢ଼ି ଓ ଦାନ୍ତମାନଙ୍କୁ ଗଭୀର ଭାବେ ଯାଞ୍ଚ୍ ପରଖ୍ କଲେ ଏବଂ ବେଶ୍ ଚିନ୍ତିତ ଦେଖାଗଲେ । ପରେ ପରେ ସେ ଗୋଟେ ଅତ୍ୟାଧୁନିକ 'ଦନ୍ତୋତ୍ପାଟକ ଚିମୁଟା' ସାହାଯ୍ୟରେ ଆଉ ତିନୋଟି ଦୋଦୁଲ୍ୟମାନ ଦାନ୍ତକୁ ମାଢ଼ି କବଳରୁ ମୁକ୍ତି ଦେଇ ମୋତେ ସାଷ୍ଟାଙ୍ଗ ହେବାକୁ କିଛି ସମୟ ଦେଲେ । ସେତେବେଳକୁ ଠାକୁରାଣୀ ପ୍ରକୋପରେ ଗାଁ'ରେ ହଇଜା ଲାଗି ପ୍ରତିଦିନ ପୁଞ୍ଜେ ପାଞ୍ଚଟା ମୁଣ୍ଡ ଗଡ଼ି ପଡ଼ିବା ପରେ ଗାଁ'ଗୋଟାକ ପଦା ହେଇଗଲା ଭଳି ମୋ'ପାଟିର ଅବସ୍ଥା !

ତହୁଁ ସେ ମୋତେ କିଛି ଔଷଧ ଓ ଟେଳାଏ ଦନ୍ତ ପ୍ରଲେପ ଦେଇ ସପ୍ତାହେ ପରେ ଦେଖା କରିବାକୁ କହିଲେ । ମୋତେ କିନ୍ତୁ ପୁନରାୟ ତାଙ୍କ ପାଖକୁ ଯିବାକୁ ପଡ଼ିଲାନି । କାରଣ ଏ ଅଜଣା ବେମାରୀ ପାଇଁ ମୋ'ଠୁ ଅଧିକ ଚିନ୍ତିତ ଥାଆନ୍ତି ମୋ'ବାପା ଓ ବୋଉ । ବାପା ଇତି ମଧ୍ୟରେ କୋଲ୍‌କାତାର ଜଣେ ପ୍ରଖ୍ୟାତ ଚିନୀୟ ଦନ୍ତ ବିଶାରଦଙ୍କ ଠିକଣା ସଂଗ୍ରହ କରିଥାନ୍ତି । ଆଉ କାଳ ବିଳମ୍ବ ନକରି ସେ ମୋତେ ଧରି ଧାଇଁଲେ କୋଲ୍‌କାତା ।

'ଡ଼. ୟାଙ୍ଗ୍ ଚୁଁ ପେଙ୍ଗ୍'ଙ୍କ ଅତ୍ୟାଧୁନିକ ଡେଣ୍ଟାଲ୍ କ୍ଲିନିକ୍ ! ତାଙ୍କ ଶୀତତାପ ନୀୟନ୍ତ୍ରିତ କ୍ଲିନିକ୍‌ର ମହାର୍ଘ ଚେୟାର ଉପରେ ପାଟି ମେଲାକରି ଅଧିକ ସମୟ ବସିବାର ସୁଯୋଗ କିନ୍ତୁ ମୋତେ ମିଳିଲାନି । ମୋ'ପାକୁଆ ପାଟିକୁ ଦେଖୁଦେଖୁ 'ଡ଼ଃ ପେଙ୍ଗ୍' ମତ ଦେଲେ ଯେ,

ଘରପୋଡ଼ିରୁ ରକ୍ଷା ପାଇବା ଭଳି ଯେଉଁ ସାତଟି ଦାନ୍ତ କଳ ଆଡ଼କୁ ବଳି ପଡ଼ିଛି ତନ୍ମଧ୍ୟରୁ ମାତ୍ର ଦୁଇଟିକୁ ବାଦ୍ ଦେଲେ ଅନ୍ୟ ଦାନ୍ତଗୁଡ଼ିକ ମଧ୍ୟ ଅଚିରେ ଝଡ଼ିପଡ଼ିବ । ଦାନ୍ତର ସୃଷ୍ଟିକର୍ତ୍ତା ସ୍ୱୟଂ ବ୍ରହ୍ମା ବି ଅଟକେଇ ପାରିବେନି ! ଝଡ଼ିବା ବେଳେ ଅସହ୍ୟ ଯନ୍ତ୍ରଣା ବି ଦେଇପାରେ । ତେଣୁ ସେଗୁଡ଼ିକୁ ଡ଼ାକ୍ତରୀ ପଦ୍ଧତି ପ୍ରୟୋଗ କରି ଆଗରୁ ଓପାଡ଼ିଦେବା ହିଁ ବୁଦ୍ଧିମାନର କାମ । ତା'ବଦଳରେ ହଲେ ନକଲି ଦାନ୍ତ ସେଟ୍ ଖଞ୍ଜିବା ଜରୁରୀ । ଯାବତ୍ ଜୀବନ ନକଲି ଦାନ୍ତ ସହାୟତାରେ ହିଁ ଚଳିବାକୁ ପଡ଼ିବ । ଯେ ଗୋଟେ ଅତ୍ୟନ୍ତ ସାଂଘାତିକ ଦନ୍ତରୋଗ ! ପ୍ରାୟ ପ୍ରତି ଦଶହଜାର ଦାନ୍ତରୋଗୀଙ୍କ ମଧ୍ୟରେ ଜଣେ ଏ ଦୁର୍ଲଭ ରୋଗରେ ପୀଡ଼ିତ ହେବା ଦେଖାଯାଏ । ତାଙ୍କ ଅଠତିରିଶ ବର୍ଷର ଡାକ୍ତରୀ ଜୀବନ କାଳ ମଧ୍ୟରେ ସେ ଧରଣର ରୋଗରେ ଆକ୍ରାନ୍ତ ହେବାରେ ମୁଁ ଥିଲି କୁଆଡ଼େ ତୃତୀୟ ରୋଗୀ ।

ବିଶେଷଜ୍ଞ ମହୋଦୟଙ୍କ ଏମନ୍ତ ମନ୍ତବ୍ୟ ମୋ'ପାଇଁ ଥିଲା 'ସୁନାମି'ର ପୂର୍ବାଭାଷ ଭଳି ଆତଙ୍କପ୍ରଦ ! ବାପା ନିରବରେ ଠିଆ ହେଇଥିଲେ । ଡ଼ଃ ପେଙ୍ଗ୍ ମୋ' ଶେଷତମ ହୁଗୁଳା ଦାନ୍ତ ଗୁଡ଼ିକୁ ଅତି ନିର୍ଦ୍ଦୟଭାବେ ଓପାଡ଼ି ଓପାଡ଼ି ଏନାମେଲ୍ ପ୍ଲେଟ୍ ଭିତରେ ଗଳେଇ ଚାଲିଲେ । ସାମନାରେ ଝୁଲୁଥିବା ବିରାଟ ଦର୍ପଣ ଭିତରେ ମୁଁ ଯେତେବେଳେ ସଦ୍ୟ ବିଧବାର ପୁଙ୍ଗୁଳା ହାତପରି ଦିଶୁଥିବା ମୋ'ନୁଖୁରା ପାଟିକୁ ଦେଖିଲି, ଅଜାଣତରେ ମୋ' ପାଟିରୁ ବାହାରି ପଡ଼ିଲା-'ହାୟ... ! ହାୟ... ! ! ହେ' ମୋର ଶ୍ରମନିଷ୍ଠ ଶ୍ରଦ୍ଧେୟ ଦାନ୍ତମାନେ ! ସୁପକ୍ୱ, ସ୍ୱାଦିଷ୍ଟ କଦଳୀ, ଅଙ୍ଗୁର ଅଥବା ଛେନା ଜାତୀୟ ମୃଦୁ ପେଷଣଶୀଳ ଖାଦ୍ୟକୁ ଚୋବାଇବା ଭଳି ସରଳ ଓ ଲଳିତ ପ୍ରକ୍ରିୟା ଠାରୁ ଆରମ୍ଭ କରି ବୃଦ୍ଧ ଛେଳିର ଅର୍ଦ୍ଧପକ୍ୱ ରସାଳ ଗଣ୍ଡିମାନଙ୍କୁ ରେକ୍‌ଟି ରେକ୍‌ଟି ଚୁନା କରିବା ଭଳି କଠିନତମ କାର୍ଯ୍ୟକୁ ବି ଦିନେ ତୁମେମାନେ ସୁଚାରୁ ରୂପେ ସମ୍ପାଦନ କରି ପାରୁଥିଲ, ତାହା ବି ନିଃସ୍ୱାର୍ଥ ଭାବେ । ତା' ବଦଳରେ ମୁଁ ତୁମର ସମୁହ ଉନ୍ନତି ପାଇଁ କ'ଣ ବା କରି ପାରିଥିଲି ? ଦିନରେ ଥରେ ମାତ୍ର ଶସ୍ତା ଦନ୍ତମଞ୍ଜନ ଲାଳରେ ଅବଗାହନ ଓ ତିନି ଚାରିଥର ଟେଳେ ଟେଳେ କଡ଼ା ଗୁଡ଼ାଖୁରେ ମାର୍ଜନ କରିବା ବ୍ୟତୀତ ? ? ହେଲେ, ହେ ମୋର ପ୍ରିୟ ଓ ଅଲିଅଳ ଦାନ୍ତମାନେ ! ତୁମେ ଦଗାଦିଆ ପ୍ରେମିକା ଭଳି ଏଡ଼େ ଜଲ୍‌ଦି ଏମିତି ମୋତେ ଛାଡ଼ି ଚାଲିଯିବ, ସେ କଥା ମୁଁ କଳ୍ପନା ବି କରିନଥିଲି ।' ଏଭଳି ସ୍ୱଗତୋକ୍ତି କରୁକରୁ ମୋ'ଅଜ୍ଞାତରେ ଆଖିରୁ ବହି ପଡ଼ିଲା ଦୁଇଟୋପା ଲୁହ । ମୁଁ ପ୍ରକୃତିସ୍ଥ ହେବା ବେଳକୁ ମୋ'ପାକୁଆ ପାଟିରେ ଦୁଇସେଟ୍ ନକଲି ଦାନ୍ତ ଖଞ୍ଜି ସାରିଥାନ୍ତି ଡ଼ଃ ପେଙ୍ଗ୍ ।

ଭାଗ୍ୟକୁ ଆଦରି ଘରକୁ ଫେରିଲି । କିନ୍ତୁ ତା'ପରର ଘଟଣାମାନ ମୋ'ପାଇଁ ଥିଲା ଅତ୍ୟନ୍ତ ଦୁର୍ବିସହ । ମୋ'ଜୀବନର ଏତାଦୃଶ କରୁଣ କାହାଣୀଟି ଆମ ଅଞ୍ଚଳର ଯୁବ ସମାଜ ମଧ୍ୟରେ ହୋଇ ସାରିଥାଏ ମୁଖ୍ୟ ଚର୍ଚ୍ଚାର ବିଷୟ । କାରଣ ଗୋରୁଙ୍କ ଫାଟୁଆ ରୋଗ ଭଳି

ଏହି ଦନ୍ତ ରୋଗଟି ମଧ୍ୟ ଡେରିରେ ହେଲେ ବି ଯୁବ ଗୋଷ୍ଠି ମଧ୍ୟରେ ସଂକ୍ରମିତ ହୋଇପାରେ ! ଏଭଳି କେହି ଜଣେ ଅପପ୍ରଚାର କରି ଦେଇଥାନ୍ତି ।

ଏଣେ ନକଲି ଦାନ୍ତମାନଙ୍କୁ ଧାରଣ କରିବା ପରଠୁଁ ମୁଁ କଦାଚିତ୍ ଆଶ୍ୱସ୍ତିରେ ରହିପାରିଲିନି । ଘରେ, ବାହାରେ, ଅଫିସ୍‌ରେ, ସର୍ବତ୍ର ମୋ' ଦାନ୍ତଙ୍କୁ ନେଇ ହିଁ ଚର୍ଚ୍ଚା ! ଆଲୋଚନା, ସମାଲୋଚନା । ବନ୍ଧୁ ଓ ଶୁଭେଚ୍ଛୁ ମାନଙ୍କ କୁଢ଼କୁଢ଼ ସମବେଦନାରେ ଅଣନିଶ୍ୱାସୀ ହୋଇ ପଡୁଥାଏ ମୁଁ !

ବ୍ୟାଙ୍କ୍ ଚାକିରିଟା ପାଇବା ପରେ, ବର୍ଷାଦିନେ ଦୀପ ଚାରିପଟେ ଝଡ଼ିପୋକ ଚକ୍କର କାଟିବା ଭଳି, ଯେଉଁ କେତୋଟି ବିବାହ ପ୍ରସ୍ତାବ ମୋତେ କେନ୍ଦ୍ରକରି ଘୂରି ବୁଲୁଥିଲା,ସେ ସବୁ ଅଚିରେ ନାକଚ ହେଇଗଲା ସଂପୃକ୍ତ କନ୍ୟା ମାନଙ୍କ ଦ୍ୱାରା । ମୁଁ ଭାବିଲି, ଧିକ୍ ମୋ'ପୁରୁଷ ପଣିଆକୁ । ଶତଧିକ୍ ମୋ' ଅସହାୟ ଯୌବନକୁ ! ! ଏଭଳି ଗୋଟେ ପରିଚିତ ସହରରେ 'ବିଚରା ପାକୁଆଟିଏ' ହୋଇ ରହିବା ଅପେକ୍ଷା ବରଂ କୌଣସି ଅଜଣା ସହରକୁ ବଦଳି ହୋଇ ଚାଲିଯିବା ଶ୍ରେୟସ୍କର । ଏ ସିଦ୍ଧାନ୍ତରେ ପହଞ୍ଚିବା ପରେ ମୁଁ ବଦଳି ପାଇଁ ଆବେଦନ କଲି । ସୌଭାଗ୍ୟକୁ ଆପଣଙ୍କ ସହରର ଏହି ବ୍ରାଞ୍ଚ୍‌କୁ ମୋର ଟ୍ରାନ୍ସଫର୍ ହେଇଗଲା । ସବୁଠୁଁ ଆଶ୍ୱାସନାର କଥା କ'ଣ ଜାଣନ୍ତି ? ଦୀର୍ଘ ଦୁଇ ବର୍ଷରୁ ଅଧିକ କାଳ ଏଠି ମୁଁ କଟେଇ ସାରିଲିଣି, ହେଲେ ଏ ଯାବତ୍ କେହି ଜଣେ ବି ସହକର୍ମୀ ମୋ'ପାକୁଆମିର ରହସ୍ୟ ଜାଣିପାରି ନାହାନ୍ତି । ଆଜି ପ୍ରଥମେ ମୁଁ ଆପଣଙ୍କ ଆଗରେ ଏ ରହସ୍ୟ ଖୋଲିଲି ।"

ଏତିକିରେ କଥାର ପୂର୍ଣଛେଦ ଟାଣି ସୁଦର୍ଶନ ବାବୁ ହାଲିଆ ମାରିଲେ । ଟିକିଏ ସଳଖି ବସି ଅଭ୍ୟାସ ବଶତଃ ଆଙ୍ଗୁଠି ଫୁଟେଇଲେ । ଏହି ଅବସରରେ ମୁଁ ପ୍ରଶ୍ନ କଲି, "ଆଚ୍ଛା ସୁଦର୍ଶନ ବାବୁ, ମିସ୍ ଛନ୍ଦା.....ଥାଇ ମିନ୍ ମଧୁଛନ୍ଦାଙ୍କ ସହିତ ଆପଣଙ୍କ ବିବାହ ଏଇ ଅଳ୍ପ ଦିନ ହେଲା ସରିଛି । ସିଏ ତ ଏବେ ନିଶ୍ଚୟ ଜାଣି ସାରିଥିବେ ଯେ,ଆପଣ ଜଣେ ନକଲି ଦାନ୍ତଧାରୀ, ଅସଲରେ 'ପାକୁଆଟେ' ବୋଲି ? ତେବେ ବିବାହ ପୂର୍ବରୁ ଆପଣ ତାଙ୍କ ସହିତ ମାସମାସ ଧରି ଯେଉଁ ରୋମାନ୍ସ କରି ଆସୁଥିଲେ, ସେ କ'ଣ ଆଗରୁ ଏ କଥା ଜାଣି ପାରିଲେନି ?"

"ବାସ୍ ! ସେଇଠିତ ରହିଲା ଘଟଣାର ଅସଲ ମଞ୍ଜ ! !" ସୁଦର୍ଶନ ବଡ଼ ଆଗ୍ରହରେ ପୁଣି ଆରମ୍ଭ କଲେ, "ମୁଁ ଏଠି ଜଏନ୍ କରିବାର ଦୁଇମାସ ପରେ ମଧୁଛନ୍ଦା ମହାନ୍ତି ମୋ' ଜୁନିୟର୍ ଭାବେ ଆସି ଜଏନ୍ କରିଥିଲା । ଏ କଥା ସତ ଯେ, ତା' ଭଳି ଗୋଟେ ଅଦ୍ଭୁତ ସୁନ୍ଦରୀର ଆଗମନରେ ଅକସ୍ମାତ୍ ବସନ୍ତ ବୋଧେ ଧସେଇ ପଶି ଆସିଥିଲା ଆମ ଅଫିସ୍ ଭିତରକୁ । ସର୍ବମୋଟ୍ ଆଠଜଣ କର୍ମଚାରୀ ସମ୍ବଳିତ ଆମ ଅଫିସ୍‌ରେ ମ୍ୟାନେଜରଙ୍କଠୁଁ ଆରମ୍ଭ କରି ମେସେଞ୍ଜର୍ ପର୍ଯ୍ୟନ୍ତ ସମସ୍ତେ ମନେମନେ ତାକୁ ଭଲ ପାଇବାକୁ ଆରମ୍ଭ

କଲେ । କାହାକୁ ର୍ୟାମ୍ପ ସୁନ୍ଦରୀ ଭଳି ତା' ଛନ୍ଦାୟିତ ଚାଲି ଭଲ ଲାଗୁଥିଲା ତ କାହାକୁ ରାଣୀ ମୁଖାର୍ଜୀ ନିନ୍ଦିତ କଣ୍ଠସ୍ୱର । ପ୍ରତିଦିନ ତା'ର ନୂଆ ରୂପଭେକ ଆଉ ନୂଆ ଷ୍ଟାଇଲ୍ କେଶ ବିନ୍ୟାସ ପାଗଳ କଲା ସମସ୍ତଙ୍କୁ । ଦିନେ ଦିନେ ସେ 'ମଧ୍ୟ-ଯୁଗୀୟ ହିରୋଇନ୍' ଭଳି ଆଜାନୁଲମ୍ବିତ ଘନକୃଷ୍ଣ ବେଣୀ ଦୋହଲେଇ ଆସେ, ଆଉ କେବେ ଆସେ ବବ୍‌କଟ୍ ହେୟାର୍ ଷ୍ଟାଇଲ୍ ଓ ଜିନ୍ ପିନ୍ଧା ଗେଟଅପ୍‌ରେ । ସତ କହିବାକୁ ଗଲେ ମୁଁ ମଧ୍ୟ ତା' ପ୍ରେମରେ ଉବୁଟୁବୁ ହେବାକୁ ଆରମ୍ଭ କଲି । ସିଏ ବୋଧେ ଏଇ ମଉକାକୁ ହିଁ ଅପେକ୍ଷା କରିଥିଲା । କାରଣ ମୁଁ ଥିଲି ତା'ଠୁ ସିନିଅର୍ ଏବଂ ଆମ ବ୍ରାଞ୍ଚର ଏକମାତ୍ର ବ୍ୟାଚେଲର୍ । ସେଥିରେ ପୁଣି ମୁଁ ସଦ୍ୟ କୈଶୋରର କାଚଦୁଆର ଠେଲି ଯୌବନର ଏଆର୍‌କଣ୍ଡିସନ୍ ରୁମ୍‌ରେ ପାଦ ଥୋଉଥିଲି । ତେଣୁ ପ୍ରେମର ଟେଲିଗ୍ରାଫିକ୍ ୱାର୍ଡ୍, ଯାହା ଅଦୃଶ୍ୟଭାବେ ଛନ୍ଦା ପାଖରୁ ଆସିଲା, ବୁଝିବାକୁ ମୋତେ କିଛି ଅସୁବିଧା ହେଲାନି । ଭାବିଲି, ଏ ମଉକା ହାତ ଛଡ଼ା କରିବାର ନୁହେଁ । ଦିନେ ମ୍ୟାରେଜ୍ ପାଇଁ ମୁଁ ପ୍ରପୋଜ୍ କଲି ତାକୁ । ସ୍ୱୀକୃତିର ସବୁଜ ସନନ୍ଦ ମଧ୍ୟ ତା'ପାଖରୁ ତତ୍‌କ୍ଷଣାତ୍ ମିଳିଗଲା ।

କହିବା ବାହୁଲ୍ୟ, ବିବାହ ପୂର୍ବରୁ ମୁଁ ତା'ସାଙ୍ଗରେ ଯେତେଦିନ ରୋମାନ୍ସ କରିଛି, ଅତି ସତର୍କତାର ସହିତ । ମାପିଚୁପି ହସିଛି, ଦାନ୍ତ ଚିପିଚିପି କଥାବାର୍ତ୍ତା କରିଚି । ତା'ସତ୍ତ୍ୱେ ଅଚାନକ୍ ଦିନେ ଛନ୍ଦା ମୋ'ଦାନ୍ତ ମାନଙ୍କ ସମ୍ପର୍କରେ ପଚାରିଲା, "ଆଚ୍ଛା ସତ କହିଲ, ପିଲାଦିନେ ତମ ଦାନ୍ତସବୁ ପୋକଖିଆ ଥିଲା କି ?"

ହଠାତ୍ ମୋ ଛାତିରେ ଭୂ-କମ୍ପ ହେବାକୁ ଲାଗିଲା ! ଛନ୍ଦା ଏ ପ୍ରଶ୍ନ କାହିଁକି କଲା ? ମୁଁ ନକଲି ଦାନ୍ତ ଖଞ୍ଜିଛି ବୋଲି ସେ ଜାଣିଗଲା କି ? ମୁଁ ଟିକେ ହଡ଼ବଡ଼େଇ ଯାଇ କହି ପକେଇଲି, "ହଁ ! ପିଲାବେଳେ ମୋତେ 'ପୋକଡ଼ା ଦନ୍ତା' ବୋଲି ଡାକୁଥିଲେ, କିନ୍ତୁ ତମେ କେମିତି ଜାଣିଲ ?"

"କଥା କ'ଣ କି.....ଲୋକେ କହନ୍ତି, ଯାହାର ଦାନ୍ତ ପିଲାବେଳେ ଯେତେ ପୋକରା,ବାହାଡ଼ା ଅଥବା ତେଢ଼ାମେଢ଼ା, ବଡ଼ ହେଲେ ତା'ଦାନ୍ତ ସେତେ ସୁନ୍ଦର ହେଇଯାଏ । ସତରେ ! ତମ ଦାନ୍ତ ଗୁଡ଼ିକ ଏଡ଼େ ଲୋଭନୀୟ ଆଉ ଜୀବନ୍ତ ଲାଗୁଛନ୍ତି ଯେ, ଅସଲରେ ମୁଁ ତମ ଅପେକ୍ଷା ତମ ଦାନ୍ତମାନଙ୍କ ପ୍ରେମରେ ହିଁ ପଡ଼ିଯାଇଛି ।"

ଅଚାନକ୍ ଭିଜିଲାନ୍ସ ରେଡ୍ କଲାଭଳି ଛନ୍ଦା ମୋ'ଦାନ୍ତ ମାନଙ୍କ ପିଛା ପଡ଼ିଯିବା ଦେଖି ମୋ ଅକଲ୍ ଗୁଡୁମ୍ ! ସଙ୍ଗେ ସଙ୍ଗେ ମୁଁ କଥାର ମୋଡ଼ ବଦଳେଇ କହିଲି, "ଛନ୍ଦା ! ତମେ ପ୍ଲିଜ୍ କାଲିଠୁ ଶାଢ଼ି ପିନ୍ଧିକି ଅଫିସ୍ ଆସିବ । ତମର ସେ ପିଙ୍କ୍ କଲର୍ ଶାଢ଼ି, ମେହେନ୍ଦୀ ରଙ୍ଗ ବ୍ଲାଉଜ୍,ବୈଜୟନ୍ତି ମାର୍କା ବେଣୀ ଆଉ ବେଣୀମୂଳେ ଲାଲ୍ ଗୋଲାପ, ଆଃ ! ପ୍ଲିଜ୍ କାଲିଠୁଁ ସେଇ ଗେଟ୍‌ଅପ୍‌ରେ ଆସିବ ? ?"

*ସୁରେନ୍ଦ୍ର ନାଥ ସାହୁ*

"ଲୋକେ କହନ୍ତି, ବବ୍‌କଟ୍ ହେୟାର୍ ଷ୍ଟାଇଲ୍ ଆଉ ଜିନ୍ ଡ୍ରେସ୍‌ରେ ମୁଁ କୁଆଡ଼େ ମଡ଼ର୍ଣ୍ଣ ଅପସରା ଭଳି ଲାଗେ, ଆଉ ତମେ ଯଦି କହୁଚ, ସେ ଯୁଗର ମଧୁବାଲା, ବୈଜୟନ୍ତି ମାଲା, ଆଉ ନୂତନ୍ ଭଳି ମୁଁ ଶାଢ଼ୀ ଆଉ ଲମ୍ବା ବେଣୀରେ ସୁନ୍ଦରୀ ଦିଶେ, ତା'ହେଲେ ଖାସ୍ ତମରି ପାଇଁ ମୁଁ କାଲିଠୁଁ ଶାଢ଼ି ପିନ୍ଧି ଆସିବି । ହେଲା ?"

ସେ ଦିନର କଥା ସେତିକି । ରକ୍ଷା ହେଲା, ଛନ୍ଦା ମୋ'ଦାନ୍ତ ମାନଙ୍କ ବିଷୟରେ ଅଧିକ କିଛି ପଚାରିଲାନି । ହେଲେ ଏ ଘଟଣା ପରେ ମୁଁ କିନ୍ତୁ ଆଉ ନିଶ୍ଚିନ୍ତ ହେଇ ରହି ପାରିଲିନି । ମୋ'ଭଳି ଗୋଟେ 'ନିର୍ଘାତ ପାକୁଆ' ପକ୍ଷେ ଛନ୍ଦା ଭଳି ସୁଶ୍ରୀ,ସୁନ୍ଦରୀ ତରୁଣୀକୁ ଭାର୍ଯ୍ୟାରୂପେ ପାଇବା ଅହୋ ଭାଗ୍ୟ ! ମୋ'ପାକୁଆମି ରହସ୍ୟ ଜାଣିଗଲେ ଛନ୍ଦା ନାମକ ଏ ସୁନ୍ଦରୀ ପକ୍ଷୀଟି ମୋ' ଜୀବନାକାଶରୁ ଯେ ଉଡ଼ନ୍ ଛୁ ନ'ମାରିବ ତା'ଗ୍ୟାରେଣ୍ଟି କିଏ ଦେବ ? ବରଂ ତା'ଆଗରୁ ମୋତେ ବିବାହ ରୂପକ ସୁନା ପଞ୍ଜୁରୀ ଭିତରେ ଏ ଦୁର୍ଲଭ ପକ୍ଷୀଟିକୁ ପୂରେଇଦେବା ଦରକାର ।

ଯା'ହେଉ ଯଥା ସମୟରେ,ଯଥାରୀତିରେ,ନିର୍ବିଘ୍ନରେ,ନିର୍ଦ୍ଵନ୍ଦ୍ୱରେ ଆମ ଶୁଭ ପରିଣୟ ସରିଗଲା । ମଧୁରାତିର ମଧୁର କାର୍ଯ୍ୟକ୍ରମ ଗୁଡ଼ିକ ଅବଶ୍ୟ ମୋତେ ବଡ଼ ସତର୍କତାର ସହିତ ସମାପନ କରିବାକୁ ପଡ଼ିଲା । ପରଦିନ ସକାଳ । ମୁଁ ଶୋଇଥାଏ ଯୁଦ୍ଧକ୍ଳାନ୍ତ ସୈନିକଟିଏ ଭଳି । ହଠାତ୍ ମୋ ଭିତରେ ଥିବା 'ବିବେକ' ନାମକ ସୁନା ପିଲାଟି ମୋତେ ଝାଙ୍କିକରି ଉଠେଇଦେଲା ଏବଂ ପଚାରିଲା, "ଆରେ ହତଭାଗା ! ଛନ୍ଦା ସହିତ ତୁ ଯେଉଁ ପ୍ରତାରଣା କରିଛୁ, ସତଟା ଜାଣିବା ପରେ ସେ ତୋତେ କ୍ଷମା ଦେବ ଟି ?"

ଚାଉଁକିନା ଭାଙ୍ଗିଗଲା ମୋ'ନିଦଟା । ବେଡ୍ ଉପରେ ଉଠି ବସିଲି । ଦେଖିଲି, ଛନ୍ଦା ନିତ୍ୟକର୍ମ ପାଇଁ ବାଥ୍‌ରୁମ୍‌ରେ ପଶିଛି । ମୁଁ ମନେ ମନେ ଭାବିଲି, ସତକଥା ! ଛନ୍ଦା ସହିତ ମୁଁ ପ୍ରତାରଣା କରିଛି, ବିଶ୍ୱାସଘାତକତା କରିଛି । ମୋ' ପାକୁଆମି ରହସ୍ୟ ତାକୁ କେତେଦିନ ବା ଲୁଚେଇ ରଖିପାରିବି ? ପିଚା ବଥକୁ ସିନା ଘୋଡ଼େଇ ହବ,ନାକ ବଥକୁ ଲୁଚେଇବା କ'ଣ ସମ୍ଭବ ? ସିଏ ମୋ ସ୍ତ୍ରୀ ହେଲାଣି ଯେତେବେଳେ, ମୋ'ଜୀବନର ଏତେବଡ଼ ରହସ୍ୟ ତାକୁ କେବେବି ଗୁପ୍ତ ରଖି ପାରିବିନି ? ଆଜି ନ ହେଲେ କାଲି ସେ ନିଶ୍ଚୟ ଜାଣିବ ଯେ ମୁଁ ପାକୁଆଟେ । ଘଟଣାଟା ଯେତେ ଡେରି ହବ କୁମାରୀର ଗୁପ୍ତ ଗର୍ଭ ପରି ସିଏ ସେତେ ପାକଳ ହବ । ପୁରୁଣା ହେଲେ ଅଧିକ ଘାତକ । ବରଂ ଏଇଟା ହିଁ ପ୍ରକୃଷ୍ଟ ସମୟ । ଏଇଲାଗେ ସେ ବାଥ୍‌ରୁମ୍‌ରୁ ବାହାରିଲେ ପାଟିରୁ ଦି'ପଟ ଯାକ ଦାନ୍ତ ଖୋଲି ତା' ଆଗରେ ଥୋଇଦେବି । ଦେଖାଯାଉ ତା' ପ୍ରତିକ୍ରିୟା କ'ଣ ! ଏମନ୍ତ ବିଚାରି ମୁଁ ମନକୁ ଦୃଢ଼ କଲି ଏବଂ ଦାନ୍ତ ଦି'ପଟ ଖୋଲି ବାଥ୍‌ରୁମ୍ ଦୁଆରକୁ ଅନେଇ ବସିଲି ।

ସହସା ଦୁଆର ଖୋଲିଲା ଏବଂ ବାଥ୍‌ରୁମ୍ ଭିତରୁ ଛନ୍ଦା ପରିବର୍ତ୍ତେ ବାହାରି ପଡ଼ିଲା ଗୋଟେ ଅଦ୍ଭୁତ ଲଣ୍ଡା ମୁଣ୍ଡିଆ ଜୀବ ! ! ମୁଁ ତାକୁ ଦେଖି ଭୟ ଓ ବିସ୍ମୟରେ ସ୍ପ୍ରିଙ୍ଗ୍ ବଲ୍ ଭଳିଆ ଉଛୁଳି ପଡ଼ିଲି ସୋଫା ଉପରୁ ! ସେ ଆସି ମୋ'ଆଗରେ ଗ୍ଲୋବ୍ ଭଳିଆ ଦିଶୁଥିବା ତା'ଚିକ୍କଣ ଚନ୍ଦା ମୁଣ୍ଡଟିକୁ ନୁଆଁଇ ଠିଆହେଲା । ମୁଁ ଆଖି ମଳି ମଳି ଦେଖେ ତ ସେ ବିଚିତ୍ର ପ୍ରାଣୀ ଆଉ କେହି ନୁହେଁ, ସ୍ୱୟଂ ଛନ୍ଦା ! ! ମସୃଣ ମାର୍ବଲ ଚଟାଣ ସଦୃଶ୍ୟ ତା' ନିର୍ବାଳ ମୁଣ୍ଡକୁ ଦେଖି ବିସ୍ମୟରେ ମୋ ପାକୁଆ ପାଟିଟା ସ୍ଥିରଚିତ୍ର ପାଲଟିଗଲା ! ଏଣେ ମୋ ଦାନ୍ତଶୂନ୍ୟ ପାଟିକୁ ଦେଖି ଛନ୍ଦା ସ୍ତମ୍ଭୀଭୂତ ! ! ତା' ହାତରେ ମଲା ବାଦୁଡ଼ି ଭଳି ଯାହା ଓହଳିଥିଲା, ସେଇଟା ଥିଲା ତା'ବୈଜୟନ୍ତି ମାର୍କା ନକଲି ଘନକୃଷ୍ଣ ବେଣୀର ଉଇଗ୍ ।

ଆଜ୍ଞା ! ସେଦିନ ଉଭୟଙ୍କ ପାଇଁ ଏ ଘଟଣା ଥିଲା ଅଭାବନୀୟ ! ଆମେ ଉଭୟେ ବିସ୍ମୟରେ ବାକ୍‌ଶୂନ୍ୟ ! ! ଆପଣ ବିଶ୍ୱାସ କରିବେନି, ଆଜି ପର୍ଯ୍ୟନ୍ତ ଆମେ ବାକ୍‌ଶୂନ୍ୟ ଅବସ୍ଥାରେ ହିଁ ଅଛୁ । ଛନ୍ଦା ଆଜି ପର୍ଯ୍ୟନ୍ତ ଦିନେ ବି ମୋ'ପାକୁଆମି ବିଷୟରେ କିଛି ପଚାରିନି କି ମୁଁ ତା'ଚନ୍ଦାମୁଣ୍ଡ ସମ୍ପର୍କରେ ପ୍ରଶ୍ନ କରିନି । ନୂଆ ମାରୁତି ଗାଡ଼ି ଭଳି ନିଶବ୍ଦରେ ଗଡ଼ି ଚାଲିଛି ଆମ ଦାମ୍ପତ୍ୟ ।" ସୁଦର୍ଶନ ବାବୁ ଏତିକିରେ ତାଙ୍କ କଥା ସମାପ୍ତ କଲେ ।

ଠିପି ଖୋଲା ସାମ୍ପେନ୍ ବୋତଲରୁ ଉଛୁଳି ଆସୁଥିବା ମୃଦୁ ପାନୀୟ ଭଳି ମୋ'ଛାତି ଭିତରୁ ଫେଣେଇ ଆସୁଥିବା ହସକୁ ଚାପି ରଖି ମୁଁ କହିଲି, "ସତରେ ସୁଦର୍ଶନ ବାବୁ ! 'ମେଡ଼ ଫର୍ ଇଚ୍ ଅଦର୍' ଏ ଉକ୍ତିକୁ ଆପଣ ଦୁହେଁ ହିଁ ଶତ ପ୍ରତିଶତ ସାର୍ଥକ କରିଛନ୍ତି "



# ନିରବ ଆଳାପ

ଯେତେବେଳେ ଗୋଲାପ ଓ ମନ୍ଦାର କଢ଼ିମାନେ ପାହାନ୍ତି କାକରରେ ମୁହଁ ଧୋଇ ପାଖୁଡ଼ାର ପଲକ ଖୋଲୁଥାନ୍ତି, ଯେତେବେଳେ ଗଙ୍ଗଶିଉଳିମାନେ ପହିଲି କିରଣର ପରଶ ପାଇ ଲାଜରେ ଝଡ଼ି ପଡୁଥାନ୍ତି ଡେମ୍ଫରୁ, ଯେତେବେଳେ ପାହାନ୍ତି ଆଲୁଅ ସକାଳୁଆ ଝାଡୁଦାର ଭଳି ଅନ୍ଧାରକୁ ଓଳେଇ ଓଳେଇ ନେଇଯାଉଥାଏ ଦୂରରୁ ଦୂରକୁ, ଠିକ୍ ସେତିକିବେଳେ ତୁଳସୀ ନଗରସ୍ଥ 'ପ୍ରଶାନ୍ତି ନିବାସ' ଉପର ମହଲାରୁ ବାଜିଉଠେ ଗୋଟେ ମୋବାଇଲ୍ ଆଲାର୍ମ ଏବଂ ପ୍ରାୟ ଦଶ ମିନିଟ୍ ପରେ ହଳେ କାନ୍‌ଭାସ୍ ଜୋତାର ଫଚ୍..ଫଚ୍..ଶବ୍ଦ ଗ୍ୟାରେଜ୍ ଓ ପର୍ଟିକୋ ଅତିକ୍ରମ କରି ହଜିଯାଏ କଲୋନୀ ରାସ୍ତାର ଧାରେ ଧାରେ । ଏ ହେଉଛି ଏଠିକାର ପ୍ରାତଃକାଳୀନ ଗୋଟେ ଦୈନନ୍ଦିନ ଘଟଣା ବା ନିତିଦିନିଆ ଦୃଶ୍ୟ ।

'ପ୍ରଶାନ୍ତି ନିବାସ'ର ଅନ୍ତେବାସୀ ହେଉଛନ୍ତି ଦୁଇଜଣ ବରିଷ୍ଠ ନାଗରିକ । ସିଧା କଥାରେ କହିଲେ ବୁଢ଼ାଟିଏ, ବୁଢ଼ୀଟିଏ । ସେମାନେ ହେଲେ ଅଠସ୍ତରି ବର୍ଷିୟ ପ୍ରଶାନ୍ତ ଚୌଧୁରୀ ଏବଂ ସତୁରି ବର୍ଷିୟା ତାଙ୍କ ଧର୍ମପତ୍ନୀ ଶାନ୍ତିଲତା ଦେବୀ । ଜୀବନର ଶେଷ ପାହାଚରେ ପହଞ୍ଚି ମଧ୍ୟ ସଦା ହାସ୍ୟମୁଖର ଏ ବରିଷ୍ଠ ଯୁଗଳଙ୍କୁ ତୁଳସୀ ନଗରବାସୀ ଶ୍ରଦ୍ଧା ଓ ସମ୍ମାନ ଦିଅନ୍ତି ଆଦର୍ଶ ଦମ୍ପତ୍ତି ଭାବେ । ପ୍ରଶାନ୍ତ ଚୌଧୁରୀ ଭାରି ସ୍ୱାସ୍ଥ୍ୟ ସଚେତନ ଲୋକ । ଏ ବୟସରେ ବି ସେ ପ୍ରତିଦିନ ବଡ଼ି ଭୋରୁ ଉଠି ଅଧଘଣ୍ଟାଏ ଲେଖା ମର୍ଣ୍ଣିଂୱାକ୍ କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ସକାଳୁ ଖୋଲା ପବନରେ ଘେରାଏ ବୁଲି ଆସିଲେ ସାରାଦିନ ତାଙ୍କୁ ବେଶ୍ ସତେଜ୍ ଲାଗେ । କିନ୍ତୁ ସେଦିନର କଥା ଥିଲା ଟିକେ ଅଲଗା । ସେଦିନ ସେ ମର୍ଣ୍ଣିଂୱାକ୍‌ରୁ ଫେରିଲେ ଏବଂ ଉଦାସ ମନରେ ବସିଲେ ସୋଫା ଉପରେ । ପ୍ରଶାନ୍ତ ବାବୁ ଘରେ ପହଞ୍ଚିବା ବେଳକୁ ଶାନ୍ତିଲତାଙ୍କ ଗାଧୁଆ ସରିଥାଏ । ସେଦିନ ବି ସେ ସଦ୍ୟ ବାଥ୍‌ରୁମ୍‌ରୁ ବାହାରି ଡ୍ରେସିଙ୍ଗଟେବୁଲ୍ ଆଗରେ ଠିଆ ହେଇଥିଲେ । ଅଭ୍ୟାସ ବଶତଃ ହାତରେ ଥିଲା ତାଙ୍କର ଟିକି ସିନ୍ଦୂର ଫରୁଆଟି ।

ସଚରାଚର ଦିନଟିଏ ଆରମ୍ଭ ହୁଏ ପୂର୍ବ ଦିଗ୍‌ବଳୟରେ ସୂର୍ଯ୍ୟୋଦୟ ହେଲେ; କିନ୍ତୁ ପତ୍ନୀ ଶାନ୍ତିଲତାଙ୍କ ସୀମନ୍ତରେ ସିନ୍ଦୂରଟୋପାର ସୂର୍ଯ୍ୟୋଦୟ ନ'ଦେଖିବା ପର୍ଯ୍ୟନ୍ତ ପ୍ରଶାନ୍ତଙ୍କ ଦିନଚର୍ଯ୍ୟା ଆରମ୍ଭ ହୁଏନା, ଏ ଚତୁର୍ଥାବସ୍ଥାରେ ମଧ୍ୟ ! ପଚାଶ ବର୍ଷର ଦାମ୍ପତ୍ୟ ଜୀବନ ଭିତରେ ଏ ଗୋଟେ ଧରାବନ୍ଧା କଥା ! ଏବେ ବି ସତୁରି ବର୍ଷିୟା ଶାନ୍ତିଲତାଙ୍କ ପକ୍ୱକେଶ

ଆଚ୍ଛାଦିତ କୁଞ୍ଚିତ କପାଳ ମଝିରେ ଚକ୍‌ଚକ୍ କରୁଥିବା ସିନ୍ଦୂର ଟୋପାଟି ଉଦିତ ସୂର୍ଯ୍ୟ ଭଳି ଢ଼େର୍ ଶକ୍ତି ଯୋଗାଏ ପ୍ରଶାନ୍ତଙ୍କୁ ।

ସେଦିନ କିନ୍ତୁ ପ୍ରଶାନ୍ତବାବୁ ମର୍ଣ୍ଣିଂଓ୍ୱାକ୍ ଶେଷ କରି ବିଷର୍ଣ୍ଣ ମନରେ ଫେରିଥିଲେ । ସ୍ୱାମୀଙ୍କ ଉଦାସ ଭାବକୁ ଲକ୍ଷ୍ୟକରି ଶାନ୍ତିଲତା ତାଙ୍କୁ କିଛି ପଚାରିବା ଆଗରୁ ପ୍ରଶାନ୍ତ କହିଲେ, "ବୁଝିଲ ଶାନ୍ତି..! ସକାଳୁ ସକାଳୁ ଗୋଟେ ଖରାପ ସମ୍ବାଦ ପାଇଲି । ମନଟା କିଛି ଭଲ ଲାଗୁନି । ଶୁଣିଲି, ଶୁଭେନ୍ଦୁଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଭଲ ନାହିଁ! ଏକ୍‌ଦମ୍ ସିରିଅସ୍ କଣ୍ଡିସନ୍!"

"ଶୁଭେନ୍ଦୁ....!" ହଠାତ୍ ଶାନ୍ତିଲତାଙ୍କ ହୃଦୟ ଭିତରେ ଗୋଟେ ମୃଦୁ ଭୂକମ୍ପ ସ୍ଫୁରିଗଲା! ପ୍ରଶାନ୍ତଙ୍କ ଅଲକ୍ଷ୍ୟରେ ଚମକି ପଡ଼ିଲେ ସେ! ଅକସ୍ମାତ୍ ହାତରୁ ତାଙ୍କର ଖସି ପଡ଼ିଲା ସିନ୍ଦୂର ଫରୁଆଟି । ସହସା ପ୍ରକୃତିସ୍ଥ ହୋଇ ସେ ଫରୁଆଟିକୁ ତଳୁ ଉଠାଉ ଉଠାଉ ପଚାରିଲେ, "କ'ଣ ହେଇଚି ଶୁଭେନ୍ଦୁଙ୍କର ?"

"କ'ଣ ହେଇଚି, ସେ କଥା ମୁଁ ବି ଜାଣିନି । କିନ୍ତୁ ହାତରୁ ସିନ୍ଦୂର ଖସିବାଟା ମୋଟେ ଶୁଭ ଲକ୍ଷଣ ନୁହେଁ । ବିଚରାର ବୟସ ତ ସେମିତି କିଛି ଅଧିକ ହେଇନି । ଖୁବ୍ ହେଲେ ସତୁରି କି ବାସ୍ତରି ହେଇଥିବ । ନା' କ'ଣ କହୁଚ ?"

"ହଁ.. ଗାଆଁ ସ୍କୁଲରେ ଆମେ ସାଙ୍ଗ ହେଇ ପଢୁଥିଲୁ । ସିଏ ମୋ'ଠୁ ବର୍ଷଟିଏ ଉପର ଶ୍ରେଣୀରେ ପଢୁଥିଲେ ।"

"ମୁଁ ତ ସେଇ କଥା କହୁଚି । ତମଠୁଁ ଗୋଟେ ବର୍ଷ ବଡ଼, ତା'ମାନେ ସେଇ ସତୁରି କି ଏକସ୍ତରି ହବ!"

"ହେଲେ.....ଏଇ ଅଳ୍ପ ଦିନ ତଳେ, ମିନିର ଝିଅ ବାହାଘରେ ମୁଁ ତ ତାଙ୍କୁ ଖୁବ୍ ଭଲରେ ଦେଖିଥିଲି । ହଠାତ୍ ଏମିତି କ'ଣ ହେଲା ତାଙ୍କର!" କହୁ କହୁ ଶାନ୍ତିଲତାଙ୍କ ଚଷମା ପିନ୍ଧା ନିଷ୍ପ୍ରଭ ଆଖି ହଳକ ନିଜ ଅଜ୍ଞାତରେ ଛଳଛଳେଇଗଲା ।

"ହଠାତ୍......! ହଠାତ୍ ଗୋଟେ କ'ଣ ? ବୁଝିଲ ଅନୁରାଧା! ଷାଠିଏ ବର୍ଷ ପରେ ମଣିଷ ଗ୍ୟାରେଣ୍ଟି ସରିଯାଇଥିବା ମେସିନ୍ ଭଳି କେବଳ ଗୋଟେ କାଳଚଳା ଯନ୍ତ୍ର! ଯେତେଦିନ ଚାଲିଛି.. ଚାଲିବ । ଅଚଳ ହେଲେ କଥା ସରିଲା । କେତେବେଳେ ହଠାତ୍ କାହାର କ'ଣ ହୋଇଯିବ, କିଛି କହିହେବ ?"

"ହଁ ସେକଥା ସତ; ହେଲେ ଶୁଭେନ୍ଦୁଙ୍କ ଭଳି ଜଣେ କର୍ମତତ୍ପର, ଚଳଚଞ୍ଚଳ ମଣିଷ ହଠାତ୍ ଏମିତି ଅଚଳ ଅବସ୍ଥାରେ ପହଞ୍ଚିଯିବେ, ବିଶ୍ୱାସ ହେଉନି ।" ଶାନ୍ତିଲତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଆସିଲା ।

ପ୍ରଶାନ୍ତବାବୁ କହିଲେ, "ଦେଖ ଶାନ୍ତି! ସିଏ ତମ ପିଲା ଦିନର ସାଙ୍ଗ, ଜଣେ ଦୂର ସମ୍ପର୍କୀୟ ବନ୍ଧୁ, ତା' ସାଥେ ସାଥେ ସିଏ ଆମ ପରିବାରର ଜଣେ ଶୁଭେଚ୍ଛୁ ମଧ୍ୟ! ଆମ

ଭଲମନ୍ଦରେ ସିଏ ଆସି ଠିଆ ହୁଅନ୍ତି । ତାଙ୍କର ଏ ପରିସ୍ଥିତିରେ ଆମେ ଥରେ ଯାଇ ତାଙ୍କୁ ଦେଖି ଆସିବା ଉଚିତ । ଚାଲ, ଏଇ କ୍ଷଣି ବାହାରିବା । ମୁଁ ବାଥ୍‌ରୁମ୍‌ରୁ ଆସୁଛି । ତମେ ପିନ୍ଧାପିନ୍ଧି ହେଇ ଶୀଘ୍ର ପ୍ରସ୍ତୁତ ହୁଅ ।” ଏତିକି କହି ପ୍ରଶାନ୍ତବାବୁ ବାଥରୁମ୍ ଭିତରେ ପଶିଲେ ।

ଶାନ୍ତିଲତା କିନ୍ତୁ ଶୁଭେନ୍ଦୁ ଓ ତାଙ୍କ ଶୈଶବର ସ୍ମୃତିକୁ ମନେ ପକାଇ ନିର୍ବାକ୍ ଓ ନିଷ୍ପ୍ରାଣବତ୍ ଠିଆ ହୋଇ ରହିଲେ । ଦୂର ଦିଗବଳୟର ଧୂମାଭ ଦୃଶ୍ୟ ଭଳି ଝାପ୍‌ସା ଝାପ୍‌ସା ଦେଖାଗଲା ତାଙ୍କୁ ଶୈଶବର କେତୋଟି ପୁରୁଣା ପୃଷ୍ଠା । ଶୁଭେନ୍ଦୁ ନାମକ ଜଣେ ସରଳ, ସାଦାସିଧା ମଣିଷର ଅମାୟିକ ହସହସ ମୁହଁ ବାରମ୍ବାର ଭାସି ଉଠିଲା ତାଙ୍କ ମନଦର୍ପଣର ଅସ୍ୱଚ୍ଛ ଫଳକ ଉପରେ । ଧୀରେଧୀରେ ଆତ୍ମବିସ୍ମୃତ ହୋଇ ଉଠୁଥିଲେ ସେ । ସମୟର ଉଜାଣି ସୁଅ ଚାହୁଁଚାହୁଁ ତାଙ୍କୁ ଠେଲି ନେଲା ଅନେକ....ଅନେକ....ଅନେକ...ବର୍ଷ ଅତୀତକୁ । ସେଠାରେ ତାଙ୍କର ଦେଖା ହେଲା ଜଣେ ଶାନ୍ତ ସରଳ, ନିଷ୍କପଟ ଗ୍ରାମ୍ୟକିଶୋର ସହିତ । ନାଁ ତା'ର ଶୁଭେନ୍ଦୁ । ଗରିବ ଘରର ପିଲା ହେଲେ ବି ପାଠ ସହିତ ଅନେକ ମହତ୍ ଗୁଣର ଭଣ୍ଡାରଟିଏ ଥିଲା ତା' ପାଖେ । କିଶୋରୀ ଶାନ୍ତିଲତା ପାଇଁ ଶୁଭେନ୍ଦୁ ଥିଲା କୈଶୋରର ଏକ ଅଯାଚିତ ଆକର୍ଷଣ ! ଶାନ୍ତି ସ୍ନେହ ବଶତଃ ତାକୁ ଡାକୁଥିଲେ 'ଶୁଭ' ।

ଆଉ ଟିକେ ଅତୀତ ଆଡ଼କୁ ନିରେଖିଲେ ସେ । ଦେଖାଗଲା ଗାଁ' ଚାଟଶାଳୀ । ଚାହାଳିରୁ ଫେରୁଥିବା କୁନି କୁନି ପିଲାମାନେ । ତା' ଭିତରେ ପୁଅଟିଏ, ଝିଅଟିଏ । ଶୁଭ ଆଉ ଶାନ୍ତି । ହାତରେ ହାତ ଛନ୍ଦି, କାନ୍ଧରେ ବହିବସ୍ତାନି ଓହଳେଇ, ଗାଁ ଦାଣ୍ଡରେ ଧୂଳି ଉଡ଼େଇ ଉଡ଼େଇ ଫେରୁଛନ୍ତି ଇସ୍କୁଲରୁ । ବାଟ ସାରା ଦଉଡ଼ାଦଉଡ଼ି ହୋଇ ଧରୁଛନ୍ତି କଙ୍କି ଆଉ ରଙ୍ଗବେରଙ୍ଗର ପ୍ରଜାପତି । ଶାନ୍ତିର ଲାଲ୍ ଛିଟପକା ଫ୍ରକ୍ ସାଙ୍ଗକୁ ତା' ଦୁଇ କାନରେ ଝୁଲୁଥାଏ ଚିକ୍‌ମିକ୍ ଦୁଇଟା ସୁନା ଝୁମୁକା । ଏଡ଼ିକି ବକଟେ ଝିଅ, ହେଲେ ଅଳଙ୍କାର ପିନ୍ଧିବାକୁ ତା'ର ଭାରି ଆଗ୍ରହ । କାନ୍ଧ ଉପରେ ଦୋଳି ଖେଳୁଥାଏ ରିବନ୍ ବନ୍ଧା ଟିକିଟିକି ବେଣୀ ଦୁଇଟା । ଶୁଭ ବେଳେବେଳେ ତା' ବେଣୀଟାକୁ ଟାଣିଦେଇ ଲୁଚିପଡ଼େ ଗଛ ଉହାଡ଼ରେ । ଶାନ୍ତି ହସିଦିଏ । ଅନ୍ୟ କେହି ଟାଣିଦେଲେ ସେ ରାଗି ଯାଆନ୍ତା । ହେଲେ କାହିଁକି କେଜାଣି, ଶୁଭ ପାଇଁ ସାତଖୁଣ ମାଫ୍ ! ଶୁଭ ଛିଣ୍ଡେଇ ଆଣେ ରାସ୍ତା କଡ଼ରୁ ଅନାବନା ଫୁଲ । ତା' ଟିକିଟିକି ପାଖୁଡ଼ା ସବୁ ଚୂନା ଚୂନା କରି ଶାନ୍ତିର ମୁଣ୍ଡ ଉପରେ ଝାଡ଼ିଦିଏ । ବ୍ରାହ୍ମଣ ମନ୍ତ୍ର ପଢ଼ିବା ଭଳି ଓଁ....ସ୍ୱାହାଃ....ସ୍ୱାହାଃ.. ! ଓଁ....ଶାନ୍ତି ଶାନ୍ତି କରେ ଏବଂ କହେ, "ଯାଃ......ତୋ' ବାହା ଘର ସରିଗଲା !"

ଏଡ଼େ ସାନ ବୟସରେ ବି କାହିଁକି କେଜାଣି, ଶାନ୍ତିକୁ ଶୁଭର ଏ ଥଟ୍ଟା ମଜା ଭଲ ଲାଗେ, ଯଦିଓ ସେ ଟିକିଏ ଲାଜେଇଯାଏ । ଶାନ୍ତି ବାରି ବଗିଚା ବୁଲିବୁଲି ତୋଳି ଆଣିଥାଏ ଫ୍ରକ୍ ଭରା ବରକୋଳି, ଭଇଁଚକୋଳି, ପିଜୁଳି ଅଥବା କଷି ଆମ୍ବ । ସେ ବାଛିବାଛି ମିଠା

ଫଳତକ ଶୁଭକୁ ଖାଇବାକୁ ଦିଏ । ସେଦିନ ଶାନ୍ତି ତାକୁ କହିଲା, "ଆଜି ସଞ୍ଜ ବେଳକୁ ଆମ ଘରକୁ ଆସିବୁ । ଜେଜେମା' କହିଛି, ଆଜି ଗୋଟେ ନୂଆ ଗପ ଶୁଣେଇବ । ପଦ୍ମା, ଉମା ଭାଇ, ଅଳୁ, ଭୀମା ସମସ୍ତେ ଅସିବେ, ତୁ ବି ଆସିବୁ, ହେଲା ?"

ସେଦିନ ସନ୍ଧ୍ୟା ପୂର୍ବରୁ ପାଠପଢ଼ା ସାରି ସାହିର ଅନ୍ୟ ପିଲାଙ୍କ ସହିତ ଶୁଭ ବି ଆସି ପହଞ୍ଚିଗଲା ଶାନ୍ତି ଘରେ । ପିଲାମାନେ ଜେଜେମା'କୁ ଘେରି ବସିଲେ ଗପ ଶୁଣିବାପାଇଁ । ଶୁଭ ଆଉ ଶାନ୍ତି ସାଙ୍ଗ ହେଇ ବସିଲେ । ଜେଜେମା' ଆରମ୍ଭ କଲେ, "ଶୁଣ ପିଲାମାନେ, ଗୋଟେ ରାଇଜରେ ଜଣେ ରଜା ଥିଲେ । ତାଙ୍କର ଗୋଟେ ବୋଲି ଝିଅ । ଭାରି ଗେହ୍ଲୀ ! ଅତି ସୁନ୍ଦରୀ । ସରଗର ପରୀ ନାଖେ !" ତା'ପରେ ଜେଜେମା ଶାନ୍ତିକୁ କୋଳକୁ ଟାଣି ନେଇ କହିଲେ, "ଏଇ ଠିଇକ୍ ଆମ ଶାନ୍ତି ଭଳିଆ ଦେଖିବାକୁ । ରଜା ଝିଅ ଧୀରେଧୀରେ ବଡ଼ ହେଲା । ପୂନେଇ ଜହ୍ନ ଭଳି ସେ ଯହୁଁଯହୁଁ ବଡ଼ ହେଲା ତହୁଁତହୁଁ ଅଧିକ ସୁନ୍ଦର ଦିଶିଲା । ତାକୁ ବିଭା ହେବାପାଇଁ ଦେଶବିଦେଶର ରଜା ପୁଅମାନେ ଧାଡ଼ି ଲଗେଇଲେ । ହେଲେ ରଜା ତାଙ୍କ ଅଲିଅଳୀ ଜେମା ପାଇଁ ଜଣେ ସାହସୀ ବୀର ରାଜକୁମାର ଖୋଜୁଥିଲେ । ଶେଷରେ ସେ ଯାହାକୁ ବାଛିଲେ, ସିଏ ସାହସୀ ହେଲେ କ'ଣ ହବ, ବଡ଼ ହୁଣ୍ଡାଟେ !"

ପିଲାଙ୍କ ଭିତରୁ ଜଣେ ପଚାରିଲା, "ଜେଜେମା' ହୁଣ୍ଡା କାହାକୁ କହନ୍ତି ?"

"ଆରେ ! ତମେମାନେ ହୁଣ୍ଡା କହିଲେ ବୁଝିପାରୁନ ? ଯିଏ ଆଗ ପଛ ନ' ବିଚାରି ମନ ଇଚ୍ଛା କାମ କରେ, ଯିଏ ଧର୍ କହିଲେ ମାରି ଆଣେ, ଯାହାର ବୁଦ୍ଧି, ବିଚାର କିଛି ନ'ଥାଏ, ସେମିତିକା ମଣିଷକୁ 'ହୁଣ୍ଡା' କହନ୍ତି ।" ତା'ପରେ ସେ ଘେରି ବସିଥିବା ପିଲାଙ୍କ ଭିତରୁ 'ଭୀମା' ନାମକ କାଳିଆ ଭୁଷୁଣ୍ଡା ପିଲାଟିକୁ ଟାଣି ଆଣି କହିଲେ, "ହେଇଟି, ତମମାନଙ୍କ ଭିତରେ ଏଇଟା ଗୋଟେ ହୁଣ୍ଡା ! ରଜା ଏମିତିକା ଗୋଟେ ହୁଣ୍ଡା ସାଙ୍ଗରେ ଆମ ଶାନ୍ତି ନାଖେ ଦିବ୍ୟ ସୁନ୍ଦରୀ ରାଜଜେମାର ବାହାଘର ଠିକ୍ କରିଦେଲେ ।"

ଜେଜେମା'ଙ୍କ କଥା ଶୁଣି ସବୁ ପିଲା ହସି ଉଠିଲେ । ଶାନ୍ତି କିନ୍ତୁ ଲୁହ ଟଳମଳ ଆଖିରେ ଜେଜେମାଙ୍କ କୋଳରୁ ଉଠି ଚାଲି ଯାଉଥିଲା ।

"ଆଲୋ' ଆଲୋ'....... ! ତୋ'ର କ'ଣ ହେଲା ?" ଜେଜେମା' ତାକୁ ପଛ ଆଡୁ ଟାଣି ଧରି ପଚାରିଲେ ।

ଶାନ୍ତି ରାଗି କରି କହିଲା, "ନା'ନା'.... ! ଛାଡ଼ ମତେ । ମୁଁ ଭୀମା ପରିକା ଗୋଟେ ହୁଣ୍ଡାକୁ ବିଭା ହେବି ନାଇଁ ।"

"ଆଲୋ ! ତତେ କିଏ ଭୀମା ସାଙ୍ଗରେ ବିଭା କରୁଚି ? ଏଇଟା ପରା ରଜାଘର ଗପ !" ଜେଜେମା' ବୁଝେଇଲେ ।

ସୁରେନ୍ଦ୍ର ନାଥ ସାହୁ

"ତା' ହେଲେ ମତେ ରଜାଝିଅ କାହିଁକି କହିଲୁ ? ମୁଁ ରଜାଝିଅ ହେଲେ ମୋ' ସାଙ୍ଗରେ ଜଣେ ଭଲ ରଜାପୁଅକୁ ବାହା କରିବୁ ଯଦି ମୁଁ ତୋ' ଗପ ଶୁଣିବି, ନ'ହେଲେ ଯାଉଚି, ନ'ଖାଇ ଶୋଇପଡ଼ିବି !"

"ହଉ ହେଲା । ତୁ ଆମର ସୁନ୍ଦରୀ ରାଜଜେମା । ତୋତେ କେମିତିଆ ରଜାପୁଅ ଲୋଡ଼ା କହ, ତା' ସାଙ୍ଗରେ ତୋ' ବାହାଘର କରିବା ?"

ସବୁ ପିଲା ଏକସ୍ୱରରେ କହିଲେ, "ଜେଜେମା.....ଜେଜେମା, ଶାନ୍ତି ସବୁବେଳେ ଶୁଭ ସାଙ୍ଗରେ ବୁଲୁଚି, ଖେଳୁଚି, ତା'ରି ସାଥିରେ ଇସ୍କୁଲ୍ ଯାଉଚି । ଶୁଭକୁ ରଜାପୁଅ କରି ଶାନ୍ତିକୁ ତା' ସାଙ୍ଗରେ ବା'ଘର କରିଦିଅ ।"

ତାହା ହିଁ ହେଲା । ସେଠୁ ଜେଜେମା'ଙ୍କ ଗପର ଧାରା ବଦଳି ଗଲା । ସୁନ୍ଦରୀ ରାଜଜେମା ଓ ଆଉ ଜଣେ ସୁନ୍ଦର ରାଜାପୁଅକୁ ନେଇ ନୂଆ ଗପର ସୁଅ ଆଗକୁ ବଢ଼ି ଚାଲିଲା । ଏମିତି ଅନେକ କଥା...... ଅନେକ ଭୁଲା ଅଭୁଲା ସ୍ମୃତିର ଗନ୍ତାଘର, ଶୈଶବ ।

ଶୈଶବ ପରେ କୈଶୋର । ଶାନ୍ତିଲତାଙ୍କ ମାନସପଟରେ ଭାସି ଚାଲିଥିଲା ଗୋଟାକ ପରେ ଗୋଟାଏ ଦୃଶ୍ୟ । କୈଶୋର ଡେଇଁ ସେହି ପୁଅଝିଅ ଦୁହେଁ ପାଦ ଦେଇଥିଲେ ତାରୁଣ୍ୟରେ । ଏଥର ଝିଅଟି ଧୂଳିଖେଳ ଛାଡ଼ି ରୁମାଲ୍‌ରେ ଫୁଲ ପକେଇବା ଶିଖିଲା । ପୁଅଟିକୁ ଗୋଲାପ ଫୁଲ ଭଲ ଲାଗେ, ତେଣୁ ସେ ରୁମାଲରେ ଲାଲ୍ ଗୋଲାପଟିଏ ଆଙ୍କି ପୁଅଟିକୁ ଉପହାର ଦେଇଥିଲା । ପୁଅଟି ମଧ୍ୟ ପ୍ରଜାପତି ଧରିବା ଛାଡ଼ି କବିତା ଲେଖିବା ଶିଖୁଥିଲା । ଗୋଲାପକୁ ନେଇ ସିଏ ତା' ପ୍ରଥମ କବିତା ଝିଅଟିକୁ ଉପହାର ଦେଲା । ଝିଅଟି ଯା' ଭିତରେ ଆଣ୍ଠୁଖୋଲା ଫ୍ରକ୍ ଛାଡ଼ି ଫୁଲପକା ଶାଢ଼ି ପିନ୍ଧିବା ଶିଖିଯାଇଥିଲା । ମାସରେ ଅନ୍ତତଃ ତିନି ଦିନ ଦେହରେ ହଳଦି ମାଖି ଗାଧୋଉଥାଏ । ଘଣ୍ଟା ଘଣ୍ଟା ଧରି ଦର୍ପଣ ଆଗରେ ଠିଆ ହେଉଥାଏ ।

ଅକସ୍ମାତ୍ ଦିନେ ଝିଅଟିର ହଳଦିମଖା ଦେହର ବାସ୍ନାରେ ରୋମାଞ୍ଚିତ ହେଲା ପୁଅଟି, ହେଲେ ସେ ରୋମାଞ୍ଚର ମାନେ କ'ଣ ସେ ଜାଣିନଥିଲା । ପୁଅଟା ପାଠରେ ସିନା ଆଗୁଆ, ହେଲେ ଭଲ ପାଇବାର 'ଅ....ଆ....' ମଧ୍ୟ ଶିଖିନଥିଲା ସେ । ଝିଅଟା ପାଠରେ ପଛୁଆ ହେଲେ ମଧ୍ୟ 'ପ୍ରେମ'ର ବର୍ଣ୍ଣବୋଧ ଶିଖି ସାରିଥିଲା । ତେଣୁ ତାକୁ ତାଗିଦ୍ କରାଗଲା, ଶୈଶବର ସେହି ସରଳ ସୁଧାର ପୁଅଟି ସାଙ୍ଗରେ ଆଉ ବେଶୀ ମିଳାମିଶା ନ'କରିବାକୁ । ଏବଂ ତା' ପାଇଁ ବର ଖୋଜା ଚାଲିଲା ।

ଏଇ ପ୍ରଶାନ୍ତ ଚୌଧୁରୀ ଆସିଥିଲେ ବର ବେଶରେ । ଇଂଜିନିୟରିଂ ପାସ୍ କରି ସଦ୍ୟ ସରକାରୀ ଚାକିରି ପାଇଥାନ୍ତି ସେ । ଗୋଟାଏ ଚାହାଣିରେ ହିଁ ପ୍ରଶାନ୍ତ ସେହି ହଳଦିରଙ୍ଗୀ, ସୁନାନାକୀ ସୁନ୍ଦରୀ ଝିଅଟିକୁ ପସନ୍ଦ କରିଦେଇଥିଲେ । ତା' ପରେ ଝିଅଟି ଚାଲିଗଲା ସ୍ୱାମୀଙ୍କ

ସାଙ୍ଗରେ ତା' ସଂସାର ସଜାଡ଼ିବାକୁ । ଝିଅଟି ସେ ବର୍ଷ ଆଉ ପରୀକ୍ଷା ଦେଇ ପାରିଲାନି । ପୁଅଟି କଲେଜରୁ ଫେରିବା ବେଳକୁ ଝିଅର ସବାରି ଉଠୁଥାଏ ଦାଣ୍ଡ ଦୁଆରୁ ।

ଶୈଶବର ଦୁଇ ସାଥୀ ସାଙ୍ଗ ହୋଇ କିଛି ବାଟ ଚାଲିବା ପରେ ପ୍ରାକ୍‌ଯୌବନର ଦୋ'ଛକିରୁ ବାଟ ଭାଙ୍ଗି ଯେ'ଝା ବାଟରେ ଚାଲିବା ଆରମ୍ଭ କଲେ । ଦୁହେଁ ନିଜନିଜ ଜୀବନକୁ ଆଦରି ନେଇଥିଲେ ସ୍ୱଚ୍ଛନ୍ଦ ଓ ସାବଲୀଳ ଭାବେ । ସେଥିପାଇ କାହା ମନରେ ନା' ଥିଲା ଦ୍ୱନ୍ଦ୍ୱ, ନା' ଦୁଃଖ, ନା' ଅବସୋସ୍, ନା' ହତାଶା ! କାରଣ ଉଭୟେ ଜାଣିଥିଲେ, ଦିନେ ଏମିତି ହିଁ ହେବ ।

ପୁଅଟି ଏଥର ଏକାଏକା ବାଟ ଚାଲିବା ଆରମ୍ଭ କଲା । ବାଟରେ ଦେଖା ହେଲା ତା'ର 'ଅପୂର୍ବା' ନାମ୍ନୀ ଅନ୍ୟ ଗୋଟେ ଝିଅ ସହିତ । ତା' ସାଙ୍ଗରେ ପୁଅଟିର ହେଲା ମନ ଦିଆନିଆ, ହୃଦୟ କିଣାବିକା । ତା'ପରେ ପୁଅଟି ତାକୁ ନେଇ ସଂସାର ଗଢ଼ିଲା ।

ସମୟ ଗଡ଼ି ଚାଲିଲା । ସଂସାର ବଢ଼ି ଚାଲିଲା । ସେ'ଦିନର ସେହି ହଳଦିମାଖୀ, ସୁନ୍ଦରୀ ଝିଅଟି ସମୟର ଦନ୍ତୁରିତ ଦାଢ଼ରେ ଘୋରି ହୋଇହୋଇ ଆଜି ଆସି ସତୁରି ବର୍ଷିୟା ଲୋଳଚର୍ମା ବୃଦ୍ଧା, ଶାନ୍ତିଲତା ! ପୁଅଝିଅ, ନାତିନାତୁଣୀ, ପଣନାତି ଓ ନାତୁଣୀମାନଙ୍କୁ ନେଇ ପରିପୂର୍ଣ୍ଣ ତା'ସଂସାର । ଫୁଲଫଳର ପ୍ରାଚୂର୍ଯ୍ୟରେ ଭରପୂର ତା' ଶାଖାପ୍ରଶାଖା ।

ଏଣେ ଗୋଲାପକୁ କେନ୍ଦ୍ର କରି କବିତା ଲେଖୁଥିବା ସେ ଦିନର କିଶୋର ଆଜି ସମାଜର ଜଣେ ପ୍ରତିଷ୍ଠିତ ବର୍ଷିୟାନ୍ ସାହିତ୍ୟିକ, କବି ଶୁଭେନ୍ଦୁ ଦାସ୍ । ନିଜ ଜୀବନ ଜୀବିକା, ଘରସଂସାର ଏବଂ ସାହିତ୍ୟ ସର୍ଜନାକୁ ନେଇ ପରିତୃପ୍ତ, ପରିପୂର୍ଣ୍ଣ ସେ ।

ଶାନ୍ତିଲତା ନିଜ ଇଂଜିନିୟର ସ୍ୱାମୀ ଓ ପୁଅଝିଅଙ୍କ ଜଞ୍ଜାଳ ମୁଣ୍ଡେଇ ସାରା ଜୀବନ ବିତେଇ ଦେଲେ ଓଡ଼ିଶା ବାହାରେ । ଶୁଭେନ୍ଦୁ ଆଦରି ନେଇଥିଲେ ଅଧ୍ୟାପନା ଚାକିରିକୁ ଜୀବିକା ଭାବେ । ଦୁହେଁ ଗୋଟେ ଗାଆଁର ଝିଅପୁଅ, ତେଣୁ ଦୁହିଙ୍କ ମଧ୍ୟରେ ଅକସ୍ମାତ୍ କେବେ କେମିତି ଭେଟଭାଟ୍ ହେଇଯାଏ । ଚାରି ଆଖି ମିଶିଲେ ହଠାତ୍ କେମିତି ଗୋଟେ ଚମକ୍ ଖେଳିଯାଏ ମନରେ । ହେଲେ ବୈଶାଖର ବିଜୁଳି ପରି ବିନ୍ଦୁଏ ବି ବର୍ଷା ଝରାଇବାର ସାମର୍ଥ୍ୟ ନଥାଏ ସେ ଚମକରେ ! ଦୁହେଁ ନିଜ ନିଜ ଜୀବନ, ଜୀବିକା ଓ ଜଞ୍ଜାଳକୁ ନେଇ ବ୍ୟସ୍ତ । ଏବେ ଜୀବନର ଶେଷ ପର୍ଯ୍ୟାୟରେ, ଅବସର ନେବା ପରେ, ଦୁଇ ପରିବାର ଆସି ରହୁଛନ୍ତି ପାଖାପାଖି ଦୁଇ ସହରରେ ।

ହଠାତ୍ ଆଜି ଖବର ମିଳିଲା, ଶୁଭେନ୍ଦୁ ଅସୁସ୍ଥ, ଶେଷ ଶଯ୍ୟାରେ ! ଭଗବାନ୍ କରନ୍ତୁ, ତାଙ୍କର ସେମିତି କିଛି ଅମଙ୍ଗଳ ନ'ହେଉ । ଠାକୁରଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆଟେ ମାରି ଶାନ୍ତିଲତା ଯିବାକୁ ପ୍ରସ୍ତୁତ ହେଲେ । ସ୍ୱାମୀ ବାଥରୁମ୍‌ରୁ ବାହାରିବା ବେଳକୁ ତାଙ୍କୁ ସଜବାଜ ହେଇ ବସିଥିବାକୁ ପଡ଼ିବ, ନଚେତ୍ ବାବୁ ଖପ୍ପା ହେଇଯିବେ । ଭାରି ସମୟ ସଚେତନ ସେ ।

*ସୁରେନ୍ଦ୍ର ନାଥ ସାହୁ*

ସୁନା ଗହଣା ପ୍ରତି ଶାନ୍ତିଲତାଙ୍କର ଏବେ ବି ସେଇ ଆକର୍ଷଣ ! ପିଲାବେଳୁ ସେଇ ପୁରୁଣା ଅଭ୍ୟାସ । ଘରୁ ବାହାରିବା ମାତ୍ରେ ବେକରେ, ନାକରେ, କାନରେ ବୋଝେ ଗହଣା ନାଇବେ । ସିଏ ଯୁଆଡ଼େ ଯାଆନ୍ତୁ, ଯେଉଁ ପରିବେଶକୁ ଯାଆନ୍ତୁ, ସେଥିରେ କିଛି କଥା ନାହିଁ । ହଳଦିଗଣ୍ଠି ଦକ୍ଷିଣି ସୁନା ଅଳଙ୍କାରରେ ମଣ୍ଡି ହୋଇ ବରହମପୁରୀ କୁମ୍ଭଧଡ଼ିଆ ନାଲି ପାଟ ଖଣ୍ଡେ ପିନ୍ଧି ପକେଇଲେ ଦେଖା ଯାଆନ୍ତି ସେ ଜୀବନ୍ତ ଦେବୀ ପ୍ରତିମା ଭଳି !

ସେଦିନ ବି ସେ ତାଙ୍କ ପ୍ରିୟ ଗହଣାତକ ପେଡ଼ିରୁ କାଢ଼ି ପିନ୍ଧିଲେ । ଶେଷରେ ଖୋଲିଲେ ଆଲମିରାର ଗୋଟେ ସିକ୍ରେଟ୍ ଚ୍ୟାମ୍ବର୍ । ତା' ଭିତରୁ ସନ୍ତର୍ପଣରେ କାଢ଼ି ଆଣିଲେ ନାଲି ପାଟକନା ଗୁଡ଼ା ହେଇଥିବା ଗୋଟେ ଛୋଟ ପୁଟୁଳି । ତାକୁ ଖୋଲିଲେ । ତା'ଭିତରେ ଥିଲା ଗୋଟେ ଛୋଟିଆ ଡିବା ! ତା' ଭିତରେ ଅତି ଯତ୍ନରେ ରଖା ଯାଇଥିଲା ଟିକି ନାକଫୁଲଟେ !

ପ୍ରଶାନ୍ତ ବାବୁ ଅଭ୍ୟାସ ବଶତଃ ଟ୍ରାଉଜରରେ ଫିତା ବାନ୍ଧୁବାନ୍ଧୁ ଆସି ପାଟିକଲେ, "କିହୋ' ! ତମକୁ ଏତିକି ବେଳକୁ ପୁଣି ଏତେ ଗୁଡ଼େ ଗହଣା ମଣ୍ଡି ହୋଇ ବାହାରିବା କ'ଣ ଦରକାର ଥିଲା ? ବିଚରା ପରିବାରର ଲୋକେ କେତେ ଦୁଃଖରେ ଥିବେ । ଆମେ ତାଙ୍କୁ ସମବେଦନା ଜଣେଇବାକୁ ଯିବା, ନା' ବଡ଼ଲୋକି ଦେଖେଇବାକୁ...... ?"

ଶାନ୍ତିଲତା କିଛି ନ'କହି ଚୁପ୍ ରହିଲେ । ପ୍ରଶାନ୍ତଙ୍କ ଦୃଷ୍ଟି ଶାନ୍ତିଲତାଙ୍କ ନାକ ଉପରେ ପଡ଼ିବା କ୍ଷଣି ଆଶ୍ଚର୍ଯ୍ୟରେ ଫାଟିପଡ଼ିଲେ ସେ । "ଆରେ.... ! ଏ ନାକଫୁଲ ! ! ଏଇଟା ତ ତମର ସେ ପଚାଶ ବର୍ଷ ତଳର ପୁରୁଣା ଗହଣାଟା ଭଳି ଲାଗୁଚି । ମାନ୍ଧାତା ଅମଳର ଏ ନକଲି ନାକଫୁଲଟା ଏବେ ପୁଣି ପାଇଲ କୁଆଡୁ ? ଖୋଲ.....ଖୋଲ ତାକୁ !"

ଶାନ୍ତିଲତା ଏଥର ମୁହଁ ଖୋଲିଲେ, "ଦେଖ ! ଯଦି କହିବ ଅନ୍ୟ ସବୁ ଗହଣା ମୁଁ ଖୋଲିକି ରଖିଦେବି, ହେଲେ ଏ ନାକଫୁଲ ବିଷୟରେ ମତେ କିଛି କହିବନି । ମୁଁ ତମ ଘରକୁ ବୋହୂ ହୋଇ ଯେତେବେଳେ ଆସିଥିଲି, ଏଇଟା ମୋ' ନାକରେ ଥିଲା । ଏଇ ନାକଫୁଲ ପାଇଁ ତମ ଘରଲୋକେ ମତେ କମ୍ ଟାହିଟାପରା କରି ନାହାନ୍ତି । ଫୁଟ୍‌ପାଥରେ ମିଳୁଥିବା ନଅ ଟଙ୍କିଆ ନକଲି ନାକଫୁଲ କହି ମତେ ଦିନରାତି ଚିଡ଼େଇଲେ । ବାଧ୍ୟ ହେଇ ମୁଁ ତାକୁ ଓହ୍ଲେଇ ଦେଇଥିଲି । ସେ ଦିନୁ ଆଜି ପର୍ଯ୍ୟନ୍ତ ମୁଁ ଆଉ କୌଣସି ନାକ ଗହଣା ପିନ୍ଧିନି । ଆଜି ତ ମୁଁ ସତୁରୀ ବରଷର ବୁଢ଼ୀ । ଯାହା ପିନ୍ଧିଲେ କି ନାଇଲେ ତମର କିଛି ଫରକ ପଡ଼ିବନି । ଚାଲ ଏବେ । ଏଇ କଥାକୁ ନେଇ ଆଉ ଅଧିକ ତର୍କ ନ'କରି ଆମେ ଚଞ୍ଚଳ ଯିବା ।

ପରିସ୍ଥିତି ଦୃଷ୍ଟିରୁ ପ୍ରଶାନ୍ତବାବୁ ଚୁପ୍ ରହିଲେ ସତ, ହେଲେ ଶ୍ରୀମତୀଙ୍କ ଜିଦ୍ ଦେଖି ଭିତରେ ଭିତରେ ସେ କୁହୁଳୁଥାନ୍ତି । ଡ୍ରାଇଭର୍ ଗାଡ଼ି ଲଗେଇ ସାରିଥିଲା । ଦୁହେଁ ଯାଇ

ବସିଲେ ଗାଡ଼ିରେ । ହେଲେ ଉଭୟଙ୍କ ମୁହଁ ବିପରିତ ଆଡ଼କୁ । ଶୁଭେନ୍ଦୁଙ୍କ ଦୁଆର ମୁହଁରେ ପହଞ୍ଚିବା ପର୍ଯ୍ୟନ୍ତ ବୁଢ଼ାବୁଢ଼ୀ ଦୁହେଁ ଗୁମ୍ ମାରି ବସିଥାନ୍ତି ।

ଶାନ୍ତିମାଉସୀ ଓ ପ୍ରଶାନ୍ତ ମଉସାଙ୍କୁ ଦେଖି ମନୋଜ୍ ଗାଡ଼ି ପାଖକୁ ଆସି ଦୁହିଁଙ୍କୁ ପାଛୋଟି ନେଲା । ଶୁଭେନ୍ଦୁଙ୍କ ଏକମାତ୍ର ପୁଅ ମନୋଜ୍ । ବାଙ୍ଗାଲୋରରେ ଗୋଟେ ସଫ୍ଟୱେଆର୍ କୋମ୍ପାନୀରେ ଇଂଜିନିୟର୍ ଅଛି । ବାପାଙ୍କ ଅନ୍ତିମ ଅବସ୍ଥା ଖବର ପାଇ ବୋଧେ ତା' ପିଲାମାନଙ୍କୁ ଧରି ଧାଇଁ ଆସିଛି । ଝିଅ ବି ଗୋଟିଏ । ସିଏ ବି ଆଠ ଦଶ ଦିନ ହେଲା ଆସି ପାଖରେ ଅଛି । ଜ୍ୱାଇଁ ବିଦେଶରେ । ପୁଅ, ଝିଅ, ନାତିନାତୁଣୀମାନେ ଶୁଭେନ୍ଦୁଙ୍କ ଶଯ୍ୟା ଚାରି ପାଖରେ ଘେରି ବସିଛନ୍ତି । ମୁଣ୍ଡ ପାଖରେ ପ୍ରଦୀପଟିଏ ଜଳୁଚି ଦିକ୍‌ଦିକ୍ ହୋଇ । ତେଲ ସରି ଆସିଲାଣି । ଲିଭିଯିବ, ଏ ଘଡ଼ି କି ଆର ଘଡ଼ି, କହି ହଉନି ।

ଶୁଭେନ୍ଦୁଙ୍କ ସହଧର୍ମିଣୀ ଅପୂର୍ବା ଦେବୀ ପଲଙ୍କ ବାଡ଼ାକୁ ଆଉଜି, ଆଖି ବନ୍ଦ କରି ଠିଆ ହେଇଥିଲେ । ଆଖିରେ ତାଙ୍କର ଲୁହର ଅସରନ୍ତି ଝର । ସାରା ଜୀବନ ସ୍ୱାମୀ ସ୍ତ୍ରୀ ଦୁହେଁ କେହି କାହାକୁ ଘଡ଼ିଏ ଛାଡ଼ି ରହି ନାହାନ୍ତି । ହେଲେ ଏବେ, ଏ ଶେଷ ଜୀବନରେ ସିଏ ତାଙ୍କୁ ଏକା କରି ଛାଡ଼ି ଯିବାକୁ ବାହାରିଛନ୍ତି, ଏହି ସତ୍ୟକୁ ସାମ୍ନା କରିବାଭଳି ଶକ୍ତି ଅପୂର୍ବା ବୋଧେ ଠୁଳ କରିପାରୁନଥିଲେ ଛାତିଭିତରେ । ଶାନ୍ତିଲତାଙ୍କୁ ଦେଖିବାକ୍ଷଣି ସେ କଇଁକଇଁ ହୋଇ କାନ୍ଦିବାକୁ ଲାଗିଲେ । ଶାନ୍ତିଲତା ବି କୋହ ସମ୍ବରଣ କରି ପାରିଲେନି । କୋଳାକୋଳି ହୋଇ ଦୁଇବାନ୍ଧବୀ ଦୁହିଙ୍କ ଲୁହରେ ଭିଜିବାକୁ ଲାଗିଲେ । ଉଭୟେ ସମବୟସୀ । ଜୀବନରେ ଦେଖାସାକ୍ଷାତ, ଯିବା ଆସିବା ସିନା କମ୍, ହେଲେ ପ୍ରଗାଢ଼ ଅନ୍ତରିକତା ରହିଛି ଉଭୟଙ୍କ ଭିତରେ, ଦୁଇ ପରିବାର ମଧ୍ୟରେ ।

ଅପୂର୍ବା ଲୁହ ପୋଛି କହିଲେ, "ଶାନ୍ତି, ତମେ ଥରେ ତାଙ୍କୁ ଡାକ । ଆଖି ଖୋଲୁନାହାନ୍ତି ସେ । ଦୁଇ ଘଣ୍ଟା ହେଲା ଖାଲି ନିଃଶ୍ୱାସ ଯାଉଚି...ଆସୁଚି ! ଆଖି ପାଟି ପଡ଼ିଗଲାଣି । ତାଙ୍କ ମୁହଁରୁ କିଛି ପଦେ ଶୁଣିବାପାଇଁ ପିଲାମାନେ ମୋ'ର ଚାତକ ପରି ଅନେଇ ବସିଛନ୍ତି ।" ଏତିକି କହି ଅପୂର୍ବା ସ୍ୱାମୀଙ୍କ ଶୀତଳ ହାତମୁଠାକୁ ଭିଡ଼ି ଧରି ଡାକିଲେ, "ହେଇଟି...ଶୁଣୁଚ...ଶୁଣ ! ଦେଖ, କିଏ ଆସିଚନ୍ତି । ତମ ପିଲାଦିନର ସାଙ୍ଗ ଶାନ୍ତିଲତା ଆସିଚନ୍ତି ତମକୁ ଦେଖିବାପାଇଁ । ଆଖି ଖୋଲ ।....ଥରେ ଅନାଅ ! ପାଟି ଖୋଲ । ପଦେ କିଛି କୁହ !" ଏତିକି କହୁକହୁ କଣ୍ଠରୁଦ୍ଧ ହୋଇ ଆସିଲା ଅପୂର୍ବାଙ୍କର ।

ଶାନ୍ତିଲତା ନୀରବରେ ଯାଇ ଠିଆହେଲେ ଶୁଭେନ୍ଦୁଙ୍କ ମୁଣ୍ଡ ପାଖରେ । ନଇଁପଡ଼ି ତାଙ୍କ କୁଞ୍ଚିତ କପାଳକୁ ଥରେ ଆଉଁଶି ଆଣିଲେ ନିଜ ଶିରାଳ ହାତରେ । ଅଲରା ପାଚିଲା କେଶରେ ଆଙ୍ଗୁଠି ଚଳେଇ ଆଦରରେ ଟିକେ ସଜାଡ଼ିଦେଲେ । ଗୁଡ଼ୁଭର୍ତ୍ତି ପାକୁଆ ମୁହଁକୁ ସ୍ନେହରେ ଆଉଁଶି ଦେଇ ଡାକିଲେ, "ଶୁଭ.. ! ଶୁଭ.. ! ଦେଖ ମୁଁ ଆସିଚି । ମୁଁ ତମ ଶାନ୍ତି । ଶାନ୍ତିଲତା ! ଶୁଭ.... !" ପୁଣି ଥରେ ଡାକିଲେ ସେ ବଡ଼ ପାଟିରେ ।

ଲିଭି ଆସୁଥିବା ଦୀପର ଶୁଖିଲା ସଳିତାଟାକୁ କିଏ ଟିକେ ଉଖାରିଦେଲା ବୋଧେ । ଦୁଇଘଣ୍ଟା ଧରି ବନ୍ଦ ହୋଇ ରହିଥିବା ଆଖିର ପଲକ ଦୁଇଟା ଦୀପଶିଖା ଭଳି ସାମାନ୍ୟ ଥରି ଉଠିଲା । ଶାନ୍ତିଲତା ତାଙ୍କ କପାଳକୁ ଆଦରରେ ଆଉଁଶି ପୁଣିଥରେ ଡାକିଲେ, "ଶୁଭ.. !"

ଶୁଭେନ୍ଦୁ ଏଥର ଆସ୍ତେକରି ଆଖି ଖୋଲିଲେ । ଶାନ୍ତିଲତାଙ୍କ ଅଶ୍ରୁସଜଳ ମୁହଁଟିକୁ ଅପଲକ ଆଖିରେ ଅନେଇ ରହିଲେ ! ମୁହଁରେ ତାଙ୍କର ଫୁଟି ଉଠୁଥିଲା ଯୁଗପତ୍ ବିସ୍ମୟ ! କିଛିଟା ଆତ୍ମସନ୍ତୋଷର ଝଲକ୍ । "ଶାନ୍ତି......ଲତା ! ତମେ.....ଆସିଚ ! !" ଏତିକି ବୋଧେ କହିବାକୁ ଚାହିଁଲେ; କିନ୍ତୁ କିଛି କହି ପାରିଲେନି । ତାଙ୍କ ଶୁଖିଲା ଓଠ କେବଳ ଥରି ଉଠିଲା ଥରେ...ଦି'ଥର ! ପାଖରେ ରଖା ହୋଇଥିବା ଗଙ୍ଗାଜଳରୁ ଚାମୁଚେ ଆଣି ଶାନ୍ତିଲତା ତାଙ୍କ ପାଟିରେ ଦେଲେ । କିନ୍ତୁ ସେତକ ତାଙ୍କ ଓଠ ଦୁଇପାଖରେ ବୋହିଗଲା ।

ମୁମୂର୍ଷୁ ଶୁଭେନ୍ଦୁ କେବଳ ଚାହିଁ ରହିଥିଲେ ଶାନ୍ତିଲତାଙ୍କ ମୁହଁକୁ । ଅଳଙ୍କାର ମଣ୍ଡିତ ତାଙ୍କ ବେକ, ନାକ, କାନକୁ । ହଠାତ୍ ତାଙ୍କ ଦୃଷ୍ଟି ସ୍ଥିର ହୋଇଗଲା ଶାନ୍ତିଲତାଙ୍କ ନାକଫୁଲଟି ଉପରେ । କ୍ଷଣକ ପାଇଁ ଉଜ୍ଜ୍ୱଳ ହୋଇ ଉଠିଲା ତାଙ୍କ ନିଷ୍ପ୍ରଭ ଆଖି ! ମୁହଁରେ ଈଷତ୍ ଖୁସିର ଝଲକ୍ । "ଆଃ... ! ଏଇ ନାକଫୁଲ ତ !...ଲତା ! ମୋ'ର ଏ ନଗଣ୍ୟ ଉପହାରଟା ତମେ ଆଜିଯାଏ ସାଇତି ରଖିଚ ! ! ! ବହୁମୂଲ୍ୟ ଗହଣାରେ ମଣ୍ଡିହୋଇ ମଧ୍ୟ ମୋ'ର ଏ ନକଲି ସୁନାର ନାକଫୁଲକୁ ପିନ୍ଧି ଆସିଚ ତମେ ! ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନିଜ ନିଜ ପ୍ରୀତି ଉପହାରକୁ ଆଦରି ରଖିବା, ଆମେ ଦୁହେଁ ଏୟା ହିଁ ଶପଥ କରିଥିଲେ ନା ? ସେହି ଶପଥକୁ ମନେ ପକେଇଦେବା ପାଇଁ ମୋ' ବିଦାୟ ବେଳାରେ ତାକୁ ତମେ ପିନ୍ଧି ଆସିଛ, ନା ?" ଶୁଭେନ୍ଦୁ ଏ ଭଳି ଅନେକ କିଛି କହିବାକୁ ଚାହୁଁଥିଲେ କି କ'ଣ । ବାରମ୍ବାର ଓଠ ତାଙ୍କର ଥରୁଥିଲା, ଆଖି ଅଶ୍ରୁଳ ହୋଇ ଉଠୁଥିଲା; କିନ୍ତୁ ସେ କିଛି କହିପାରୁନଥିଲେ ।

ଶାନ୍ତିମାଉସୀଙ୍କୁ ଦେଖିବା ପରଠୁଁ ବାପାଙ୍କ ମୁହଁରେ ଭାବାନ୍ତର ଲକ୍ଷ୍ୟ କରି ପିଲାମାନେ ଆଶାୟୀ ହୋଇ ଉଠୁଥିଲେ । ମନେ ହେଉଥିଲା, କିଛି କହିବେ କି ? ଆଉ ଟିକିଏ ପରେ ଉଠି ବସିବେ କି ! ପାଖକୁ ଆସି ପୁଅ ପଚାରିଲା, "ବାପା...ବାପା... ! କ'ଣ ଲାଗୁଚି ? କିଛି କହିବ ?"

ଶୁଭେନ୍ଦୁ ଅବଶ ଆଖିର ଇସାରାରେ କିଛି କହିବାକୁ ଚେଷ୍ଟା କଲେ ପତ୍ନୀ ଅପୂର୍ବାଙ୍କୁ । ସ୍ୱାମୀଙ୍କ ଆଖିର ଇସାରା ସହିତ ଦୀର୍ଘ ଚାଳିଶି ବର୍ଷର ପରିଚୟ ଅପୂର୍ବାଙ୍କର । ଠଉରେଇବାକୁ ଅସୁବିଧା ହେଲାନି ତାଙ୍କୁ । ସେ ତାଙ୍କ ଇସାରାକୁ ଅନୁସରଣ କରି ଶୁଭେନ୍ଦୁଙ୍କ ପଢ଼ା ଟେବୁଲ୍ ପାଖକୁ ଗଲେ । ଟେବୁଲ୍ ଡ୍ରୟାର୍ ଖୋଲିଲେ । ଡ୍ରୟାରଟି ସମ୍ପୂର୍ଣ୍ଣ ଖୋଲି ଆଣିବା ପରେ ତା' ଭିତରେ ଦେଖାଗଲା ଗୋଟେ ସିକ୍ରେଟ୍ ଖୋପ ! ଅପୂର୍ବା ଆଶ୍ଚର୍ଯ୍ୟ ହେଲେ । ଖୋପର ଢାଙ୍କୁଣି ଖୋଲିଲେ ସେ । ତା' ଭିତରୁ ବାହାରିଲା ଗୋଟେ ନାଲି ରଙ୍ଗର ପୁରୁଣାକାଳିଆ ମଖମଲି

ପର୍ସ ! ପର୍ସ ଭିତରୁ ଆତ୍ମପ୍ରକାଶ କଲା ଖଣ୍ଡେ ବିଚିତ୍ର ରୁମାଲ୍ ! ଗୋଲାପି ଚିକିନ୍ କପଡ଼ା ଉପରେ ଡାଳିଫୁଲର ସୂକ୍ଷ୍ମ ହାତକାମ ହେଇଥିବା ପୁରୁଣା ରୁମାଲ ! ରୁମାଲ ଚାରିଧାର ସୁନ୍ଦର କାରୁକାର୍ଯ୍ୟ । ମଝିରେ ଗୋଟେ ତୀରବିଦ୍ଧ ହୃଦୟର ଚିତ୍ର ଏବଂ ତା' ଭିତରେ ଅଙ୍କା ହେଇଥିଲା ଇଂରାଜୀ ଅକ୍ଷରରେ 'ଏସ୍' !

ଶୁଭେନ୍ଦୁ ଠାରରେ ମାଗିଲେ ରୁମାଲଟିକୁ । ଅପୂର୍ବା କୌତୂହଳୀ ହୋଇ ସ୍ୱାମୀଙ୍କ ଦୁର୍ବଳ ହାତକୁ ବଢ଼ାଇଦେଲେ । ଶୁଭେନ୍ଦୁ ମନ ପୂରେଇ ଥରେ ଦେଖିଲେ ସେ ଅପୂର୍ବ ବସ୍ତୁଟିକୁ ଏବଂ ଚାପି ଧରିଲେ ନିଜ ହାଡୁଆ ଛାତିରେ !

ଅପୂର୍ବାଙ୍କ ମନରେ ଅଶେଷ କୌତୂହଳ ! ଆକଣ୍ଠ ବିସ୍ମୟ ! ! ଏପରି ଖଣ୍ଡେ ରୁମାଲ୍ ସ୍ୱାମୀଙ୍କ ପାଖରେ ଅଛି ବୋଲି ସେ ଆଦୌ ଜାଣିନଥିଲେ । ଦୀର୍ଘ ଚାଳିଶ ବର୍ଷର ଦାମ୍ପତ୍ୟ ଭିତରେ ସ୍ୱାମୀଙ୍କ ଜୀବନ କାବ୍ୟର ପ୍ରତିଟି ପୃଷ୍ଠା, ପ୍ରତିଟି ଶବ୍ଦ, ଏପରିକି ପ୍ରତିଟି ଅକ୍ଷର ସେ ପଢ଼ିଚନ୍ତି । ସେ ଜାଣନ୍ତି, ଚରିତ୍ର ତାଙ୍କର ସ୍ଫଟିକ ପରି ସ୍ୱଚ୍ଛ ! ପାରିବାରିକ ଜୀବନର ଅମୃତ-କଳସୀରେ ଅଣୁମାତ୍ର ସନ୍ଦେହର ବିଷ ସେ କେବେ ପଡ଼ିବାକୁ ଦେଇନାହାନ୍ତି । ଅଥଚ୍ ଆଜି ଏ ରୁମାଲ୍‌ର ରହସ୍ୟ କ'ଣ କିଛି ବୁଝି ପାରୁନଥିଲେ ଅପୂର୍ବା ! ପିଲାମାନେ ବି ବୁଝିପାରୁନଥିଲେ ଘଟଣା କ'ଣ ?

ଶାନ୍ତିଲତା କିନ୍ତୁ ଠିକ୍ ବୁଝିପାରୁଥିଲେ । ସେ ବେଶ୍ ଶୁଣିପାରୁଥିଲେ ମୁମୂର୍ଷୁ ଶୁଭେନ୍ଦୁଙ୍କ ଅବ୍ୟକ୍ତ ଓଠର ନିଶବ୍ଦ ଭାଷାକୁ ! ଶୁଭେନ୍ଦୁ ବୋଧେ କହିବାକୁ ଚାହୁଁଥିଲେ, "ଶାନ୍ତି ! ଆଦ୍ୟଯୌବନର ମୋ' ପ୍ରୀତି ଉପହାରକୁ ତମେ ଯେମିତି ସାଇତି ରଖିଚ, ମୁଁ ମଧ୍ୟ..... !" କିନ୍ତୁ ସେ କିଛି କହିପାରିଲେନି । ହଠାତ୍ ତାଙ୍କ ଆଖି ତରାଟି ହେଇଗଲା । ହିକ୍କା ପରେ ହିକ୍କାର ଜୁଆର ମାଡ଼ି ଆସିଲା । ନିଃଶ୍ୱାସର ବେଗ ତୀବ୍ରତର ହେବାକୁ ଲାଗିଲା ।
ଶାନ୍ତିଲତା ଆଉ ନିଜକୁ ସମ୍ଭାଳି ପାରିଲେନି । ଶଯ୍ୟାଶାୟୀ ସଖାଙ୍କ କାନ୍ଧ ପାଖରେ ମୁଣ୍ଡ ରଖି କଇଁକଇଁ କାନ୍ଦିବାକୁ ଲାଗିଲେ । ଅପୂର୍ବା କମ୍ପିତ ହାତରେ ଚାମୁଚେ ନିର୍ମାଲ୍ୟ ଆଉ ଗଙ୍ଗାଜଳ ଆଣି ପାଟିରେ ଦେଲେ । ଏତିକିବେଳେ ହଠାତ୍ କୁଆଡୁ ଦମକାଏ ପବନ ଆସି ମିଞ୍ଜିମିଞ୍ଜି ହୋଇ ଜଳୁଥିବା ଦୀପଟାକୁ ଲିଭେଇଦେଲା । ବାସ୍ ! ସେତିକିରେ ସବୁ ଶେଷ !

ଅପୂର୍ବାଙ୍କ ଛାତିଫଟା ଚିତ୍କାର ଓ ପିଲାମାନଙ୍କ କାନ୍ଦଣା ଭିତରେ ଚୁପ୍‌ଚାପ୍ ଅଶ୍ରୁଳ ଅଖିରେ ଠିଆ ହେଇଥିଲେ ପ୍ରଶାନ୍ତ ବାବୁ । ପତ୍ନୀଙ୍କୁ ସେ ଉଠେଇ ଆଣିଲେ ଶୁଭେନ୍ଦୁଙ୍କ ଶେଯ ପାଖରୁ । ଛାତିରେ ଚାପିଧରି ସାନ୍ତ୍ୱନା ଦେଇ କହିଲେ, "କାନ୍ଦନି ଶାନ୍ତି....କାନ୍ଦନି ! ମୁଁ ରାଣ ଖାଇ କହୁଚି, ତୁମକୁ ଆଉ ଦିନେ ବି ପଚାରିବିନି ତୁମ 'ନାକଫୁଲ' ବିଷୟରେ ! ପ୍ଲିଜ୍ ତୁନି ହେଇଯାଅ....କାନ୍ଦନି ।



ସୁରେନ୍ଦ୍ର ନାଥ ସାହୁ

# ବାପାଙ୍କୁ ଭଲପାଉଥିବା ଜଣେ ପୁଅ

ତା' ଗାଉଁଲି ହିସାବରେ ବୟସ ହବ ଚାରିକୋଡ଼ି ଆଠ । ବଟ ବୁଢ଼ା ଆଜିକୁ ତିନି ମାସ ଧରି ପଡ଼ିଛି ରୋଗ ଶଯ୍ୟାରେ ଆଉ ଛଟପଟ ହଉଚି ଯମ-ଯନ୍ତ୍ରଣାରେ । ଚିରାଫଟା ଚମଘେରା ହାଡୁଆ ଦେହଟିରେ ତା'ର ବସା ବାନ୍ଧିଛନ୍ତି ବାର୍ଦ୍ଧକ୍ୟ ଜନିତ ଅନେକ ନାଁ' ଅଜଣା ରୋଗ ।

ବୁଢ଼ାର ଗୋଟେ ବୋଲି ପୁଅ । ବାପାକୁ ନେଇ ସେ କିଛି ଦିନ ସରକାରୀ ଡାକ୍ତରଖାନାରେ ରଖିଥିଲା । ସରକାରୀ ଚିକିତ୍ସା ସୁବିଧା ଟିକିଏ ମିଳିବ ବୋଲି ବହୁତ ଦଉଡ଼ା ଦଉଡ଼ି କଲା । ଡାକ୍ତରମାନଙ୍କ ଗୋଡ଼ ହାତ ଧରି ଗୁହାରି ନେହୁରା ହେଲା । ଧାର କରଜ କରି ଗୁଡ଼ାଏ ପଇସା ଖର୍ଚ୍ଚ ବି କଲା । ହେଲେ କିଛି ଫଳ ମିଳିଲାନି । ଶେଷରେ ଡାକ୍ତରମାନେ କହିଲେ, "କିଛି ଲାଭ ନାହିଁ । ବୁଢ଼ାକୁ ଘରକୁ ନେଇଯା' । ବୟସ ତା'ର ନବେ ଛୁଇଁଲାଣି । ଏ ବୟସରେ ସିଏ ପୁଣି ଝାଡ଼ିଝୁଡ଼ି ହେଇ ଉଠି ବସିବ, ଏ ଆଶା ଛାଡ଼୍ । ତୁ ଅଭାବି ମଣିଷ । ବେକାରରେ ଧାରକରଜ କରି କାଇଁକି ତା' ପିଛା ପଇସା ବରବାଦ କରୁଚୁ ?"

ଖବର ଶୁଣି ବଟ ବୁଢ଼ାର ଝିଅଜୋଇଁ ଆସିଲେ । ସେମାନଙ୍କ ପାଖରେ କିଛି ପଇସା ଅବଶ୍ୟ ଥିଲା । ବୁଢ଼ାକୁ ସେମାନେ ନେଇଗଲେ ଭୁବନେଶ୍ୱରର ଗୋଟେ ପ୍ରାଇଭେଟ୍ ହସପିଟାଲକୁ । ପୁଣି ଥରେ ବୁଢ଼ାର ତାଳୁରୁ ତଳିପା' ପର୍ଯ୍ୟନ୍ତ ପରୀକ୍ଷା ନିରୀକ୍ଷା କରାଗଲା । ଅଳ୍ପ କିଛି ଦିନପାଇଁ ଚିକିତ୍ସା ବି ଚାଲିଲା । ସେତିକିରେ ପଇସାତକ ଖତମ୍ ! ଡାକ୍ତର କହିଲେ, "ତମେମାନେ ପାରିବନି । ବୁଢ଼ାକୁ ପୂରା ସୁସ୍ଥ କରିବାକୁ ହେଲେ ଲକ୍ଷେ ଟଙ୍କା ଖଣ୍ଡେ ଦରକାର । ତଥାପି କିଛି ଗ୍ୟାରେଣ୍ଟି ନାଇଁ । ବୟସ ବହୁତ ହେଲାଣି ତ..... !"

ଝିଅ-ଜୋଇଁ ବି ନିରାଶ ହେଲେ ଏବଂ ବୁଢ଼ାକୁ ଧରି ଫେରିଲେ ଘରକୁ । ଏଥର ବଟବୁଢ଼ା ଆସି ଉଈଖିଆ ଫମ୍ପା କାଠଗଡ଼ଟେ ଭଳି ପଡ଼ିଲା ତା' ଝାଟି-ମାଟି ଚାଳିଆର ଗୋଟେ ଅନ୍ଧାରୁଆ କୋଣେ । ଏ ଖବର ଶୁଣି ସାହିପଡ଼ୋଶୀଏ ଆସିଲେ । ବୁଢ଼ାର ବନ୍ଧୁ ପରିଜନ ଆସିଲେ । ପଦେଅଧେ ସହାନୁଭୂତି, ଫାଳେଅଧେ କମଳା ଅବା ବିସ୍କୁଟ୍ ପାକେଟ୍‌ଟେ ବୁଢ଼ା ପାଖରେ ଥୋଇ ସେମାନଙ୍କ କର୍ତ୍ତବ୍ୟ ସାରି ଯେ'ଝା ବାଟରେ ଚାଲିଗଲେ । ଝିଅ-ଝିଆରୀଏ, ଆଉ ତା' ଅତି ଆପଣାରମାନେ ଦିନେ ଓଳିଏ ପାଖରେ ରହି ବୁଢ଼ାର ସେବାଶୁଶ୍ରୁଷା ବି କଲେ; କିନ୍ତୁ ଏ ସବୁ ଚାଲିଲା ଲୋକଦେଖାଣିଆ, ମାତ୍ର କିଛିଦିନ ପାଇଁ । ତା'ପରେ ଥୁଣ୍ଟା ଗଛ ଛାଡ଼ି ପକ୍ଷୀମାନେ ଉଡ଼ିଗଲା ଭଳି ଧୀରେଧୀରେ ସେମାନେ ମଧ୍ୟ ବୁଢ଼ା ପାଖରୁ

ଦୂରେଇଗଲେ । ସମସ୍ତେ ଜାଣିଥିଲେ, ଏଇଟା ବୁଢ଼ାର ଶେଷ ଅବସ୍ଥା । ଏଭଳି କିଛିଦିନ ଶେଯ ଧରିବା ପରେ ବୁଢ଼ା ସେ'ପାରିକୁ ଉଠିବ । ନିଜ ପିଲାଛୁଆ, ଘରସଂସାର, କାମଧନ୍ଦା ଛାଡ଼ି କିଏ କେତେଦିନ ବୁଢ଼ାକୁ ଜଗି ବସିବ ? ଏବେ ସମସ୍ତଙ୍କର ଅପେକ୍ଷା ତା' ମରଣକୁ ! ଯେଉଁଦିନ ସେ ମଲା ବୋଲି ଶୁଣିବେ, ମଢ଼ା ଉଠିବା ବେଳକୁ ତା' ଦାଣ୍ଡରେ ଆସି ଠିଆ ହେବେ । ବୁଢ଼ୀ ତ ସତୁରୀସାତ ବରଷରେ ମରିଥିଲା, ଇଏ ଆଉ କେତେ କାଳ ବଞ୍ଚିବ ?

ବାପାଙ୍କ ଚିକିତ୍ସା ପାଇଁ ସବୁ ଚେଷ୍ଟା ପାଣି ଫାଟିଯିବା ପରେ ପୁଅ ହତାଶ ହେଇ ବୁଲିଲା । ବିଚରା ଇଟା ଭାଟିରେ ଦିନ ମଜଦୂରୀ କରେ । ପାଞ୍ଚପ୍ରାଣୀ ବିଶିଷ୍ଟ ସଂସାରଟି ପାଇଁ ତା' ରୋଜଗାର ସମୁଦ୍ରକୁ ଶଙ୍ଖେ । ପୁଅଟା ତା'ର ଭଲ ପଢୁଚି । ଏ ବର୍ଷ ମାଟ୍ରିକ୍ । ସରକାରୀ ସାହଯ୍ୟ କିଛି ମିଳୁଛି ବୋଲି ଚଳିଯାଉଛି । ସବୁ ବାପାଙ୍କ ଭଳି ସିଏ ବି ସ୍ୱପ୍ନ ଦେଖିଚି, ପୁଅକୁ ଇଞ୍ଜିନିୟର୍‌ଟେ କରିବ । ହେଲେ ସେଥିପାଇଁ ଢ଼େର୍ ଟଙ୍କା ଦରକାର । ସେ ଉଦ୍ଦେଶ୍ୟରେ ନିଜ ପେଟରୁ ପିଠିରୁ କାଟି ଅଳପ ଅଳପ କରି କିଛି ସଂଚିକି ରଖିଥିଲା । ସେତକ ଚଳୁ ହେଇଗଲା ବାପାଙ୍କ ଚିକିତ୍ସାରେ । ତା' ଉପରେ ପୁଣି ନାକ ପର୍ଯ୍ୟନ୍ତ ଋଣ ! ଏବେ ସେ ବୁଝିପାରୁନି, ତା' ସ୍ୱଳ୍ପ ରୋଜଗାରରେ ସିଏ ପରିବାର ପୋଷିବ, ନା' ଋଣ ଶୁଝିବ, ନା' ପୁଅକୁ ଇଞ୍ଜିନିୟରିଂ ପଢ଼େଇବ, ନା' ବାପା ପାଇଁ ଔଷଧ-ପଥ୍ୟ କରି ଚାଲିଥିବ ?

ବୁଢ଼ାକୁ ହସପିଟାଲରୁ ଫେରେଇ ଆଣିବା ଦିନ ଡାକ୍ତର କେତୋଟି ଟନିକ୍ ଆଉ ଔଷଧ ଲେଖି ଦେଇଥିଲେ । କହିଥିଲେ, ମଲା ପର୍ଯ୍ୟନ୍ତ ବୁଢ଼ାକୁ ଏ ଔଷଧ ଗୁଡ଼ିକ ନିୟମିତ ଦେଉଥିବ । ଆଉ ତା' ଖିଆପିଆ ପ୍ରତି ଧ୍ୟାନ ଦେବ । ସେମିତି ହେଲେ ବୁଢ଼ା ଟାଣିଟୁଣି ଆଉ କିଛି ଦିନ ବଞ୍ଚିପାରେ ।

ଡାକ୍ତରଙ୍କ ଏ ଉପଦେଶକୁ ପୁଅବୋହୂ ମାନି ଚଳୁଛନ୍ତି । ବୋହୂଟି ଭାରି ଭଲ । ସେଥିପାଇଁ ସେ ନିଜର ଓ ପିଲାମାନଙ୍କର ସୁଖସୁବିଧାକୁ କାଟଛାଣ୍ଟ କରି ଘର ଚଳଉଚି । ଦିନରେ ଥରେ ରାନ୍ଧି ଓଳିଏ ଖାଇ ଚଳୁଛି । ରାତିରେ ପିଲାଙ୍କୁ ରୋଟି ପଟେ ଲେଖା ଦେଇ ଦିନେଦିନେ ପାଣି ପିଇ ସ୍ୱାମୀ ସ୍ତ୍ରୀ ଦୁହେଁ ଶୋଇଯାଉଛନ୍ତି ।

ଡାକ୍ତରଙ୍କ କହିବା ଅନୁସାରେ ବୋହୂ ଜନ୍ତାରୋଟି ପଟେଲେଖା ଚିନିପାଣିରେ ଚକଟି ଶଶୁର ବୁଢ଼ାକୁ ପ୍ରତିଦିନ ଖୁଆଇ ଦେଉଥିଲା । ବୁଢ଼ା ସେତକ ପାକୁଳି ପାକୁଳି ଗିଳିଦିଏ । ନିଜ ଅଜାଣତରେ ଶେଯରେ ଝାଡ଼ା ପରିସ୍ରା କରି ପକାଏ । କିଛିଦିନ ପରେ ସେତକ ବି ତା' ଶଙ୍ଖିନଳାରେ ଆଉ ଗଳିଲାନି । ବୋହୂ ଖାଦ୍ୟକୁ ତରଳ ସରଳ କରି ବୁଢ଼ାକୁ ଗିଳେଇଲା । ସେତକ ଉଦରସ୍ଥ ହେବା ପରେ ତା' ହୁଗୁଳା ମଳଦ୍ୱାରରୁ ଅନବରତ ବୋହିବାକୁ ଲାଗିଲା ତରଳ ଶ୍ରାବ । ଅଣ୍ଟାରେ ବନ୍ଧା ହେଇଥିଲା ପରିସ୍ରା ଥଳି । ଦିନରାତି ଶେଯରେ ପଡ଼ିପଡ଼ି ବୁଢ଼ାର ଦେହସାରା ଘା' ହୋଇଗଲା । ଯେତେ ସଫା କଲେ ବି ପୂଜପାଣି ବୋହି ଦୁର୍ଗନ୍ଧ

ଉଠିଲା ଦେହରୁ । ସାହି ପଡ଼ୋଶୀ ନାକରେ କନାବିଣ୍ଡା ଦେଇ ଯିବାଆସିବା କଲେ । ବୁଢ଼ାର ଆଖି କାନରେ ପିମ୍ପୁଡ଼ି ଚରିବା ଆରମ୍ଭ କରିଦେଲେ । ବେଳେବେଳେ ପେଟ ଆଉ ଛାତିରେ କଇଁଚି ଚଳେଇବା ଭଳି ବୁଢ଼ା ଯନ୍ତ୍ରଣାରେ ଛଟ୍‌ପଟ୍ ହୁଏ । ଆଖି ତରାଟି ଚିତ୍କାର କରେ ! ସେତିକିବେଳେ ତା' ଅସହାୟ ଆଖିର ଭାଷା ସହଜରେ ପଢ଼ି ହେଇଯାଏ । ସତେ ଯେମିତି ସେ କହୁଥାଏ – ହେ' ମୋ' ବାପାମାନେ..... ! ଆରେ.... ଯମ ଶଳା ତ ମତେ ନଉନାଇଁ ରେ !......ତମେମାନେ ହେଲେ ଟିକିଏ ଦୟାକର ରେ ମୋ' ଉପରେ । ମତେ ବିଷ କି ମହୁରା ଟିକିଏ ଦେଇ ଏ କଷ୍ଟରୁ ଉଦ୍ଧାର କର ରେ.... ! ନ'ହେଲେ କିଏ ସରକାରକୁ ଲେଖିକି ପଦେ ଦିଅ, ...ମତେ ବିଷ ଛୁଞ୍ଚି ଦେଇ ମାରି ଦିଅନ୍ତୁ । ଏ କଷ୍ଟରୁ ଉଦ୍ଧାର କରନ୍ତୁ ମତେ । ଦୟା କରରେ ବାପାମାନେ.....ମୁଁ ଆଉ ଏ ନରକ ଯନ୍ତ୍ରଣା ସହିପାରୁନି ରେ । ମରିପାରୁନି କି ବଞ୍ଚିପାରୁନି ।

ବେଳେବେଳେ ବୁଢ଼ା ମଲା ପରି ପଡ଼ିଯାଏ ଘଣ୍ଟାଘଣ୍ଟା ଧରି । ନାଡ଼ି ଖୋଜିଲେ ମିଳେନି । ଛାତିର ଦୁକ୍‌ଦୁକି ହଜିଯାଏ । ପଡ଼ୋଶୀଏ ଭାବନ୍ତି, ଯା'ହଉ ବୁଢ଼ା ତରିଗଲା । ନିସ୍ତାର ପାଇଲା ଯନ୍ତ୍ରଣାରୁ । ଆହା ! ପୁଅ ବୋହୂ ଦି'ଟାକୁ କି ହନ୍ତସନ୍ତ କରି ମଲା ହେ' । ଯାଃ.....ନିଜେ ତରିଗଲା ଏମାନେ ବି ମୁକ୍ତ ହେଇଗଲେ ।

ପୁଅ ଶୁଖିଲା କାଠ ଶଗଡ଼େ, କିରୋସିନି, ନୂଆ ଧୋତି, ବାଉଁଶ, ହାଣ୍ଡି ସଜ କରି ରଖିଥାଏ । କିଏ ଜାଣେ, କେତେବେଳେ କୋଉ କଥା ଘଟିବ । ହେଲେ ସେମିତି କିଛି ଘଟେନି । ଲୋକଙ୍କୁ ଛିଗୁଲେଇବା ଭଳି ଅଳପ ସମୟ ପରେ ବୁଢ଼ା ପୁଣି କୁନ୍ଥେଇବା ଆରମ୍ଭ କରେ । ପଡୋଶୀଏ ହତାସିଆ କଣ୍ଠରେ କହନ୍ତି, 'ଓଃ ! ଶଳା ବୁଢ଼ା ଆଉରି କେତେ ଦିନ ନରକରେ ଘାଣ୍ଟିହବ କେଜାଣି ! ନିଜେ ମରୁନି କି ଶଃଳା କାହାକୁ ବଞ୍ଚିବାକୁ ଦଉନି ।'

ପୁଅ ବିଚରା ତା' ଭଙ୍ଗା ପିଣ୍ଡା ଉପରେ ବସି ଉଦାସ ଆଖିରେ ଶୂନ୍ୟ ଆକାଶକୁ ଅନେଇ ବିଡ଼ି ଟାଣେ । ସେ ନିଜ ଆଖିରେ ଦେଖେ, ତା' ସ୍ୱପ୍ନଗୁଡ଼ିକ କେମିତି ବିଡ଼ିଧୂଆଁ ଭଳି ଶୂନ୍ୟରେ ମିଳେଇ ଯାଉଚି । ଅଧାଗଢ଼ା ସଂସାର ତା'ର କେମିତି ଭୁଷୁଡ଼ି ପଡୁଚି ବାଲିଘର ଭଳି । ଗୋଟେ ଗୋଡ଼ ମଶାଣିରେ ଆଉଗୋଟେ ଗୋଡ଼ ମଷିଣାରେ ରଖିଥିବା ବୁଢ଼ା ବାପାଟି ସହିତ ମରଣ କେମିତି ଲୁଚକାଳି ଖେଳୁଚି । ତାକୁ ଯନ୍ତ୍ରଣା ଦେବା ସହିତ ହନ୍ତସନ୍ତ କରି ମାରୁଚି ସାରା ପରିବାରଟାକୁ ।

ଏମିତି ଲୁଚକାଳି ଖେଳ ଚାଲିଥିବା ଅବସ୍ଥାରେ ଅକସ୍ମାତ୍ ବୁଢ଼ା ଦିନେ କୋମାକୁ ଚାଲିଗଲା । ଏ ଘଟଣାରେ ପୁଅବୋହୂଙ୍କ ଅବସ୍ଥା ନ'କହିଲେ ଭଲ ! ପୁଅ ଧାଇଁଲା ଚିହ୍ନା ଡାକ୍ତରଙ୍କ ପାଖକୁ । ଯା'ହେଉ ଦୟାକରି ଡାକ୍ତରବାବୁ ଘରକୁ ଆସି ବୁଢ଼ାର ଅବସ୍ଥା ଦେଖିଲେ ।

କହିଲେ, "ଦେଖବାବୁ! ରୋଗୀ ଏ ଅବସ୍ଥାକୁ ଚାଲିଗଲା ପରେ ତା' ବିଷୟରେ ସଠିକ୍ କିଛି କହି ହବନି । କୋମାରୁ ସେ ଦୁଇ ଦିନରେ ଫେରିପାରେ, ଦୁଇବର୍ଷ ବି ଲାଗିପାରେ । ଔଷଧ ଆଉ ଖାଦ୍ୟ ଯଦି ଚାଲିଚି, ତା'ହେଲେ ଏମିତିରେ ସେ ବର୍ଷବର୍ଷ ଧରି ବି ବଞ୍ଚି ରହିପାରେ । ଏଥିରୁ ଗୋଟେ ବି ବନ୍ଦ୍ ହେଇଗଲେ ସବୁ ଶେଷ ! ଦେଖ, କ'ଣ ହଉଚି !"

ଡାକ୍ତରଙ୍କ କଥା ଶୁଣିବା ପରଠୁଁ ପୁଅବୋହୂଙ୍କ ଆଖିରୁ ନିଦ ହଜିଯାଇଛି । ପୁଅ ଖାଲି ପାଗଳଙ୍କ ଭଳି ହଉଚି । ଦିନେ ସେ ଆସି ଏ ଲେଖକ ଆଗରେ ତା' ଅସହାୟତାର କରୁଣ କାହାଣୀ କହିଲା ଏବଂ ପଚାରିଲା, "ଆଜ୍ଞା..... ଔଷଧ, ଖାଦ୍ୟ ବନ୍ଦ କରି ମୁଁ ନିଜ ହାତରେ ମୋ' ବାପାଙ୍କୁ ମାରି ପାରିବିନି । ନିଜ ପରିବାର, ନିଜ ସ୍ୱପ୍ନ ଆଉ ପିଲାମାନଙ୍କ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ଗୋଟେ ଅଧାମରା ମଣିଷକୁ ବଞ୍ଚେଇ ମଧ୍ୟ ରଖି ପାରିବିନି । ମୋ'ର ଆଜ୍ଞା, କୁରୁକ୍ଷେତ୍ରରେ ଦ୍ୱିବିଧାରେ ପଡ଼ିଥିବା ଅର୍ଜ୍ଜୁନଙ୍କ ଭଳି ଅବସ୍ଥା । ଆପଣ ହିଁ ମତେ ଏ ସଙ୍କଟ କାଳରେ କିଛି ବାଟ ବତାନ୍ତୁ ।"

ଅସହାୟ ପୁଅଟି ମୁହଁରୁ ସମଗ୍ର ଘଟଣା ଶୁଣିବା ବେଳକୁ ମୁଁ ସ୍ଥାଣୁ ପାଲଟି ଯାଇଥାଏ । କେବଳ ଏ ଗୋଟିଏ ନୁହେଁ, ଆମ ସମାଜରେ ଏଭଳି ଅନେକ ଉଦାହରଣ ମିଳିବ । ଅତିବାର୍ଦ୍ଧକ୍ୟ ଓ ଦୁରାରୋଗ୍ୟ ରୋଗର ଯାଉଁଳିଯନ୍ତାରେ ଛଟପଟ୍ ହୋଇ, ପ୍ରତି କ୍ଷଣ ତିଳତିଳ ମରି, କେବଳ ମରଣ ଅପେକ୍ଷାରେ ବଞ୍ଚି ରହିଥିବା ଅନେକ ଶତାୟୁ ଆମ ସମାଜରେ ଅଛନ୍ତି । ସେଭଳି ପରିସ୍ଥିତିରେ ମୁମୁର୍ଷୁର ସମ୍ମାନଜନକ ଇଚ୍ଛାମୃତ୍ୟୁ ପ୍ରାର୍ଥନା ଗ୍ରହଣୀୟ ବୋଲି ନ୍ୟାୟାଳୟ କହିଛନ୍ତି ! ଯା'ହେଉ, ବିଳମ୍ବରେ ହେଲେ ବି ସ୍ୱେଚ୍ଛାମୃତ୍ୟୁ ସପକ୍ଷରେ ସାମ୍ବିଧାନିକ ସ୍ୱୀକୃତି ମିଳିଛି, ଭଲ କଥା । ନୀତିନିଷ୍ଠ ଭାବେ, ଉଚିତ ମାର୍ଗରେ ପଦକ୍ଷେପ ନେଲେ ଏଥିରେ ଅନେକେ ଉପକୃତ ହେବେ । ବହୁ ସମସ୍ୟା ସମାହିତ ହେବ ।

ପୁଅ ପିଠିରେ ସହୃଦୟତାର ସ୍ପର୍ଶ ଦେଇ ମୁଁ କହିଲି, "ତୁମ ଜୀବନରେ ଏ ଗୋଟେ ବିକଟ ସମସ୍ୟା; କିନ୍ତୁ ଏହାର ସମାଧାନର ସୂତ୍ର ମାନ୍ୟବର ସୁପ୍ରିମ୍ କୋର୍ଟ ଆମକୁ ଦେଇଛନ୍ତି । ତୁମ ବାପାଙ୍କ ଭଳିଆ ଅତିବୟସ୍କ, ଦୀର୍ଘକାଳ ଧରି ରୋଗମୁକ୍ତ ହୋଇ ନପାରୁଥିବା ଓ ଅତି ମୁମୁର୍ଷୁ ଅବସ୍ଥାରେ ଥିବା ରୋଗୀ ଯଦି ନିଜର ଇଚ୍ଛାମୃତ୍ୟୁ ଚାହୁଁଥିବେ କିମ୍ବା ସେଥିପାଇଁ ତାଙ୍କ ପରିବାର ଲୋକେ ଅନୁରୋଧ କରିବେ, ସେଭଳିଆ ଘଟଣାକୁ ଆଇନ୍ ଅନୁସାରେ ଯାଞ୍ଚ୍ ପରଖ କରି 'ଇଚ୍ଛାମୃତ୍ୟୁ' ପାଇଁ ବିଚାରକୁ ନିଆଯାଇ ପାରେ ! ତେଣୁ ମୁଁ ଭାବୁଛି, ତୁମ ବାପାଙ୍କ ଚିକିତ୍ସାର ସବୁ କାଗଜପତ୍ର ଧରିକି ଆସ । ତମେ ଯଦି ଚାହିବ, ତା'ହେଲେ ବାପାଙ୍କ 'ଇଚ୍ଛାମୃତ୍ୟୁ' ଅନୁରୋଧ କରି ମୁଁ ଜିଲାପାଳଙ୍କୁ ଖଣ୍ଡେ ଦରଖାସ୍ତ ଲେଖିବି । ତା' ସହିତ ତମେ ଯଦି ସ୍ୱୀକୃତି ଦବ, ମୃତ୍ୟୁ ପରେ ତାଙ୍କ ଶରୀରକୁ ସମାଜର ହିତ ପାଇଁ ଦାନ କରିପାର । ତୁମ

ବାପାଙ୍କର ଏଭଳି ଅବସ୍ଥାରେ ତାଙ୍କର କୌଣସି ଅଙ୍ଗପ୍ରତ୍ୟଙ୍ଗ ଅବଶ୍ୟ କାମରେ ଲାଗିନପାରେ, କିନ୍ତୁ ଶରୀରରର କଙ୍କାଳଟା ଡାକ୍ତରୀ ଶିକ୍ଷାପାଇଁ ଦାନ କରିପାରିବ !"

ପୁଅ ମୋ' କଥା ଶୁଣିଲା । ନିରବରେ ମୁଣ୍ଡ ପୋତି ଆଖିରୁ ଲୁହ ପୋଛିଲା । କିନ୍ତୁ ମୁହଁ ଖୋଲି କିଛି କହି ପାରିଲାନି । ପୁଅ ଭାବୁଥିଲା, ନିଜ ଜନମଦାତା ବାପାଙ୍କୁ ଆଇନର ବିଷଛୁଞ୍ଚି ଦେଇ ମାରିବାପାଇଁ ଜିଲ୍ଲାପାଳଙ୍କୁ ସେ କେମିତି ନିଜେ ହାତକାଟି ଲେଖି ଦେଇପାରିବ ! ନା ! ତା' ଘର ପଛେ ଉଜୁଡ଼ିଯାଉ, ସିଏ ପଛେ ଋଣରେ ବୁଡ଼ିଯାଉ, ତା'ପୁଅ ପଛେ ଅଧାପାଠୁଆ ହୋଇ ରହିଯାଉ, ତା'ର ସବୁ ସ୍ୱପ୍ନ ପଛେ ଧୂଳିସାତ୍ ହୋଇଯାଉ, ହେଲେ ସିଏ ନିଜ ଅଧାମଲା ବାପାଙ୍କୁ ନିଜ ହାତରେ ପୂରା ମାରିପାରିବନି !

ପୁଅ କିଛି ନ'କହିପାରିଲେ ବି ତା' ଥରିଲା ଥରିଲା ଥରିଲା ଓଠ ଓ ଅଶ୍ରୁଳ ମୁହଁକୁ ଦେଖି ମୁଁ କଳନା କରୁଥିଲି, ଆହାଃ ! ବିଚରା ପୁଅଟି ତା' ବାପାଙ୍କୁ ସତରେ କେତେ ଭଲ ପାଏ ! !



# ସୁଡ଼ଙ୍ଗ ଶେଷରେ ସୂର୍ଯ୍ୟୋଦୟ

(୧)

ମୁଁ ଗାଆଁରେ ଚତୁର୍ଥ ଶ୍ରେଣୀରେ ପଢ଼ିଲାବେଳୁ ହିଁ ମା' ମୋତେ ନେଇ ସ୍ୱପ୍ନ ଦେଖିବା ଆରମ୍ଭ କରିଥିଲା- 'ବଡ଼ ହେଲେ ମୋ' ପୁଅ ଚାକିରି କରିବ । ଦରମା ପଇସାରେ ତା' ବଡ଼ ଭଉଣୀ ରମାର ବାହାଘର କରେଇବ । ଘରକୁ ସୁନାନାକୀ ବୋହୂଟେ ଆଣିବ । ଛଅ/ସାତ ବରଷ ଧରି ମୁଁ ପେଟ ବେମାରି ଭୋଗୁଚି । ଅଧିକ ଦରମା ପାଇଲେ ମୋତେ ସହରକୁ ନେଇ ବଡ଼ ଡାକ୍ତର ପାଖରେ ଦେଖେଇବ । ହାତରେ ଆଉରି ଅଧିକ ପଇସା ହେଲେ ପର୍‌ତାପ ସାଆନ୍ତରା ପାଖରେ ବନ୍ଧକ ପଡ଼ିଥିବା ଆମ ଘରର କାଗଜପତର ମୁକୁଳେଇକି ଆଣିବ । ଏମିତି ତା' ପଛକୁ ତା'ପଛ ଅନେକ ଯୋଜନା...ଅନେକ ସ୍ୱପ୍ନ !

ବାପା ଯଦି ବଞ୍ଚିଥାନ୍ତେ, ତା'ହେଲେ ଏ ଯୋଜନାରୁ କାଟଛାଣ୍ଟ ହେଇ ହୁଏତ ମୋ' ଭାଗରେ କିଛିଟା କମ୍ ପଡ଼ିଥାନ୍ତା । ଗ୍ରାଜୁଏସନ୍ ସରିଲା ପର୍ଯ୍ୟନ୍ତ ମା'ର ସବୁ ସ୍ୱପ୍ନ ମୋ'ପାଇଁ ବଳବତ୍ତର ରହିଥିଲା । ତା'ପରେ ମୁଁ ଚାକିରି ଖୋଜିବାପାଇଁ  ସହରକୁ ଗଲି । ସହରରେ ଦେଖିଲି, ମୋ' ଭଳି ଅନେକ ଯୁବକ । ସେମାନେ ଦୁଇଦଳରେ ବିଭକ୍ତ । ଦଳେ ଚାକିରି ଖୋଜୁଛନ୍ତି, ଆଉ ଦଳେ ଚାକିରି କରୁଛନ୍ତି । ଚାକିରି କରିବା ଦଳକ ଗୁଡ଼ାଏ ସ୍ୱପ୍ନ ପିଠିମୁଣାରେ ଓହଳେଇ ଦିନ ରାତି ଖାଲି ଧାଉଁଛନ୍ତି । ଆଉ ଚାକିରି ଖୋଜିବା ଯୁବକମାନେ ଆଶା, ହତାଶା, ନିରଶାର ପାହାଡ଼ଟେ ଲେଖା ମୁଣ୍ଡେଇକି ପାଗଳ ଭଳିଆ ବୁଲୁଛନ୍ତି । ପ୍ରଥମ ଦଳ ମନରେ ଆଶ୍ୱସ୍ତି ନାହିଁ କି ଦ୍ୱିତୀୟ ଦଳ ମନରେ ଶାନ୍ତି ନାହିଁ ।

ମୋତେ ଦ୍ୱିତୀୟ ଦଳରେ ଯୋଗ ଦେବାକୁ ପଡ଼ିଲା । ଧାଡ଼ିରେ ଠିଆ ହେଲି । ଭିଡ଼ ଠେଲି ବିଭିନ୍ନ ଉପାୟରେ ଆଗକୁ ଯିବା କୌଶଳ ମୋତେ ଜଣାନଥିଲା, ତେଣୁ ମୁଁ ସବୁବେଳେ ପଛରେ ରହୁଥିଲି । ପୂରା ପଛରେ । ସହରରେ ମୋ' ଚାକିରିଖୋଜା ଏଇମିତି ଭାବରେ ଚାଲିଥିଲା ।

ଇତି ମଧ୍ୟରେ ଗାଆଁରୁ ଦିନେ ଖବର ଆସିଲା, ମୋ' ଚାକିରିକୁ ଅପେକ୍ଷା କରିକରି ମୋ' ବଡ଼ ଭଉଣୀ ରମା ଗୋଟେ ଅଜାତି ଟୋକା ସହିତ ଗାଁ ଛାଡ଼ି ଚାଲିଗଲା । ଆଉ ଦିନେ

*ସୁରେନ୍ଦ୍ର ନାଥ ସାହୁ*

ଖବର ମିଳିଲା, ବଢ଼ି ଚାଲିଥିବା ପେଟଯନ୍ତ୍ରଣା ସହି ନ'ପାରି ମୋ' ମାଆ ମଧ୍ୟ ଆରପାରିକୁ ଚାଲିଗଲା । ମାଆ ମଲା ପରେ ବନ୍ଧକ ପଡ଼ିଥିବା ଆମ ଘରଟା ପ୍ରତାପ ସାଆନ୍ତରା କବ୍‌ଜାକୁ ଚାଲିଗଲା । ବାସ୍ ! ମୋ'ପାଇଁ 'ଘର ଦାୟିତ୍ୱ ଓ ପାରିବାରିକ କର୍ତ୍ତବ୍ୟ' ଏ ଦୁଇଟା ଯାକ ଅଧ୍ୟାୟ ସରିଗଲା । ଭାବିଲି, ମାଆର ଆଉ କ'ଣ ସ୍ୱପ୍ନ ବାକି ରହିଲା ପୂରା କରିବାପାଇଁ ? ଖାଲି ସୁନାନାକୀ ବୋହୂଟେ..ଏ ମନକୁ ମନ ହସିଲି ମୁଁ ।

ଏବେ ମଣିଷକୁ କେବଳ ବଞ୍ଚିବାକୁ ପଡ଼ିବ । ମଲା ପର୍ଯ୍ୟନ୍ତ କୌଣସି ପ୍ରକାରେ ବଞ୍ଚିବାକୁ ପଡ଼ିବ । ପେଟକୁ ମୁଠେ ଦାନା, ପିଠିକୁ ଖଣ୍ଡେ କନା । ମନରେ ଟିକିଏ ଶାନ୍ତି ଆଉ ଆନନ୍ଦ । ବାସ୍, ଆଉ କିଛି ଲୋଡ଼ା ନାହିଁ ।

ଦାନା, କନା ତ ଯୁଆଡୁ ଯେମିତି ମିଳିଯିବ । କିନ୍ତୁ ଶାନ୍ତି, ଆନନ୍ଦ ? ସେଇଟା ମିଳିବ କେମିତି ? ମଣିଷ ତା'ରି ସନ୍ଧାନରେ ଦକ୍ଷିଣରୁ ଉତ୍ତରମେରୁ, କନ୍ୟାକୁମାରୀରୁ ହିମାଳୟ ପର୍ଯ୍ୟନ୍ତ ଘୂରିବୁଲୁଛି । କାହାକୁ କିଛି ମିଳୁଛି, କି ନା, ଜଣାନାହିଁ । ମୁଁ ପାଇବି କେମିତି.. ?

ସେହି ଦୁର୍ଲଭ ଚିଜର ସନ୍ଧାନରେ ଦିନେ ମୁଁ ବାହାରିଲି ସହରର କୋଳାହଳକୁ ପଛରେ ପକାଇ ଦୂରକୁ । ସହରର ଧୂମାଭ ଆକାଶ ଛାଡ଼ି ଦୂର ସବୁଜିମାର ସଂସାର ଆଡ଼କୁ । ଭୋର୍ ସମୟ ! ଅଟକିଗଲି ଠାଏଁ । ପରିବେଶ ଥିଲା ବେଶ୍ ଶାନ୍ତ, ସୁନ୍ଦର । ଆଗରେ ଆଦିବାସୀ ଶ୍ରମିକମାନଙ୍କର ଅସ୍ଥାୟୀ ବସ୍ତିଟିଏ । ଅଦୂରରେ ମୁଣ୍ଡ ଟେକୁଥିଲା ଗୋଟେ ଛୋଟ କାରଖାନା । ମୁଁ ଭୋ'ରୁ ଭୋ'ରୁ ଯାଇ ପହଞ୍ଚିଥିଲି ସେହି ଆଦିବାସୀ ବସ୍ତିରେ । ସେମାନେ ଥିଲେ ମୁଣ୍ଡା ସମ୍ପ୍ରଦାୟର । ବସ୍ତି ଭିତରୁ ଶୁଭୁଥିଲା ଭରପୂର ଆନନ୍ଦ ସୂଚକ କୋଳାହଳ । ତା' ସହିତ ହାଣ୍ଡିଆ ଓ ପୋଡ଼ା ମାଛର ବାସନା । ଭାଷା ଅବୋଧ୍ୟ ହେଲେ ବି ସେ କୋଳାହଳ ମୋତେ ଭଲ ଲାଗିଲା । ସେ ବାସନା ମୋ' ମନକୁ ରୋମାଞ୍ଚିତ କଲା ।

ସୂର୍ଯ୍ୟୋଦୟ ହେଉଥିଲା । ଉଦିତ ସୂର୍ଯ୍ୟର କଅଁଳ କିରଣ ଭଳି ସ୍ମିତ ହସ ଓ ପ୍ରସନ୍ନ ମୁହଁଟିମାନ ଧରି ମୁଣ୍ଡାବସ୍ତି ଭିତରୁ ବାହାରୁଥିଲେ ଦଳଦଳ ସ୍ତ୍ରୀ, ପୁରୁଷ । ସମସ୍ତେ ଶ୍ରମିକ । ସମସ୍ତଙ୍କ ହାତରେ ହାଣ୍ଡିଆମିଶା ପଖାଳ ଡେକଚି, ମୁଣ୍ଡରେ ବେତ ଗାଣ୍ଡୁଆ । ପୁରୁଷଙ୍କ ହାତରେ କୋଦାଳ, ଗଇଁତି, ଫାଉଡ଼ା । ସମସ୍ତଙ୍କ ମୁହଁରେ ସଜଫୁଟା ଫୁଲର ହସ । ଉତ୍ସାହ ଓ ଉନ୍ମାଦନାପୂର୍ଣ୍ଣ ଗୋଟିଏ ଶ୍ରମଦିବସର ଶୁଭାରମ୍ଭ ହେଉଥିଲା । ଆଗରେ ନିର୍ମାଣାଧୀନ କାରଖାନା । ଧାଡ଼ି ବାନ୍ଧି ଚାଲିଥିଲେ ଶ୍ରମଜୀବୀମାନେ । ଅଧାଗଢ଼ା ଠାକୁର ହାତଠାରି ଡ଼ାକୁଥିଲା ତା' ମେହନତି ବିଶ୍ୱକର୍ମାମାନଙ୍କୁ ।

ଶାନ୍ତି ଓ ଆନନ୍ଦକୁ ମୂଳଧନ ଧରି ବେଳାଏ ଶାଗ-ପଖାଳ ସହିତ ଜୀବନକୁ ଭରପୂର ଉପଭୋଗ କରିବାର ପ୍ରେରଣା ମିଳିଗଲା ମୋତେ । କାନ୍ଧରେ ପଡ଼ିଥିବା ଫଟା ତଉଲିଆଟାକୁ ମୁଁ ଠେକାଟିଏ କରି ଭିଡ଼ିଲି ମୁଣ୍ଡରେ । ମିଶିଗଲି ମୁଣ୍ଡା ଶ୍ରମଜୀବୀମାନଙ୍କ ଭିତରେ ।

(୨)

ଅନେକ ଦିନ ଅତୀତ ହୋଇଗଲାଣି ଇତିମଧ୍ୟରେ । ମୋ' ପରିଚୟ 'ସୌମ୍ୟକାନ୍ତ, ବି.ଏ ଅନର୍ସ'ରୁ ଏବେ କେବଳ 'ସୋମୁ' ଦିନମଜୁରିଆ । ଅନଭିଜ୍ଞ ହାତରେ କୋଡ଼ି, କୋଦାଳ ଉଠେଇବା, ପଥର ଭାଙ୍ଗିବା, ମାଟି କାଟିବା, ମସଲା ସାନ୍ଦିବା ଏବଂ ହସକୁରୀ ମୁଣ୍ଡା ରେଜାଙ୍କ ମୁଣ୍ଡ ଉପରକୁ ମାଟି ଗାଣ୍ଡୁଆ ଉଠାଇଦେବା ଅବସରରେ ମୋ' ଦେହରୁ ବହିପଡୁଥିବା ଶ୍ରମଝାଳ ସହିତ ଧୋଇ ହୋଇଗଲାଣି ମୋ' ସ୍ନାତକଶିକ୍ଷାର ସମସ୍ତ ଅହମିକା ଓ ଅନର୍ସର ଅହଂକାର । ଏବେ ମୁଁ ଜଗନ୍ ସାଆନ୍ତଙ୍କ ଠିକାକାମ ପାଇଁ ମାସିକିଆ ଚୁକ୍ତିବଦ୍ଧ ଜଣେ ଭେଣ୍ଡିଆ ଠିକା ଶ୍ରମିକ ମାତ୍ର ।

ମୁଣ୍ଡା ମଜଦୁରମାନଙ୍କ ଗୋଷ୍ଠିରେ କ୍ରମଶଃ ହୋଇଗଲିଣି ମୁଁ ଏକାକାର । ନିଷ୍କପଟ, ସରଳବିଶ୍ୱାସୀ ମୁଣ୍ଡାମାନେ ମୋ' ଆତ୍ମୀୟତା ଉପରେ ଭରସା କରି ବସ୍ତିରେ ମୋତେ ଥାନ ଦେଇଛନ୍ତି । ବସ୍ତି ମୁଣ୍ଡରେ ମୋ'ପାଇଁ ତୋଳିଦେଇଛନ୍ତି ଖଣ୍ଡେ ଛୋଟିଆ ଝୁମ୍ପୁଡ଼ି ।

କୋଡ଼ିଏ କି ପଚିଶି ସରିକି ଆଦିବାସୀ ପରିବାରକୁ ନେଇ ବକଟେ ନାଆଁକୁ ବସ୍ତି । ଅପ୍ରଶସ୍ତ ଅଥଚ୍ ପରିଛନ୍ନ ଦାଣ୍ଡ ଦୁଇ ଧାରରେ ତାଳ ବରଡ଼ା ଛାଆଣି, ଝାଟିମାଟି ଘେରା ଧାଡ଼ିଧାଡ଼ି କୁଡ଼ିଆଘର । ବସ୍ତିର ସବା ମୁଣ୍ଡରେ, ମୋ'କୁଡ଼ିଆ ଆଗକୁ, ଗାଁ ମୁଖିଆ ଭଳି ଦାଣ୍ଡରେ ଠିଆ ହେଇଥିବା ଯେଉଁ ଟିଣ ଘରଟି ଦେଖାଯାଏ, ସେ ଗୋଟିକ ଠିକାଦାରଙ୍କ ଅସ୍ଥାୟୀ ଅଫିସ୍ । ଅଫିସର ବଡ଼ବାବୁ 'ମକୁ ମହାପାତ୍ର', ଜଗନ ସାଆନ୍ତଙ୍କ ଭୁକୁଣି ହାତ ! ମଜୁରିଆଙ୍କ ହର୍ତାକର୍ତ୍ତା !

ମୁଁ ଦିନରାତି ଆଦିବାସୀଙ୍କ ସହିତ ରହିବା, ଖାଇବା, ଚଳିବା ଭିତରେ ମୋ' ନିଜର ଶିକ୍ଷା ସଂସ୍କୃତି, ଭାଷା ଭାବ, ଚଳଣି ଓ ବ୍ୟବହାର ବଳି ପଡ଼ିସାରିଲାଣି । ମାଆ ହାତରନ୍ଧା ଅରୁଆ ଡାଲମା ମୋତେ ଆଉ ମନେପଡୁନି, ଯେତେବେଳ ମୋ' ନାକରେ ବାଜୁଛି ପୋଡ଼ା ଶୁଖୁଆ ଓ ବାଉଁଶ କରଡ଼ି ଭଜାର ମନ ମତାଣିଆ ବାସନା ।

ଆମ ବସ୍ତିକୁ ଆବୋରି ରହିଛି, ଅନାବନା ଫୁଲ ଓ ବଣକୋଳିରେ ଭରପୂର ସବୁଜ ବୁଦୁବଦିକିଆ ଜଙ୍ଗଲ । ମୋ' ଝୁମ୍ପୁଡ଼ି ପିଣ୍ଡାରୁ ଆଗକୁ ଡୁଙ୍ଗିଲେ ପଶ୍ଚିମ ଦିଗବଳୟ ତଳେ ଗୁନ୍ଥିହୋଇ ରହିଥିବା ପର୍ବତ ଧାଡ଼ିକ, ଦଳେ ଆଦିବାସୀ ଯୁବତୀ ଅଣ୍ଟାରେ ହାତ ଛନ୍ଦି ମାଦଲ୍ ତାଳରେ ନାଚୁନାଚୁ ଅକସ୍ମାତ୍ ପଥର ପାଲଟି ଯାଇଛନ୍ତି ବୋଲି ମନେହୁଏ । ତା' ଭିତରେ ସବୁଠୁଁ ଉଚ୍ଚା ଦିଶୁଥାନ୍ତି 'ନଣ୍ଡା-ନାଣ୍ଡି' ପାହାଡ଼ ଦୁଇଟା । ଶ୍ରମିକମାନେ ନିଇତି କାମରୁ ଲେଉଟିବା ଆଗରୁ ବୁଢ଼ା ସୂରୁଜ ଲୁଚିଯାଆନ୍ତି ସେ ଦୁଇ ପାହାଡ଼ ମଝିରେ । ତା'ପରେ ମାଡ଼ିଆସେ ସଞ୍ଜ । ଅନ୍ଧାର ଚାରିକାତ ମେଲେଇ ପଡ଼ିଯାଏ ବସ୍ତିରେ ନିଶାଗ୍ରସ୍ତ ଆଦିବାସୀ ଯୁବତୀଟିଏ ଭଳି । ତା'ପରେ ସେ ନଣ୍ଡା ପାହାଡ଼ ହଳକ ଆଉ ପାହାଡ଼ ନୁହଁ, ଅଳସୀ ରେଜାଟିର ଦୁଇ କଳା ନିଟୋଳ ସ୍ତନ ଭଳି ଦିଶନ୍ତି । ସଞ୍ଜ ବୁଡୁବୁଡୁ ଶୋଇଲେ ବି ରାତି ଏଠି ସାନ ଲାଗେ । ଗୋଟେ ଦୁଇଟା କଡ଼ ଲେଉଟା ଭିତରେ ସରିଯାଏ ରାତି ।

ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାର ଭିତରେ ଖୁଜୁରୁ ବୁଜୁରୁ ହୋଇଉଠେ ବସ୍ତି । ପାହାନ୍ତି ପହରୁ ଚୁଲିଲାଗେ ପ୍ରତି ଝୁମ୍ପୁଡ଼ି ଅଗଣାରେ । ଘସିକୋଇଲା ଜାଳେଣିର କଳାଧୁଙ୍ଗୁରି କାଳିସୀର ମୁକୁଳା ବାଳ ପରି ତାଳବରଡ଼ା ମଥାନ ଉପରେ ଉଡ଼ିବୁଲେ । ମାଛିଅନ୍ଧାର ବେଳକୁ ଚଳଚଞ୍ଚଳ ହୋଇଉଠେ ପ୍ରତିଟି ଆଦିବାସୀର କୁଡ଼ିଆ । ପୁଣି ଗୋଟିଏ ଦିନର ପ୍ରସ୍ତୁତି ଆରମ୍ଭ ହୋଇଯାଏ । ସୂରୁଜ ଉଇଁବା ବେଳକୁ ପୂରା ବସ୍ତି ଶୁନ୍‌ଶାନ୍ । କଦବା ଦେଖିବାକୁ ମିଳନ୍ତି ଚଳିଚଙ୍କି ନ'ପାରି ଝୁମ୍ପୁଡ଼ି ପିଣ୍ଡାରେ ବସିଥିବା ଦି'ଚାରିଟା ବୁଢ଼ାବୁଢ଼ୀ ଆଉ ଜଙ୍ଗଲିକୁକୁଡ଼ା ଭଳି ଖଣ୍ଡିଉଡ଼ା ଦେଇ ମହୁଲ ସାଉଁଟୁଥିବା ପଲେ ଲଙ୍ଗଳା ଛୁଆ ।

ଦିନ ତମାମ୍ ମାଟି, ପଥର ଓ ଲୁହା ସାଙ୍ଗରେ ଯୁଝିଯୁଝି ବେଳ ରତରତ ବେଳକୁ ଫେରନ୍ତି କ୍ଳାନ୍ତ ଶ୍ରାନ୍ତ ଶ୍ରମଜୀବୀମାନେ ଆପଣା ଆପଣା ନିଡ଼କୁ । ହେଲେ ହସ ମରିନ'ଥାଏ ମୁହଁରୁ । ଫୁର୍ତ୍ତି ମଉଳିନଥାଏ ମନରୁ । ସଞ୍ଜବେଳକୁ ଢୋକେ ହାଣ୍ଡିଆ, ପୋଡ଼ା ଶୁଖୁଆ ସହିତ ବେଲାଏ ପଖାଳ । ବାସ୍, ସେତିକିରେ ପୁଣି ନୂଆ ଜୀବନ ସଂଚରିଯାଏ ସେମାନଙ୍କ ପଥୁରିଆ ଦିହରେ । ସାରାଦିନର କ୍ଳାନ୍ତି ମେଂଟେଇବା ପାଇଁ ବସ୍ତିରେ ଆରମ୍ଭ ହୋଇଯାଏ ନାଚଗୀତର ଆସର । ହାଣ୍ଡିଆର ନିଝୁମ୍ ନିଶାରେ ମସ୍ତ ଜୁଆନ୍ ଓ ରେଜାମାନେ ଅଣ୍ଟାରେ ହାତକୁ ହାତ ଛନ୍ଦି ନାଚନ୍ତି ବିଳମ୍ବିତ ରାତି ଯାଏଁ । ରେଜାମାନଙ୍କ ସାଙ୍ଗିତିକ ସମୁହ କଂଠସ୍ୱର ସମଗ୍ର ପରିବେଶକୁ ଉଲ୍ଲସିତ କରିରଖେ ।

ଆଦିବାସୀ ଜୀବନ ଏଠି ସଜଫୁଲ ଭଳି ପବିତ୍ର । ଜୀବନଯାତ୍ରା ପାହାଡ଼ି ଝରଣା ଭଳି ସଂଗୀତମୟ । ଦୁଃଖ ଓ ଅନୁଶୋଚନା ବୋଲି କଣିଚାଏ ନାହିଁ । ଆନନ୍ଦ ହିଁ ଆନନ୍ଦ । ଏମାନଙ୍କ ପାରମ୍ପରିକ ଚଳଣି ସହିତ ମୁଁ ଧୀରେଧୀରେ ସାମିଲ୍ କରିନେଲିଣି ନିଜକୁ ।

ମୋ' ଝୁମ୍ପୁଡ଼ିଠୁଁ ଅଳପ ଦୂରରେ 'ମକ୍ରାମୁର୍ମୁ'ର ନୁଆଁଣିଆ ଚାଳିଆ । ତା' ତିରିଲା 'କୁର୍ମି' ମୋତେ 'ଧରମ୍‌ଭାଇ' ମାନ୍ତି କରେ । ଦିନେଦିନେ କେତେ ସ୍ନେହରେ ମୋ'ପାଇଁ ପଠେଇଦିଏ ବେଲାଏ ଜାଉ, ଦି'ଖଣ୍ଡ ପୋଡ଼ା ଶୁଖୁଆ, ଲେଙ୍ଗୁଟି ପିନ୍ଧି ବୁଲୁଥିବା ତା' ଝିଅ 'ଛନ୍ନି' ହାତରେ ।

ବସ୍ତି ଆରମୁଣ୍ଡରେ 'ବର୍ଜୁ ହେମ୍ବ୍ରମ୍'ର ଝୁମ୍ପୁଡ଼ି । ତା' ଯୁବତୀ ଝିଅ 'ମଇନି' ସେଦିନ କେତେ ସରାଗରେ ମୋ'ପାଇଁ ଆଣିଦେଇଥିଲା ଦି'ବେଲା ସଜହାଣ୍ଡିଆ ଆଉ ସିଝା ମାଛରୁ ଖଣ୍ଡେ । ମୁଁ ଯେତେ ମନା କଲେ ସିଏ କି ମାନିବା ଝିଅ ! ମୋ' ହାତଧରି ପିଆଇଦେଇଥିଲା । ସାରାଦିନର ଖଟଣି ପରେ ହାଣ୍ଡିଆର ଅମୃତ ଅନୁଭବ ପରମ ଶାନ୍ତି ଆଣିଦେଇଥିଲା ମୋ' ମନରେ ।

ମୁଁ ମନେମନେ ଭାବୁଥିଲି, ସତରେ କେତେ ଶାନ୍ତ, ସୁନ୍ଦର, ଅମୃତମୟ ଏ ଆଦିବାସୀଙ୍କ ସଂସାର । ନାହିଁ ଏଠି ଦୁଃଖ, ଦୈନ୍ୟ, ଦୁଷ୍ଚିନ୍ତା କି ଦୁର୍ଭାବନା । ନାହିଁ କାହାର

ସଂଚୟ କରିବା ମନୋଭାବ । ନାହିଁ ଏଠି ମୂଳଧନ କିବା ଲାଭକ୍ଷତିର ଅଙ୍କକଷା । କିଛି ନ'ଥାଇ ବି ଏଠି ଭରପୂର ସୁଖ, ଶାନ୍ତି, ଅସରନ୍ତି ଆନନ୍ଦ ।

ଇତିମଧ୍ୟରେ ମଇନି ସାଙ୍ଗରେ ମୋ'ର ଭାବ ହୋଇଗଲାଣି । ସେ ନିଇତି କାମରୁ ଲେଉଟିଲେ ମୋ' ଝୁମ୍ପୁଡ଼ିକୁ ଚାଲିଆସେ । ବେଳେବେଳେ ମୋ' ଲିଭିଲା ଚୁଲିଟା ଜାଳିଦିଏ । ଭାତ ଦିଇଟା ଫୁଟେଇଦିଏ । ଅତି ସରାଗରେ ସାଙ୍ଗରେ ନେଇ ଆସିଥାଏ ଠେକିଏ ସଜ ହାଣ୍ଡିଆ । ରାତି ଅଧଯାକେ ଆମେ ହାଣ୍ଡିଆ ପିଇ ଦେହକୁ ଦେହ ଲଗେଇ ବସୁ । ଜଡ଼ାତେଲ ଜୁଡୁବୁଡୁ ଖୋଷାରେ ତା'ର ଚହଟୁଥାଏ ପେନ୍ଥାଏ 'ସରଗୀଫୁଲ୍' ! କଳାମଚମଚ ସୁଢ଼ଳ ମୁହଁରେ ଚମକୁଥାଏ ଆନ୍ତରିକତାର ଚୁନାଚୁନା ହସ ।

ପ୍ରତି ମାସର ଶେଷ ରବିବାରେ, ମଜୁରି ମିଳିବା ଦିନଟି ବସନ୍ତ ବହିଆସେ ଶ୍ରମିକ ବସ୍ତିରେ । ସାରାଦିନ ଛୁଟି । ଦିନ ତମାମ୍ ହାଣ୍ଡିଆ ପିଇ ମାତାଲ୍ ହେବାର ସ୍ୱାଧୀନତାକୁ କେହି ଅଟକେଇବାର ନାହିଁ । ମରଦ୍, ରେଜା, ଆଉ ତିର୍ଲା, ସମସ୍ତେ ମସ୍ତ !! ସାରାଦିନ୍ ନାଚ, ଗୀତର ଆସର ଚାଲିଥାଏ ଦାଣ୍ଡରେ । ଦୂର ପାହାଡ଼ ଦେହରେ ପିଟି ହୋଇ ଭାସି ଆସୁଥାଏ ମାଦଲ୍‌ର ପ୍ରତିଧ୍ୱନି । ବେଳ ନଇଁଲେ ପେନ୍ଥାପେନ୍ଥା କୁରେଇଫୁଲ୍ ଆଉ ଗୁଲାଚିଫୁଲ୍‌ରେ ଗଭା ସଜେଇ, ରଙ୍ଗବେରଙ୍ଗର କସ୍ତା ଶାଢ଼ି ପିନ୍ଧି ଧାଡ଼ିବାନ୍ଧି ଆସନ୍ତି ଛନ୍‌ଛନି ରେଜାମାନେ । ଅଣ୍ଟାରେ ହାତ ଛନ୍ଦି, ମନ ମତାଣିଆ ଗୀତ ଗାଇ ମାଦଲ୍ ଓ ଦୁମାଙ୍ଗ୍‌ର ତାଳେତାଳେ ନାଚନ୍ତି ଢ଼େର୍ ରାତି ଯାଏଁ! ମଇନୀ ମୋ' ହାତଧରି ଟାଣି ନେଇଯାଏ ନାଚ ଆସରକୁ । ହେଲେ ସେମାନଙ୍କ ସାଙ୍ଗେ ପାଦ ମିଳାଇ ମୁଁ ନାଚିପାରେନା । ସେମାନଙ୍କ ଗୀତରେ ପଦ ମିଳେଇ ମୁଁ ଗାଇପାରେନା । ମଇନି ମତେ ଗାଇବା ଶିଖାଏ । ନାଚିବା ଶିଖାଏ ମୋ' ଅଂଟାରେ ହାତ ଗୁଡ଼େଇ । ଏହା ଦେଖି ତା' ସାଙ୍ଗ ଛଇଲି ବଣଝରଣା ଭଳି ହସିଉଠେ । ସତରେ ମଇନି, ଆଦିବାସୀ ଝିଅଟେ ହେଲେ ବି ମୋତେ କେତେ ଆପଣାର.. ଆପଣାର ଲାଗୁଥିଲା । ମୁଁ ଧୀରେଧୀରେ ସ୍ୱପ୍ନ ଦେଖିବା ଆରମ୍ଭ କରୁଥିଲି ତାକୁ ନେଇ ।

ମା' କହିଥିବା କଥା ମୋ'ର ମନେ ପଡୁଥିଲା । ତା' ସପନ ଦେଖା କଥା । ଘରକୁ ସୁନାନାକୀ ବୋହୂଟେ ଆଣିବାର ସ୍ୱପ୍ନ ଦେଖୁଥିଲା ମାଆ, ଯୋଉଟାକି ଏବେ ବି ଅପୂରଣ ଅଛି । ମଇନିକୁ ମନ ଦେବା ପରେ ମାଆର ସେ ସପନଟା ଅନ୍ତତଃ ପୂରଣ ହେବା ଉଚିତ ବୋଲି ଭାବୁଥିଲି ମୁଁ; କିନ୍ତୁ ତା' ପୂର୍ବରୁ ଘଟିଗଲା ଗୋଟେ ଅଘଟଣ ।

ହଠାତ୍ ଦିନେ କ'ଣ ହେଲା କେଜାଣି, ମଇନି ମୋ' ସହିତ ଆଉ କଥାଭାଷା କଲାନି । ହସିଲାନି କି ରୁଷିଲାନି । ମୋ' ସାଙ୍ଗରେ ଠିକା ପାଇଟିକୁ ଗଲାନି । ଏମିତିକି, ମୋ' ଆଖିରେ ଆଖି ବି ମିଳେଇଲାନି । ଝରଝର୍ ବହିଯାଉଥିବା ପାହାଡ଼ି ଝରଣାଟା ହଠାତ୍

ଗୁମ୍‌ସୁମ୍ କୋଉରରେ ପରିଣତ ହୋଇଗଲା କାହିଁକି ? ମୁଁ ଏହାର କାରଣ ଖୋଜିଲି । ଖୋଜିବା ଭିତରେ ଅକସ୍ମାତ୍ ମଇନି ଦିନେ ଉଭେଇଗଲା ବସ୍ତିରୁ ।

ଖବର ପାଇଲି, ତା' ବାଆ ତାକୁ ବାହା କରେଇଦେଇଛି କେଉଁଝରର 'ଢେମ୍‌କା' ଗାଆଁରେ । ସିଏ ଆଉ ଆସିବନାଇଁ ! ମୋତେ ଦୁଃଖ ଲାଗିଲା । ଆଶ୍ଚର୍ଯ୍ୟ ବି ଲାଗିଲା ! କାରଣ ତା' ବାହାଘର ବିଷୟରେ ମଇନି ପାଖରୁ ମୁଁ ଦିନେ ବି ଶୁଣିନଥିଲି । ବରଂ ଦିନେ ମୁଁ ନିଜ ମନକଥା ତାକୁ କହିଥିଲି । "ମଇନି ! ଚାଲ୍ ଆମେ ବାହା ହେଇଯିବା । ଘରସଂସାର କରିବା !" ମୋ' କଥା ଶୁଣି ସେ ଖିଲିଖିଲି ହସିଲା । କହିଲା, "ଆଗୋ' ବାବୁ ! ତମେଁ ଭଦର୍ ଉଡ଼ିଆ ଘରର୍ ପିଲାଁ । ଆମେ ହେଲୁଁ ଅଦିବାସୀ । ଆମ ଜାତିକୁଳ ତମସାଥେଁ ମୋର୍ ବିଭାଁଘର୍ କରେଇ ଦେବେନାଇଁ ଗୋ' । ଖାଲି ହସ୍‌ଖୁସି କର୍‌ବାଁ । ସେତ୍‌କି କର୍‌ବାକୁ ବାରଣ ନାଇଁ !"

ମଇନି ବିନା ମତେ କିଛି ଭଲ ଲାଗୁନଥିଲା । ଦିନେ ତା' ସାଙ୍ଗ ଛଇଲି ମୋତେ ଗୋଟେ ଦୁଃସମ୍ବାଦ ଶୁଣେଇ ଅଧିକ ଦୁଃଖିତ କରିଦେଲା । ସେ କହିଲା, ଗତ ମାସ ରବିବାର ମଜୁରି ମିଳିବା ରାତିରେ ଗୋଟେ ଅଘଟଣ ଘଟିଥିଲା ବସ୍ତିରେ । ସେ ରାତିରେ ଠିକାଦାର୍ ଜଗନ ସାଆନ୍ତ ତା' ଅଫିସ୍‌ଘରେ ଥିଲା । ରାତି ଅଧରେ ସାଆନ୍ତର ଦୁଇଜଣ ଲୋକ ବସ୍ତିଭିତରୁ ଗୋଟେ ଜବାନ୍ ଝିଅକୁ ଜବରଦସ୍ତ ଅଫିସ୍ ଆଡ଼କୁ ଟାଣି ନଉଥିଲେ । ସିଏ କାଳେ ଥିଲା ମଇନି । ରାତିରେ ସାଆନ୍ତେ ତାକୁ ଖରାପ୍ କରିଦେଇଥିଲା । ଅଭିଆଡ଼ି ମୁଣ୍ଡା ଝିଅ ଥରେ ଖରାପ୍ ହେଇଗଲେ ତାକୁ ବସ୍ତି ଛାଡ଼ିବାକୁ ପଡ଼େ । ମଇନି ମଧ୍ୟ ସେଇ କାରଣରୁ ଗାଆଁକୁ ପଳେଇଲା । ଛଇଲିର ଏ କଥା ପଦିକ ମୋ' ଛାତି ଭିତରେ ଗୋଟେ ବିସ୍ଫୋରଣ ସୃଷ୍ଟି କରିଥିଲା ।

ଜଗନ୍ ସାଆନ୍ତ ଆମ ଅନ୍ନଦାତା ହେଲେ ବି, ଏଭଳି କିଛି କଥା ଶୁଣିବାପରେ ଲୋକଟା ପ୍ରତି ଗୋଟେ ବିଷାକ୍ତ ଭାବନା ବସାବାନ୍ଧିଲା ମୋ' ମନରେ । ଶିଳ୍ପାଞ୍ଚଳର ସେ ଜଣେ ପ୍ରଥମଶ୍ରେଣୀ ଠିକାଦାର । ତାଙ୍କ ଅଧୀନରେ କାମ ଦେଖାଶୁଣା କରିବାପାଇଁ ଅଛନ୍ତି ଅନେକ ଦକ୍ଷ ଓ ବିଶ୍ୱସ୍ତ କର୍ମଚାରୀ । ତା' ସତ୍ତ୍ୱେ ସେ ନିଜେ କେବେକେବେ ମାଡ଼ିଆସନ୍ତି ଏହି ଠିକାଦାରି ସାମ୍ରାଜ୍ୟକୁ, କାମ ତଦାରଖ୍ କରିବାପାଇଁ । ମୁଣ୍ଡା ମଜଦୁରମାନଙ୍କ ସୁଖ,ଦୁଃଖ ବୁଝିବାପାଇଁ । ତାଙ୍କ ବିଶାଳବପୁ ଧରି ମାଡ଼ି ଆସୁଥିବା ବୁଲ୍ଲେଟ୍ ଗାଡ଼ିର ଗୁରୁଗର୍ଜ୍ଜନ ଶୁଭିଲେ ସତର୍କ ହୋଇଯାଆନ୍ତି ସମସ୍ତେ । ସୁପରଭାଇଜରଠୁଁ ଆରମ୍ଭ କରି ଶ୍ରମିକଯାଏଁ, ଯେ-ଝା ଜାଗାରେ । ସାଆନ୍ତେ ଆସି ଘଣ୍ଟେ ଦି'ଘଣ୍ଟା କାମ ଦେଖନ୍ତି । ଅଫିସ୍ କାଗଜପତ୍ର କଥା ବୁଝନ୍ତି । ତା' ପରେ ଚାଲିଯାଆନ୍ତି । ବହୁତ ବଡ଼ ଠିକାଦାର । ହଜାରେ ଜାଗାରେ ହଜାରେ କାମ । ଗୋଟେ କାମରେ ବାନ୍ଧିହୋଇ ରହିପାରିବେ ?

ଛଇଲି କହୁଥିଲା, ତଥାପି ସାଆନ୍ତେ କୁଆଡ଼େ ବାନ୍ଧିହୋଇ ରହିଯାଆନ୍ତି ମାସରେ ଥରେ ଅଧେ । ରାତିସାରା । ସେଦିନ ତାଙ୍କ ଫଟଫଟିଆଟି ଟିଣଘେରା ଅଫିସ୍ ଆଗରେ ସକାଳଯାଏଁ ଠିଆହୁଏ । ବିଳମ୍ବିତ ରାତି ଯାଏଁ ଅଫିସ୍ ଭିତରୁ ଶୁଭୁଥାଏ ଗ୍ଲାସ୍ ଓ ବୋତଲମାନଙ୍କର ଠଣ୍..ଠାଣ୍.. ସହିତ ବିଦେଶୀ ବୋତଲର ଠିପିଖୋଲା ଶବ୍ଦ । ସୁପରଭାଇଜର୍ ମକୁବାବୁ ରାତି ଅଧଯାକେ ଲସରପସର ହେଉଥାନ୍ତି । ରାତି ଟିକେ ବେଶି ହେଲେ ସାଆନ୍ତଙ୍କ ମନକୁ ଛୁଇଁଥିବା ସୁନ୍ଦରୀ ରେଜାଟି ଧରାହୋଇ ଯାଏ ଅଫିସକୁ । କେବେ ସ୍ୱେଚ୍ଛାରେ, କେବେକେବେ ଅନିଚ୍ଛାରେ । ନଚେତ୍ ଜୋର୍ ଜବରଦସ୍ତ ! ତା'ପରର ଘଟଣା ବସ୍ତିର ଜଘନ୍ୟ ଅନ୍ଧାର ଭିତରେ ହଜିଯାଏ ।

ପ୍ରତିମାସରେ ବସ୍ତିର ଗୋଟେ ଅଧେ ରେଜା ଏଇମିତି ଭାବରେ ଖରାପ ହେଇଯାଆନ୍ତି ବୋଲି ଶୁଣିଲି ମୁଁ । ଖରାପ ହେଇଥିବା ରେଜାଟି ଯେତେବେଳେ ବସ୍ତିଛାଡ଼ି ଚାଲିଯାଏ, ସେତେବେଳେ ଗୋଟେ ଉଷୁମ୍ ବାତାବରଣ ଖେଳିଯାଏ ବସ୍ତିରେ । କେବଳ ସେଇ ଦିନେ ଅଧେ ପାଇଁ । ତା'ପରେ ପୁଣି ଶୁଭେ ମୁଣ୍ଡାରେଜା ଓ ରମଣୀମାନଙ୍କ ମଧୁର କୋଳାହଳ । ଜମିଉଠେ ନାଚଗୀତର ଆସର ।

ଥରେ ସେଭଳି ଏକ ଅବାଂଛିତ ଦୃଶ୍ୟ ମୁଁ ନିଜ ଆଖିରେ ଦେଖିଲି ମୋ' ଝୁମ୍ପୁଡ଼ି ତାଟି ଫାଙ୍କରୁ । ରାତିରେ ମତେ ଆଉ ନିଦ ହେଲାନି । ମୋ' ଭିତରେ ଶୋଇଥିବା ବିଦ୍ରୋହୀ ପୁରୁଷଟି ଭିଡ଼ିମୋଡ଼ି ହୋଇ ଉଠିଲା ଏବଂ ଚିତ୍କାର କରିବାକୁ ଚେଷ୍ଟାକଲା । କିନ୍ତୁ ପାରଲାନି । ସାଆନ୍ତର ଦାନାପାଣି ଖାଇଖାଇ ସେ ହସ୍ତିନାପୁର ଭୀଷ୍ମଙ୍କ ଭଳି କ୍ଲିବ ପାଲଟି ଯାଇଥିଲା ବୋଧେ । ମୁଁ ମଇନିକୁ ଭୁଲି ପାରୁନଥିଲି । ପ୍ରତି ସଂଧ୍ୟାରେ ଏକଲା ଝୁମ୍ପୁଡ଼ିରେ ବସି ମଇନିର ସ୍ମୃତିକୁ ରୋମନ୍ଥନ କରୁଥିଲି ।

ଏତିକିବେଳେ ମୋ' ଆଗରେ ଆବିର୍ଭାବ ହେଲା ଆଉଗୋଟେ ନୂଆ ମୁହଁ । ସେଦିନ ବି ଥିଲା ରବିବାର । ମାଦଲ୍ ଓ ଦୁମାଙ୍ଗ୍ ଶବଦରେ ଦୁଲୁକୁଥିଲା ବସ୍ତି । ନାଚଗୀତର ଆସର ଲାଗିରହିଥିଲା ସାରା ଦିନ । ରେଜାଙ୍କ ମେଳରେ ନାଚୁଥିଲା ଗୋଟେ ସୁନ୍ଦରୀ ଯୁବତୀ । ସେ ମୁଣ୍ଡା ସମ୍ପ୍ରଦାୟର ନୁହେଁ ବରଂ ଉଚ୍ଚଜାତିର ଝିଅ ଭଳି ଲାଗୁଥିଲା । ମୋ'ପାଇଁ ପୂରା ଅଚିହ୍ନା ।

ସ୍ତ୍ରୀ, ପୁରୁଷ ନିର୍ବିଶେଷରେ, ଅଧିକାଂଶ ମୁଣ୍ଡା ଆଦିବାସୀଙ୍କ ଦେହ ମୁଗୁନି ପଥର ଭଳି ଶକ୍ତ ଆଉ ଦେହରଙ୍ଗ କଳା । ବିଶେଷ କରି ଯୁବତୀମାନେ କୋଇଲି ଭଳି ଚିକ୍କଣ କଳା । କିନ୍ତୁ ଯେଉଁ କିଶୋରୀଟିକୁ ମୁଁ ନୂଆ ଦେଖୁଥିଲି, ସିଏ ଥିଲା ଏକ ବ୍ୟତିକ୍ରମ । ତା' ଚମ୍ପାଫୁଲିଆ ଦେହରେ ବେଶ୍ ମାନୁଥିଲା ତାକୁ ଶାଳଫୁଲ ରଙ୍ଗର କସ୍ତା ଶାଢ଼ିଟି । ତୈଳାକ୍ତ ଚିକ୍କଣ ଖୋଷା ଉପରେ ନୃତ୍ୟର ସମତାଳରେ ଦୋହଲୁଥିଲା କୁର୍ରେଇ ଫୁଲର ପେନ୍ଥା । ସୁଉଚ୍ଚ ବକ୍ଷ ଉପରେ ଦୋହଲୁଥିଲା ରଙ୍ଗବେରଙ୍ଗର କାଇଁଚ ଓ ପୋହଳାର ବିଚିତ୍ରମାଳି ।

ଆଦିବାସୀ ପରିବାରରେ ଏଡ଼େ ରୂପବତୀ କନ୍ୟା ଥାଇପାରନ୍ତି ବୋଲି ମୋ'ର ବିଶ୍ୱାସ ହେଲାନାହିଁ ।

ପରଦିନ ସକାଳେ ବସ୍ତିର ଅନ୍ୟ ରେଜାଙ୍କ ସହିତ ସିଏ ଯେତେବେଳେ ମୁଣ୍ଡରେ ଗାଣ୍ଡୁଆ ଆଉ ପଖାଳ ହେକ୍‌ଚି ଧରି ବହାରିଲା କାମକୁ ସେତେବେଳେ ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଆମେ ଏକାଠି କାମ ଧରିଥିଲୁ । ତା'ମୁଣ୍ଡ ଉପରକୁ ମାଟି ଗାଣ୍ଡୁଆ ଉଠାଇଦେବା ବେଳେ ମୋ' ଆଖିରେ ଆଖି ମିଳେଇ ଥରେ ଦି'ଥର ହସିଦେଲା ସେ । ହାଣ୍ଡିଆନିଶା ସହିତ ତ ମୋ'ର ପରିଚୟ ହୋଇସାରିଥିଲା । ହେଲେ ତା' ହସହାଣ୍ଡିଆରେ ଥିଲା ଯୁଆନ୍ ମନକୁ ଚହଲେଇଦେବାର ଅଦ୍ଭୁତ ନିଶା ।

ସୁଯୋଗ ମିଳିବାମାତ୍ରେ ମୁଁ ତାକୁ ପଚାରିଲି, ତାଆରି ମୁଣ୍ଡାରି ଭାଷାରେ, "ଆମାଥ୍ ନୁତୁମ୍ ଦ' ଚିକ୍‌ନା ? ଆ'ପେ ଆ'ତୁ ଦ' ଆକାନ୍‌ତ୍ରେ ?" (ତୋ' ନାଆଁ କଅଣ ? କୋଉଠୁ ଆସିଛୁ ?)

ମତେ ବିସ୍ମିତ କରେଇ, ସିଏ ଶୁଦ୍ଧ ଓଡ଼ିଆରେ କହିଲା, "ମୋ' ନାଁ 'ତୁଲ୍‌ସୀ' ! 'ବିଷନ୍ ମୁଣ୍ଡା ମୋ' ମାମୁ । ମୋ' ଘର ମୟୁରଭଞ୍ଜ ଜିଲ୍ଲାର 'ପୁର୍ନାପାନି' ! ଆମ ଗାଁ ଇସ୍କୁଲରେ ମୁଁ ପଞ୍ଚମ ଯାକେଁ ପାଠ୍ ପଢ଼ିଛିଁ । ଗାଆଁରେ କାମ୍‌ପାଇଟି ମିଳିଲାନି । ସେଥିପାଇଁ ମୁଁ ଆସିଛିଁ, ମାମୁଘରେ ରହିଁ ପେଟ୍ ପୋଷିବାପାଇଁ । ମାଇଁ ମ'ର ମରିଯାଇଛିଁ । ସେଥିପାଇଁ ଘରର ସବୁକାମ୍ ସାଙ୍ଗ୍‌ରେ ମୂଲ ପାଇଟି ମିଶାଗୁଁ କରିବାକୁ ପଡୁଚି ମତେ । ହେଲେ ବାବୁ ! ତମେ ତ ଭଦର୍ ଘରର ପାଠୁଆଁ ପିଲା ନାଖେଁ ଲାଗୁଚ । ତମେ କାଇଁ ଏ ମୁଲିଆ କାମ କରୁଚ ଯେ ?" ପ୍ରଶ୍ନ କଲା ମୋତେ ସେ । ଝିଅଟିକୁ ବୁଝାଇବା ଭଳି ଉତ୍ତର ମୋ' ପାଖରେ ନଥିଲା । ନିରବରେ ମୁଁ କେବଳ ହସିଦେଲି ।

ମୋ' ସହିତ ନିତିଦିନିଆ ଚଳପ୍ରଚଳ ଭିତରେ ଧୀରେଧୀରେ ମଇନିର ଶୂନ୍ୟସ୍ଥାନ ପୂରଣ କରିବାକୁ ଆଗେଇ ଆସୁଥିଲା ତୁଲସୀ ! ଆଗକୁ ଥାଏ ମୁଣ୍ଡା ସମ୍ପ୍ରଦାୟର ବିଶେଷ ପର୍ବ, 'ମାଘେ ପରବ୍' ! ପରବ୍‌ର ଅନେକ ଆଗରୁ ବସ୍ତିର ରେଜା ଆଉ ଯୁଆନ୍‌ମାନେ ଜାରି ରଖିଥାନ୍ତି ନାଚଗୀତର ଅଭ୍ୟାସ । ମୋତେ ମଧ୍ୟ ସାମିଲ୍ ହେବାକୁ ପଡ଼େ ସେମାନଙ୍କ ସହିତ । ନୃତ୍ୟରତା ରେଜାଙ୍କ ପାଦର ତାଳେତାଳେ ଚାଙ୍ଗୁ ବଜେଇବା ଓ ରୁଭୁନ୍ ଫୁଙ୍କିବା ମୋ'ର ଅଭ୍ୟାସ ହୋଇଯାଇଥାଏ । ପରବ୍‌ର ଆଗ ଦିନଟି ଥିଲା ରବିବାର । ମଜୁରି ପାଇବା ଦିନ । ଛାଇଲେଉଟାଣି ବେଳକୁ ସାଅନ୍ତଙ୍କ ଫଟ୍‌ଫଟିଆ ଅଫିସ୍ ଦୁଆରେ ଆସି ଠିଆ ହେଲା । ସାଆନ୍ତେ ଚଉକି ପକେଇ ରାଜକୀୟ ଠାଣିରେ ବସିଲେ ଅଫିସ୍ ବାରଣ୍ଡା ଉପରେ । ସୁପରଭାଇଜର୍ ମଳୁବାବୁଙ୍କ କାମ ଆଜି ବଡ଼ ଦାୟିତ୍ୱପୂର୍ଣ୍ଣ ! ମଜୁରି ବାଣ୍ଟିବା ଆରମ୍ଭ କଲେ ସେ ।

କର୍ମକ୍ଳାନ୍ତ କ୍ରିତଦାସମାନଙ୍କଭଳି ଆମେ ସବୁ ଧାଡ଼ିବାନ୍ଧି ଠିଆହେଲୁ ମକୁବାବୁଙ୍କ ଟେବୁଲ୍ ଆଗରେ । ମୋ' ଆଗକୁ ତୁଲ୍‌ସୀ ।

ମକୁବାବୁ ଅଭ୍ୟାସବଶତଃ ତୁଲ୍‌ସୀ ଆଡ଼କୁ ବଢ଼ାଇଦେଲେ ସ୍ୟାହି ପ୍ୟାଡ଼ଟି ମଜୁରିଖାତାରେ ଟିପଚିହ୍ନ ଦେବାପାଇଁ । ତୁଲସୀ ଅଟକିଗଲା । ହସହସ ମୁହଁରେ ସେ ଇଙ୍ଗିତ କଲା ମକୁବାବୁଙ୍କ ଛାତି ପକେଟରେ ଶୋଭାପାଉଥିବା ସୁନେଲି ରଙ୍ଗର କଲମଟିକୁ । ମକୁବାବୁ ଚମ୍‌କିପଡ଼ିଲେ । ସ୍ଥିର ହୋଇଗଲା ଚେୟାର ଉପରୁ ଓହଳି ଦୋହଲୁଥିବା ସାଆନ୍ତଙ୍କ ଗୋଡ଼ଦୁଇଟା । ବଡ଼ ବଡ଼ ଆଖିରେ ବେଜାଏ ବିସ୍ମୟ ଧରି ସେ ଚାହିଁରହିଲେ ସୁନ୍ଦରୀ ରେଜାଟି ଆଡ଼େ ।

"ତୁ ସଇ କରି ଜାଣୁ ?" ମକୁବାବୁ ଅତି ଆଶ୍ଚର୍ଯ୍ୟରେ ପଚାରିଲେ କଲମଟିକୁ ବଢ଼େଇ ଦେଉଦେଉ । ତୁଲସୀ ନିରୁତ୍ତର ; କିନ୍ତୁ ତା' ମୁହଁରେ ସ୍ମିତ ହାସର ଛଟା ଦ୍ୱିଗୁଣିତ ହୋଇ ଯାଇଗଲା କ୍ଷଣିକପାଇଁ । ମଜୁରିଖାତାରେ ଅତି ସୁନ୍ଦର ଅକ୍ଷରରେ ଲେଖିଦେଲା ତା' ନାଆଁ 'ତୁଲ୍‌ସୀ ପୁର୍ତି' !

"ତୋ' ଗୋଲଗାଲ୍ ଦିହଟି ପରି ଅକ୍ଷରଗୁଡ଼ା କେତେ ସୁନ୍ଦର ଲୋ' ତୁଲ୍‌ସୀ !" ବାଘ ପରି ମୁହଁର ଚଉଡ଼ା ନିଶ ଉପରେ ଅଙ୍ଗୁଳି ସଂଚାଳନ କରି ଜଗନ୍ ସାଆନ୍ତେ ରସିକାମି କଲେ । ସାଆନ୍ତଙ୍କ ବ୍ୟଙ୍ଗ ପ୍ରତି କଣିଚାଏ ବି ନିଘା ନଥିଲା ତୁଲ୍‌ସୀର । ସେ ମଜୁରି ଟଙ୍କା ଗଣିଲା । ସାଆନ୍ତଙ୍କ ଆଡ଼କୁ ବେପରୁଆ ହସଟିଏ ଫିଙ୍ଗି ଦଉଡ଼ି ଚାଲିଗଲା ବସ୍ତି ଆଡ଼କୁ ।

ଜଗନ୍ ସାଆନ୍ତେ ମକୁବାବୁଙ୍କ ଆଡ଼କୁ ଇଙ୍ଗିତପୂର୍ଣ୍ଣ ଆଖିରେ ଅନେଇଲେ । କାମନାର ନିଆଁରେ ଦପ୍‌ଦପ୍ ଜଳିବାକୁ ଲାଗିଲା ତାଙ୍କ ହିଂସ୍ର ଆଖି ଦୁଇଟା । ମଣିଷମାଉଁସ ଚାଖିଥିବା ବାଘଟି ସତେ ଯେମିତି ପୁଣିଥରେ ଜିଭଚାଟି ଲାଳାୟିତ ହେବାକୁ ଆରମ୍ଭ କଲା । ମକୁବାବୁ ମୁଣ୍ଡ ଟୁଙ୍ଗାରିଲେ ସମସ୍ତଙ୍କ ଅଲକ୍ଷ୍ୟରେ ।

ମୋ' ମନକୁ ପାପ ଛୁଇଁଲା । ଏକ ଅପ୍ରତିହତ ବିପଦର ଆଶଙ୍କାରେ ହୃଦୟ ଉଦ୍‌ବେଳିତ ହେବାକୁ ଲାଗିଲା ମୋର । ଆସନ୍ତାକାଲି ମାଘେ ପରବ୍ । ମାମୁଘର ମାଣ୍ଡିଆଖିରି ଆଉ ମହୁଲପିଠା ଖାଇ ସାଥି ରେଜାଙ୍କ ମେଳରେ କୁରେଇଫୁଲ୍ ବଣରେ ବୁଲିବା ଆଗରୁ ହୁଏତ ଉଜୁଡ଼ିଯାଇଥିବ ତୁଲସୀର ପବିତ୍ର, ପୁଷ୍ପବତ୍ ଦେହଟି । ଅନାଘ୍ରାତ କଳିକାଟି ରାତିକ ଭିତରେ ହୁଏତ ଖରାପ୍ ହୋଇ ସାରିଥିବ ।

ସେଦିନ ଅନେକ ରାତି ପର୍ଯ୍ୟନ୍ତ ମୁଁ ଛଟପଟ୍ ହେଲି ମୋ'କୁଡ଼ିଆ ଭିତରେ ଶୋଇ । ଝୁମ୍ପୁଡ଼ି ଫାଙ୍କରୁ ବାରମ୍ବାର ଅଫିସ୍ ଘର ଆଡ଼କୁ ଅନାଉଥିଲି । ଟିଣଘର ଭିତରୁ ଶୁଭୁଥିଲା ବୋତଲ ଓ ଗିଲାସର ଠଣ୍ ଠାଣ୍ ଶବଦ । ସାଆନ୍ତଙ୍କ ନିଶାସକ୍ତ କଣ୍ଠସ୍ୱର । ମୁଁ ଦେଖିଲି,

ତୁଲସୀର ମାମୁ ବିଷନ ମୁଣ୍ଡା ଅଫିସ୍ ଭିତରୁ ବାହାରିଲା ନିଶାରେ ଟଳିଟଳି ଏବଂ ଚାଲିଲା ତା' ନିଜ ଝୁମ୍ପୁଡ଼ିଆଡ଼େ । ଗୋଟିଏ ହାତରେ ତା'ର ଓହଳିଥିଲା ଗୋଟେ ବିଦେଶୀ ମଦବୋତଲ ଏବଂ ଅନ୍ୟ ହାତରେ ମସ୍ତ କାଠଫାଳିଆଟେ ।

ମୋ' ମନ ପାପ ଛୁଇଁଲା । ଝାଡ଼୍‌ଝୁଡ଼୍ ହୋଇ ଉଠି ବସିଲି ମୁଁ । ଅଫିସ୍ ଘର ଭିତରୁ ଲଣ୍ଠନର ଆଲୁଅ ନିଷ୍ପ୍ରଭ ଦିଶୁଥିଲା । ବାରଣ୍ଡା ଚେୟାର୍ ଉପରେ ମକୁବାବୁ ବସିବସି ଢୁଳେଇପଡ଼ିଥିଲେ । ତାଙ୍କ ଟେବୁଲ୍ ଉପରେ ଫଡ଼୍‌ଫଡ଼୍ ହୋଇ ଉଡୁଥିଲା କିଛି କାଗଜପତ୍ର । ଏକା ଖେପାକେ ଯାଇ ଟେବୁଲ ଉପରୁ ଝାମ୍ପିଆଣିଲି ଫାଳେ ଧଳା କାଗଜ ଆଉ କଲମଟା । ଲେଖିଲି ଖଣ୍ଡେ ସଂକ୍ଷିପ୍ତ ଚିଠି ତୁଲ୍‌ସୀ ଉଦ୍ଦେଶ୍ୟରେ ।

ଚିଠିଖଣ୍ଡିକ ମକ୍‌ଚାମକ୍‌ଚି କରି ଗୁଳାଟିଏ କଲି । ସତର୍କରେ ଆଗେଇଲି ବିଷନ୍ ମୁଣ୍ଡାର ଝୁମ୍ପୁଡ଼ି ଆଡ଼କୁ । ସେତେବେଳକୁ ହାଣ୍ଡିଆ ନିଶାରେ ଚୁର୍ ହୋଇ ଘାଲେଇପଡ଼ିଥିଲା ସାରା ବସ୍ତି । ବିଷନମୁଣ୍ଡାର ଝୁମ୍ପୁଡ଼ି ଭିତରୁ କେବଳ ଶୁଭୁଥିଲା କିଛି ଦୁର୍ବୋଧ୍ୟ ଚିତ୍କାର ! ମୁଁ ଅଦୂରରୁ ଦେଖିପାରିଲି, ବିଷନ୍ ମୁଣ୍ଡା ତୁଲସୀ ଆଗରେ ଯମଦୂତ ଭଳି ଠିଆହୋଇଛି । ହାତରେ କାଠ ଫାଳିଆଟା ଧରି ସେ ହୁକୁମ ଜାରି କରୁଥିଲା ତୁଲସୀକୁ, "ଯା..ତୁଲସୀ ! ସାଆନ୍ତବାବୁଙ୍କ ଦିହ ହାତ ଟିକିଏ ଘଷାମୋଡ଼ା କରିଦେଇକି ଆସିବୁ । ନ'ହେଲେ ଦେଖ୍, ଏ କାଠ ଫାଳିଆରେ ତୋ'ର ଛାଲ୍ ଉତାରିଦେବି ।"

ତୁଲସୀ ଲୁହ ଜଡ଼ସଡ଼, ଆକୁଳ ବ୍ୟାକୁଳ ଆଖିରେ ଅନାଉଥିଲା ଚାରିଆଡ଼େ । ଆହାଃ ପଦେ କହିବାକୁ କେହି ତା' ପାଖରେ ନାହିଁ । ମାମୁର ଗୋଡ଼ତଳେ ପଡ଼ି ନେହୁରା ହେଲା, "ମାମୁ.. ମାମୁ..! ମତେ ଛାଡ଼ିଦେ..! ମୁଁ ପାରିବି ନାଇଁ ମାମୁ । ବିଷ୍ କି ମହୁରା ଟିକିଏ ଦେଇପକା ମତେ । ମୁଁ ମରିବି ପଛେଁ..!" ନିଶାଗ୍ରସ୍ତ ବିଷନମୁଣ୍ଡାର କାଠଫାଳିଆ ତା' ପିଠିରେ ବସିଲା ଦୁମ୍ କରି । ତୁଲସୀ କାନ୍ଦିକାନ୍ଦି ଅସହାୟ ଆଖିରେ ଦୁଆର ଆଡ଼କୁ ଅନେଇଲା । ଠିକ୍ ସେତିକି ବେଳକୁ ମୁଁ ଠିଆ ହୋଇଥାଏ ତା'ଦାଣ୍ଡରେ । ଲେଖାକାଗଜ ଗୁଳାଟା ସେ ଦେଖି ପାରିବା ଭଳି ସେଇଠି ଗଡ଼େଇ ଦେଲି ଏବଂ ଦଉଡ଼ି ଚାଲିଗଲି ଦୂରକୁ । ଭାଗ୍ୟ ଭଲ, ବିଷନମୁଣ୍ଡା ମତେ ଦେଖିନାଇଁ ।

ତୁଲ୍‌ସୀ ଲୁହ ପୋଛିଲା । ମାମୁ କଥାରେ ରାଜି ହେବା ବାହାନାରେ ସେ ମୁଣ୍ଡ ପୋତିପୋତି ଦୁଆର ବାହାରକୁ ଆସିଲା । ମାମୁର ଅଲକ୍ଷ୍ୟରେ ଚିଠଟା ଗୋଟେଇ ପଢ଼ିଲା । ହଠାତ୍ ତା' ମୁହଁରେ ଖେଳିଗଲା ଗୋଟେ ଅଜଣା ଚମକ୍ ! ଝଡ଼ରାତିର ବିଜୁଳି ଆଲୁଅରେ ଅଚାନକ୍ ବାଟ ପାଇବା ଭଳି ଅନୁଭବ କଲା ସେ । ସେଇ ବାଟରେ ଏକମୁହାଁ ଧାଇଁଲା । ତୀର ବେଗରେ ଧାଇଁବାକୁ ଲାଗିଲା ଜଙ୍ଗଲ ଭିତରକୁ ।

ମୁଁ ଆଗେଆଗେ ଦଉଡୁଥାଏ, ସିଏ ମୋ' ପଛେପଛେ । ଅଳ୍ପଦୂର ଦଉଡ଼ିବା ପରେ ମୁଁ ଅଟକିଯାଇ ତା' ହାତଟାକୁ ଧରିଲି । ହାତ ଧରାଧରି ହୋଇ ଦଉଡ଼ିଲୁ ଆମେ । ପଛରୁ ଶୁଭିଲା କୋଳାହଳ । ମୁଣ୍ଡାମାନଙ୍କ ଉତ୍ୟକ୍ତ ଚିତ୍କାର.. "ଧର୍ ଧର୍ ! ମାର୍ ତାକୁ । ଆମ ଖେଦାରୁ ରେଙ୍ଗା ଟୁକୁଲିକୁ ଧରି ଭାଗି ପଳେଇଲାରେ..ଧର୍ ତାକୁ ! ଧନୁ ତୀର୍ ଆଣରେ । ମାର୍ ତୀର ! ଆମକୁ ବିଶ୍ୱାସରେ ବିଷ ଦେଲା । ଧରିଆଣ ରେ ତାକୁ । ମାର୍ ତାକୁ !"

ବସ୍ତି ଆଡୁ ସମୁହ କୋଳାହଳ କ୍ରମେ ପାଖେଇ ଆସୁଥିଲା । ଆମେ ଦୁହେଁ ଜୀବନକୁ ପାଣି ଛଡ଼େଇ ଦଉଡୁଥିଲୁ । ଆକାଶରେ ଅଜଣା ତିଥିର ଫାଳିକିଆ ଜହ୍ନ ଆମ ସାଙ୍ଗରେ ଦଉଡୁଥିଲା । ଅନ୍ଧାର କାଟିକାଟି ଆମକୁ ବାଟ କଢ଼େଇ ନଉଥିଲା । ଗୋଟେ ସୁଡ଼ଙ୍ଗ ମୁହଁରେ ଅଟକିଗଲୁ ଆମେ । ଆଗକୁ ଆଉ ବାଟ ନାହିଁ, କେବଳ ସୁଡ଼ଙ୍ଗର ମୁହଁ । ପଛରୁ ସମୁହ ଚିତ୍କାର ପାଖେଇ ଆସୁଥିଲା । ତୁଲସୀ କହିଲା, "ଚାଲ୍ ! ଆମେ ଏ ସୁଡ଼ଙ୍ଗ ଭିତରେଁ ପଶିଯିବାଁ । ରାତିଟା କଟେଇଦେବାଁ । ମୁଣ୍ଡା ଝିଅ ପରପୁଅ ସାଙ୍ଗରେ ରାତିଏ କଟେଇଦେଲେଁ ସିଏ ତାଆରି ହେଇଯାଏଁ ।"

ମୋ'ର ଆଉ ଭାବିବାକୁ ବେଳ ନଥିଲା । ମୁଁ ତୁଲସୀର ହାତ ଧରି ପଶିଗଲି ସେ ଅନ୍ଧାରୀ ସୁଡ଼ଙ୍ଗ ଭିତରେ ।

ନିଦ ଭାଙ୍ଗିବାବେଳକୁ ସୂର୍ଯ୍ୟୋଦୟ ହେଉଥାଏ । କିନ୍ତୁ ମୋ'ପାଇଁ ସେ ସକାଳ ଥିଲା ସଂପୂର୍ଣ୍ଣ ନିଆରା ଆଉ ସୂର୍ଯ୍ୟ ଥିଲା ଏକ ଭିନ୍ନ ଛାୟାପଥର ଅଜଣା ତାରକା ! ମୋତେ କେବଳ ମୋ' ମାଆର ଶେଷ ସ୍ୱପ୍ନ କଥା ମନେ ପଡୁଥିଲା । ।



*ସୁରେନ୍ଦ୍ର ନାଥ ସାହୁ*

# ଉତ୍ତରଣ

ଆଜି 'ଭାବ୍‌ନା'ର ଶାଶୁ ଆସୁଛନ୍ତି ଭୁବନେଶ୍ୱରରୁ ।

ଅର୍ଣ୍ଣବ ଆଉ ସିଏ ୟୁ.ଏସ୍.ଏ ରୁ ଚାକିରି ଛାଡ଼ି ମୁମ୍ୱାଇରେ ଆସି ରହିବା ପରେ ଶାଶୁ ମଧୁମିତାଙ୍କର ଏ ପ୍ରଥମ ଆଗମନ !

ପୋର୍ଟିକୋରେ କାର ପାର୍କିଂ ହେବାକ୍ଷଣି ଭାବ୍‌ନା ଜାଣିପାରିଲା, ଅର୍ଣ୍ଣବ୍ ଏୟାରପୋର୍ଟରୁ ମା'ଙ୍କୁ ନେଇ ପହଂଚିଗଲେ । ଭାବ୍‌ନା ଦୁଆର ମୁହଁକୁ ଯାଇ ଶାଶୁଙ୍କୁ ପ୍ରଣାମ କରିବାକୁ ନଇଁପଡ଼ିଲା ବେଳକୁ ଶାଶୁ ମଧୁମିତା ତାକୁ ଅଧାନୁଆଁରୁ କୋଳେଇନେଇ କହିଲେ, "ଥାଉ, ମା' ! ଏ ସମୟରେ ତୋର ଏତେ ନଇଁବା ଠିକ୍ ନୁହେଁ । ଚାଲ୍, ସୋଫା ଉପରେ ବସିଲୁ । ମୁଁ ଭଲକରି ତତେ ଟିକେ ଦେଖେ । ଦେଢ଼ବର୍ଷ ତଳେ, ସେଇ ଯାହା ବାହାଘର ପରଦିନ ତମେ ଦି'ଜଣ ଆମେରିକା ଚାଲିଗଲ । ଆମେ ବାପା ମା' ଦୁହେଁ ଆଖି ପୂରେଇ କ'ଣ ତମକୁ ଟିକେ ଦେଖିପାରିଲୁ ? ଯାହା ଦେଖିଲୁ, ଏଇ ହ୍ୱାଟସ୍‌ଅପ୍, ସ୍କାଇପ୍, ଭିଡ଼ିଓ କନ୍‌ଫ୍ରେନ୍‌ସିଂରେ ! ସେ ଦେଖାରେ କ'ଣ ପେଟ ପୂରେ ମା' ?"

ଭାବନା କହିଲା, "ମା' ଆଜିକାଲିର ଏ କୋମ୍ପାନୀ ଜବ୍‌ରେ ସ୍ୱାଧୀନତା ବୋଲି ଟିକେ ବି ନାଇଁ । ଏଇ ଦେଖୁନାହାନ୍ତି, ଏତେ ଦିନକେ ଆପଣ ପ୍ରଥମକରି ଘରକୁ ଆସିଲେ ଆଉ ଇଏ କେମିତି ଦୁଆର ମୁହଁରେ ଆପଣଙ୍କୁ ଛାଡ଼ିଦେଇ ଅଫିସ୍ ପଳେଇଗଲେ ! ଆମ ବାହାଘର ବେଳେ ବି ଠିକ୍ ସେମିତି । ଆମେ ଦୁହେଁ ୟୁ.ଏସ୍.ଏ ରେ ଯୋଉ କୋମ୍ପାନୀରେ ଥିଲୁ, ସିଏ ଆମକୁ ସାତ ଦିନିଆ ଭିଜିଟ୍‌ରେ ଇଣ୍ଡିଆ ପଠେଇଥିଲା । ତା' ଭିତରେ ଆମର ବାହାଘର ହେଇଗଲା । ବାହାଘରର ତିନିଦିନରେ ଆମେ ଘର ଛାଡ଼ି ଆମେରିକା ଚାଲିଗଲୁ । ଗାଁରେ ଆଉ କିଛିଦିନ ଆପଣମାନଙ୍କ ସହିତ ରହି ବାବା ଆଉ ଆପଣଙ୍କ ପାଖରୁ ସ୍ନେହ ଶ୍ରଦ୍ଧା ପାଇବା ସୁଯୋଗ କ'ଣ ଆମକୁ ମିଳିଲା ?"

ମଧୁମିତା ବୋହୂ ମଥାରେ ସସ୍ନେହ ହାତ ରଖି କହିଲେ, "ହଉ ମା' ! ଏବେ ତ ମୁଁ ତୋ' ପାଖକୁ ଆସିଗଲି । ମନ ଭାଙ୍ଗିଲାଯାଏଁ ରହିବି । ନାତି କି ନାତୁଣୀର ମୁହଁ ଦେଖିଲେ ଯାଇ ଫେରିବି ଭୁବନେଶ୍ୱର ।"

*ସୁରେନ୍ଦ୍ର ନାଥ ସାହୁ* ___________

-"ମା' ଆପଣ ଟିକିଏ ଫ୍ରେସ୍ ହେଇଯାଆନ୍ତୁ । ମୁଁ ଟିଫିନ୍ ରେଡ଼ି କରୁଚି, ଖାଇଦେଇ କଥାହେବା ।" ଭାବନା ଶାଶୁଙ୍କୁ ବାଥ୍ରୁମ୍ ଦେଖେଇଦେଲା ।

ମଧୁମିତା ଟିଫିନ୍ କରୁକରୁ ବୋହୂକୁ ପଚାରିଲେ, "ମା' ଭାବନା! ଏବେ ତ ତୋର ଛଅ ମାସ ଚାଲିଲା । ସବୁ ଠିକ୍ଠାକ୍ ଅଛି ତ ? ତୋର ବାନ୍ତି-ଫାନ୍ତି ତ'ହଉନି, ଭଲ କଥା । ହେଲେ ପେଟରେ ଠିକ୍ସେ ଛୁଆ ବୁଲୁଚି ନା' ମା ?"

ଭାବନା ମୁହଁରେ ସଲ୍ଲଜ ହସ ଖେଳେଇ କହିଲା, "ହଁ ମା' ! ଏ ପର୍ଯ୍ୟନ୍ତ ସେମିତି କିଛି ଅସୁବିଧା ନାହିଁ । ଜଣେ ଭଲ ଗାଇନିକ୍ ପାଖରେ ଦେଖା ହଉଚି । ଏବେ ତ ଆପଣ ମୋ' ପାଖରେ ରହିବେ, ଆଉ ମୋର ଚିନ୍ତା ନାହିଁ ।

ବୋହୂର ଅନ୍ତରଙ୍ଗ ବ୍ୟବହାରରେ ମୁଗ୍ଧ ହେଲେ ମଧୁମିତା । ଅଣଓଡ଼ିଆ ହେଲେ ବି ଖୁବ୍ ସୁନ୍ଦର ଓଡିଆ କହିପାରୁଚି ଭାବ୍ନା । ବାପା ମା' ନଥିବା ଝିଅଟେ ହେଲେ କ'ଣ ହେଲା, ପୁଅ ତାଙ୍କର ବାଛିବାଛି ରତ୍ନ ଖଣ୍ଡେ ଆଣିଛି ଘରକୁ । ଏ'କଥା ସେ ବୋହୂକୁ ପ୍ରଥମ ଦେଖାରେ ହିଁ ଜାଣି ପାରିଥିଲେ । ବାହାଘର ଆଗରୁ ସିଏ ଭାବନାକୁ କେବେ ଦେଖିନଥିଲେ । କେବଳ ଶୁଣିଥିଲେ, ଆମେରିକାର ସେଇ ଏକା କୋମ୍ପାନୀରେ ଚାକିରି କରୁଥିବା ଗୋଟେ ଗୁଜରାଟି ଝିଅକୁ ଅର୍ଣ୍ଣବ ପସନ୍ଦ କରିଚି ବୋଲି । ପରସ୍ପରକୁ ଭଲପାଇ ଦୁହେଁ ବାହା ହେବାକୁ ସ୍ଥିର କରିଛନ୍ତି । ସେଥିରେ ମଧୁମିତା କିମ୍ବା ତାଙ୍କ ସ୍ୱାମୀ ଜୀବନ ବାବୁଙ୍କର ତିଳେମାତ୍ର ଆପତ୍ତି ନଥିଲା ।

ଅର୍ଣ୍ଣବ ତା' ବାପାଙ୍କ ହୃଦୟକୁ ପିଲାଟିବେଳୁଁ ହିଁ ଚିହ୍ନିଥିଲା, ସେ କେଡ଼େ ବିଶାଳ ଓ ଉଦାର । ବାପାଙ୍କ ପାଖରୁ ସବୁଜ ସଙ୍କେତ ପାଇବା ପରେ ସେ ଆମେରିକାରୁ ଭାବ୍ନାକୁ ଧରି ସିଧା ଆସିଥିଲା ଘରକୁ । ସପ୍ତାହେ ଭିତରେ ବାହାଘର କାମ ସାରି, ବାପା ମାମାଙ୍କ ଆଶୀର୍ବାଦ ନେଇ ପୁଣି ଚାଲିଗଲା ଆମେରିକା । ଏବେ ଅବଶ୍ୟ ସେ ବିଦେଶୀ କୋମ୍ପାନୀ ଛାଡ଼ି ମୁମ୍ବାଇରେ ଆସି ରହିଲାଣି । ଭାବ୍ନା କନ୍ସିଭ୍ କରିବା ପରେ ଉଭୟେ ମିଶି ଗୋଟେ ଭଲ ନିଷ୍ପତ୍ତି ମଧ୍ୟ ନେଇଛନ୍ତି । ସ୍ୱାମୀ-ସ୍ତ୍ରୀ ଉଭୟେ ଚାକିରି କରି ଅଧିକ ରୋଜଗାର କରିବା ନ'ହେଉ ପଛେ, ଦାଂପତ୍ୟ ସୁଖ ଶାନ୍ତି ଟିକକ ମିଳୁ ! ତେଣୁ ଭାବ୍ନା ଯା'ଭିତରେ ଚାକିରି ଛାଡ଼ି ଗୃହିଣୀ ପାଲଟି ଯାଇଛି ।

ମଧୁମିତା ମନେମନେ ଭାବୁଥିଲେ, ଅହା ! ବିଚାରୀର ବାପା ମା' ଯଦି ସଂସାରରେ ଥାଆନ୍ତେ ନାତି କି ନାତୁଣୀ ଆସିବା ଖବର ଶୁଣି ଆମଭଳି କେତେ ଖୁସି ହେଇଥାନ୍ତେ । ହେଲେ ଗୋଟିଏ ବୋଲି ବୋହୂ ପାଇ ମଧ୍ୟ ସମୁଦି-ସମୁଦୁଣୀ ସମ୍ପର୍କର ସୁଖ ତାଙ୍କ ଭାଗ୍ୟରେ ନାହିଁ ! ଛୋଟବେଳେ ଭାବନା ତା' ବାପା ମାଆଙ୍କୁ ହରେଇବା ପରେ କେହିଜଣେ ସମ୍ପର୍କୀୟା

ତାକୁ ପାଳିପୋଷି ବଡ଼ କରିଛନ୍ତି ବୋଲି ଅର୍ଣ୍ଣବ କହୁଥିଲା, ହେଲେ ସେ ମହିଳାଙ୍କ ସହିତ ମଧ୍ୟ ଆଜିଯାଏ ତାଙ୍କର ପରିଚୟ ହେଇନି !

ବେଳେବେଳେ ନିରବତା ବି ଅନେକ କଥା କହେ ! ଶାଶୁଙ୍କ ନିରବତାକୁ ଲକ୍ଷ୍ୟକରି ଭାବନା ପଚାରିଲା, "ମା' ! ମୁଁ ଜାଣିପାରୁଚି, ଆପଣ ନିଶ୍ଚୟ ମୋ' ବିଷୟରେ ଭାବୁଛନ୍ତି ।"

– "ହଁ'ରେ ମା' ! ମୁଁ ଭାବୁଥିଲି ତୋ'ର ସମ୍ପର୍କୀୟା ମା' ଶ୍ରଦ୍ଧାମୟୀଙ୍କ ବିଷୟରେ । ସିଏ ଏଇ ମୁମ୍ବାଇରେ ରହନ୍ତି ପରା ? ମୁଁ ଥିବା ଭିତରେ ତାଙ୍କୁ କେବେ ଥରେ ଘରକୁ ଡାକିବୁ ଯେ, ଆମର ପରିଚୟ ହେଇଯିବ ।" ମଧୁମିତା ପ୍ରସ୍ତାବ ଦେଲେ ।

– "ମା' ! ସିଏ କ'ଣ କେବେ ଗୋଟିଏ ସ୍ଥାନରେ ରହନ୍ତି ? ଏ ଦେଶର ସବୁ ଅନାଥାଶ୍ରମ ତାଙ୍କ ଘର ! ସମାଜର ସବୁ ଅନାଥପିଲା ତାଙ୍କର ସନ୍ତାନ ! !"

– "ତା'ହେଲେ ସିଏ ତୋ'ଆତ୍ମୀୟ କି ସମ୍ପର୍କୀୟ କେହି ନୁହନ୍ତି ?" ମଧୁମିତା ଆଶ୍ଚର୍ଯ୍ୟରେ ପଚାରିଲେ ।

– "ନା' ସିଏ ମୋର ରକ୍ତ ସଂପର୍କରେ ତ କେହି ନୁହନ୍ତି, ହେଲେ ମୋ' ହୃଦୟରେ ତାଙ୍କ ସ୍ଥାନ ଜନ୍ମକଲା ମାଆଠୁଁ ବି ଉଚ୍ଚରେ ! ସିଏ ଯଦି ନ'ଥାନ୍ତେ, ମୁଁ ଆଉ ମୋ'ଭଳି ଅନେକ ବାପା-ମା'ଛେଉଣ୍ଡ ପିଲା ଆଜି ଭିକ ଥାଳି ଧରି ଦାଣ୍ଡରେ ବୁଲୁଥାନ୍ତୁ ।" ପ୍ରଚ୍ଛନ୍ନ ଆବେଗରେ ଏତିକି କହିବା ବେଳକୁ ଭାବନାର ଆଖି ଛଳଛଳେଇ ଯାଇଥିଲା ।

ଭାବନା ଆଖିକୋଣୁ ଲୁହପୋଛି ପ୍ରକୃତିସ୍ଥ ହେବାପରେ ମଧୁମିତା ପଚାରିଲେ, "ମା' ଭାବନା ! କିଛି ମନେ କରିବୁନି । ଆଜି ପର୍ଯ୍ୟନ୍ତ ତୋ' ବାପା ମା, ଘର ପରିବାର କଥା ଆମେ କିଛି ଜାଣିନୁ, ସେଥିପାଇଁ ପଚାରୁଚି । ତତେ ଶ୍ରଦ୍ଧାମୟୀ ମା' କେଉଁ ପରିସ୍ଥିତିରେ କେଉଁଠୁ ପାଇଥିଲେ ? ଆଉ ତୋ' ବାପା ମା ? ?" ମଧୁମିତାଙ୍କ ଆଖିରେ ଆଖିଏ ଜିଜ୍ଞାସା !

ଭାବନା ନିଃଶଙ୍କୋଚରେ କହିଲା, "ମା' ! ମୁଁ ଗୋଟେ ଗୁଜରାଟି ଝିଅ, ଆପଣମାନେ କେବଳ ଏତିକି ଜାଣିଥିବେ । ତା'ଛଡ଼ା ମୋ' ଘର ପରିବାର, ମୋ' ବାପା-ମା ଆଉ ମୋ' ଅତୀତ ବିଷୟରେ କିଛି ବି ଜାଣିନଥିବେ, ଯାହା ଆପଣମାନଙ୍କୁ ବହୁତ ଆଗରୁ ହିଁ ଜାଣିବାର ଥିଲା । ସେ ସବୁ କହିବାପାଇଁ ମତେ କେବେ ସୁଯୋଗ ମଧ୍ୟ ମିଳିନି । ଭାବୁଚି, ଆଜି କହିଦେଲେ ମତେ ବି ଟିକେ ହାଲ୍‌କା ଲାଗିବ । ଶୁଣନ୍ତୁ........ମୁଁ ସେତେବେଳେ ମାତ୍ର ଦେଢ଼ବର୍ଷର ! ବାପା-ମାଆଙ୍କର ପ୍ରଥମ ସନ୍ତାନ । ବାପା ଥିଲେ ଜଣେ ଡିଫେନ୍ସ ଅଫିସର୍ । ଦିଲ୍ଲୀରେ ଆମେ ରହୁଥାଉଁ । ବାପା ଆମକୁ ନେଇ ଥରେ ଅମୃତସର୍ ବୁଲିବାକୁ ଯାଇଥିଲେ । ଟୁର୍ ସାରି ଆମେ ଫେରିବା ସମୟରେ ହେଲା ଟ୍ରେନ୍ ଦୁର୍ଘଟଣା ! ରାତି ପ୍ରାୟ ଦୁଇଟା ! ଆକ୍ସିଡାଣ୍ଟ୍ ଥିଲା ଭୀଷଣ ! ପ୍ରାୟ ଷାଠିଏ ଜଣ ଯାତ୍ରୀ ପ୍ରାଣ ହରେଇଥିଲେ । ସେଥିରେ ମୋ' ବାପା ଆଉ ମାମା, ଦୁହେଁଯାକ ଚାଲିଗଲେ ! ଅତି ଆଶ୍ଚର୍ଯ୍ୟଜନକ ଭାବେ ବଞ୍ଚିଯାଇଥିଲି ମୁଁ ।

କମ୍ପାର୍ଟମେଣ୍ଟ୍ ବାହାରକୁ ଛିଟ୍‌କି ପଡ଼ି ରାହାଧରି କାନ୍ଦୁଥିଲି । ଓଲଟି ପଡ଼ିଥିବା ଟ୍ରେନ୍‌ବଗି ଭିତରୁ ଶହଶହ ଲୋକଙ୍କ ବିକଳ ଚିତ୍କାର ଶୁଭୁଥିଲା । କିଛିଲୋକ ଅବଶ୍ୟ ନିଖୁଣ ଅବସ୍ଥାରେ ବଞ୍ଚିଯାଇଥିଲେ । ସେମାନଙ୍କ ଭିତରେ ଥିଲେ ମା'ଶ୍ରଦ୍ଧାମୟୀ । ମୋ' ବିକଳ କାନ୍ଦ ଶୁଣି ସେ ମୋତେ କୋଳେଇ ନେଇଥିଲେ । ରେଳବାଇର ସହାୟତା-ଗାଡ଼ି ଆସି ପହଂଚିବା ବେଳକୁ ମା'ଶ୍ରଦ୍ଧାମୟୀଙ୍କ ଉଷୁମ୍ କୋଳରେ ମୁଁ ନିଘୋଡ଼ ନିଦରେ ଶୋଇଥାଏ । ସକାଳେ ନିଦ ଭାଙ୍ଗିବା ବେଳକୁ ଯେଉଁ କରୁଣାମୟୀଙ୍କ ହସହସ ମୁହଁ ମୁଁ ଦେଖିଲି, ସେଦିନୁ ସିଏ ହେଇଗଲେ ମୋ'ର ମା' ! ସେ ବୟସରେ ମୋ' ଜନ୍ମକଲା ମା' ବାପାଙ୍କୁ ମୁଁ ଠିକ୍‌ରେ ଚିହ୍ନି ବି ନଥିଲି । ତେଣୁ ବୋଧେ ଏ ମାଆଙ୍କୁ ଦେଖିବାପରେ ସେ ଦୁଇ ମୁହଁକୁ ସହଜରେ ଭୁଲିଗଲି ।

ମା'ଶ୍ରଦ୍ଧାମୟୀଙ୍କ ବୟସ ସେତେବେଳକୁ ବୋଧେ ତିରିଶି ବର୍ଷ ହେଇଥିବ । ତାଙ୍କ ଘର, ପରିବାର, ବାପା-ମାଆଙ୍କ ବିଷୟରେ ମୁଁ କିଛି ଜାଣିନି କି ଜାଣିବାର ସୁଯୋଗ ବି ମିଳିନି ମତେ । କେବଳ ଏତିକି ଜାଣିଥିଲି, ଗୁଜରାଣ ମେଣ୍ଟେଇବାପାଇଁ ସେ ଏଇ ମୁମ୍ବାଇ ସହରରେ ରହି କିଛିଗୋଟେ ଚାକିରି କରୁଥିଲେ । ଭଡ଼ାଘରେ ଏକାଟିଆ ରହୁଥିଲେ ।

ମୁଁ ଥିଲି ତାଙ୍କର ପ୍ରଥମ ପାଳିତା କନ୍ୟା । ମତେ କୋଳେଇ ନେବା ପରେ ତାଙ୍କ ଜୀବନର ଗତିପଥ ପୂରାପୂରି ବଦଳି ଯାଇଥିଲା । ସେ କିଛି ଐଶ୍ୱରୀୟ ପ୍ରେରଣା ପାଇଲେକି କ'ଣ କେଜାଣି, ସେଦିନୁ ସେ ନିଜର ସୁଖ ସୁବିଧାକୁ ଭୁଲି ଲାଗିପଡ଼ିଲେ ଅନାଥ ପିଲା ସଂଗ୍ରହରେ । ଖୋଜି ଖୋଜି ସେ ବାପା ମା' ଛେଉଣ୍ଡ, ରାସ୍ତା କଡ଼ର ଅନାଥ ଅର୍କ୍ଷିତ ପିଲାଙ୍କୁ ଆଣି ଘରେ ପାଳିବା ଆରମ୍ଭ କଲେ । ଲୋକେ କହିଲେ, ଏ ଗୋଟେପ୍ରକାର ପାଗଳାମି !

ହେଇପାରେ, ଆମଭଳି ଅନାଥ ଶିଶୁମାନଙ୍କ ଅସହାୟତା ତାଙ୍କୁ ବୋଧେ ପାଗଳ କରିଦେଉଥିଲା ।

ଅଳ୍ପଦିନ ଭିତରେ ମା'ଶ୍ରଦ୍ଧାମୟୀଙ୍କ ଭଡ଼ାଘରଟି ପାଲଟିଗଲା ଗୋଟେ ଅନାଥାଶ୍ରମ । ମୋ' ପରେ ଆଉ ଛ'ଜଣ ଶିଶୁଙ୍କୁ ସେ ଆପଣେଇ ଆଣିଥିଲେ । ଆମେ ଥିଲୁ ଚାରି ଝିଅ, ତିନି ପୁଅ । ସମସ୍ତେ ପ୍ରାୟ ଏକା ବୟସର । ଯଥାସମ୍ଭବ ସବୁ ଶିଶୁଙ୍କ ଯତ୍ନ ସେ ନିଜେ ହିଁ ନଉଥିଲେ । ତା' ସହିତ ସେ ଦରମା ଦେଇ ରଖିଥିଲେ ଜଣେ ଧାଇମାଆଙ୍କୁ ।

ଆମେ ଧୀରେଧୀରେ ବଡ଼ହେଲୁ । ସ୍କୁଲ୍ ଗଲୁ । କଲେଜ୍ ଗଲୁ । ମା'ତାଙ୍କ ଦରମା ପଇସା ସହିତ କିଛିକିଛି ବ୍ୟାଙ୍କ୍ ଲୋନ୍ ଆଣି ଆମର ସବୁ ପ୍ରକାର ଖର୍ଚ୍ଚ ଭରଣା କରୁଥିଲେ । ତା' ସହିତ ସିଏ ଆମକୁ ସରଳ, ନିରାଡମ୍ବର ଜୀବନ ଜିଇଁବାର କଳା ଶିଖାଉଥିଲେ । ନିଜ ଆଦର୍ଶରେ ଆମକୁ ଗଢ଼ିବାର ସ୍ୱପ୍ନ ଦେଖୁଥିଲେ । ଆମ ଭିତରୁ ଯିଏ ଯେଉଁ ପାଠ ପ୍ରତି ଆଗ୍ରହୀ, ତାକୁ ସେହି ଶିକ୍ଷାଅନୁଷ୍ଠାନରେ ପଢ଼ଉଥିଲେ । ଏମିତିରେ ଆମେ ଦିନେ ବି ଅନୁଭବ କରିନୁ ଯେ, ଆମେ ଅନାଥ, ମା'ଶ୍ରଦ୍ଧାମୟୀଙ୍କ ପାଳିତ ସନ୍ତାନ ବୋଲି । ନ'ଜାଣିବା ଲୋକେ

କହନ୍ତି, ଆମେ ଗୋଟେ ମା' ପେଟର ସାତ ଭାଇ-ଭଉଣୀ ! ଏବେ ମୋ' ଅନ୍ୟ ଛଅ ଭାଇ-ଭଉଣୀ ଦେଶର ଉଚ୍ଚ ପଦ-ପଦବୀରେ ଚାକିରି କରି ଭଲରେ ଅଛନ୍ତି ।

ମା' ଶ୍ରଦ୍ଧାମୟୀଙ୍କ ଜୀବନ ଆଜି ବି ଅନାଥଙ୍କ ସେବାରେ କଟୁଛି ! ଆମ ଦେଶର ଅନେକ ଅନାଥାଶ୍ରମ ମା' ଚଲାଉଛନ୍ତି । ଆଜି ମୁମ୍ବାଇରେ ତ ସିଏ କାଲି କୋଲ୍‌କାତାରେ । ତାଙ୍କ ଦର୍ଶନ ମିଳିବା ଆମପାଇଁ ବି ସ୍ୱପ୍ନ !" ଭାବ୍‌ନା ଏତିକି କହି ଦୀର୍ଘଶ୍ୱାସ ଛାଡ଼ିଲା ।

ଭାବ୍‌ନା ଜୀବନର କରୁଣ କାହାଣୀ ମଧୁମିତାଙ୍କ ମନକୁ ଅଶ୍ରୁସିକ୍ତ କରିଦେଇଥିଲା । ସେ ଚଷମା ଖୋଲି ପଣତ କାନିରେ ଲେନସ୍ ପୋଛୁ ପୋଛୁ ଭାବୁଥିଲେ, ରକ୍ତର ସମ୍ପର୍କ ଆଉ ହୃଦୟର ସମ୍ପର୍କ ଭିତରୁ ମହାନ୍ କେଉଁଟି ? ସତରେ..... ! ଦେବକୀ ଆଉ ଯଶୋଦା, ଜଣେ ଜନମ ଦେଲା, ଆଉ ଜଣେ ହୃଦୟ ଦେଲା । ଏମାନଙ୍କ ମଧ୍ୟରୁ ଶ୍ରେଷ୍ଠ କିଏ ? ସେ ମନକୁମନ ପ୍ରଶ୍ନ କରୁଥିଲେ ।

ଭାବ୍‌ନା ତା ଶାଶୁଙ୍କ ଭାବାକୁଳ ମୁହଁକୁ ନିରୀକ୍ଷଣ କରି କହିଲା, "ମା' ଆପଣଙ୍କୁ ଦେଖିଲେ ମା'ଶ୍ରଦ୍ଧାମୟୀଙ୍କୁ ଦେଖିବା ଭଳି ଲାଗୁଚି । ସିଏ ବି ପ୍ରାୟ ଆପଣଙ୍କ ବୟସର ହେବେ ।"

- "ଜଣେ ଦେବୀଙ୍କ ସହିତ ମୋ'ଭଳି ଜଣେ ସ୍ୱାର୍ଥୀ ମଣିଷକୁ କାହିଁକି ତୁଳନା କରୁଚୁରେ ମା' ? ତୋ କଥାରୁ ମୁଁ ଯାହା ଜାଣିଲି, ସିଏ ତ ତ୍ୟାଗ ଆଉ ସେବାର ଦେବୀ ଜଣେ । ଏ ଯୁଗରେ, ଆମ ସମାଜରେ ତାଙ୍କ ଭଳି ମହୀୟସୀ ମହିଳା ଅଛନ୍ତି, ଏକଥା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି !"

"ଆପଣ ତାଙ୍କ ଫଟୋ ଦେଖିବେ ଆସୁନାହାନ୍ତି ।" ଏହା କହି ଭାବନା ଶାଶୁଙ୍କ ହାତଧରି ଠାକୁରଘରକୁ ନେଇଗଲା । ମଧୁମିତା ଦେଖିଲେ, ଠାକୁରଘର ପିଣ୍ଡି ଉପରେ ରଖାହେଇଚି ସୁଦୃଶ୍ୟ ଫ୍ରେମ୍‌ର ବଡ଼ ଫଟୋଟେ । ଆଶ୍ୱୀନ ରାତିର ନିର୍ମଳ ଆକାଶରେ ଉଦ୍ଭାସିତ ଉଜ୍ଜ୍ୱଳ ଜହ୍ନ ଭଳି ଫଟୋରେ ମା'ଶ୍ରଦ୍ଧାମୟୀଙ୍କ ସୁନ୍ଦର ପୂର୍ଣ୍ଣାବୟବ ଛବି । ଶୁଭ୍ରବସ୍ତ୍ର ପରିହିତା ଅପୂର୍ବ କାନ୍ତିଯୁକ୍ତ ପ୍ରୌଢ଼ା ! ପ୍ରଶାନ୍ତ ମୁଖମଣ୍ଡଳ । ଧ୍ୟାନମଗ୍ନ ନିମିଳିତ ଚକ୍ଷୁ ଯୁଗଳ !

ମା'ଶ୍ରଦ୍ଧାମୟୀଙ୍କ ଫଟୋ ଉପରେ ଆଖି ପଡ଼ିବା ମାତ୍ରେ ମଧୁମିତାଙ୍କ ମନ ଭିତରେ ଖେଳିଗଲା ଗୋଟେ ଅଦ୍ଭୂତ ଆଲୋଡ଼ନ ! ସେ ନିଜ ଆବେଗକୁ ସମ୍ବରଣ କରିପାରିଲେନି । ପୁଣିଥରେ ଚଷମାର ଲେନସ୍ ପୋଛି ନଇଁପଡ଼ି ନିରୀକ୍ଷଣ କଲେ ଫଟୋକୁ ଏବଂ ଚମକିପଡ଼ିଲେ ! ! ହଜିଲା ଧନ ଅଚାନକ୍ ପାଇଲା ଭଳି ଉଜ୍ଜ୍ୱଳ ହୋଇଉଠିଲା ତାଙ୍କ ଆଖି ! ବିସ୍ମୟ ଓ ଆନନ୍ଦରେ ହତବାକ୍ ସେ ! ଫୋଟଟିକୁ ଉଠେଇଆଣି ପରମ ଆବେଗରେ ଜଡ଼ାଇ ଧରିଲେ ସେ ଛାତିରେ । ଆଖିରୁ ତାଙ୍କର ବହିଗଲା ଦୁଇଧାର ଅଶ୍ରୁ ! ସମ୍ଭବତଃ ଉଦ୍‌ବେଗପୂର୍ଣ୍ଣ ଆନନ୍ଦର !

ଶାଶୁଙ୍କର ଏଭଳି ବିଚିତ୍ର ଆଚରଣ ଦେଖି ଭାବନା ବିସ୍ମିତ ! ମଧୁମିତା ପ୍ରକୃତିସ୍ଥ ହେବାପରେ ଭାବନା ଆସ୍ତେକରି ତାଙ୍କ କାନ୍ଧ ଉପରେ ହାତରଖି ପଚାରିଲା, "ମା' ଆପଣ ଶ୍ରଦ୍ଧାମୟୀ ମା'ଙ୍କୁ ଜାଣନ୍ତି ?"

ମଧୁମିତା ନିରବ ! ନିରବରେ ସେ ଠାକୁରଘରୁ ଉଠି ଅସିଲେ ଟେବୁଲ୍ ପାଖକୁ । ଭାବନା ପୁଣିଥରେ ପଚାରିଲା, "ଆପଣ ଏମିତି ଭାବପ୍ରବଣ ହେଇଗଲେ ଯେ ମା' ?

ମଧୁମିତା ସ୍ମିତ ହସି କହିଲେ, "ମା' ଭାବନା ! ସମୟର ଖେଳ ବଡ଼ ବିଚିତ୍ର ରେ ! ଦୀର୍ଘ ବତିଶି ବର୍ଷ ପରେ ମୁଁ ଆଜି ମୋ' ଭଉଣୀ ଶ୍ରଦ୍ଧାକୁ ପାଇଲି !"

- "ଆପଣଙ୍କ ଭଉଣୀ ! ! ମାନେ ? ମୁଁ କିଛି ବୁଝି ପାରିଲିନି, ମା' !" ଭାବନାର ଆଖି-ସମୁଦ୍ରରେ କୌତୂହଳର ଅଜସ୍ର ଜୁଆର ।

ମଧୁମିତା କହିଲେ,"ଶ୍ରଦ୍ଧାମୟୀ ମୋ' ଭଉଣୀ ! ଗୋଟେ ମା'ପେଟର ! ! କେବଳ ସେତିକି ନୁହେଁ, ଆମର ଗୋଟାଏ ହୃଦୟ ଦି'ଭାଗ ହେଇଛି ! ଆମେ ଯାଆଁଳା ଭଉଣୀ ! ! ସିଏ ମୋ'ଠୁଁ ମାତ୍ର ତିନି ମିନିଟ୍‌ରେ ବଡ଼ !"

ଭାବନା ପରମ ଆବେଗରେ ଶାଶୁଙ୍କୁ ଭିଡ଼ିଧରି କହିଲା, "ମା' ଆପଣ ଏ କ'ଣ କହୁଛନ୍ତି ! ମୁଁ ମୋଟେ ବିଶ୍ୱାସ କରିପାରୁନି ! !"

- "ହଁ' ରେ ମା' ! ଆଜିଠୁଁ ପ୍ରାୟ ବତିଶି ବର୍ଷ ତଳୁ ସେ ଘର ଛାଡ଼ିଛି ! ଆଜି ତାକୁ ହଠାତ୍ ଏ' ରୂପରେ ପାଇବି ବୋଲି ମୁଁ କଳ୍ପନା କରିନଥିଲି । ଆଜି ଯଦି ମୋ' ବାପା-ମା' ଆଉ ଜେଜେ ଥାଆନ୍ତେ, ଶ୍ରଦ୍ଧାକୁ 'ମା'ଶ୍ରଦ୍ଧାମୟୀ' ରୂପରେ ଦେଖି କେତେ ଖୁସି ନ ହୁଅନ୍ତେ !

ବିଶେଷକରି ମୋ' ଜେଜେ ! ସିଏ ଶ୍ରଦ୍ଧାକୁ ଖୁବ୍ ଭଲ ପାଉଥିଲେ । ଶ୍ରଦ୍ଧା ଘରଛାଡ଼ି ଚାଲିଗଲା ପରେ, ବହୁତ ଖୋଜାଖୋଜି କରି, ପୋଲିସ୍, ପେପର୍, ରେଡ଼ିଓ-ଟିଭିରେ ଖବର ଦେଇଦେଇ ଆମେ ଯେତେବେଳେ ହତାଶ ହେଇଗଲୁ, ଜେଜେ ଆମକୁ ସାନ୍ତ୍ୱନା ଦେଇ କହିଥିଲେ, - ଶ୍ରଦ୍ଧା ତା' ବିବାହିତ ଜୀବନରେ ଯେଉଁ ଝଡ଼ର ସାମନା କରିଚି, ସେଥିରେ ସେ ଭାଙ୍ଗିପଡ଼ିନି, ବରଂ ତା' ଆତ୍ମବିଶ୍ୱାସ ବହୁତ ବଢ଼ିଯାଇଛି । ଶ୍ରଦ୍ଧା ଘର ଛାଡ଼ିଚି କିଛି ମୋଟେ ମହତ ଉଦ୍ଦେଶ୍ୟ ଥାଇ । ତମେମାନେ ବ୍ୟସ୍ତ ହୁଅନି !

ଜେଜେ ଆଜି ସ୍ୱର୍ଗରେ ଥାଇ ଜାଣୁଥିବେ, ତାଙ୍କ ଭବିଷ୍ୟବାଣୀ କେତେ ନିର୍ଭୁଲ୍ ଥିଲା !"

ଭାବନା କହିଲା, "ମା' ! ଜେଜେ ନିଶ୍ଚୟ ଶ୍ରଦ୍ଧାମୟୀଙ୍କ ଜୀବନକୁ ଅତି ନିକଟରୁ ପଢ଼ିଥିବେ । ମୁଁ ଅନେକ ସଫଳ ମଣିଷଙ୍କ ସଂଘର୍ଷମୟ ଜୀବନକଥା ପଢ଼ିଛି । ଜୀବନରେ ବିପର୍ଯ୍ୟୟ ଆଉ ବିଫଳତାକୁ ଯେଉଁମାନେ ସଫଳତାର ଚାବିକାଠି ରୂପେ ବ୍ୟବହାର କରିଛନ୍ତି, ସେମାନେ ଦିନେ ମହାନ ହେଇଛନ୍ତି । ମା' ଆମକୁ ନୀତିଶିକ୍ଷା ଦେଇ କହନ୍ତି, ଜୀବନ-ପଥରେ ଯିଏ ଝଡ଼-ଝଞ୍ଜାକୁ ଅତିକ୍ରମ କରି ଆଗକୁ ଯିବାର ସାହସ ରଖିବ, ସିଏ 'ଇଗଲ୍' ଭଳି ଅନେକ

ଉପରକୁ ଉଠିପାରିବ, ନହେଲେ 'ଘରଚଟିଆ' ଭଳି ସାରା ଜୀବନ ଚାଳିଆ ଉପରେ ହିଁ ଉଡୁଥିବ !"

ସତରେ ! ଶ୍ରଦ୍ଧାମୟୀଙ୍କ ଉଡ଼ାଣ ଆମ ଭାବନା ଠାରୁ କେତେ ଯେ ଉଚ୍ଚରେ ! ମଧୁମିତା ବୋଧେ ଅତିମାତ୍ରାରେ ଭାବପ୍ରବଣ ହୋଇପଡ଼ିଥିଲେ ଶ୍ରଦ୍ଧା କଥା ଭାବି । ଶ୍ରଦ୍ଧା ସହିତ ତାଙ୍କ ଶୈଶବ,କୈଶୋର ଓ ପ୍ରାକ୍‌ଯୌବନର ଅଭୁଲା ମୁହୂର୍ତ୍ତ ଗୁଡ଼ିକ ଚଳଚ୍ଚିତ୍ରର ଫ୍ଲାସ୍‌ବ୍ୟାକ୍ ଭଳି ମନଶ୍ଚକ୍ଷୁରେ ଭାସି ଉଠୁଥିଲା ବାରମ୍ବାର ।

ଶାଶୁଙ୍କ ଅନ୍ୟମନସ୍କତାକୁ ଲକ୍ଷ୍ୟକରି ଭାବନା କପେ କଫି ବନେଇ ଆଣି ରଖିଲା ଟେବୁଲ୍ ଉପରେ । ପଚାରିଲା, "ମା' ! ଏବେ ଆପଣଙ୍କଠୁଁ ଶୁଣିଲି, ସେ ବିବାହିତା । ଘରଛାଡ଼ି ଚାଲିଆସିଛନ୍ତି ! ହେଲେ କାହିଁକି ମା', ସେ ଏଭଳି କଠୋର ପଦକ୍ଷେପ କାହିଁକି ନେଲେ ?"

"ସେ ଗୋଟେ ଲମ୍ବା କାହାଣୀ ରେ ମା' !" ମଧୁମିତା ଭାବନାକୁ ସାମନା ଚେୟାରରେ ବସିବାକୁ କହି ଆରମ୍ଭ କଲେ, "ତୋ' ଶ୍ରଦ୍ଧାମୟୀ ମା' ବିବାହ କରିଥିଲେ । ବିବାହର ମାନେ ଯଦି ଅଗ୍ନିକୁ ସାକ୍ଷୀରଖି ସାତଘେରା ବୁଲିବା ଆଉ ବ୍ରାହ୍ମଣଙ୍କ ମନ୍ତ୍ରପାଠରେ ହିଁ ସୀମିତ, ତା'ହେଲେ ସେ ବିବାହ କରିଥିଲେ । ଦାମ୍ପତ୍ୟ ଜୀବନ ଯଦି ପତିସେବା କରି ପତ୍ନୀଧର୍ମ ପାଳନ କରିବାରେ ହିଁ ସୀମାବଦ୍ଧ, ତା'ହେଲେ ଶ୍ରଦ୍ଧାମୟୀ ତାହା ବି କରିଥିଲେ । ହେଲେ ମା' ଭାବନା ! ବିବାହର ମୂଳଲକ୍ଷ୍ୟ କେବଳ ସେଇୟା ନୁହେଁ, କିଛିଟା ଅଲଗା । ପ୍ରକୃତି 'ପୁରୁଷ' ଆଉ 'ନାରୀ' ଏ ଦୁଇ ଜାତିକୁ ଗଢ଼ିଛି ସୃଷ୍ଟିକୁ ବଜାୟ ରଖିବାପାଇଁ । ମଣିଷ ବିବାହର ବିଧାନ କରିଛି ଶୃଂଖଳିତ ଭାବେ ପ୍ରକୃତିର ଏହି ପବିତ୍ର ଉଦ୍ଦେଶ୍ୟ ସମ୍ପାଦନ କରିବାପାଇଁ । ହେଲେ ଶ୍ରଦ୍ଧାପାଇଁ ଏହା ଗୋଟେ ଦୁଃସ୍ୱପ୍ନ ହେଇ ରହିଗଲା !" ମଧୁମିତାଙ୍କ କଣ୍ଠସ୍ୱର ବାଷ୍ପାକୁଳ ହୋଇ ଉଠିଲା ।

ଭାବନା ଶାଶୁଙ୍କ ହାତମୁଠାକୁ ଭିଡ଼ିଧରି କହିଲା, "ଥାଉ ମା' ! ଯେଉଁ କଥା ଆପଣଙ୍କ ମନକୁ କଷ୍ଟ ଦଉଚି, ସେଭଳି କଥା ଶୁଣିବା ମୋ'ର ଲୋଡ଼ାନାଇଁ ।"

ମଧୁମିତା କହିଲେ, "ନାଇଁରେ ମା, ତୁ ଏଘରର ବୋହୂ । ମୋ' ପରିବାରର ଇତିହାସ ତୁ ଜାଣିବା ଉଚିତ,...ଶୁଣ୍ ! ଆମେ ଦୁଇ ଭଉଣୀ ଯାଆଁଳା, ସମବୟସୀ । ଏବେ ସିନା ଆମ ଦୁହିଁଙ୍କ ଚେହେରା ଅଲଗା ଲାଗୁଚି, ହେଲେ ପିଲାବେଳେ ଆମ ଚେହେରା ଆଉ ଚରିତ୍ରରେ ଅନେକ ସମାନତା ଥିଲା ।

ବୟସ ବଢ଼ିବା ସହିତ ଆମ ଚେହେରାରେ ପାର୍ଥକ୍ୟ ମଧ୍ୟ ବଢ଼ିଲା । ଆମ ରୁଚି-ଅରୁଚି,ଗୁଣ-ଅବଗୁଣ ମଧ୍ୟ ଅଲଗା ହେଲା । ଆମେ ଗ୍ରାଜୁଏସନ୍ ଶେଷ କଲୁ । ନିଜ କ୍ୟାରିଆର୍ ଗଢ଼ିବାକୁ ସ୍ୱପ୍ନ ଦେଖିଲୁ । ତେଣେ କିନ୍ତୁ ଆମ ବାବା-ମାମା ପ୍ରସ୍ତୁତ ହଉଥାନ୍ତି ଟଂଟଳ ବାହାଦେଇ ଆମକୁ ଘରୁ ବିଦା କରିବାକୁ । ସେ ସମୟର ସାମାଜିକ ବ୍ୟବସ୍ଥା ହିଁ ସେମିତି ଥିଲା । ଦୁଇଦୁଇଟା

ଝିଅକୁ ଯାନି-ଯୌତୁକ ଦେଇ ଶାଶୁଘରକୁ ପଠାଇବା ଜଣେ ମଧ୍ୟବିତ୍ତ ବାପା ପାଇଁ ବଡ଼କଥା ଥିଲା ।

ସେଠୁ ଆରମ୍ଭ ହେଲା ବର ଖୋଜା । ଶ୍ରଦ୍ଧା ଚାରି ମିନିଟରେ ହେଲେ ବି ମୋ'ଠୁଁ ବଡ଼ । ଘରେ ରହି ପଢ଼ାପଢ଼ି କରେ । ତେଣୁ ପ୍ରଥମେ ତା'ପାଳି ପଡ଼ିଲା । ଜଣକ ପରେ ଜଣେ କ୍ୟାଣ୍ଡିଡେଟ୍ ଆସି ଶ୍ରଦ୍ଧାକୁ ଦେଖିଲେ....ଗଲେ, ମାତ୍ର ଗୋଟେ ବି ସମ୍ବନ୍ଧ ଆଗକୁ ବଢ଼ି ପାରିଲାନି ।"

"ଶ୍ରଦ୍ଧାମୟୀଙ୍କ ଭଳି ଜଣେ ସୁନ୍ଦରୀ, ଶିକ୍ଷିତା, ଗୁଣବତୀ ଝିଅକୁ କେହି ପସନ୍ଦ କରୁନଥିଲେ ନା' କ'ଣ ?" ପ୍ରଶ୍ନ କଲା ଭାବନା ।

ମଧୁମିତା କହିଲେ, "ନା ! କଥା ପସନ୍ଦ ଅପସନ୍ଦର ନଥିଲା, ଥିଲା ଝିଅ-ପୁଅଙ୍କ ଜାତକ ଅମେଳର ! କେହି ଜଣେ ବି ପ୍ରାର୍ଥୀର ଜାତକ ଶ୍ରଦ୍ଧାର ଜାତକ ସାଙ୍ଗରେ ମେଳ ଖାଉନଥିଲା ! ଆମ ସମୟରେ ବିବାହ ପୂର୍ବରୁ ବର-କନ୍ୟାଙ୍କ ଜାତକ ମେଳ ଉପରେ ବହୁତ ଗୁରୁତ୍ୱ ଦିଆଯାଉଥିଲା । ଆଜି ତମେମାନେ ସେ ଚକ୍ରବ୍ୟୁହରୁ କିଛିଟା ମୁକୁଳି ସାରିଲଣି, ହେଲେ ସେତେବେଳେର ପ୍ରଥା,ପରମ୍ପରା ଭିନ୍ନ ଥିଲା । ଆମ ଘରେ ବାବା,ମାମା ଆଉ ମୋ'ଜେଜେ ଜ୍ୟୋତିଷ ବିଦ୍ୟାରେ ବହୁତ ବିଶ୍ୱାସ କରୁଥିଲେ । ଘରେ ଆମର ଯାହାବି ଶୁଭ-ଅଶୁଭ କାମ ହୁଏ, ପାଞ୍ଜି ଗଣନା ଅନୁସାରେ ହିଁ ହୁଏ । ଝିଅପାଇଁ ବର ଖୋଜିବା କାମଟା ସେଥିରୁ କେମିତି ବାଦ୍ ପଡ଼ନ୍ତା ? ଏଥିପାଇଁ ଜଣେ ବଡ଼ ଜ୍ୟୋତିଷ ଆସୁଥିଲେ ଆମ ଘରକୁ । ଜାତକ ଦେଖି ବିବାହ ମେଳକ ଗଣନା ସିଏ ହିଁ କରନ୍ତି ।

ମୁଁ ଜାଣିବାରେ ଶ୍ରଦ୍ଧା ପାଇଁ କୋଡ଼ିଏରୁ ଅଧିକ ପ୍ରସ୍ତାବ ଆସିଥିବ । ଖୁବ୍ ଭଲଭଲ ଘରର ପ୍ରସ୍ତାବ ! କିନ୍ତୁ ସବୁ କଟିଯାଏ ଜାତକ ଅମେଳ ପାଇଁ ! ଜ୍ୟୋତିଷ ମହାଶୟ ଆସି ଖଡ଼ିରେ ଦି'ଚାରିଟା ଗାର ଆଉ ମୁଣ୍ଡଳି ଟାଣି ତା'ଉପରେ ବଡ଼ ଛକିଟିଏ କାଟିଦେଇ କହନ୍ତି, "ନାଃ ! ଇଏ ବି 'ଅହି-ନକୁଳ ଯୋଗ' ! ସାରା ଜୀବନ ଅଶାନ୍ତି ! ବିବାହ ବିଚ୍ଛେଦ ବି ହେଇପାରେ ! !"

ଜ୍ୟୋତିଷ ମୁହଁରୁ ଏଭଳି ଭବିଷ୍ୟବାଣୀ ଶୁଣିଲେ କୋଉ ବାପା-ମା' ଭଲା ଝିଅ ଦେବାକୁ ସାହସ କରିବ କହିଲୁ ? ପ୍ରସ୍ତାବ ଭାଙ୍ଗିଯାଏ । କେତେକ ପୁଅଘର ମତ ଦେଇଥିଲେ, ଜାତକ ମେଳ ନ'କରି ଆମେ ପୁଅ-ଝିଅଙ୍କ ମେଡ଼ିକଲ୍ ଚେକ୍‌ଅପ୍ କରି ସମ୍ବନ୍ଧ କରିବା । କିନ୍ତୁ ଏ ପ୍ରସ୍ତାବକୁ ଗ୍ରହଣ କରିବା ପାଇଁ ଆମ ବିଚାର ସେତେଟା ପ୍ରଶସ୍ତ ହେଇନଥିଲା । ଜାତକ ମେଳର ଅନ୍ଧଗଳିରେ ଆମେ ବାଟ ଖୋଜୁଥିଲୁ । ଏଭଳି ଖୋଜୁଖୋଜୁ ଅନେକ ଭଲ ପ୍ରସ୍ତାବ ଆମ ହାତରୁ ଖସିଗଲା । ବାବା, ମାମା ହତୋତ୍ସାହ ହେଇଗଲେ । ଜେଜେ ଦୁଶ୍ଚିନ୍ତାରେ ଭାଙ୍ଗିପଡ଼ିଲେ । ଏତେ ସମ୍ବନ୍ଧ ନାକଚ ହେଇଯିବା ପରେ ଶ୍ରଦ୍ଧା ମଧ୍ୟ ଧୈର୍ଯ୍ୟ ହରେଇ

ସାରିଥିଲା । ତା'ମନରେ ବିବାହ ପ୍ରତି ବିତୃଷ୍ଣା, ଜୀବନ ପ୍ରତି ବୈରାଗ୍ୟ ଦେଖାଦେଲା । ତା'ଦେହ,ମନ,ଯୌବନ କ୍ରମେ ମଉଳିବାକୁ ଲାଗିଲା । ଫୁଲତୋଡ଼ାରେ ପାଣି ସିଂଚିସିଂଚି ସତେଜ ରଖିବା ଭଳି ଘରେ ତାକୁ ବୁଝେଇ-ବାଝେଇ ମନେଇ ରଖିବାକୁ ଚେଷ୍ଟା କରୁଥିଲେ ।

ଯା'ହେଉ ଶେଷରେ ଆଉଗୋଟେ ଭଲ ପ୍ରସ୍ତାବ ଆସିଲା । ପୁଅଟି ବ୍ୟାଙ୍କ୍ ପି:ଓ । ଦିଲ୍ଲୀରେ ଥାଏ ! ଘର-ପରିବାର ବିଷୟରେ କିଛି ଖୁଣିବାର ନାହିଁ । ଶ୍ରଦ୍ଧାକୁ ଦେଖୁଦେଖୁ ସେମାନ୍‌କର ପସନ୍ଦ ହେଇଗଲା । ଆମର ତ ଅମଙ୍ଗ ହେବାର କାରଣ ହିଁ ନଥିଲା । ବାକି ରହିଲା, ଜାତକ ଶୁଝିବା କଥା । ଜ୍ୟୋତିଷେ ଆସି ଖଡ଼ି ଧରି ବସିଲେ । ଆମ ସମସ୍ତଙ୍କ ଆଖି ତାଙ୍କ ଖଡ଼ି ଗୋଟାଳି ଉପରେ ! ଖଡ଼ି କ'ଣ ଡାକୁଚି ଜାଣିବାକୁ ସମସ୍ତେ ବ୍ୟଗ୍ର ! ଏଥର ବି ଚଡ଼କ ପଡ଼ିବନି ତ ! ।

ଜ୍ୟୋତିଷେ ବହୁତ ସମୟ ଧରି ହିସାବନିକାସ କରିବା ପରେ ଖଡ଼ିକୁ ମୁଣ୍ଡରେ ଛୁଆଁଇ କହିଲେ, 'ଏଇଟା ରାଜଯୋଟକ !'

ଓଃ ! ଏହି ଗୋଟିଏ ଶବ୍ଦ ଆମ ମନରେ ଏତେ ଆନନ୍ଦ, ଉତ୍ସାହ ଭରିଦେଲା ଯେ, ତା'ପର ଦିନରୁ ହିଁ ଆମ ଘରେ ଆରମ୍ଭ ହେଇଗଲା ବାହାଘର ଆୟୋଜନ !

ଦୁନିଆର ସବୁଝିଅ ଭଳି ଶ୍ରଦ୍ଧା ବି ରୂପର, ଗୁଣର ସ୍ୱାମୀଟେ ପାଇବା ପାଇଁ ଠାକୁରଙ୍କୁ ଡାକୁଥିଲା । ବିଳମ୍ବରେ ହେଲେ ମଧ୍ୟ ଠାକୁରେ ତା' ଗୁହାରୀ ଶୁଣିଲେ ବୋଲି ଆମେ ନିଶ୍ଚିନ୍ତ ହେଲୁ । ଭଲରେ ଭଲରେ ଶ୍ରଦ୍ଧା ଘରୁ ବିଦା ହେଇ ଚାଲିଗଲା । ବାବା ମାମା ଟିକେ ଶାନ୍ତିରେ ନିଃଶ୍ୱାସ ମାରିଲେ । ହେଲେ ବିଧିର ବିଡ଼ମ୍ବନା ଦେଖ, ସେ ଶାନ୍ତି ରହିଲା ମାତ୍ର ନ'ଦିନ ପାଇଁ ! । ନିୟମ ଅନୁସାରେ ଶ୍ରଦ୍ଧା ଦଶଦିନରେ ଯେତେବେଳେ ଘରକୁ ଆସିଲା, ମୋ' ମାମା ତା' ଆଖିରେ ଦେଖିବାକୁ ପାଇଲେ କିଛିଟା ଅଶାନ୍ତି ଆଉ ଅତୃପ୍ତିର ଲୁହକଣିକା ! ଘରେ ସମସ୍ତେ ଭାବିଲେ, କିଛିଗୋଟେ ଅସୁବିଧା ହେଇଚି ! ହେଲେ ତା' ରହସ୍ୟ ଭେଦ କରିବାକୁ ଶ୍ରଦ୍ଧା ଆମକୁ ସୁଯୋଗ ଦେଲାନି । ସେ କେବଳ ଗୋଟେ କଥା କହି ଫାଙ୍କିଦେଲା, ବ୍ୟସ୍ତ ହେବାର କିଛି ନାଇଁ । ସମୟ ଆସିଲେ ସବୁ ଠିକ୍ ହେଇଯିବ ।

ତା'ପରେ ସେ ଚାଲିଗଲା ତା' ସ୍ୱାମୀ ସାଙ୍ଗରେ ସୁଦୂର ଦିଲ୍ଲୀ । ସେଠୁ ଯାହା ଫୋନ୍ ସମ୍ପର୍କ ! ଆମେ ରୀତିମତ ତା' ସହିତ ଯୋଗାଯୋଗ ରଖୁଥିଲୁ । ଯେତେବେଳେ ଫୋନ୍ କଲେ ମଧ୍ୟ ଶ୍ରଦ୍ଧା ଖୁସିରେ ଥିବାଭଳି ଲାଗେ । ହସିହସି କଥା କହେ । ହେଲେ ଝିଅର ମନକଥା ମା'ଠୁ ଅଧିକା କିଏ ଜାଣିବ ? କାହିଁକି କେଜାଣି, ମୋ' ମାମାଙ୍କୁ ଲାଗୁଥିଲା, ଶ୍ରଦ୍ଧାର ସେ ଖୁସି ଛଳନା ମାତ୍ର ! ତା'ହସର ମଖମଲି ଶେଯ ତଳେ ରହିଛି ଦୁଃଖର ଶହଶହ

କଣ୍ଠା ! ଯଂତ୍ରଣାର ଜଉଘରେ ସେ ଛଟପଟ ହଉଚି ! ! ମୁହଁରେ କିଛି କହିପାରୁନି ! ହେଲେ ତା' ଦୁଃଖ କ'ଣ, ଜାଣିବାର ଉପାୟ ନଥିଲା ଆମର । ଯେତେ ପଚାରିଲେ ବି ହସିହସି ସେ କଥାକୁ ଏଡ଼େଇଦିଏ । ଏମିତି ଦୀର୍ଘ ନ'ମାସ ବିତିଗଲା ।

ନ'ମାସ ପରେ କିଛି ଦିନପାଇଁ ସେ ଆସିଲା ଆମଘରକୁ । ସେତିକିବେଳେ ତାକୁ ଦେଖି ଆମେ ଆଶ୍ଚର୍ଯ୍ୟ ହେଇଗଲୁ ! ଇସ୍ ! କି ଦୟନୀୟ ରୂପଭେକ ହେଇଥିଲା ତା'ର ! ଆଖି ଦେଖିଲେ ମନେ ହେଉଥିଲା, ଏ ନ'ମାସ ଯାକ ରାତିରେ ସେ ଶୋଇନି ! ଦେହ-ମୁହଁ ଦେଖିଲେ ଲାଗୁଥିଲା, ବଂଚିବାପାଇଁ କେବଳ ଶ୍ୱାସକ୍ରିୟାଟିକୁ ଛାଡ଼ି ସେ ବୋଧେ ଆଉ ସବୁକିଛି ଭୁଲିଯାଇଛି ! ତା'ର ଏ ଅବସ୍ଥା ଦେଖି ମୁଁ ତାକୁ ଭିଡ଼ିଧରି କାନ୍ଦିବାକୁ ଲାଗିଲି । ପଚାରିଲି, "ଶ୍ରଦ୍ଧା ! କ'ଣ ହେଇଛି ତୋର ? ତୁ କାହିଁକି ମିଛ ହସ ହସି ଭିତରେ ଭିତରେ କାନ୍ଦୁଚୁ ? ?"

ଶ୍ରଦ୍ଧା ଆଉ ଲୁହକୁ ରୋକି ପାରିଲାନି ! ମୋ' କାନ୍ଧ ଉପରେ ମୁହଁରଖି କାନ୍ଦିକାନ୍ଦି ସିଏ ଯାହା କହିଲା, ମତେ ଲାଗିଲା ସତେ ଯେମିତି ମୋ' ପାଦତଳୁ ମାଟି ଉଭେଇ ଯାଉଚି ! ! ମାମା କାନରେ ସେ କଥାଟା ପଡ଼ିବା ମାତ୍ରେ ସେ ନଥିକିନା ସୋଫା ଉପରେ ବସିପଡ଼ିଲେ ! ସେତିକିବେଳେ ଯାଇ ଆମେ ରହସ୍ୟଟା ଜାଣିଲୁ ଯେ, ଶ୍ରଦ୍ଧା ଯାହାକୁ ବାହା ହେଇଚି ସିଏ ପୁରୁଷ ନୁହେଁ, ଜଣେ ନପୁଂଷକ ! ପୁରୁଷାଙ୍ଗଶୂନ୍ୟ ମଣିଷ ! !

ଏ କଥା ଶୁଣି ବାବା ମୁଣ୍ଡ ପିଟିଦେଲେ ଦୁଃଖରେ ! ଜେଜେ ନିର୍ବାକ ! ମୁଁ ଶ୍ରଦ୍ଧା ଜାଗାରେ ନିଜକୁ ରଖି ଭାବିବାକୁ ଚେଷ୍ଟାକଲି, ହେଲେ ଥଳକୂଳ ପାଇଲିନି ! ଶ୍ରଦ୍ଧା ଏ ନଅମାସ କାଳ ଜଣେ ଅଣପୁରୁଷ ସାଙ୍ଗରେ କେମିତି କଟେଇଥିବ, ସେକଥା ଭାବିଲାବେଳକୁ ମୋତେ ଅଣନିଶ୍ୱାସୀ ଲାଗିଲା ! ମୁଁ ବହୁତ କଷ୍ଟରେ ଶ୍ରଦ୍ଧାଠୁଁ କଥା ଆଦାୟ କରି ଜାଣିଲି, ଏ ନ'ମାସ ଭିତରେ ସେ ଲୋକଟା ଥରେ ବି ସ୍ପର୍ଶ କରିନି ଶ୍ରଦ୍ଧାକୁ ! ରାତିରେ ଗୋଟିଏ ପଲଙ୍କରେ ଉଭୟେ ଶୁଅନ୍ତି, ହେଲେ ସେ ଲୋକଟି ସାରା ରାତି କାଠଗଡ଼ ଭଳି ନିର୍ବିକାର !

ହେ'ଭଗବାନ ! ଏ କି ଅଦ୍ଭୁତ ଚରିତ୍ର ! ଲୋକଟାର ଚାଲିଚଳନ କି ବ୍ୟବହାର ତ ନପୁଂଷକ ଭଳି ନୁହେଁ ! ହଁ, ଦେଖିବାକୁ ଅବଶ୍ୟ ଅଳ୍ପଅଳ୍ପ ନିଶ-ଦାଢ଼ି କଅଁଳିଥିବା କିଶୋରଟିଏ ଭଳି, ହେଲେ ସେ ପୁରୁଷାଙ୍ଗଶୂନ୍ୟ ମଣିଷଟେ ବୋଲି କିଏ ବା ଜାଣିବ ? ଏଭଳି ଜଣେ ଲୋକ ସହିତ, ଗୋଟେ ଘରେ, ଗୋଟେ ପଲଙ୍କରେ, ଜଣେ ଷଡ଼ୋଶୀ ନବବିବାହିତା ସାରା ରାତି କେମିତି ବିତାଉଥିବ, କଳ୍ପନା କରି ପାରିଲିନି ମୁଁ ! ରାତିଏ କି ଦୁଇରାତି ନୁହେଁ, ମାସେ କି ଦୁଇମାସ ନୁହେଁ, ଦୀର୍ଘ ନଅମାସ ! ଦୁଇଶହ ସତୁରିଟି ଅଭିଶପ୍ତ ରାତି ! !

ଶ୍ରଦ୍ଧାମୟୀଙ୍କ ବୈବାହିକ ଜୀବନର ବିଡ଼ମ୍ବିତ କାହାଣୀ ଭାବନା ଆଖିରେ ଭରିଦେଇଥିଲା ଅସରନ୍ତି ଲୁହ ! ଲୁହ ପୋଛି ସେ ପଚାରିଲା, "ମା' ! ଯେଉଁ ମଣିଷ ଅଣପୁରୁଷ, ନାରୀପ୍ରତି

ଏତେ ବିତୃଷ୍ଣ, ସେଭଳି ଲୋକ ବାହା ହେଲା କାହିଁକି ? ତା' ବାପା-ମା ଗୋଟେ ନିରୀହ ଝିଅର ଜୀବନକୁ କେମିତି ଅବିଚାରିତଭାବେ ନଷ୍ଟ କରିପାରିଲେ ?"

- "ହଁ ରେ ମା' ! ଆମେ ଖବର ନେଇ ଜାଣିଲୁ, ଆମ ସହିତ ସେମାନେ ବିଶ୍ୱାସଘାତକତା କରିଛନ୍ତି ! ସେ ଅବଶ୍ୟ ଦେଖିବାକୁ ପୁରୁଷଟେ । ହେଲେ ତାକୁ ସ୍ତ୍ରୀ ନୁହଁ, ବରଂ ଦରକାର ଥିଲା ଭଲ ରୋଷେଇ କରି ପାରୁଥିବା ଚାକରାଣୀଟେ ! ଜୀବନସାରା ତା' ସାଥିରେ ରହି ଯିଏ ତା'ଘରେ ରନ୍ଧାବଢ଼ା କରିବ । ଚାକରାଣୀ ଭଳି ଘରକାମ କରିବ । ଆମ ଶ୍ରଦ୍ଧା ଏ ନ'ମାସ କାଳ ତାହା ହିଁ କରୁଥିଲା ! ସାରାଦିନ ସେ'ଲୋକ ଅଫିସ୍‌ରେ କଟାଏ, ରାତିରେ ଆସି ଖାଇ ପିଇ ନିର୍ବିକାର ଭାବେ ଶୋଇଯାଏ ! ଶ୍ରଦ୍ଧା ହାତର ରୁଚିକର ଖାଦ୍ୟକୁ ଛାଡ଼ିଦେଲେ ଆଉ କେଉଁଥିରେ ବି ତା'ର ଆଗ୍ରହ ନଥାଏ । ଏଭଳି ଜଣେ ଅଯୋଗ୍ୟକୁ ପତିରୂପେ ପାଇମଧ୍ୟ ଶ୍ରଦ୍ଧା ତା' ପତ୍ନୀଧର୍ମରୁ ତିଳେହେଲେ ଓହରି ନଥିଲା । ସ୍ୱାମୀ ପ୍ରତି ସ୍ତ୍ରୀର କର୍ତ୍ତବ୍ୟ, ଶାଶୁ-ଶ୍ୱଶୁରଂକ ପ୍ରତି ବୋହୂର କର୍ତ୍ତବ୍ୟ ପାଳିବାରେ ତିଳେ ବି ଅବହେଳା କରିନି ସେ ।"

- "ହେଲେ ମା' ! ଶ୍ରଦ୍ଧାମୟୀଙ୍କ ଭଳି ଜଣେ ସ୍ୱାଭିମାନୀ, ସ୍ୱାଧୀନଚେତା ମହିଳା ନିଜ ଉପରେ ହେଉଥିବା ଏ ଅନ୍ୟାୟ ସହୁଥିଲେ କେମିତି ? ସେ ତ ଯେ କୌଣସି ସମୟରେ ଘରଛାଡ଼ି ଆସିପାରି ଥାଆନ୍ତେ ?" ଭାବନା ପ୍ରଶ୍ନକଲା ।

- "ଏ ପ୍ରଶ୍ନର ଉତ୍ତରରେ ଶ୍ରଦ୍ଧା କ'ଣ କହିଥିଲା ଜାଣୁ ? ସେ ଭାବୁଥିଲା, ବେଳେବେଳେ ପୁରୁଷମାନଙ୍କର ଏଭଳି ଯୌନ ସମସ୍ୟା ହୁଏ । ଉପଯୁକ୍ତ ଚିକିତ୍ସା କଲେ ଠିକ୍ ହେଇଯାଏ । ତା' ଭାଗ୍ୟକୁ ବୋଧେ ତା' ସ୍ୱାମୀର ଏ ସମସ୍ୟା ବିବାହ ଆରମ୍ଭରୁ ଦେଖାଦେଲା ! କିଛିଦିନ ଔଷଧ-ପତ୍ର ଖାଇଲେ ହୁଏତ ସବୁ ଠିକ୍ ହେଇଯିବ । ତା'ଛଡ଼ା ଏତେ ବିବାହ ପ୍ରସ୍ତାବ କାଟ୍ ଖାଇବା ପରେ ଜାତକ ଅନୁସାରେ ଯାହା ସହିତ ତା'ର 'ରାଜଯୋଟକ' ପଡ଼ିଛି, ଦିନେନା ଦିନେ ନିଶ୍ଚୟ ତାଙ୍କ ସହିତ ଜୀବନଟା ଭଲରେ ହିଁ କଟିବ । ତେଣୁ ସେ ତା' ସ୍ୱାମୀକୁ ଯୌନ-ଚିକିତ୍ସା କରି ଔଷଧ ଖାଇବାକୁ ପରାମର୍ଶ ଦିଏ । ହେଲେ ସେ ନପୁଂଷକ ଭଲା କିଆଁ ମାନିବ ଶ୍ରଦ୍ଧା କଥାକୁ ? ତା' ମନରେ ଯଦି ସ୍ତ୍ରୀ ସହିତ ମିଳନର ଲାଳସା ରହନ୍ତା, ସମ୍ଭୋଗର ବାସନା ଥାଆନ୍ତା, ସନ୍ତାନ କାମନାର ଅଭିଳାଷ ରହନ୍ତା, ତା'ହେଲେ ସିନା ଏଥିପାଇଁ ସେ ନିଜକୁ ଅକ୍ଷମ କି ଅପାରଗ ଭାବିଥାନ୍ତା । ସେ ତ କାଠଗଡ଼ ଭଳି ବିକାରଶୂନ୍ୟ !

ଯା'ହେଉ, ଶେଷରେ ଆମକୁ ସେଥିପାଇଁ ଆଇନ୍‌ର ଆଶ୍ରୟ ନେବାକୁ ପଡ଼ିଲା । ଶ୍ରଦ୍ଧା ତାକୁ ଛାଡ଼ପତ୍ର ଦେଇ ଘରେ ଆସି ରହିଲା । ତା'ପାଇଁ ପୁଣିଗୋଟେ ବିବାହ ପ୍ରସ୍ତାବ ଖୋଜିବା ମୋ'ବାବାଙ୍କ ପକ୍ଷରେ ସହଜ ନଥିଲା ! ଶାରୀରିକ ଭାବେ ଶ୍ରଦ୍ଧା ଯେତେ ପବିତ୍ର ଥିଲେ କ'ଣ ହବ, ତା'ମଥାରେ ପରା 'ସ୍ୱାମୀ ପରିତ୍ୟକ୍ତା'ର ମୋହର ଲାଗିଗଲା !

ଶ୍ରଦ୍ଧା ଜୀବନର ଏ ବିପର୍ଯ୍ୟୟ ବହୁତ ବଡ଼ ପରିବର୍ତ୍ତନ ଆଣି ଦେଇଥିଲା ତା' ଭିତରେ । ଫୁଲଭଳି ତା'ର କୋମଳ ମନଟିକୁ ଚଟାଣ ଭଳି କଠୋର କରିଦେଇଥିଲା ସମୟର ଏ ପ୍ରଚଣ୍ଡ ଝଟ୍‌କା ! ଶ୍ରଦ୍ଧା ମନେମନେ ଦୃଢ଼ ସଙ୍କଳ୍ପ କରି ନେଇଥିଲା, ସିଏ ଆଉ ବିବାହ କରିବନି ! ପରାଙ୍ଗପୁଷ୍ଟ ଲତାଟିଏ ପରି ସାରା ଜୀବନ ସେ ଅନ୍ୟର ଆଶ୍ରିତ ହୋଇ ରହିବନି ।

ତା'ପରେ ହଠାତ୍ ଦିନେ ସେ ଘର ଛାଡ଼ିଲା ।

ଆଜି ପ୍ରାୟ ବତିଶି ବର୍ଷ ପରେ ମୋ' ଭଉଣୀ ଶ୍ରଦ୍ଧାକୁ ମୁଁ ଦେଖୁଚି ମା'ଶ୍ରଦ୍ଧାମୟୀ ରୂପରେ ! ନିଜେ ଅନ୍ୟର ଆଶ୍ରିତ ନ'ହେବାର ସଂକଳ୍ପ କରିଥିବା ଶ୍ରଦ୍ଧା ଆଜି ଅନେକ ଅସହାୟଙ୍କ ଆଶ୍ରୟଦାତ୍ରୀ, ମା' ଶ୍ରଦ୍ଧାମୟୀ ! ସତରେ ମା' ଭାବନା ! ପ୍ରକୃତିର ଲୀଳା ବଡ଼ ବିଚିତ୍ର !!"

ଭାବନା ତା' ମୋବାଇଲ୍‌ରେ ମା' ଶ୍ରଦ୍ଧାମୟୀଙ୍କ ନମ୍ବର ଖୋଜୁଖୋଜୁ କହିଲା, "ମା'ଙ୍କର ଏଇଟା ବିଶ୍ରାମ ସମୟ । ଏବେ ମୋ'ଫୋନ୍ ପାଇଲେ ସେ ନିଶ୍ଚୟ ଉଠେଇବେ । ଭାବୁଚି, ମୁଁ ସର୍ପ୍ରାଇଜ୍ ଦେବି ମାଆଙ୍କୁ ! ଆଜି ଆପଣ ଦୁଇ ଭଉଣୀଙ୍କର ଅନଲାଇନ୍ ମିଳନ ହେଉ ! ଆପଣ ମୋ' ଶାଶୁ ବୋଲି ଜାଣିଲେ ସେ ବୋଧେ ବିଶ୍ୱାସ କରି ପାରିବେନି !"

ମଧୁମିତା ଭାବନାର ମୋବାଇଲ ସ୍କ୍ରିନ୍ ଉପରେ ହାତ ଘୋଡ଼େଇ କହିଲେ, "ଥାଉ ମା' ଭାବନା ! ତାଙ୍କୁ ଡିସ୍‌ଟର୍ବ କରନା । 'ଶ୍ରଦ୍ଧା' ନାମକ ସେଦିନର ସେ ମଉଳା ଚାରାଗଛଟି ଆଜି ମା'ଶ୍ରଦ୍ଧାମୟୀ ନାମକ ମହାଦ୍ରୁମରେ ପରିଣତ ହେଇଛି । ସେ ବିଶାଳ ବୃକ୍ଷକୁ ଆଶ୍ରାକରି ରହିଛନ୍ତି ଅନେକ ଅସହାୟ ପ୍ରାଣୀ ! ତା' ଜୀବନର ଏ ମହାତପସ୍ୟା । ତା' ସପସ୍ୟା ଭଙ୍ଗ କରିବାକୁ ମୁଁ ଚାହୁନି । ତାଙ୍କୁ ମୋ' ଭଉଣୀ ଶ୍ରଦ୍ଧା ରୂପରେ ମୁଁ ଦେଖିବାକୁ ଚାହୁନି । ଶହ ଶହ ଅନାଥଙ୍କ ଅନ୍ନଦାତ୍ରୀ, ଆଶ୍ରୟ ଦାତ୍ରୀ, ମା' ଶ୍ରଦ୍ଧାମୟୀ ହୋଇ ହିଁ ସେ ରହିଥାନ୍ତୁ !"



*ସୁରେନ୍ଦ୍ର ନାଥ ସାହୁ*

ଲଘୁଗଳ୍ପ

# ରଙ୍ଗ୍ ନମ୍ବର୍

ପାକେଇ ବୁଢ଼ୀର ପାନପିକ ବୋଳା ଓଠ ଭଳି ରକ୍ତିମ ଦିଶୁଥାଏ ପଶ୍ଚିମ ଦିଗ୍‌ବଳୟ ! ବୁଢ଼ା ସୂରୁଜ ବୁଡ଼ିବ ବୁଡ଼ିବ ହଉଥାଏ । 'କରୋନା' ଭୟରେ ଦଳଦଳ ଘରମୁହାଁ ଶ୍ରମିକ ଭଳି ବଗ ଓ ଗେଣ୍ଡାଳିଆମାନେ ଫେରୁଥାନ୍ତି ବସାକୁ । କଟକ କାଠଯୋଡ଼ି କୂଳେ, ସଂଧ୍ୟା ଆଗମନ ପୂର୍ବର ଏଭଳି ଦୃଶ୍ୟ କଦବା କେମିତି ଆଖିରେ ପଡ଼େ !

ତାଳଚେରିଆ ଯୁବକବି 'ଝଗୁଡୁ ଦାସ'ଙ୍କ ପାଇଁ ଏମନ୍ତ ମନୋରମ ଦୃଶ୍ୟ ତାଙ୍କ କୋଇଲାଖଣି ଅଂଚଳରେ ଅବଶ୍ୟ ବିରଳ । ତେଣୁ ଝଗୁଡୁ ଯେବେ ବି କୌଣସି କାମରେ କଟକ ଆସନ୍ତି, ଅପରାହ୍ନରେ ମନ ହାଲୁକା କରିବା ପାଇଁ ଘେରାଏ ବୁଲି ଯାଆନ୍ତି କାଠଯୋଡ଼ି କୂଳ ଆଡ଼େ । ସହଜେ ସଦ୍ୟ ଯୁବକ, ସେଥିରେ ପୁଣି କବି ପ୍ରତିଭାର ଅଧିକାରୀ ! ପ୍ରକୃତିର ଏ ବିରଳ ବିଭବ ଭିତରେ ମନ-ମୁନ-ଚୈତନ୍ୟ ତାଙ୍କର ହଜିଯାଏ କିଛି ସମୟ ପାଇଁ । ଦିନେଦିନେ ଏମିତି ବି ହୁଏ, ଗୁଡ଼ ଘମରେ ଜନ୍ଦା ଲାଖିବା ଭଳି କାଠଯୋଡ଼ିର ସୌନ୍ଦର୍ଯ୍ୟ ଭିତରେ ସେ ଏମିତି ଲାଖି ଯାଆନ୍ତି ଯେ, ତାଳଚେରଗାମୀ ଶେଷ ବସ୍‌ଟା ତାଙ୍କୁ ହରେଇବାକୁ ପଡ଼େ ଏବଂ ରାତି କଟେ ବାଦାମବାଡ଼ିର କୌଣସି ଶସ୍ତା ହୋଟେଲରେ ।

କବି ଝଗୁଡୁ ସେଦିନ ବି କାଠଯୋଡ଼ି କୂଳେ ବସି ନୂଆ କବିତାଟେ ପାଇଁ କିଛି ଉପାଦାନ ସାଉଁଟୁ-ସାଉଁଟୁ ଏଭଳି ଦୁରବସ୍ଥା ଭୋଗିଥାନ୍ତେ । କିନ୍ତୁ ହଠାତ୍ ସେ ନିଜ ଜିନ୍ ପେଣ୍ଟର ଆଗ ପଛ ଚାରିଟିଯାକ ପକେଟ୍ ଉଣ୍ଡାଳି ସଜାଗ ହେଇଗଲେ । ସାରା ଦିନର ଖର୍ଚ୍ଚ ପରେ ପକେଟରେ ପଡ଼ିଥିଲା ମାତ୍ର ତିନଶହ କୋଡ଼ିଏଟି ଟଙ୍କା । ଯଦି ସେ ତାଳଚେରଗାମୀ ଶେଷ ବସ୍ ନ'ଧରନ୍ତି, ତା'ହେଲେ କୌଣସି ହୋଟେଲରେ ଏତିକି ଧନରେ ଥାନ ମିଳିବା ଅସମ୍ଭବ ।

ସନ୍ଧ୍ୟା ଛ'ଟା ଚାଳିଶି ବାଜୁଥିଲା । ସାଢ଼େ ସାତରେ ତାଳଚେର ପାଇଁ ଶେଷ ବସ୍ । ତତ୍‌କ୍ଷଣାତ୍ ଝଗୁଡୁ ଦାସ ସତୁରି ଟଙ୍କା ଭଡ଼ାରେ 'ଅଟୋ'ଟିଏ ବୁକ୍ କଲେ କାଠଯୋଡ଼ି କୂଳରୁ ଡାଇରେକ୍ଟ ବାଦାମବାଡ଼ି ବସ୍‌ଷ୍ଟାଣ୍ଡ । ଷ୍ଟାଣ୍ଡରେ ପହଞ୍ଚିବା ବେଳକୁ 'ନିଶାମଣି' ନାମଧାରି ଶେଷବସ୍ ଗଡ଼ିବା ଆରମ୍ଭ କରୁଥାଏ । ହେଲପର୍ ଟୋକା ଦେଖୁ ଦେଖୁ ଜାଣିପାରିଲା, ଇଏ

ବାବୁ ଜଣକ ତାଳଚେରିଆ ଲଙ୍ଗ୍ ପାସେଞ୍ଜର୍ । ଏଭଳି ପାସେଞ୍ଜରମାନଙ୍କ ପାଇଁ ପ୍ରାଇଭେଟ୍ ବସ୍‌ରେ ଅଛି ସ୍ୱତନ୍ତ୍ର ବ୍ୟବସ୍ଥା ! ଆଳୁ ବସ୍ତା ଭଳି ଯାତ୍ରୀ ଭିଡ଼ରେ ବସ୍ ଯେତେ ଟଳମଳ ହେଲେ ସୁଦ୍ଧା ହେଲପର୍ ତା'ତେଲ ଚିକିଟା ତଉଲିଆ ଖଣ୍ଡିକ ପକେଇ ତତ୍କାଳ ଦୂରଯାତ୍ରୀମାନଙ୍କ ପାଇଁ ସିଟ୍ ଗୋଟେ-ଯୋଡ଼େ ହାତରେ ରଖିଥାଏ ।

ଝଗୁଡୁ ଦାସ ବସ୍‌କୁ ଉଠୁଉଠୁ ହେଲପର୍ ସିଟ୍ ଉପରୁ ଗାମୁଛା ଖଣ୍ଡିକ ଉଠେଇଦେଇ କହିଲା, "ବସନ୍ତୁ ସା'ରେ !"

ଝଗୁଡୁ ଦାସ୍ ଦେଖିଲେ, ଅଦ୍ୟାବଧି ସେ ସୁରକ୍ଷିତ ଅବସ୍ଥାରେ ବସ୍‌ରେ ପହଂଚି ଯାଇଛନ୍ତି । ସେଠୁ ସେ ନିଶ୍ଚିନ୍ତରେ ଦୀର୍ଘ ନିଃଶ୍ୱାସଟେ ଛାଡ଼ି ସିଟ୍‌କୁ ଆଉଜି ବସିଲେ । ତାଙ୍କ ପାଖକୁ ଲାଗି ବସିଥିଲେ ଜଣେ କୃଶକାୟ ବୃଦ୍ଧ । ଗାଡ଼ି କଚ୍ଛପ ଗତିରେ ଷ୍ଟାଣ୍ଡ ଛାଡ଼ିଲା । ଠିକ୍ ଏତିକିବେଳେ ବସ୍ ଭିତରକୁ ପଶି ଆସିଲେ ଜଣେ ସୁଦର୍ଶନ ଯୁବକ । ଯୁବକଙ୍କ ଉପରେ ଦୃଷ୍ଟି ପଡ଼ିବା କ୍ଷଣି ଝଗୁଡୁ ଦାସ୍ ଲୁଣ ଧାପରେ ଜୋକ ଭଳି ଟିକିଏ ସାଙ୍କୁଡ଼ି ବସିଲେ । ଅବଶ୍ୟ ଏହାର ଏକାଧିକ କାରଣ ଥିଲା । ଝଗୁଡୁ ଦାସ୍ କିଞ୍ଚିତ୍ ଶ୍ୟାମଳ ଓ ଖର୍ବକାୟ, କିନ୍ତୁ ଯୁବକ ଜଣକ ଦେଖା ଯାଉଥିଲେ ବଲିଉଡ୍ ହିରୋ ଭଳି ବଳିଷ୍ଠ ଓ ସୁନ୍ଦର ! ସନ୍ଧ୍ୟା ଅତିକ୍ରାନ୍ତ ପରେ ବି ସେ ଆଖିରେ ନାଇଥିଲେ ସୁନା ଫ୍ରେମର ଡେ-ନାଇଟ୍ ଗ୍ଲାସ୍ । ବଗ ପର ଭଳି ତାଙ୍କ ଧଳା ଫିନ୍‌ଫିନ୍ ଡ୍ରେସ୍ ମହକୁଥିଲା ବିଦେଶୀ ପରଫ୍ୟୁମ୍ ସୁଗନ୍ଧରେ । ବ୍ରିଫ୍‌କେଶ୍ ଧରିଥିବା ତାଙ୍କ ବାଁ ହାତଟି ପ୍ରମାଣିତ କରୁଥିଲା ଯେ, କେବଳ ବୁଢ଼ା ଆଙ୍ଗୁଠି ଗୋଟିକୁ ବାଦ୍ ଦେଲେ ତାଙ୍କର ଆଉ ସବୁ ଆଙ୍ଗୁଠି ସୁନା ମୁଦି ପିନ୍ଧିବାକୁ ଯୋଗ୍ୟ ।

ଝଗୁଡୁ ଦାସ୍ ଯୁବକଙ୍କ ଆଡୁ ଆଖି ଫେରେଇ ଆଣି ଚୁପ୍ ବସିଲେ । ତାଙ୍କ ସାମନା ଦୁଇଜଣିଆ ସିଟ୍‌ଟି ମଧ୍ୟ ସଂରକ୍ଷିତ ଥିଲା । ହେଲପର୍ ଗାମୁଛା ଖଣ୍ଡିକ ଉଠାଇ ଆଣି ସେ ବିଶିଷ୍ଟ ଯୁବକଙ୍କୁ କହିଲା, "ସା'ରେ......ବସନ୍ତୁ !"

'ସା'ରେ' ଗୋଟେ ସିଟ୍‌ରେ ବସିଲେ ଏବଂ ପାଖ ଫାଙ୍କା ସିଟ୍ ଉପରେ ବ୍ରିଫ୍‌କେସଟିକୁ ଥୋଇଲେ । ଠିକ୍ ଏତିକିବେଳେ ଉଠି ଆସିଲା ଝିଅଟିଏ ! ଝିଅ ମାନେ, ଏକ୍‌ବାରେ ଷଡ଼ୋଶୀ ସୁନ୍ଦରୀ ! ! ଗୋଲାପି ଚୁଡ଼ିଦାର୍-ପଞ୍ଜାବି ପରିହିତା ସେ ସୁନ୍ଦରୀ କନ୍ୟା ଆସି ଠିଆ ହେଲା ଝଗୁଡୁ ଦାସଙ୍କ ସିଟ୍ ପାଖରେ ! ଝଗୁଡୁ ଦାସ୍ କବିଦୃଷ୍ଟିରେ ଟିକେ ଅନେଇଲେ ଝିଅଟିକୁ ଏବଂ ଆତ୍ମବିସ୍ମୃତ ହେଲେ । ତାଙ୍କୁ ମନେ ହେଲା, ଝିଅଟି ବୋଧେ ସୁନ୍ଦରୀ 'ବାର୍ବିଡଲ୍'ର ସଦ୍ୟତମ ସଂସ୍କରଣ । କାଚ କଣ୍ଢେଇ ଭଳି ସୁଡ଼ୌଳ ଅବୟବ । ଦୁଧ-ଅଳତା ରଙ୍ଗର ମୁହଁରେ ରକ୍ତ ଗୋଲାପର ଦୁଇ ସତେଜ୍ ପାଖୁଡ଼ା ଭଳି ହଳେ ହସନ୍ତ ଓଠ । ଟଣାଟଣା ଆଖି । ତା' ଉପରେ ପେନ୍‌ସିଲ୍‌ରେ ଆଙ୍କିଦେଲା ଭଳି ସରୁ ସରୁ ଭ୍ରୂଲତା ! ଅନୁଜ୍ଜ୍ୱଳ ବିଅର୍ ପାର୍ଲର୍‌ରେ ବସି ଢ଼ୋକେଢ଼ୋକେ ସାମ୍ପେନର ମଜା ନେଲା ଭଳି ଝଗୁଡୁ ଦାସ ବସ୍‌ର କୁଣ୍ଠିତ

ଆଲୁଅରେ ଝିଅଟିର ଅପରୂପ ସୌନ୍ଦର୍ଯ୍ୟକୁ ପାନେ ପାନେ କରି ଉପଭୋଗ କରିବାକୁ ଲାଗିଲେ । ପବନର ସୌଜନ୍ୟରୁ ତା' ସୁବାସିତ ଓଢ଼ଣିଟା ବେଳେବେଳେ ଝଗୁଡୁଙ୍କ ମୁହଁ ଉପରେ ଆସି ପିଟି ହେଉଥାଏ । ଓଢ଼ଣିର କୁତୁକୁତୁରେ ଝଗୁଡୁ ଶିହରିତ ହେଉଥାନ୍ତି ଏବଂ ମନେମନେ ଭାବୁଥାନ୍ତି, ଆହାଃ ! ଏ କୃଶକାୟ ବୃଦ୍ଧ ବସିଥିବା ମୋ' ପାଖ ସିଟ୍ ଖଣ୍ଡିକ ଯଦି ଖାଲି ଥାଆନ୍ତା, ତା'ହେଲେ ବଡ଼ ରୋମାଂଚକର ହେଇଥାନ୍ତା ଆଜିର ବସ୍ ଯାତ୍ରାଟା । ତଥାପି ସେ ଚେଷ୍ଟା କଲେ ।

"ମଉସା.... ! ସେପଟକୁ ଆଉ ଟିକିଏ ଘୁଂଚିକି ବସୁନା" କହି ଝଗୁଡୁ ଲଫାପା ଉପରେ ଡାକମୁଦ୍ରା ଭଳି ବୃଦ୍ଧଙ୍କ ଦେହରେ ନେସି ହୋଇ ବସିଲେ । ପ୍ରାୟ ଚାଖଣ୍ଡେ ଭଳି ଜାଗା ତାଙ୍କ ବାଁ କଡ଼େ ସୃଷ୍ଟି ହେଲା । ଝଗୁଡୁ ଝିଅଟିକୁ ଆଖିର ଇସାରାରେ କହିଲେ, "ବସନ୍ତୁ......ମ୍ୟାଡ଼େମ୍ !"

ମ୍ୟାଡ଼େମ୍‌ଙ୍କର ଦୃଷ୍ଟି କିନ୍ତୁ ଅଟକି ରହିଥିଲା ଯୁବକଙ୍କ ବ୍ରିଫ୍‌କେଶ୍ ଅଧିକାର କରିଥିବା ସାମନା ସିଟ୍ ଉପରେ । ସେ ବୀଣାଜିଣା କଣ୍ଠରେ ଯୁବକଙ୍କୁ କହିଲା, "ବ୍ରିଫ୍‌କେସ୍‌ଟା ଟିକିଏ ଉଠେଇଲେ ମୁଁ ବସିଥାନ୍ତି !"

"ଓଃ ! ନିଶ୍ଚୟ । ଆସନ୍ତୁ...... ।" କହି ଯୁବକ ବ୍ରିଫ୍‌କେସ୍‌ଟା ଉଠେଇ ଉପରେ ରଖିଲେ । "ଧନ୍ୟବାଦ" କହି ଝିଅଟି ଦଖଲ କଲା ତାଙ୍କ ଡାହାଣକଡ଼ ଝରକା ପାଖ ସିଟ୍ ଖଣ୍ଡିକ ।

ଏଭଳି ଗୋଟେ ସୁଯୋଗ ହାତଛଡ଼ା ହେଇଯିବା ପରେ ଝଗୁଡୁ ଦାସଙ୍କ ମୁହଁଟା ସୂର୍ଯ୍ୟାସ୍ତର ସୂର୍ଯ୍ୟମୁଖୀ ଭଳି ଝାଉଁଳିଗଲା । ଝିଅଟି ବସିଲା ଝଗୁଡୁ ଦାସଙ୍କ ସାମନା ସିଟ୍‌ରେ ସେ ହିରୋମାର୍କା ଟୋକା ସହିତ ଦେହ ଲଗେଇ । ପ୍ରଥମେ କିଛି ସୌଜନ୍ୟ ମୂଳକ ସଂଭାଷଣ, ତା'ପରେ ଅଳ୍ପଅଳ୍ପ ସ୍ମିତ ହସର ବିନିମୟ, ତା'ପରେ ଧୀରେଧୀରେ ସେ ଦୁହେଁ ମଜ୍ଜିଗଲେ ମଧୁର ଆଳାପରେ ! ଝଗୁଡୁ ଦାସ ପଛ ସିଟରେ ବସି ଲାଳାୟିତ ଆଖିରେ ଅନେଇଥାନ୍ତି । ବସ୍‌ର ଗତି ସହିତ ତାଳ ଦେଇ ସେ'ଦୁହିଙ୍କ ବସିବା ଶୈଳୀ ମଧ୍ୟ ଧୀରେଧୀରେ ନିବିଡ଼ତର ହେଉଥାଏ । ବସ୍‌ର ପ୍ରତିଟି ଟର୍ଣ୍ଣିଂ ସେ' ଯୋଡ଼ିଙ୍କ ପାଇଁ ଗୋଟେଗୋଟେ ରୋମାଂଚକର ଅନୁଭୂତି ଭଳି ମନେ ହେଉଥାଏ !

ବସ୍ ଚଣ୍ଡଦ୍ୱାର ବଜାର ପାର ହେବା ବେଳକୁ ପିଜୁଳି ଗଛରେ ପୋଇଲତା ମାଡ଼ିଗଲା ଭଳି ଯୁବକର ବଳିଷ୍ଠ ଦେହରେ ଲଟେଇ ବସିଥାଏ ଯୁବତୀଟି । କବି ଝଗୁଡୁ ଦାସଙ୍କ ଆଖିରେ ସେ ଦୃଶ୍ୟ ଥିଲା ନିହାତି ଅଭଦ୍ରୋଚିତ ଓ ଅବାଞ୍ଛିତ । କିନ୍ତୁ ପୁଅଟି ବୋଧେ ତାହା ହିଁ ବାଞ୍ଛା କରୁଥିଲା ଝିଅଟି ପାଖରୁ । ବେଳେବେଳେ ସିଏ ବି ଢ଼ଳି ପଡୁଥାଏ ଯୁବତୀର ସୁକୋମଳ ଅଙ୍ଗଲତା ଉପରେ । ମଝିରେମଝିରେ ଦୁହେଁ ମୋବାଇଲ ନେଟ୍‌ରେ ରୋମାଂଚକର ଦୃଶ୍ୟମାନ

ଦେଖି ଉଲ୍ଲସିତ ହେଉଥାନ୍ତି । ଭବିଷ୍ୟତରେ ଯୋଗାଯୋଗ ପାଇଁ ପରସ୍ପରର ମୋବାଇଲ୍ ନମ୍ବର ସେଭ୍ କରି ରଖିଥାନ୍ତି । ଏମିତି କିଛି ବାଟ ଚାଲିଲା ।

କ୍ରମଶଃ ବାଟ ପାସେଞ୍ଜରମାନଙ୍କ ଭିଡ଼ ଭାଙ୍ଗିଲା ଏବଂ ଗାଡ଼ି ଟିକେ ଫାଙ୍କା ହେଲା । ଗତିଶୀଳ ବସର ଝର୍କା ଫାଙ୍କରେ କନକନିଆ ହେମାଳ ପବନ ପିଟି ହେଉଥାଏ ଆସି ଦେହରେ...... ମୁହଁରେ ! ସେପ୍ଟମ୍ବରର ଶୀତୁଆ ସଞ୍ଜ ସର୍ବାଙ୍ଗରେ ବୋଳି ଦେଉଥାଏ ତା' ଶୀତଳ ପ୍ରଲେପ । କବି ଝଗୁଡୁଙ୍କ ଉଦାସ ମନ ଖୋଜୁଥାଏ ଟିକିଏ ଅନ୍ତରଙ୍ଗ ଉଷ୍ମତା ! ସେ ଆଗ ସିଟ୍‌କୁ ଅନେଇ ଘନ ଘନ ଦୀର୍ଘଶ୍ୱାସ ଛାଡୁଥାନ୍ତି । ଶୀତ ରାତି ସାରା ପୋଖରୀର ହେମାଳ ପାଣି ଭିତରେ ଆକଣ୍ଠ ବୁଡ଼ି ହିଡ଼ରେ ଜଳୁଥିବା ଗୋଟେ ଲଣ୍ଠଣରୁ ଉଷୁମ୍ ଟାଣିବା ଭଳି ଉଲ୍ଲସିତ ହେଉଥାନ୍ତି ସେ ମନେମନେ ।

ଏଣେ ବସ୍ ଭିତରର ଅର୍ଦ୍ଧାଧିକ ଯାତ୍ରୀ ଘାଲେଇ ପଡ଼ିଥାନ୍ତି କ୍ଲାନ୍ତିରେ । କିଛି ଯାତ୍ରୀ ନିରବରେ ଉଡ଼ିବୁଲୁଥାନ୍ତି ନିଜ ନିଜ ଚିନ୍ତା ଜଗତର ।

"ଢେଙ୍କାନାଳ ବାଇପାସ୍....ଢେଙ୍କାନାଳ ବାଇପାସ୍..." ହେଲପର୍ ଟୋକାର ଚିତ୍କାର ସଜାଗ କରିଦେଲା ଯାତ୍ରୀମାନଙ୍କୁ । ଝିଅଟି ମଧ୍ୟ ପ୍ରକୃତିସ୍ଥ ହେଲା । ଯୁବକର ବେଲ୍ଟଭିଡ଼ା କମରକୁ ଗୁଡ଼େଇ ଧରିଥିବା ତା'ହାତଟିକୁ ସନ୍ତର୍ପଣରେ ଖସେଇ ଆଣିଲା । ଯୁବକ ମଧ୍ୟ ଅନିଚ୍ଛା ସତ୍ତ୍ୱେ ଟିକିଏ ଘୁଞ୍ଚି ବସିଲେ । ଝିଅଟା ପାଇପାସ୍ ଛକରେ ଓହ୍ଲେଇବା ଆଗରୁ ଆଞ୍ଜୁଳାଏ ସଜ ଫୁଲ ଭଳି ଝଲକାଏ ମନ ଚହଲା ହସ ବିଞ୍ଚିଦେଲା ଯୁବକ ଉପରେ । ତା'ପରେ ସେ ବସରୁ ଓହ୍ଲେଇଲା ଏବଂ ହାତ ହଲେଇ ଟା'ଟା' କରୁକରୁ ହଜିଗଲା ଅନ୍ଧାରରେ । ଝଗୁଡୁ ଦାସ୍ ସବୁ ଦେଖିଲେ ନିର୍ବିକାର ଭାବେ ।

ବସ୍ ପୁନର୍ବାର ଆଗକୁ ଗଡ଼ିଲା । ପାଞ୍ଚ ମିନିଟ୍ ପରେ ପହଞ୍ଚିଗଲା ଢେଙ୍କାନାଳ ବସ୍‌ଷ୍ଟାଣ୍ଡରେ । ବସ୍ ଏଠି ଅନ୍ତତଃ ଦଶ ମିନିଟ୍ ରହେ ଯାତ୍ରୀମାନଙ୍କ ଚାହାପାଣି ପାଇଁ । ରାତି ନଅଟା ବାଜିବ । ଝଗୁଡୁ ଦାସ ଭାବିଲେ, ଚାହା ଟିକିଏ ପିଇ ଉଦାସ ମନକୁ ଟିକିଏ ସତେଜ କରାଯାଇ ପାରେ । ସେ ସିଟ୍‌ରୁ ଉଠିଲେ । ସଦ୍ୟ ବାନ୍ଧବୀକୁ ହରେଇ ଉଦାସ ମନରେ ବସିଥିବା ଯୁବକ ମଧ୍ୟ ନିଜ ସିଟ୍‌ରୁ ଉଠିଲେ । କିନ୍ତୁ ଉଠିବା ମାତ୍ରେ ସେ କିଛି ଗୋଟେ ଖୋଜିଲେ । ନିଜର ସାମନା ପକେଟ୍ ଏବଂ ପେଣ୍ଟ୍‌ର ବିଭିନ୍ନ ପକେଟ ଉଣ୍ଡାଳି ସେ ବ୍ୟସ୍ତ ବିବ୍ରତ ଭାବେ ଖୋଜିବାରେ ଲାଗିଲେ ।

ଝଗୁଡୁ ଦାସ୍ ଭାରି ସରଳ ଓ ନିଷ୍କପଟ ଲୋକ । ସେ ଯୁବକଙ୍କୁ ପଚାରିଲେ, "ପକେଟରୁ କିଛି ଖସିଗଲା କି ସା'ରେ ?"

ଯୁବକ ସିଟ୍ ତଳେ ହାମୁଡ଼େଇ ପଡ଼ି ଖୋଜୁଖୋଜୁ କୁଣ୍ଠିତ କଣ୍ଠରେ କହିଲେ, "ମୋ'ପର୍ସ୍‌ଟା ଦିଶୁନି !"

*ସୁରେନ୍ଦ୍ର ନାଥ ସାହୁ*

---

"ଦେଖନ୍ତୁ ଭଲରୂପେ । ପଡ଼ିଥିବ ତଳେ ।" ଝଗୁଡୁ କହିଲେ ।

"ନା, ବୋଧେ ଗାଏବ ହେଇଗଲା ।" ଯୁବକ ଖୋଜିବା ଅବ୍ୟାହତ ରଖି କହିଲେ ।

ଦୁଇଜଣ ସହଯାତ୍ରୀ ଉଠିଆସି ପଚାରିଲେ, "ମାନେ...ପକେଟମାର୍ !" କେତେ ଟଙ୍କା ଥିଲା ପର୍ସରେ ?"

ଯୁବକ ବିକଳ ସ୍ୱରରେ କହିଲେ, "ଦଶ ହଜାର ଆଜ୍ଞା ! ଆଜି ହିଁ ବାଦାମବାଡ଼ି ଏ.ଟି.ଏମ୍. ରୁ ଉଠେଇ ଧରିଥିଲି । ନୂଆ ଦୁଇ ହଜାରିଆ ପାଞ୍ଚଟା ! ତା' ସାଙ୍ଗରେ କିଛି ଖୁଚୁରା ନୋଟ୍ ବି ଥିଲା ।"

ଝଗୁଡୁ ଦାସ୍ ପଚାରିଲେ, "ବାହାରେ କେଉଁଠି ପକେଟମାର୍ ହେଇନି ତ ?"

"ନା ! ଢେଙ୍କାନାଳ ପାଇପାସ୍ ପୂର୍ବରୁ ମୁଁ ପର୍ସରୁ ଟିକଟ ବାହାର କରି କଣ୍ଡକ୍ଟରଙ୍କୁ ଦେଖେଇଥିଲି !"

କଣ୍ଡକ୍ଟର ସମେତ ଯାତ୍ରୀମାନେ ପରସ୍ପରକୁ ଅନେଇଲେ କୌତୁହଳୀ ଆଖିରେ ! ଯୁବକ କିନ୍ତୁ ବାରମ୍ବାର କୌଣସି ଗୋଟେ ନମ୍ବରରେ ଫୋନ୍ ଲଗାଇ ହତାଶ ଦିଶୁଥିଲେ, କାରଣ ଅପରପଟୁ ଘୋଷଣା ଶୁଭୁଥିଲା, "ଆପଣ ଗୋଟିଏ ଭୁଲ ନମ୍ବରକୁ ଲଗାଇଛନ୍ତି । .....ଏହି ନମ୍ବର କାହାରିକୁ ଦିଆଯାଇନାହିଁ !"



# ବତିଘର

ବାଉଁଶ ଜଙ୍ଗଲ ଭିତରେ ଚନ୍ଦନବୃକ୍ଷଟିଏ ଭଳି ମଧୁମାଷ୍ଟ୍ରେ ଥିଲେ ସେ ଖଣ୍ଡମଣ୍ଡଳରେ ଜଣେ ସମ୍ମାନାସ୍ପଦ ବ୍ୟକ୍ତି । କନକପୁର ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ମଧୁସୂଦନ ଦାସଙ୍କୁ ଲୋକେ 'ମଧୁମାଷ୍ଟ୍ରେ' ନାଆଁରେ ହିଁ ଜାଣିଥିଲେ । କୁମ୍ଭକାର କଞ୍ଚାମାଟିକୁ ଚକଟି ବିଭିନ୍ନ ରୂପ ଦେବାଭଳି ସେ ନିଜ ହାତରେ ଗଢ଼ିଛନ୍ତି ଏ ଅଞ୍ଚଳର ଅନେକ ଛାତ୍ରଛାତ୍ରୀଙ୍କୁ । ସେମାନଙ୍କ ମଧ୍ୟରୁ ଅନେକେ ଏବେ ବଡ଼ବଡ଼ ପଦପଦବୀରେ ଅବସ୍ଥାପିତ । ନିଜ ଛାତ୍ରଛାତ୍ରୀଙ୍କ ସଫଳତାର କାହାଣୀ ଶୁଣିଲେ ମଧୁମାଷ୍ଟ୍ରଙ୍କ ଛାତି ଗର୍ବରେ ଚଉଡ଼ା ହୋଇଯାଏ । କିନ୍ତୁ ନିଜର ଏକମାତ୍ର ପୁଅ ସୁବ୍ରତ ବିଷୟରେ ଭାବିବା ବେଳକୁ ତାଙ୍କ ଭାବନାବୃକ୍ଷର ଡାଳପତ୍ରମାନେ ମଉଳିଯାଆନ୍ତି ।

ସୁବ୍ରତ ପ୍ରଥମରୁ ହିଁ ପାଠରେ ଦୁର୍ବଳ । ଯେଉଁ ପ୍ରାଥମିକ ଶିକ୍ଷା ଓ ନୈତିକ ସଂସ୍କାର ଦେଇ ମଧୁମାଷ୍ଟ୍ରେ ଅନ୍ୟପିଲାଙ୍କୁ ଗଢ଼ିଛନ୍ତି ନିଜ ପୁଅକୁ ମଧ୍ୟ ତାହା ହିଁ ଦେଇଛନ୍ତି । କିନ୍ତୁ ସୁବ୍ରତ ଛୋଟବେଳୁ ପଢ଼ାରେ ଅମନଯୋଗୀ । ତା' ପଢ଼ାରେ ଉନ୍ନତି ଆଣିବା ପାଇଁ ମଧୁମାଷ୍ଟ୍ରେ ଯତପରୋନାସ୍ତି ପ୍ରୟାସ କରି ମଧ୍ୟ ବିଫଳ ହେଲେ । ଫଳସ୍ୱରୂପ ସୁବ୍ରତ ଯଥେଷ୍ଟ କମ ନମ୍ବର ରଖି ମାଟ୍ରିକ ପାସ୍ କଲା । ତାକୁ ଆଗକୁ ପଢ଼ାଇବା ପାଇଁ ମାଷ୍ଟ୍ରଙ୍କର ଆଉ ବଳ ପାଇଲା ନାହିଁ ! କିନ୍ତୁ ସେଥିପାଇଁ ସେ ଦୁଃଖିତ ନଥିଲେ, ବରଂ କହୁଥିଲେ, ସୁବ୍ରତ ଅଳ୍ପଶିକ୍ଷିତ ହେଉ ପଛେ ଅମଣିଷ ନ'ହେଉ ! କମ୍ ହେଉ ପଛେ ନୈତିକ ଉପାୟରେ କିଛି ରୋଜଗାର କରି ପେଟ ପୋଷୁ । ପୁଅର ଭବିଷ୍ୟତକୁ ନେଇ ବେଳେବେଳେ ସେ ଚିନ୍ତିତ ରହନ୍ତି । କାରଣ ତାଙ୍କର ରିଟାୟାରମେଣ୍ଟ୍ ସମୟ ପାଖେଇ ଆସିଲାଣି । ରହିଲା, ଆଉ ମାତ୍ର ଦୁଇଟା ବର୍ଷ !

ମଧୁମାଷ୍ଟ୍ରେ ଯଥେଷ୍ଟ ବିଳମ୍ବରେ ଆରମ୍ଭ କରିଥିଲେ ଘରସଂସାର ! ପଇଁତିରିଶି ବର୍ଷ ବୟସରେ ତାଙ୍କ ଜୀବନ ପରିଧୀ ଭିତରକୁ ପ୍ରବେଶ କରିଥିଲେ କାମିନୀଦେବୀ । ପଛ ଧାଡ଼ିରେ ଠିଆହୋଇ ହାତ ପସାରିଥିବା ଭକ୍ତକୁ ବିଳମ୍ବରେ ହିଁ ଠାକୁରଙ୍କ ପ୍ରସାଦ ମିଳେ । ବୋଧେ ସେହି ନ୍ୟାୟରେ ସୁବ୍ରତ ବିଳମ୍ବରେ ହିଁ ଆସିଥିଲା କାମିନୀଦେବୀଙ୍କ କୋଳକୁ । ବିବାହର ପ୍ରାୟ ସାତବର୍ଷ ପରେ ସୁବ୍ରତର ଜନ୍ମ । ତା' ଦୁଇବର୍ଷ ପରେ ଝିଅ ସୁମିତ୍ରା । ଭାଇଭଉଣୀଙ୍କ ପଢ଼ାରେ ମଧ୍ୟ ସେହି ଦୁଇ ବର୍ଷର ବ୍ୟବଧାନ । ସୁବ୍ରତ ମାଟ୍ରିକ୍ ପାସ୍ କଲା, ସୁମିତ୍ରାର ଏ ବର୍ଷ ନବମ ।

*ସୁରେନ୍ଦ୍ର ନାଥ ସାହୁ*

ମଧୁମାଷ୍ଟ୍ରେ ଜଣେ ବାସ୍ତବବାଦୀ ମଣିଷ । ପୋଥି ପାଇଗଣ ନୁହେଁ, ବାଡ଼ି ବାଇଗଣରେ ସେ ବିଶ୍ୱାସୀ । ତାଙ୍କ ବାପା ବି ଥିଲେ ସେଇ ଗାଆଁର ଅବଧାନ । ମଲା ବେଳକୁ ଏକମାତ୍ର ପୁଅ ମଧୁଙ୍କ ପାଇଁ ସେ ରଖି ଯାଇଥିଲେ ନାଆଁକୁ ମାତ୍ର କିଛି ଭାଗଚାଷ ଜମି ଆଉ ଜେଜେବାପାଙ୍କ ଅମଳର ଚାଳିଆ ଖଣ୍ଡିକ । ତା' ସହିତ ମଧୁମାଷ୍ଟ୍ରଙ୍କ ଦୁର୍ବଳ ପିଠିରେ ନାଉ କରି ଯାଇଥିଲେ ତିନି ଅଭିଆଡ଼ୀ ଭଉଣୀଙ୍କୁ ! ଜଣେ ପ୍ରାଇମେରୀ ଶିକ୍ଷକଙ୍କ ସ୍ୱଳ୍ପ ଦରମା, ସେତେବଡ଼ ପରିବାର ପାଇଁ ସମୁଦ୍ରକୁ ଶଙ୍ଖେ ! ସେଭଳି ଅଭାବ ଅସୁବିଧା ଭିତରେ ନିଜ କଥା ପଛକୁ ରଖି, ଭଉଣୀମାନଙ୍କ ଭବିଷ୍ୟତ ସଜାଡୁ ସଜାଡୁ ମଧୁମାଷ୍ଟ୍ରଙ୍କ ଅଣ୍ଟା ବଙ୍କେଇଗଲା । ଜମିତକ ଚଲୁ ହେଇଗଲା । ଜେଜେଙ୍କ ଅମଳର ଛପର ଚାଳିଆ ଖଣ୍ଡିକ ଖପରଲି କରୁକରୁ ଆଜି ତାଙ୍କ ମାଷ୍ଟ୍ର ଚାକିରି ସରିବାକୁ ବସିଲାଣି । ପୁଣି ମୁଣ୍ଡ ଉପରେ ଅଛି ବଢ଼ିଲା ଝିଅର ବୋଝ ! ହାତରୁ ଆଇସ୍କ୍ରୀମ ତରଳି ବୋହିଗଲା ଭଳି ବରଷ ଦୁଇଟା ଚାହୁଁଚାହୁଁ ହଜିଯିବ କ୍ୟାଲେଣ୍ଡର ପୃଷ୍ଠାରୁ । ଅବସରକାଳୀନ ଟଙ୍କା ଯାହା କିଛି ମିଳିବ, ସେଥିରେ ଝିଅ ସୁମିତ୍ରା ସିନା କୌଣସି ପ୍ରକାରେ ପାରି ହେଇଯିବ, ତା'ପରେ ?

ମଧୁମାଷ୍ଟ୍ରେ ଭାବନ୍ତି, ତାଙ୍କ ଚାକିରିଟା ଥାଉଥାଉ ଯଦି ସୁବ୍ରତର ଦି'ପଇସା ରୋଜଗାର କରିବା ଯୋଗ୍ୟତା ଆସିଯାଆନ୍ତା, ତା'ହେଲେ ସିନା ସେ ଟିକିଏ ନିଶ୍ଚିନ୍ତ ହୁଅନ୍ତେ । ହେଲେ ସୁବ୍ରତ ଭଳି ଅଳ୍ପଶିକ୍ଷିତ ପିଲା କି ରୋଜଗାର କରିପାରିବ ଏ ବୟସରେ ?

ଏହି କଥାକୁ ନେଇ ମଧୁମାଷ୍ଟ୍ରେ ଅନେକ ଭାବିବା ପରେ ଠିକ୍ କଲେ, ସୁବ୍ରତକୁ 'ଆଇ.ଟି.ଆଇ'ରେ ପଢ଼େଇବେ । ଅନ୍ୟ ଯୋଉ ପାଠ ପଢ଼େଇଲେ ବି ପ୍ରଚୁର ପଇସା ଓ ପର୍ଯ୍ୟାପ୍ତ ସମୟ ଲୋଡ଼ା । ଏ ଦୁଇଟାଯାକ ବ୍ୟୟ କରିବା ପାଇଁ ସେ ଅସମର୍ଥ । ଅଳ୍ପ ଖର୍ଚ୍ଚ ଆଉ ମାତ୍ର ଦୁଇ ବର୍ଷର ଟ୍ରେନିଙ୍ଗ୍ ପରେ ପୁଅକୁ ଆଇ.ଟି.ଆଇ ସାର୍ଟିଫିକେଟ୍ ଖଣ୍ଡେ ନିଶ୍ଚୟ ମିଳିଯିବ । ସେହି ସାର୍ଟିଫିକେଟ୍ ଖଣ୍ଡିକୁ ଆଶ୍ରାବାଡ଼ି କରି ପିଲାଟା ଅନ୍ତତଃ ସ୍ଥିରଭାବରେ ଠିଆ ତ ହେଇପାରିବ । ଚାକିରି ମିଳୁ କି ନ'ମିଳୁ, ବ୍ୟାଙ୍କଲୋନ୍ କିଛି ଆଣି ରାସ୍ତା କଡ଼ରେ ଛୋଟ ଗ୍ୟାରେଜ୍ କି ୱାର୍କସପ୍ ଗୋଟେ ତ କରିପାରିବ । ଅନ୍ତତଃ ଏତିକି ଆଶା ରଖିଥିଲେ ମଧୁମାଷ୍ଟ୍ରେ !

ସୁବ୍ରତ ମଧ୍ୟ ବାପାଙ୍କ ପ୍ରସ୍ତାବକୁ ସମ୍ମତି ଦେଲା । କିନ୍ତୁ ଦୁଃଖର କଥା, ମାଟ୍ରିକରେ ଭଲ ନମ୍ବର ନଥିବା ହେତୁ ତାକୁ ବ୍ରହ୍ମପୁର ସରକାରୀ ତାଲିମ ଅନୁଷ୍ଠାନରେ ସିଟ୍ ମିଳିଲା ନାହିଁ । ସେହି ସହରର ଗୋଟେ ବେସରକାରୀ ଶିଳ୍ପଶିକ୍ଷା ଅନୁଷ୍ଠାନରେ ସୁବ୍ରତକୁ ଆଡ଼ମିସନ୍ କରିବାକୁ ସେ ବାଧ୍ୟହେଲେ । ଅଳ୍ପ ଖର୍ଚ୍ଚରେ ହଷ୍ଟେଲ୍‌ରେ ରହିବା ବ୍ୟବସ୍ଥା ବି କଲେ ।

ବ୍ରହ୍ମପୁର ! ତାଙ୍କ ଗାଆଁରୁ ପ୍ରାୟ ଚାଳିଶି କିଲୋମିଟର୍ ଦୂର । ସୁବ୍ରତକୁ ଦୀର୍ଘ ଦୁଇବର୍ଷ ରହିବାକୁ ପଡ଼ିବ ସେହି ଅଚିହ୍ନା ସହରର ଗୋଟେ ଶିଳ୍ପାନୁଷ୍ଠାନ ହଷ୍ଟେଲରେ ।

ଘର ଛାଡ଼ିବା ପୂର୍ବଦିନ ସୁବ୍ରତକୁ ପାଖରେ ବସେଇ ରାତି ଅଧଯାକେ ବାପା ବୁଝାଇଥିଲେ ଅନେକ କଥା । ଦେଇଥିଲେ କେତେ ଉପଦେଶ, "ବାବୁ ରେ ! ବ୍ରହ୍ମପୁର ସହର । ତୋ'ପାଇଁ ନୂଆ ଜାଗା । ଜଗିରଖି ଚଳିବୁ । ତୁ ଜାଣିଛୁ, ଆମର ଆୟ ସୀମିତି । ଆଜେବାଜେ ଖର୍ଚ୍ଚ କରିବୁ ନାଇଁ । ଅଯଥା କଥାରେ କାନ ଦେବୁନାଇଁ । ଜାଣିରଖ, ଛାତ୍ର ଜୀବନଟା ବ୍ରହ୍ମଚାରୀର ଜୀବନ ! ବିଚଳିତ କରିବୁନି ମନକୁ । ଗୋଡ଼ ଖସେଇବୁନି ଖଣ୍ଡା ଦାଢ଼ରୁ । କୁସଙ୍ଗରେ ପଡ଼ିଲେ ମଣିଷ ରାସାତଳଗାମୀ ହୋଇଯାଏ । ସଦାବେଳେ ସେଭଳି ସାଙ୍ଗଠାରୁ ନିଜକୁ ଦୂରେଇ ରଖିବୁ । ପଙ୍କ ଭିତରେ ପଦ୍ମ ପରି ଅମଳିନ ରଖିବୁ ଚରିତ୍ରକୁ ।"

ବାପାଙ୍କ ଅମୂଲ୍ୟ ଉପଦେଶକୁ ଗଣ୍ଠିଧନ କରି ସୁବ୍ରତ ଘର ଛାଡ଼ିଥିଲା । ଆଇ.ଟି.ଆଇ ର ନୂଆ ସାଥୀଙ୍କ ମେଳରେ କେମିତି ଗୋଟେ ଖାପଛଡ଼ା ଲାଗିଥିଲା ତାକୁ ପ୍ରଥମ କିଛି ଦିନ । ହଷ୍ଟେଲର ପ୍ରତି କୋଠରୀରେ ଦୁଇଜଣ କରି ଛାତ୍ର ରହିବା ବ୍ୟବସ୍ଥା ଥିଲା । ସୌଭାଗ୍ୟକ୍ରମେ ତା' ଉପର ବ୍ୟାଚ୍‌ର ଗୌରବ ନାମକ ସରଳ ଓ ସତ୍‌ଚରିତ୍ର ଯୁବକ ଥିଲା ସୁବ୍ରତର ପ୍ରଥମ ବର୍ଷର ରୁମ୍‌ମେଟ୍ ! ତୁଳସୀ ଓ ଚନ୍ଦନର ପବିତ୍ର ସମ୍ପର୍କ ଭଳି ଗୌରବ ଓ ସୁବ୍ରତର ବନ୍ଧୁତା ବେଶ୍ ସୌହାର୍ଦ୍ଦ୍ୟ ଭିତରେ ଚାଲିଲା । କୋଇଲାଖଣି ଭିତରେ ହୀରାଟିଏ ଭଳି ଆଇ.ଟି.ଆଇ ହୋଷ୍ଟେଲ୍‌ରେ ଏଡ଼େ ନୀତିବାନ୍ ବନ୍ଧୁଟିଏ ପାଇବ ବୋଲି ସେ ବୋଧେ ଆଶା କରିନଥିଲା । ଗୌରବ ପାଖରୁ ଅନେକ ଉତ୍ତମ ସଂସ୍କାର, ଶିକ୍ଷା ଓ ଦିଗଦର୍ଶନ ପାଇ ନିଜକୁ ଭାଗ୍ୟବାନ୍ ମନେ କରୁଥିଲା ସୁବ୍ରତ । ଏ ଖବର ପାଇ ମଧୁମାଷ୍ଟ୍ରେ ମଧ୍ୟ ଚିନ୍ତାମୁକ୍ତ ହେଲେ ।

ଯା'ହେଉ, ପ୍ରଥମ ବର୍ଷଟି ସ୍ୱଚ୍ଛନ୍ଦରେ କଟିଗଲା ସୁବ୍ରତର । ଅବଶ୍ୟ ତା' ଭିତରେ ଯେ ତାକୁ ଅନେକ ଝଡ଼ଝଞ୍ଜାର ମୁକାବିଲା କରିବାକୁ ନ'ପଡ଼ିଛି ସେ କଥା ନୁହେଁ । ହଷ୍ଟେଲରେ ରହିବା ପରଦିନ ହିଁ ତାକୁ ର୍‍ୟାଗିଂର ଶିକାର ହେବାକୁ ପଡ଼ିଥିଲା । ସୁବ୍ରତ ପାଇଁ 'ର୍‍ୟାଗିଂ' ଶବ୍ଦଟି ଥିଲା ସମ୍ପୂର୍ଣ୍ଣ ଅପରିଚିତ । ର୍‍ୟାଗିଂର ଅର୍ଥ ସେ ଯେତେବେଳେ ଜଣେ ସାଙ୍ଗ ପାଖରୁ ଶୁଣିଲା, ଭୟରେ ଶିହରି ଉଠିଲା ତା' ଦେହ । ସତକୁସତ ସିନିୟର ବ୍ୟାଚ୍‌ର ପିଲାମାନେ ଆସି ତା' ଉପରେ ଯା'ଛା ତା' ଅତ୍ୟାଚାର କରିଥିଲେ । ଜୀବନରେ ସିଗାରେଟ୍‌କୁ ସ୍ପର୍ଶ ମଧ୍ୟ କରିନଥିବା ସୁବ୍ରତକୁ ବାଧ୍ୟ କରିଥିଲେ ସିଗାରେଟ୍ ପିଇ ନାକବାଟେ ଧୂଆଁ ଛାଡ଼ିବାକୁ । ଆକଣ୍ଠ ଘୃଣା ଓ ଅନିଚ୍ଛା ସତ୍ତ୍ୱେ ବିଚରା ଟାଣିଥିଲା ଖଣ୍ଡେ ସିଗାରେଟ୍ ବଡ଼ କଷ୍ଟରେ । ଓଃ ! କି ଭୟଙ୍କର ପରିସ୍ଥିତି !! କିନ୍ତୁ ପରେ ସେ ଖୁସି ମଧ୍ୟ ହୋଇଥିଲା । ଖୁସି ଏଥିପାଇଁ ଯେ, ବଡ଼ଭାଇମାନେ ତାକୁ ସିଗାରେଟ୍ ବଦଳରେ ଅନ୍ତତଃ ମଦ ପିଇବାକୁ ବାଧ୍ୟ କରିନାହାନ୍ତି ।

ର୍‍ୟାଗିଂର ଦ୍ୱିତୀୟ ଦିନ । ସୁବ୍ରତକୁ ଦିଆଗଲା 'ସମ୍ଭୋଗ ଶିକ୍ଷା' ନାମକ ଖଣ୍ଡେ ଅଶ୍ଳୀଳ ବହି । ହୁକୁମ ମିଳିଲା, ତା' ଭିତରୁ କିଛି ପୃଷ୍ଠା ବଡ଼ ପାଟିରେ ପଢ଼ି ସମସ୍ତଙ୍କୁ ଶୁଣାଇବା ପାଇଁ । ଲୁଣ ସଂସ୍ପର୍ଶରେ ଆସିଥିବା ଜୋକଟିଏ ଭଳି ସୁବ୍ରତ ଲଜ୍ଜାରେ ସଙ୍କୁଚିତ

ହୋଇଗଲା । ତଥାପି ଭୀରୁ ଓ ନିର୍ଲ୍ଲଜଙ୍କ ଭଳି ସେ ସେହି ଆଦେଶ ପାଳନ କରିବାକୁ ବାଧ୍ୟ ହେଲା । ତା' ସହିତ ସେ ଆଶ୍ୱସ୍ତ ମଧ୍ୟ ହେଲା । ଆଶ୍ୱସ୍ତ ଏଥିପାଇଁ ହୋଇଥିଲା ଯେ, ବଡ଼ଭାଇମାନେ ତାକୁ ଅନ୍ତତଃ ଜଣେ ବେଶ୍ୟାକୁ ଆଣି ସମସ୍ତଙ୍କ ଆଗରେ ସମ୍ଭୋଗ କରିବାକୁ ଆଦେଶ ଦେଇନାହାନ୍ତି । ସେ ମନେମନେ ଠାକୁରଙ୍କୁ ଡ଼ାକୁଥିଲା, – ହେ ଭଗବାନ୍ ! ଶିକ୍ଷାକେନ୍ଦ୍ର ଭଳି ପବିତ୍ର ପୀଠମାନଙ୍କରେ ର୍‍ୟାଗିଂ ଭଳି ଏ ଭୟଙ୍କର କୁପ୍ରଥା କାହିଁକି ? ଗତ ପିଢ଼ିରୁ ଆଗାମୀ ପିଢ଼ିକୁ ଏ ଘୃଣ୍ୟ ପରମ୍ପରା ସଂକ୍ରାମକ ରୋଗ ଭଳି କାହିଁକି ମାଡ଼ି ଚାଲିଛି । ଯା'ର କ'ଣ ଅନ୍ତ ନାହିଁ ? ର୍‍ୟାଗିଂକୁ ଲଗାମ ଦେବା ପାଇଁ କ'ଣ ପ୍ରଶାସନ ଉଚିତ ପଦକ୍ଷେପ ନେଇ ପାରିବନି ? ?' ଏଭଳି କିଛି ପ୍ରଶ୍ନ ସୁବ୍ରତର ଦୁର୍ବଳ ଚେତନା ଭିତରେ ଉଦୟ ହୋଇ ପୁଣି ମଉଳିଗଲା ଦିନେ ଦୁଇଦିନ ପରେ ।

ଏଭଳି ନାନା ପ୍ରତିକୂଳ ପ୍ରବାହର ସାମନା କରି ସୁବ୍ରତ ତା' ଚରିତ୍ରର ହୁଲିଡଙ୍ଗାଟିକୁ ଧରି ଆଗେଇ ଚାଲିଥିଲା । ବନ୍ଧୁ ଗୌରବର ସାହଚର୍ଯ୍ୟ ଓ ବାପାଙ୍କ ନୀତିବାଣୀର କବଚ ପରିଧାନ କରି ସେ ସୁରକ୍ଷିତ ମଣୁଥିଲା ନିଜକୁ । ମଧୁମାଷ୍ଟ୍ରେ ତାଙ୍କ ସୀମିତ ଦରମାରୁ ଖର୍ଚ୍ଚକାଟ କରି ପଠାନ୍ତି ଯତ୍‌କିଂଚିତ ମାସିକ ଖର୍ଚ୍ଚ ସୁବ୍ରତ ପାଇଁ ।

ସବୁକିଛି ଠିକ୍‌ଠାକ୍ ଚାଲିଥିଲା; କିନ୍ତୁ ଦ୍ୱିତୀୟ ବର୍ଷଠାରୁ କୃଷ୍ଣପକ୍ଷର ଜହ୍ନ ଭଳି ସୁବ୍ରତର ଚରିତ୍ର ଧୀରେଧୀରେ ମଳିନ ପଡ଼ିବାକୁ ଆରମ୍ଭକଲା । ଏତେ ଜଗିରଖି ଚଳୁଥିବା ପିଲାଟା ଏମିତି ବଦଳିଯିବ ବୋଲି କେହି ବିଶ୍ୱାସ କରିନଥିଲେ ।

ରୁମ୍‌ମେଟ୍ ଗୌରବ ପଢ଼ା ଶେଷ ହେବାରୁ ହଷ୍ଟେଲ୍ ଛାଡ଼ି ଦେଇଥିଲା । ତା' ଦ୍ୱିତୀୟ ବର୍ଷର ରୁମମେଟ୍ ଥିଲା 'ରାଖାଲ' । ଅଦୂରବର୍ତ୍ତୀ ଗାଆଁର ଜଣେ ଅଳ୍ପଶିକ୍ଷିତ ଜମିଦାରଙ୍କ ଦିଗଭ୍ରଷ୍ଟ ପୁଅ 'ରାଖାଲ୍ ରାୟ' । ଶିକ୍ଷାନୁଷ୍ଠାନର କିଛି ଚରିତ୍ରହୀନ ପିଲାଙ୍କର ସିଏ ଥିଲା ନେତା । ତା' ବନ୍ଧୁମାନେ ଦାବି କରନ୍ତି, ରାଖାଲ୍ ଦିନରେ ଅନ୍ତତଃ ଆଠ ପ୍ୟାକେଟ୍ ସିଗାରେଟ୍‌କୁ ଧୂଆଁ କରି ଉଡ଼େଇ ଦେଇପରେ ! ସିଗାରେଟ୍ ଭିତରେ ଡ୍ରଗସ୍ ଭରି ପିଇବା ଦକ୍ଷତା କେବଳ ରାଖାଲ୍ ପାଖରେ ଅଛି । ସେଭଳି ବିଶୃଙ୍ଖଳ, ଲଗାମଛଡ଼ା, ପଥଭ୍ରଷ୍ଟ ରାଖାଲ୍ ହେଲା ସୁବ୍ରତ ଭଳି ସୁନାପିଲାର ରୁମମେଟ୍ ।

ଶୁଣିବାକୁ ମିଳିଲା, ହଷ୍ଟେଲ୍ ଅଧିକ୍ଷକ ଜାଣିଶୁଣି ରାଖାଲକୁ ସୁବ୍ରତ ସାଙ୍ଗରେ ଗୋଟିଏ ରୁମରେ ରହିବା ବ୍ୟବସ୍ଥା କରିଥିଲେ । ଅବଶ୍ୟ ତାଙ୍କ ଉଦ୍ଦେଶ୍ୟ ଥିଲା ମହତ୍ ! ସେ ଆଶା କରିଥିଲେ, ପରଶମଣିର ସଂସ୍ପର୍ଶରେ ଆସିଲେ ଲୁହା, ସୁନାରେ ରୂପାନ୍ତରିତ ହେବାଭଳି ସୁବ୍ରତ ସହିତ ରହିଲେ ରାଖାଲ୍‌ର ଚରିତ୍ର ହୁଏତ ବଦଳିପାରେ ! କିନ୍ତୁ ସେ ଆଶଙ୍କା କରିନଥିଲେ ଯେ, ଟୋପାଏ ବିଷ ଠେକିଏ ଦୁଧକୁ ବି ହଳାହଳରେ ପରିଣତ କରିଦେଇ ପାରେ ବୋଲି । ପରିସ୍ଥିତି ଠିକ୍ ତାହା ହିଁ ହୋଇଥିଲା ।

ରାଖାଲ ସାଙ୍ଗରେ କିଛିଦିନ ରହିବା ପରେ ସୁବ୍ରତ ଜୀବନର ନୀତିଚକ୍ର ଓଲଟା ଘୂରିବାକୁ ଆରମ୍ଭ କଲା । ରାଖାଲ୍ ତା'କାନରେ କି ମନ୍ତ୍ର ଫୁଙ୍କିଲା କେଜାଣି, ଦିନ କେଇଟା ଭିତରେ ସୁବ୍ରତର ସୁନାଭଳି ଚରିତ୍ରରେ କଳଙ୍କି ଲାଗିବାର ଦେଖାଗଲା । ଦିନେଦିନେ ସୁବ୍ରତ ଓଠରେ ମଧ୍ୟ ଦେଖିବାକୁ ମିଳିଲା ଦାମି ସିଗାରେଟ୍ । ମାସର ଅର୍ଦ୍ଧାଧିକ ଦିନ ରାଖାଲ୍ ମେସ୍ ଛାଡ଼ି ସହରର କୌଣସି ରେଷ୍ଟୁରାଣ୍ଟରେ ଖାଏ । ସୁବ୍ରତକୁ ମଧ୍ୟ ଦିନେଦିନେ ରାଖାଲ ପଛରେ ତା' ପୋଷାକୁକୁର ଭଳି ରେଷ୍ଟୁରାଣ୍ଟ ପର୍ଯ୍ୟନ୍ତ ଦଉଡ଼ିବା ଦେଖାଗଲା । ଅବଶ୍ୟ ଏଥିପାଇଁ ସୁବ୍ରତକୁ ତା' ବାପାଙ୍କ ପ୍ରେରିତ ସୀମିତ ଅର୍ଥ ଉପରେ ଆଦୌ ନିର୍ଭର କରିବାକୁ ପଡୁନଥିଲା । ବରଂ ଧୂର୍ତ୍ତ ରାଖାଲ୍ ତା' ଜମିଦାର ବାପାଙ୍କୁ 'ଇଂଜିନିୟରିଙ୍ଗ୍' ପଢ଼ାର ସ୍ୱପ୍ନ ଦେଖାଇ ଆଣୁଥିଲା ପ୍ରଚୁର ଅର୍ଥ ଏବଂ ଖର୍ଚ୍ଚ କରୁଥିଲା ଏହି ବାଟରେ ।

ସୁବ୍ରତ ପାଇଁ ଏଭଳି ଅଯାଚିତ ଅର୍ଥବ୍ୟୟ ସେ କେବଳ ବନ୍ଧୁତା ଖାତିରରେ କରୁଥିଲା, ଏଥବା ସେଥିରେ ନିହିତ ଥିଲା ଅନ୍ୟ ଉଦ୍ଦେଶ୍ୟ, ତାହା କେହି ଜାଣିନଥିଲେ; କିନ୍ତୁ ଏକଥା ସମସ୍ତେ ଜାଣିଥିଲେ ଯେ, ସୁବ୍ରତ ଭଳି ଗୋଟେ ଚରିତ୍ରବାନ୍ ପିଲା ତା' ଆଦର୍ଶର ହୁଲିଡ଼ଙ୍ଗାରୁ ଅତି ନିର୍ଲ୍ଲଜଭାବେ ଖସିପଡ଼ିଛି ।

ମଣିଷକୁ ଦେବତା ହେବା ପାଇଁ ଯୁଗଯୁଗର ସାଧନା ଦରକାର କିନ୍ତୁ ଦେବତାକୁ ପଶୁ ହେବା ପାଇଁ ମୋଟେ ସମୟ ଲାଗେନାହିଁ । ଠିକ୍ ସେମିତି, ଦିନ କେଇଟା ଭିତରେ ସମ୍ପୂର୍ଣ୍ଣ ପଥଭ୍ରଷ୍ଟ ହୋଇଯାଇଥିଲା ସୁବ୍ରତ । ପିଲାଟିର ଏଭଳି ପରିବର୍ତ୍ତନ ଦେଖି ଅନୁଷ୍ଠାନର ଅଧିକାରୀମାନେ ତାକୁ ବୁଝାଇବାକୁ ଚେଷ୍ଟା କରିଥିଲେ, ହେଲେ ଶେଷରେ ସେମାନେ ହିଁ ବୁଝିଗଲେ ଯେ, 'ବୁଡ଼ିଯାଉଥିବା ଲୋକର ପାଦ ସଦାବେଳେ ତଳକୁ..ତଳକୁ' ଏ ନୀତିବାକ୍ୟ ମିଛ ନୁହେଁ ।

ସୁବ୍ରତକୁ ଏଥର କ୍ଲାସ୍ ସମୟରେ ଦେଖିବାକୁ ମିଳିଲା ଗାର୍ଲସ୍ ହଷ୍ଟେଲ୍ ଗେଟ୍ ଅଥବା ଉଇମେନ୍ସ କଲେଜ୍ ଛକରେ, ବେପରୱା ରାଖାଲ୍ ସହିତ । ଥିଓରୀ ଓ ପ୍ରାକ୍ଟିକାଲ୍ କ୍ଲାସ୍ ଆଟେଣ୍ଡ କରିବା ବଦଳରେ ସିନେମା ଦେଖା ଓ ବଜାର ଭ୍ରମଣ ପାଲଟିଗଲା ତା'ର ହବି । ସୁବ୍ରତର ଏଭଳି ନୈତିକ ପତନର ସୂଚନା ତା' ନୀତିନିଷ୍ଠ ବାପାଙ୍କ ପାଖରେ ହୁଏତ ପହଂଚିପାରୁନଥିଲା । ଅପରନ୍ତୁ ମଧୁମାଷ୍ଟ୍ରେ ପୁଅର ପୁରୁଣା ଚରିତ୍ରପଞ୍ଜିକା ଦେଖି ଖୁସି ଥିଲେ ।

ଦିନକର କଥା । ସେ ଦିନ ରବିବାର । ରାଖାଲ୍ କହିଲା, "ଜାଣିଛୁ ବନ୍ଧୁ ! ମୋ'ର ଆଜି ବର୍ଥ ଡେ ! ବାପାଙ୍କୁ ମୁଁ କହିଥିଲି, ବର୍ଥ ଡେ ସେଲିବ୍ରେସନ୍ ପାଇଁ କମ୍‌ସେକମ୍ ତିନି ହଜାର ଟଙ୍କା ପଠେଇବାକୁ । ହେଲେ ସେ କଞ୍ଜୁସ୍ ବୁଢ଼ା ଦେଇଛି ମାତ୍ର ଅଢ଼େଇ ହଜାର ! ଠିକ୍ ଅଛି । ଏଠି ତୋ' ଛଡ଼ା ମୋ'ର ଆଉ ବୋଜମ୍ ଫ୍ରେଣ୍ଡ କିଏ ଅଛି ? ନୋ' ପ୍ରୋବ୍ଲେମ୍ ! ଏ ଥରଟା ଏତିକିରେ ହିଁ ଚଳେଇନେବା । ଚାଲ୍ । ଲେଟ୍‌ଅସ୍ ସେଲିବ୍ରେଟ୍ ! !"

*ସୁରେନ୍ଦ୍ର ନାଥ ସାହୁ*

ସନ୍ଧ୍ୟାରେ ଦୁଇବନ୍ଧୁ ଚାଲିଲେ ଗୋଟେ ଅଭିଜାତପୂର୍ଣ୍ଣ ରେଷ୍ଟୁରାଣ୍ଟକୁ । ଟେବୁଲ୍ ଉପରେ ସଜ୍ଜିତ ହେଲେ ଆସି 'ଚିକ୍ଳେନ୍ କୁର୍ମା, ବିରିୟାନି, ସାହି କବାବ୍' ଭଳି ଦୁର୍ଲଭ ଦ୍ରବ୍ୟମାନ ଏବଂ ମଝିରେ ଶୋଭା ପାଇଲା କୃଷ୍ଣବର୍ଣ୍ଣର ବିଦେଶୀ ବୋତଲଟିଏ । ସୁବ୍ରତ୍ ଚମକି ପଡ଼ିଲା । ସେ ଅବଶ୍ୟ ଜାଣେ, ରାଖାଲ୍ ବେଳେବେଳେ ପିଏ । ହେଲେ ରାଖାଲ୍ ସହିତ ବସି ତାକୁ ଆଜି ମଦ ପିଇବାକୁ ପଡ଼ିବ ! ! ଏହି ପ୍ରଶ୍ନଟି ମୁଣ୍ଡକୁ ଢୁକିବା କ୍ଷଣି ସୁବ୍ରତର ଶୋଇପଡ଼ିଥିବା ବିବେକ ଭିଡ଼ିମୋଡ଼ି ହୋଇ ଉଠିବାକୁ ଚେଷ୍ଟା କଲା । "ଭାଇ.. ମତେ କ୍ଷମା କର ! ଏସବୁ ପାରବିନି ମୁଁ ! !" ଦୁଇହାତ ଯୋଡ଼ି ଉଠୁଥିଲା ସେ ଚେୟାର୍ ଉପରୁ । ରାଖାଲ୍ ତା' ହାତ ଟାଣି ଜବରଦସ୍ତ ପୁଣି ବସେଇଦେଲା ଏବଂ ମନ୍ତ୍ର ଫୁଙ୍କିବା ଆରମ୍ଭ କଲା । ତାନ୍ତ୍ରିକର ମନ୍ତ୍ରରେ ଅପଦେବତା ବଶ ହେବାଭଳି ରାଖାଲ୍‌ର ବାର୍ଣ୍ଣିସ୍‌ବୋଳା କଥା ଶୁଣି ସୁବ୍ରତର ଚେଇଁଉଠୁଥିବା ବିବେକ ପୁଣି କଡ଼ମାଡ଼ି ଶୋଇପଡ଼ିଲା ।

ବାପା ଦେଇଥିଲେ ଉପଦେଶ, - ବାବୁରେ ! 'ସତ୍‌ସଙ୍ଗ' ମଣିଷକୁ ଯେମିତି ପଶୁତ୍ୱରୁ ଦେବତ୍ୱ ଆଡ଼କୁ ରାସ୍ତା ଦେଖାଏ । 'କୁସଙ୍ଗ' ନରକଗାମୀ କରେ । ସତର୍କରେ ଚଳିବୁ ।' ବାପାଙ୍କ ଏ ମହାର୍ଘ ଉପଦେଶ ମହାରଥୀ କର୍ଣ୍ଣ ଠିକ୍ ସମୟରେ ଗୁରୁଙ୍କ ମନ୍ତ୍ର ଭୁଲିଯିବା ଭଳି ସୁବ୍ରତ ବୋଧେ ଭୁଲିଗଲା ।

ଆଉ ଦିନକର ଘଟଣା । ସୁବ୍ରତ ଶୋଇଶୋଇ କିଛି ଗୋଟେ ଅଶ୍ଳୀଳ ବହି ପଢୁଥାଏ ଏବଂ ଶିହରିତ ହେଉଥାଏ ମନେମନେ । ରାଖାଲ୍ ଆସି ହଠାତ୍ ବହିଟି ଛଡ଼େଇନେଲା ଏବଂ କହିଲା, "ଆରେ ବୋକା ! ଏମିତି ଥିଓରି ପଢ଼ିପଢ଼ି ତୁ ଆଉ କେତେଦିନ ଚଳେଇଥିବୁ ? ସାର୍ ପରା କହିଛନ୍ତି, କେବଳ ଥିଓରି ପଢ଼ିଲେ କିଛି ଜାଣିହୁଏନି । ରୀତିମତ୍ ପ୍ରାକ୍ଟିକାଲ୍ ଅଭ୍ୟାସ କରିବାକୁ ପଡ଼ିବ ! ଚାଲ୍, ଆମେ ଆଜି ଗୋଟେ ପ୍ରାକ୍ଟିକାଲ୍ କ୍ଳାସ୍ ଆଟେଣ୍ଡ କରିବା । ଜଲ୍‌ଦି ରେଡ଼ି ହେଇଯା' ।"

- "ମାନେ !" କୌତୂହଳୀ କଣ୍ଠରେ ପଚାରିଲା ସୁବ୍ରତ ।

- "ମାନେ-ଫାନେ କିଛି ନାହିଁ । ଡ୍ରେସଟା ଗଳେଇ ଚଞ୍ଚଳ ବାହାର, ଯିବା ଗୋଟେ 'ସ୍ୱପ୍ନପୁରୀ'କୁ !"

ରାଖାଲ୍‌ର କଥା ଶୁଣି ସୁବ୍ରତ ମନରେ ଜାଗିଲା କିଛି ଉତ୍କଣ୍ଠା, କିଛି କୌତୂହଳ ! ଏବେ ତା' ମନପକ୍ଷୀ ଡେଣା ଝାଡ଼ିଲା ଖୋଲା ଆକାଶରେ ଉଡ଼ିବା ପାଇଁ ।

ସନ୍ଧ୍ୟା ଆଗତପ୍ରାୟ । ଦୁଇବନ୍ଧୁ ହଷ୍ଟେଲ୍ ଛାଡ଼ି ଆଗେଇଲେ ସହର ଆଡ଼କୁ । ସେଠାରୁ ସହର ଉପକଣ୍ଠରେ ଥିବା ଗୋଟେ ଚର୍ଚ୍ଚିତ ବସ୍ତି ଆଡ଼େ । ବସ୍ତି ମୁଣ୍ଡରେ ଗୋଟେ ଅଧାଗଢ଼ା ଦୁଇମହଲା କୋଠା ସ୍ୱଳ୍ପାଲୋକ ଭିତରେ ଭୂତକୋଠି ଭଳି ଦେଖାଯାଉଥାଏ । ତା' ଗେଟ୍ ନିକଟରେ ପହଞ୍ଚିଲେ ଦୁହେଁ । ଭିତରୁ ଗୋଟେ ହାଫ୍‌ପ୍ୟାଣ୍ଟ ପିନ୍ଧା ଅଧାଗୁଆ ମଣିଷ ବାହାରି

ଆସିଲା । କୁଣ୍ଠିତ ଆଲୁଅରେ ମଧ୍ୟ ଲୋକଟିର ଅଭିଜ୍ଞ ଆଖି ରାଖାଲ୍‌କୁ ଚିହ୍ନିପାରିଲା । ସେ ତା' ଗୁଡ଼୍‌ଭର୍ତ୍ତି ମୁହଁରୁ ଖଣ୍ଡିଆ ବିଡ଼ିଟାକୁ ଫୋପାଡ଼ିଦେଇ ପାଖକୁ ଆସି କହିଲା, "ନମସ୍କାରମ୍ ବା'ବୁ !"

ସମ୍ଭବତଃ ଲୋକଟା ଥିଲା ତେଲୁଗୁ ଭାଷୀ ଏବଂ ରାଖାଲ୍‌ର ପରିଚିତ । ସିଏ ତା' ସ୍ୱଭାବ ସୁଲଭ ଭଙ୍ଗାଭଙ୍ଗା ଦକ୍ଷିଣୀ ଭାଷାରେ କହିଲା, "ବା'ବୁ ! ଆଜି ବଡ଼ ଭଲ୍ଲ ଟାଇମୁରେ ଏକା ଆସିଛ ହେ' !"

"ଆରେ ! ମୁଁ ଏକା ଅସିନି । ମୋ' ସାଙ୍ଗରେ ଆଉଜଣେ ବି ଆସିଛନ୍ତି ।"

"ହିଃ ହିଃ ହିଃ.. ! ଆଉରି ଭଲ୍ଲ ଏକା ବାବୁ ! ଆପଣ ଆମ ହୋଟେଲକୁ ଯେବେ ବି ଆସୁଥିଲେ, ଖାଲି ବାସି ପଖାଳ ଏକା ଖାଉଥିଲେ । ଆଜି ପୂରା ଗରମ ଖାଇକି ଯିବେ ।"

"ମାନେ.. ?" ରାଖାଲ୍ କୌତୂହଳୀ ହୋଇଉଠିଲା ।

ଲୋକଟା ଆମ୍ବଠାକୁଆ ଭଳି ଦିଶୁଥିବା ତା' କାନଟିକୁ କୁଣ୍ଡାଇ କୁଣ୍ଡାଇ ଦାନ୍ତ ଦେଖାଇଲା । କହିଲା, "ବୋଇଲେ କିସ କି ବାବୁ ! ଆଜିର ମାଲ୍‌ଟା ଏକବାରେ ସଜ ଗୋଲାପ । ହେଲେ ଖର୍ଚ୍ଚ ଟିକିଏ ବେଶି ପଡ଼ିବ ହେ' !"

"ଆରେ..! ପଡୁ । କେତେ ପଡ଼ିବ କହୁନୁ ?" ରାଖାଲ୍ ଛାତିର ବୋତାମ ଖୋଲୁଖୋଲୁ କହିଲା ।

"ଦି'ଜଣଯାକ ବାବୁ ଗଲେ ପୂରା ଏତିକି ପଡ଼ିବ !" ଟଙ୍କାର ପରିମାଣଟାକୁ ସେ ମୁହଁରେ ପ୍ରକାଶ କରିବା ଅପେକ୍ଷା ତା' ଦୁଇ ହାତର କାଙ୍ଗାଳିଆ ଦଶ ଆଙ୍ଗୁଠିକୁ ମେଲେଇ ଠାରରେ କହିବାକୁ ପସନ୍ଦ କଲା ବୋଧେ ।

"ଓଃ..! ହଜାରେ ତ ?" ବେପରୁଆ ଢ଼ଙ୍ଗରେ ରାଖାଲ୍ ତା'କାଣି ଆଙ୍ଗୁଠିରୁ ପଥରବସା ମୁଦିଟାକୁ ବାହାର କରି କହିଲା, "ୟା'ର ଦାମ ତିନି ହଜାରରୁ ବେଶି ହବ । ନେ ରଖ୍ ୟାକୁ । ପରେ ହିସାବ କରିବା ।"

ଲୋକଟା ମୁଦିଟାକୁ ଧରି ଏପଟ ସେପଟ ପରଖ କରିବା ପରେ ତା' ମୁହଁରେ ଖେଳିଗଲା ଗୋଟେ ସପ୍ତରଙ୍ଗି ହସ ।

"କୋ' ବାବୁ ଆଗେ ଯିବ, ମୋ' ସାଙ୍ଗରେ ଆସ ହେ' !" କହି ସେ ଉପର ମହଲାକୁ ଚଢ଼ିଲା ।

*ସୁରେନ୍ଦ୍ର ନାଥ ସାହୁ*

ରାଖାଲ୍ ଆତୁରିଆ ଭାବରେ ସୁବ୍ରତକୁ କହିଲା, "ଭାଇ.. ! କିଛି ମନେ କରିବୁନି । ଏ କାରବାରରେ ମୁଁ ଟିକେ ଆଗୁଆ । ତା'ଛଡ଼ା ତୁ ଏ ଲାଇନରେ ନୂଆ । ଏଠି ବସି ଟିକିଏ ପ୍ରିପାର୍ ହଉଥା' । ମୁଁ ଆସୁଛି ।"ଏହା କହି ରାଖାଲ୍ ତା'ପଛେ ପଛେ ଶିଡ଼ି ଚଢ଼ିଲା ।

ଏବେ ଶୂନ୍‌ଶାନ୍ ହଲ୍‌ଟି ଭିତରେ ଏକଲା ଠିଆ ହୋଇ ରହିଲା ସୁବ୍ରତ । ଠିକ୍ ଏତିକିବେଳେ ପାୱାରକଟ୍ ଯୋଗୁଁ ଚାରିଆଡ଼େ ଛାଇଗଲା ଘନ ଅନ୍ଧକାର; କିନ୍ତୁ ତା'ଠୁ ଅଧିକ ଅନ୍ଧକାର ଘୋଟି ରହିଥିଲା ସୁବ୍ରତର ଚେତନା ଭିତରେ । ମଣିଷ ମସ୍ତିଷ୍କରେ ପାୱାରକଟ୍ ହେଲେ ବୋଧହୁଏ ତାକୁ ସବୁ ଓଲଟା ଦେଖାଯାଏ । ତେଣୁ ସୁବ୍ରତ ନରକର ଦ୍ୱାରଦେଶରେ ଠିଆହୋଇ ନିଜ ମନଶ୍ଚକ୍ଷୁରେ ଦେଖୁଥିଲା ଅଳକାପୁରୀର ଦୃଶ୍ୟ ! !

କେହି ଜଣେ ଆସି ଜଳେଇଦେଇ ଗଲା ମହମବତିଟେ । କ୍ୟାଣ୍ଡେଲର ନିଷ୍ପ୍ରଭ ଆଲୁଅରେ ହୋଟେଲର ନିର୍ଜନ ପରିବେଶ, ମନେ ହେଉଥିଲା ଭୌତିକ ଚଳଚିତ୍ରର ରହସ୍ୟମୟ ସେଟ୍ ଭଳି ! ସୁବ୍ରତର କାନରେ ବାଜିଲା ଅଳ୍ପ ଦୂରରୁ ପୋଲିସ୍ ପାଟ୍ରୋଲିଂ ଗାଡ଼ିର ସାଇରନ୍ । ଚମକିପଡ଼ିଲା ସେ । ମହମବତିର ଅଶାନ୍ତ ଶିଖା ଭଳି ତା' ଶଙ୍କିତ ହୃଦୟ ଆନ୍ଦୋଳିତ ହେବାକୁ ଲାଗିଲା ପୋଲିସ୍ ଭୟରେ । ସ୍ଥିରଭାବେ ବସିବାକୁ ଯେତେ ଚେଷ୍ଟା କଲେ ମଧ୍ୟ ପାରୁନଥାଏ । ଉଦ୍‌ବେଗ ବଶତଃ ହୃତ୍‌ସ୍ପନ୍ଦନ ବଢ଼ି ବଢ଼ି ଚାଲିଥାଏ । ଜୀବନରେ ପ୍ରଥମଥର ପାଇଁ ସେ ଆଜି ଏଭଳି ଗୋଟେ ରେଡ୍‌ଲାଇଟ୍ ଇଲାକାରେ ପାଦ ଦେଇଛି । ଏ ପରିବେଶରେ ତାକୁ କେହି ଚିହ୍ନା ଲୋକ ଦେଖିଦେବନି ତ ? ଅକସ୍ମାତ୍ ପୋଲିସ୍ ଆସି ପହଂଚିଯିବନି ତ ? ଏଭଳି ନାନା ଦୁର୍ଭାବନା ଓ ଆଶଙ୍କା ଭିତରେ ବାରମ୍ବାର ସେ ଉପର ମହଲାକୁ ଚାହୁଁଥାଏ । ମନକୁ ଦୃଢ଼ କରୁଥାଏ । ଯୋଜନାବଦ୍ଧ ହତ୍ୟାକାରୀ ଭଳି ତା' ଦୁର୍ବଳ ମନର କଟୁରିକୁ ସାହସର ଶାଣଦେଇ ଧାରୁଆ କରୁଥାଏ ।

ଅକସ୍ମାତ୍ ବିଜୁଳି ଆସିଗଲା ଏବଂ ଜଳିଉଠିଲା ଆଲୁଅ । ହଠାତ୍ ଆଖି ସାମନାରେ ସାପ ଦେଖିବା ଭଳି ଚମକିପଡ଼ିଲା ସୁବ୍ରତ ! ତା' ସମ୍ମୁଖରେ ଯମଦୂତ ଭଳି ଠିଆ ହୋଇଥିଲେ ଦୁଇଜଣ ପୋଲିସ୍ କନଷ୍ଟେବଲ୍ । । ପୋଲିସ୍‌କୁ ଦେଖି ଠିଆଠିଆ ଯମଝାଳଟିଏ ନିଗିଡ଼ିପଡ଼ିଲା ସୁବ୍ରତର ଦେହରୁ ।

ମାସେ ପୂର୍ବେ ଜଣେ ନୂଆ ଥାନାବାବୁ ଜଏନ୍ କରିଥିଲେ ବ୍ରହ୍ମପୁର ବଡ଼ଥାନାରେ । ନିର୍ଦ୍ଦିଷ୍ଟ ସେହି ହୋଟେଲ୍‌ରେ ରୀତିମତ ଦେହ ବ୍ୟବସାୟ ଚାଲୁଥିବା ଖବର ପାଇ ସେ ଅଚାନକ ଚଢ଼ଉ କରିଥିଲେ । ଗିରଫ ହେଲେ ହୋଟେଲ ମାଲିକ ଏବଂ କିଛି କର୍ମଚାରୀ । ଘଟଣାସ୍ଥଳରୁ ଧରାପଡ଼ିଲେ ରାଖାଲ୍ ଏବଂ ସୁବ୍ରତ । ହାତକଡ଼ି ପିନ୍ଧି ପୋଲିସ୍ ଗାଡ଼ିରେ ବସିଲେ ଦୁହେଁ ।

ଘଟଣାର ଦୁଇଦିନ ପରେ ମଧୁମାଷ୍ଟ୍ରଙ୍କ ଘର ସାମନାରେ ଠିଆ ହେଲା ଗୋଟେ ଧଳା ମାରୁତି କାର୍ । ଗାଡ଼ିରୁ ଓହ୍ଲେଇଲେ ଜଣେ ସୁଦର୍ଶନ ଯୁବକ । ମଧୁମାଷ୍ଟ୍ରେ ଶଙ୍କାଗ୍ରସ୍ତ ହୃଦୟରେ ଦୁଆର ମୁହଁକୁ ଆସି ଠିଆହେଲେ । ଯୁବକ ନିଃଶଙ୍କୋଚରେ ତାଙ୍କ ନିକଟକୁ ଆସି ପାଦ ଛୁଇଁ ପ୍ରଣାମ କଲେ । ମଧୁମାଷ୍ଟ୍ରଙ୍କ ଆଖିରେ କିଛି ବିସ୍ମୟ, କିଛି ପ୍ରଶ୍ନବାଚୀ ! ସେ ଚଷମା ଖୋଲି ଧୋତିକାନିରେ ଲେନ୍ସ ପୋଛିଲେ ଏବଂ ଯୁବକଙ୍କ ହସହସ ମୁହଁକୁ ନିରୀକ୍ଷଣ କରି ପଚାରିଲେ, "ତୁମେ ବିନୟ ଟି !"

ଯୁବକ କୃତକୃତ୍ୟ ଭଙ୍ଗିରେ ହାତ ଯୋଡ଼ି କହିଲେ, "ସାର୍ ! ଆପଣ ମୋତେ ଚିହ୍ନିପାରିଲେ ?"

ମଧୁମାଷ୍ଟ୍ରେ ବିନୟ ପିଠିରେ ସସ୍ନେହ ସ୍ପର୍ଶ ଦେଇ କହିଲେ, "କେମିତି ଚିହ୍ନି ପାରିବନି କହିଲ ! ତମେ ଏଇ ଗାଁର ପିଲା । ମୋ' ପ୍ରାଥମିକ ଶ୍ରେଣୀର ଛାତ୍ର । ମାଟ୍ରିକ୍ ପଢ଼ା ସରିଲା ପର୍ଯ୍ୟନ୍ତ ରୀତିମତ୍ ତମେ ଆମ ଘରକୁ ଆସୁଥିଲ । ମୋ' ସହିତ ସମ୍ପର୍କ ରଖିଥିଲ । ନିଜ ପୁଅ ଭଳି ଆମ ଘରର ଭଲ ମନ୍ଦ ବୁଝିକି ଯାଉଥିଲ । ତୁମ ସହିତ ଦେଖା ନ'ହୋଇ ଅବଶ୍ୟ ସାତ ଆଠ ବର୍ଷ ହେଇଯିବ ! ତଥାପି ମୁଁ ତୁମକୁ କ'ଣ ମୁଁ ସହଜେ ଭୁଲିପାରିବି ? ।"

"ସାର୍ ! ସେଥି ପାଇଁ ମୁଁ ନିଜକୁ ଗର୍ବିତ ଅନୁଭବ କରୁଛି ।"

"ବାପ ! ଆକାଶରେ ଅସଂଖ୍ୟ ତାରକା । ସେମାନଙ୍କ ଭିତରୁ ଧ୍ରୁବ, ଶୁକ୍ର ଆଉ ସପ୍ତର୍ଷିମଣ୍ଡଳକୁ ଚିହ୍ନିବାରେ କେବେ ଅସୁବିଧା ହୁଏ କି ? ତୁମ ପାଖରେ ଯେଉଁ ଉଜ୍ଜ୍ୱଳତା ମୁଁ ଛୋଟବେଳେ ଦେଖିଥିଲି, ଆଜି ମଧ୍ୟ ଦେଖୁଛି । ମଣିଷକୁ ଚିହ୍ନିବା ପାଇଁ ସେତିକି ଯଥେଷ୍ଟ !" ମଧୁମାଷ୍ଟ୍ରେ ଏହା କହି ବିନୟଙ୍କୁ ଘର ଭିତରକୁ ଡାକିଲେ । ବିନୟ ବିନୀତ କଣ୍ଠରେ କହିଲେ, "କ୍ଷମା କରିବେ ଆଜ୍ଞା ! ଭିତରକୁ ଆଜି ନୁହେଁ, ଆଉଦିନେ ନିଶ୍ଚୟ ଯିବି । ଆଜି ମୁଁ ଆପଣଙ୍କ ନିକଟରୁ କେବଳ ଗୋଟେ ଅନୁମତି ନେବା ପାଇଁ ଆସିଛି । ସେତିକି ପାଇଲେ ମୁଁ ଏଇଠୁଁ ଫେରିଯିବ !"

ମଧୁମାଷ୍ଟ୍ରେ ଆଶ୍ଚର୍ଯ୍ୟରେ ପ୍ରଶ୍ନ କଲେ, "ମୁଁ ତୁମକୁ କି ଅନୁମତି ଦେବି ବାପ ?"

"ସାର୍ ! ମୁଁ ଶୁଣିଲି, ଆଉ କିଛି ମାସ ପରେ ଆପଣ ଚାକିରିରୁ ଅବସର ନେବେ । ତା'ପରେ ସ୍ୱଳ୍ପ ପେନସନ୍‌ରେ ପରିବାର ଚଳେଇବାକୁ ପଡ଼ିବ । ମୁଁ ଜାଣେ, ସୁବ୍ରତ ବ୍ରହ୍ମପୁରରେ ଆଇ.ଟି.ଆଇ ପଢୁଛି । ଆଗକୁ ତା'ରୋଜଗାର ଉପରେ ଆପଣଙ୍କ ପରିବାରର ଭବିଷ୍ୟତ ନିର୍ଭର କରିବ । ଏ ପରିସ୍ଥିତିରେ ମୁଁ ଚାହୁଛି ଆପଣମାନଙ୍କୁ କିଛି ସହାୟତା କରିବା ପାଇଁ । ଆପଣ ଯଦି ଅନୁମତି ଦେବେ, ତା'ହେଲେ ମୁଁ ସୁବ୍ରତର ସମସ୍ତ ଦାୟିତ୍ୱ

ହାତକୁ ନେବି । କାଲି ଠାରୁ ତାକୁ ମୁଁ ଆଇ.ଟି.ଆଇ ହଷ୍ଟେଲରୁ ଆଣି ମୋ' ନିଜ ପାଖରେ ରଖିବି । ଟ୍ରେନିଙ୍ଗ୍ ପରେ ସିଏ ମୋ' ପାଖରେ ରହି ଆପ୍ରେଣ୍ଟିସ୍ କରିବ । ଉପଯୁକ୍ତ ଚାକିରିଟିଏ ପାଇବା ପର୍ଯ୍ୟନ୍ତ ମୋ' ପାଖରେ, ମୋ'ରି ତତ୍ତ୍ୱାବଧାନରେ ରହିବ । ଏଥିରେ ଆପଣଙ୍କର କିଛି ଆପତ୍ତି ଅଛି କି ?"

ମଧୁମାଷ୍ଟ୍ରେ ଖୁସିରେ ଗଦଗଦ୍ ହୋଇ କହିଲେ, "ବାପ ! ଆମ ସୁବ୍ରତ ପାଠରେ ସିନା ଟିକିଏ ଦୁର୍ବଳ, କିନ୍ତୁ ଚରିତ୍ରବାନ୍ ପିଲା । ଆଇ.ଟି.ଆଇ ଅନୁଷ୍ଠାନରେ ତା'ର ସୁନାମ ଅଛି ବୋଲି ମୁଁ ଶୁଣୁଥିଲି । ହେଲେ ତା' ଭବିଷ୍ୟତ ଜୀବନର ଥଳକୂଳ ଆମେ ପାଉନଥିଲୁ । ଦିଗହରା ବୋଇତକୁ ବତିଘର ଭଳି ତମେ ତାକୁ ଦିଗ୍‌ଦର୍ଶନ ଦେବ । ତାକୁ କୂଳରେ ଲଗାଇବ । ସେଥି ପାଇଁ ତମେ ସହାୟତାର ହାତ ବଢ଼ାଉଛ, ମୋ'ର ଏଥିରେ ଆପତ୍ତି କରିବାର କ'ଣ ଅଛି ?"

"ତା'ହେଲେ ଆଜ୍ଞା, ମୋତେ ଏବେ ବିଦାୟ ଦିଅନ୍ତୁ ।" ଏତିକି କହି ବିନୟ ପୁଣିଥରେ ସାର୍‌ଙ୍କ ପାଦ ଛୁଇଁ ପ୍ରଣାମ କଲେ ।

ମଧୁମାଷ୍ଟ୍ରେ ଆଶୀର୍ବାଦ ଦେବା ଅବସରରେ ପଚାରିଲେ, "ବିନୟ ! ତୁମେ ନିଜ ବିଷୟରେ ତ କାହିଁ କିଛି କହିଲନି ! ତୁମେ କେଉଁଠି ରହୁଛ... କି ଚାକିରି କରିଛ ?"

ବିନୟ କାର୍ ଷ୍ଟାର୍ଟ କରୁକରୁ କହିଲେ, "ଆଜ୍ଞା ! ମୁଁ ଏଇ ମାସେ ହେଲା ଥାନା ଇନ୍‌ଚାର୍ଜ ଭାବରେ ବ୍ରହ୍ମପୁର ବଡ଼ଥାନାରେ ଜଏନ୍ କରିଛି ।"

ବିନୟ ପୋଲିସ୍ ଅଫିସର୍ ହୋଇଛି ଶୁଣି ମଧୁମାଷ୍ଟ୍ରଙ୍କ ଚଷମା ପିନ୍ଧା ଆଖି ଖୁସିରେ ଛଳଛଳେଇଗଲା । କାର୍ ଆଗକୁ ବଢ଼ିସାରିଥିଲା । ମଧୁମାଷ୍ଟ୍ରେ ପଛରୁ ପାଟିକରି ପଚାରିଲେ, "ବିନୟ ! ତମେ ଆମ ସୁବ୍ରତକୁ ଦେଖିଲ କେଉଁଠି ? ସେ କେମିତି ଅଛି ?"

ମାଷ୍ଟ୍ରଙ୍କ ଏହି ପ୍ରଶ୍ନ ଦୁଇଟି ବିନୟଙ୍କ କାର ପଛେପଛେ ଅମାନିଆ ପିଲା ଭଳି କିଛି ବାଟ ଧାଇଁଲେ ; କିନ୍ତୁ ଉତ୍ତର ନ'ପାଇ ପୁଣି ଲେଉଟି ଆସିଲେ ତାଙ୍କ ନିକଟକୁ ।



# ସପନା ପାଇଁ ସପନ ଦେଖିବା ମନା

ନାଆଁ ତା'ର ସପନା । ସପନ ଦେଖିବା ତା'ର ନିଶା । ମଣିଷର ବିଭିନ୍ନ ପ୍ରକାର ନିଶା ପ୍ରତି ଆଶକ୍ତି ବା ଦୁର୍ବଳତା ଥାଏ । ଯେମିତି କି ମଦ, ବିଡ଼ି, ସିଗାରେଟ୍ ରୁ ଆରମ୍ଭ କରି ଚୋରି, ନାରୀ, ଦାରୀ ପର୍ଯ୍ୟନ୍ତ ! ଏ ସମସ୍ତ କୁକର୍ମ ଗୋଟେ ଗୋଟେ 'ନିଶା' ପର୍ଯ୍ୟାୟଭୁକ୍ତ । ହେଲେ ଆମ ସପନାର ସେଭଳି କୌଣସି ଆଜେବାଜେ ନିଶା ନାହିଁ । ତା'ର ଏକମାତ୍ର ନିଶା, ସପନ ଦେଖିବା ।

ରାତିରେ ଶୋଇଲା ମାନେ, ସପନାର ସପନ ଦେଖାଟା ଥୟ । ସେ ନିଶାରୁ କେହି ତାକୁ ହଟେଇ ପାରିବେନି କି ସେ ନିଜେ ଛାଡ଼ି ପାରିବନି । ଅସଲ କଥାଟା ହେଲା, ସପନ ଦେଖିବାକୁ ପଇସା ପଡ଼େନି କି ଟିକସ୍ ଲାଗେନି । ଖାଲି ଯାହା ଗାଢ଼ ନିଦ ଟିକିଏ ଦରକାର । ସେଇଟା ସପନା ପାଇଁ କିଛି ବଡ଼ କଥା ନୁହେଁ । ରାତିରେ ଖାଇ ପିଇ ଶୋଇବା ପରେ ତା' ସ୍ତ୍ରୀ ରେବତୀ ଦିହ ହାତ ଗୋଡ଼ରେ ଟିକେ ହାତ ବୁଲେଇ ଆଣେ । ଆଣୁ ଆଣୁ ନିଦ ଘୋଟିଯାଏ ସପନାକୁ । ଗାଢ଼ ନିଦ । ତା'ପରେ ଖୋଲିଯାଏ ତା' ସପନ ଘରର ଦୁଆର !

'ସ୍ୱପ୍ନ' ଉପରେ ଗବେଷଣା କରି ବିଶେଷଜ୍ଞମାନେ କହନ୍ତି, ଜାଗ୍ରତ ଥିବା ଅବସ୍ଥାରେ ମଣିଷ ମସ୍ତିଷ୍କକୁ ଯେଉଁ ଘଟଣାଗୁଡ଼ିକ ଗଭୀର ଭାବେ ପ୍ରଭାବିତ କରେ ଅଥବା ଯେଉଁ କଥାକୁ ନେଇ ମଣିଷ ବେଶି ଭାବି ହେଉଥାଏ ତାହା ହିଁ ସ୍ୱପ୍ନରେ ପ୍ରତିଫଳିତ ହୁଏ । ହେଇପାରେ ! କିନ୍ତୁ ଆମ ସପନାର ସପନ ଦେଖା କିନ୍ତୁ ଟିକିଏ ଭିନ୍ନ ପର୍ଯ୍ୟାୟର । କାରଣ ସେ କି'ଭଳିଆ ସପନ ଦେଖିବ ପ୍ରଥମେ ସେ ନିଜେ ସ୍ଥିର କରେ, ତା'ପରେ ଯାଇ ସେ ନିର୍ଦ୍ଦିଷ୍ଟ ସପନ ଦେଖେ ।

ପ୍ରକୃତରେ ସପନାର ସପନଗୁଡ଼ାକ ଏଡ଼େ ଆଜ୍ଞାକାରୀ ଯେ, ସେ ଯାହା ଦେଖିବାକୁ ମନ କରିବ ତାହା ହିଁ ଦେଖିବ । ସପନରେ ସେ କାହାକୁ ମାରିବ, କାହାକୁ ତାରିବ, କାହାକୁ ରଜା କରିବ, କାହାକୁ ଭିକାରି କରିବ, ସେଇଟା ତା' ମରଜି ଉପରେ ନିର୍ଭର କରେ । ଦିନେ ଦିନେ ସେ ସକାଳୁ ଉଠି ଭାବେ, ଆଃ ! ଜୀବନଟା କେବଳ ସପନ ଦେଖିଦେଖି ସରିଯାଆନ୍ତା କି ! କିନ୍ତୁ ତାହା କ'ଣ ସମ୍ଭବ ? ରାତି ପାହ ନ'ପାହଣୁ ରେବତୀର ରାଉରାଉ ଡାକରେ ତା' ନିଦ ଉପବନରୁ ସପନ ଚଢ଼େଇଟା ଫୁର୍ କିନା ଉଡ଼ିଯାଏ । ତା'ପରେ ଆଗାମୀ

*ସୁରେନ୍ଦ୍ର ନାଥ ସାହୁ*

ଦିନକ ପାଇଁ ସେ ପୁଣି ବନିଯାଏ ଜଣେ ଚପରାସି । ସେଠୁ ସେ ଚଟାପଟ୍ ନିତ୍ୟକର୍ମଟା ସାରିଦେଇ, କ'ଣ ଦିଇଟା ଖାଇ ବାହାରିପଡ଼େ ତା' ନିତିଦିନିଆ ଜୀବନର ଯୁଦ୍ଧକ୍ଷେତ୍ରକୁ ।

ସପନା ନାମକ ଏହି ସ୍ୱପ୍ନଜୀବୀ ଜଣକ ହେଉଛନ୍ତି ଗୋଟେ ସରକାରୀ ଦପ୍ତରର ଚତୁର୍ଥଶ୍ରେଣୀ କର୍ମଚାରୀ । ନାଁ ସପନା ସାମଲ । ନାଁ ସହିତ ତାଙ୍କ ପଦବୀର ପରିଚୟ ଖୋଜିଲେ 'ଚପରାସି' ଶବ୍ଦଟା ମନକୁ ଆସେ । ଆଉ ଚପରାସି ଶବ୍ଦକୁ ବିଶ୍ଲେଷଣ କଲେ ପିଅନ, ପିଆଦା, ଅର୍ଦ୍ଦଳି, ଅର୍ଡ଼ରଲି' ଏରଣ୍ଡ୍‌ବଏ, ମେସେଞ୍ଜର୍ ଭଳି କେତେକ ପ୍ରାଚୀନ ତଥା ଅର୍ବାଚୀନ ଶବ୍ଦ ଆସି ଧାଡ଼ିବାନ୍ଧି ଛିଡ଼ା ହୁଅନ୍ତି । ମୋଟ୍ ଉପରେ, ମଣିଷ ହିସାବରେ ଦେଖିଲେ ସପନା ଜଣେ ସରଳ, ସଚ୍ଚୋଟ, ନିରୋଳା, ନିରାଡ଼ମ୍ବର ଗାନ୍ଧିମାର୍ଗୀ ମଣିଷ ।

ସପନା ତା' ଅଫିସରେ ସମସ୍ତଙ୍କ ବୋଲହାକ କରେ, ଚାହା ଯୋଗାଏ, ପାଣି ବଢ଼ାଏ, ବଡ଼ବାବୁଙ୍କ ପାଇଁ ପାନ ଭାଙ୍ଗେ, ଫାଇଲ୍‌ପତ୍ର ବୋହେ । ତା'ସହିତ ସେ ଦେଖେ, ଅଫିସ୍ ଭିତରେ କେମିତି ସବୁ କାଣ୍ଡକାରଖାନା ଚାଲିଛି । ଦରମାକୁ ଛାଡ଼ି କିଏ କେମିତି ଉପାୟରେ, କେଉଁ ବାଟରେ ଦି'ପଇସା ଉପୁରି ରୋଜଗାର କରୁଛି । ଫାଇଲ୍‌ଟେ ତଳ ଟେବୁଲରୁ ଉପର ଟେବୁଲକୁ ଆସିବା ଭିତରେ କାହା ପକେଟରେ କେତେ ପଶୁଛି । ସେ ଜାଣିବାରେ ଅଧିକାଂଶ ବାବୁଙ୍କ ଟେବୁଲ୍ ତଳେ ଚାଲୁଛି ଦୁଇନମ୍ବରି କାରବାର । ଆହୁରି ଟିକିଏ ଗହିରେଇକି ଦେଖିଲେ ଲାଗୁଛି, ତଳୁ ଉପରଯାଏଁ ସବୁ ଶଳେ ଗୋଟିଏ ଲାଉର ମଞ୍ଜି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଚୋର, ଲାଂଚୁଆ, ଦୁର୍ନୀତିଖୋର ! ଅବଶ୍ୟ କେତେକ କୁକୁଡ଼ା ଚୋର୍ ତ ଆଉ କେତେକ ଅଣ୍ଡା ଚୋର । କିନ୍ତୁ ଅଳ୍ପ ବହୁତେ ସମସ୍ତେ ଦୁର୍ନୀତିଖୋର୍ !

ସପନା କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ ଧାତୁରେ ଗଢ଼ା ମଣିଷ ବୋଲି ଅଫିସରେ ସମସ୍ତେ ଜାଣନ୍ତି । ସେ ଦେଶଦୁନିଆର ଖବର ପଢ଼ି, ଶୁଣି, ଜାଣିଛି ଯେ, 'ଦୁର୍ନୀତି' କେବଳ ତାଙ୍କ ଅଫିସ୍‌ରେ ନୁହଁ, ସାରା ଦୁନିଆରେ ବ୍ୟାପି ରହିଛି କରୋନା ଭୂତାଣୁ ଭଳି । 'କରୋନା' ବିଭିନ୍ନ ରୂପରେ, ବିଭିନ୍ନ ନାମରେ, ବିଭିନ୍ନ ବାଟରେ ବାରମ୍ବାର ଆମକୁ ଗ୍ରାସ କରିବାକୁ ଆସୁଛି ବୋଲି ଡାକ୍ତରମାନେ କହୁଚନ୍ତି । ତେଣୁ ଆମେ ନିଜର ଆଣ୍ଟିବଡ଼ିକୁ ବଳିଷ୍ଠ କରି କରୋନା ରୋଗୀଠାରୁ ନିଜକୁ ଦୂରେଇ ନ'ରହିଲେ କରୋନା ସହଜରେ ଆମକୁ ମାଡ଼ି ବସିବ । ଠିକ୍ ସେମିତି 'ଦୁର୍ନୀତି' ଗୋଟେ ରୋଗ । ଇଏ ମଧ୍ୟ ସେମିତି ବିଭିନ୍ନ ରୂପରେ, ବିଭିନ୍ନ ମାର୍ଗରେ, ବିଭିନ୍ନ ବାଗରେ, ବିଭିନ୍ନ ସମୟରେ ଆସି ଆମକୁ କାବୁ କରିବାକୁ ଚେଷ୍ଟା କରେ । ତା' ପ୍ରଭାବରୁ ରକ୍ଷା ପାଇବାକୁ ହେଲେ ଆମେ ନିଜର ମନୋବଳ ରୂପକ ଆଣ୍ଟିବଡ଼ିକୁ ଦୃଢ଼ କରି 'ଦୁର୍ନୀତିଗ୍ରସ୍ତ' ଲୋକଠାରୁ ନିଜକୁ ଦୂରେଇ ରଖିବାକୁ ହେବ । ଦୁର୍ନୀତି କବ୍‌ଜାରେ ଥରେ ଯିଏ ପଡ଼ିଲା, ତାକୁ ଆଉ ସହଜେ ନିସ୍ତାର ମିଳେନାହିଁ । କେବଳ ପତନରେ ହିଁ ତା'ର ମୁକ୍ତି । 'କରୋନା' ଆରମ୍ଭ ହୁଏ ସାଧାରଣ ଥଣ୍ଡା କାଶରୁ ଆଉ ଶେଷହୁଏ ଫୁସ୍‌ଫୁସ୍

ଆକ୍ରାନ୍ତଜନିତ ମୃତ୍ୟୁରେ । ଠିକ୍ ସେମିତି 'ଦୁର୍ନୀତି' ଆରମ୍ଭ ହୁଏ ପେନ୍‌ସିଲ୍ ଚୋରିରୁ ଏବଂ ଶେଷ ହୁଏ ଚାରା ଘୋଟାଲା ଭଳି ମହାଦୁର୍ନୀତିରେ ! ଏ ସବୁ ରହସ୍ୟ ସପନାକୁ ବେଶ୍ ଜଣା । ତେଣୁ ସେ ଦୁର୍ନୀତି ଠାରୁ ସର୍ବଦା ଦୂରେଇ ରହେ । ନିଜେ ରହିବା ସହିତ ଅନ୍ୟମାନଙ୍କୁ ବି ସତର୍କ କରୁଥାଏ । ବେଳେବେଳେ ସେ ତା' ଅଫିସ୍‌ର ଲାଞ୍ଚୁଆ ବାବୁମାନଙ୍କୁ 'ଗାନ୍ଧିନୀତି'ର ବଟିକା ବାଣ୍ଟି ବାଟକୁ ଆଣିବାକୁ ଚେଷ୍ଟା କରେ ।

ହେଲେ ସପନା ତ ଛାର ଚପରାସିଟେ । ସମସ୍ତଙ୍କ ବୋଲକରା । ତା' କଥାର ଓଜନ କେତେ ? ଯଦି ବା ଏ ବିଷୟରେ ସେ କାହାକୁ ପଦେ କହିଲା, ମଡ଼ାକୁ ଶାଗୁଣା ଘେରିବା ପରି ସମସ୍ତେ ତାକୁ ଆସି ଘେରିଯାଆନ୍ତି । ପାଟି କରନ୍ତି, 'ଶଃଳା ଆସିଲା ଗାନ୍ଧି ମହାତ୍ମାର ଦ୍ୱିତୀୟ ଅବତାର ! ଦେଶଟାକୁ ଏଇନେ ତ ପୂରା ଉଦ୍ଧାରିପକେଇବ । ଏ ହ୍ୟା'ପକୁ ଏଠୁ ଟ୍ରାନ୍ସଫର୍ କି ସସ୍‌ପେଣ୍ଡ୍ ନ'କଲେ ଆଉ ରକ୍ଷା ନାହିଁ ।'

ସପନା ଦେଖେ, ଚାକିରିଟା ତା' ଦାନାପାଣିର କଥା । ଏଭଳି ପରିସ୍ଥିତିରେ ସିଏ ଆଉ କରିବ ବା କ'ଣ ? ଅଗତ୍ୟା ଆଜ୍ଞାମାନଙ୍କ ଆଗରେ ହାତ ଯୋଡ଼ି କ୍ଷମା ମାଗିନିଏ । ନିଜକୁ ବୁଝାଏ, ଆରେ ବାବୁ ! ଆଦର୍ଶକୁ ମୂଳଧନ କରି ବାଟ ଚାଲିବା ପାଇଁ ତୁ ଗାନ୍ଧି କି ଗୋପବନ୍ଧୁ ହେଇନୁ । ଆଦର୍ଶ ଅପେକ୍ଷା ତୋ'ପାଇଁ ପେଟପାଟଣା ବଡ଼ କଥା । ଏ ବଡ଼ବଡ଼ିଆଙ୍କ ସାଙ୍ଗରେ ଲାଗୁଛୁ, ଚାକିରିଟା ଚାଲିଗଲେ ତୋ' ପରିବାରକୁ ପୋଷିବ କିଏ ? ଏ' ପ୍ରଶ୍ନ ମନକୁ ଆସିଲେ ସପନା ସେଠୁ ଲାଙ୍ଗୁଡ଼ ଜାକି ଲେଉଟିଯାଏ । ଯାଏ ସିନା, ମନ କିନ୍ତୁ ତା'ର କୁହୁଳୁଥାଏ ପ୍ରତିଶୋଧର ଦିକିଦିକି ନିଆଁରେ । ଇଚ୍ଛା ହୁଏ ଏ ଦୁର୍ନୀତିଖୋର୍ ଲୋକଗୁଡ଼ାକୁ ଆଇନ୍ ଛାଟରେ ଛାଟେ ଛାଟେ ମିଳନ୍ତା କି ! ହେଲେ ଆମ ଆଇନ୍ ବ୍ୟବସ୍ଥା ଭିତରେ ଏତେ କଣା ଅଛି ଯେ, ଲୋକେ ମଣିଷ ମାରି ମଧ୍ୟ କେଉଁ କଣାରେ ଗଳିଯାଆନ୍ତି ଜଣାପଡ଼େନି ।

ଅଫିସ୍‌ର କିଛି ଘୋଡ଼ାଲାଂଚୁଆ କର୍ମଚାରୀଙ୍କ ଉପରେ ସବୁବେଳେ ସପନାର ନଜର । ଏମାନେ ଟେବୁଲ୍ ତଳେ ନୁହଁ ବରଂ ଟେବୁଲ୍ ଉପରେ ଖୁଲମ୍‌ଖୁଲା, ବେଧଡ଼କ୍ ବଟି ଆଦାୟ କରନ୍ତି ଜନତାଙ୍କଠାରୁ । ସପନା ସବୁ ଦେଖେ । ମନକଥା ମନରେ ରଖେ । ଘରକୁ ଆସେ । ରାତିରେ ଖାଇ ପିଇ ଶେଯରେ ଗଡ଼ିପଡ଼େ । ଦିନେ ଦିନେ ଶେଯରେ ପଡୁପଡୁ ତାକୁ ନିଦ । ତା'ପରେ ଖୋଲିଯାଏ ତା' ସ୍ୱପ୍ନାଳୟର ଦୁଆର । ବଦଳିଯାଏ ଦୃଶ୍ୟପଟ ! ସପନା ସେଠି ଆଉ ଚପରାସି ସପନା ସାମଲ ନୁହେଁ, ମାନ୍ୟବର ବିଚାରପତି ସ୍ୱପ୍ନେଶ୍ୱର ସାମଲ ! ସେ ନିଜେ ବସିଯାଏ ବିଚାରପତି ଆସନରେ । ଏଠି ବାବା ଆଉ କାହାର ନିସ୍ତାର ନାହିଁ । ଆଇନ୍ ଆଗରେ ସମସ୍ତେ ସମାନ । ଜଣଜଣ କରି ସେ ସମସ୍ତଙ୍କୁ ଘୋଷାଡ଼ି ଆଣେ ଆଇନ୍‌ର କାଠଗଡ଼ା ଭିତରକୁ । ଲାଞ୍ଚ ଖାଇଥିବା ଅଭିଯୋଗରେ ସେ କାହାକୁ ସସ୍‌ପେଣ୍ଡ କରେ ତ କାହାକୁ ନକ୍ସଲ୍ ଜିଲ୍ଲାକୁ ଟ୍ରାନ୍ସଫର୍ । କାହାକୁ ଏକ୍ସପ୍ଲାନେସନ୍ ମାଗିମାଗି ନାକୁଆଣି

କରିପକାଏ । ଗତବର୍ଷ ବିଡ଼ିଓ ସଦାନନ୍ଦ ମହାନ୍ତି ରୋଡ୍ ମରାମତି ପାଇଁ ଆସିଥିବା ସରକାରୀ ଟଙ୍କାରୁ ଅଧେ ଚଳୁ କରିଦେଇଥିବାର ପ୍ରମାଣ ମିଳିଥିଲା । ଭିଜିଲାନ୍ସବାଲା ତଦନ୍ତ କରି କାଇଁକି କେଜାଣି କେସ୍‌କୁ ଅଧାରୁ ଡୋରି ବାନ୍ଧିଦେଲେ । ହେଲେ ସପନା ଛାଡ଼ିବା ବାଲା ନୁହେଁ । ସିଏ ସେହି ଦୁର୍ନୀତିଖୋର୍ ବିଡ଼ିଓକୁ ତା'ସ୍ୱପ୍ନାଳୟର କାଠଗଡ଼ାକୁ ଟାଣିଆଣି ଏମିତି ପାନେ ଦେଇଚି ଯେ, ପୁଅ ଆଜିପର୍ଯ୍ୟନ୍ତ ଅଖା ଧୋଉଚି, ଗୁଣ ଗାଉଚି ।

ବିଚାରପତି ଆସନରେ ବସି ଦିନେ ସିଏ ଛବିରାଣୀ ହତ୍ୟାକାଣ୍ଡର ଆସାମୀମାନଙ୍କୁ ଫାସି ଖୁଣ୍ଟରେ ଝୁଲେଇ ଦେଇଛି, କଟକ ମଦମୃତ୍ୟୁ ମାମଲାର ମୁଖ୍ୟ ଆସାମୀକୁ ଗୁଳି କରିଦେବା ପାଇଁ ହୁକୁମ୍ ଦେଇଛି, ହାୱାଲା ମାମଲାରେ ଧରାପଡ଼ିଥିବା ସବୁଯାକ ରାଜନୀତିଆ ତା' ବିଚାର ଅପେକ୍ଷାରେ ଏବେ ବି ଗୋଡ଼ଭାଙ୍ଗି ଠିଆ ହୋଇଛନ୍ତି, ଏପରି ସ୍ଥଳେ ଏ କିରାଣିବାପୁଡ଼ା ଗୁଡ଼ାକ କୋଉ ଗାଈର ଗୋବର ଯେ ସପନା ବିଚାରରୁ ଛାଡ଼ ପାଇଯିବେ ? ଅପରାଧ କରି ବାପା ମା, ଭାଇ ଭଉଣୀ, ବନ୍ଧୁବାନ୍ଧବ, କେହି ବି ଛାଡ଼ ପାଇବା ପ୍ରଶ୍ନ ଉଠୁନି ସପନାର ବିଚାରାଳୟରୁ ।

ଦିନକର କଥା । ସେଦିନ ଅଫିସର ବଡ଼ବାବୁ ଘନଶ୍ୟାମ ଦୋରା ଜଣେ ଠିକାଦାର ହାତରୁ ପୁଳେ ନୋଟ୍ ନେଇ ପକେଟରେ ପୂରାଇଲା ବେଳକୁ ଅଚାନକ୍ ପହଞ୍ଚିଗଲା ସପନା । ସପନାକୁ ଦେଖି ବୁଢ଼ା ପୂରା ନିଆଁବାଣ ! ହଠାତ୍ ଆଉ କିଛି ବାଟ ନ'ପାଇ ବୁଢ଼ା ତା' ଟେବୁଲ୍ ଉପରେ ଥିବା ପାଣିଗ୍ଲାସ୍‌କୁ ଉଠେଇ 'ଫଚ୍' କରି ସପନାର ମୁହଁ ଉପରକୁ ଛାଟିଦେଇ କହିଲା, "ନନ୍‌ସେନସ୍ ! ସଫା ପାଣି ଗ୍ଲାସେ ବି ଠିକ୍‌ରେ ଦେଇପାରୁନୁ । ଯାଃ.. ଭଲ ପାଣି ନେଇକି ଆସ୍ !"

ସପନାକୁ ଲାଗିଥିଲା, ସତେ ଯେମିତି କିଏ ତା' ଗାଲକୁ ଠାଏ.. କରି ପିଟିଦେଲା ଚାପୁଡ଼େ । ଏ ଘଟଣା ସପନାକୁ ଭାରି ବାଧିଲା । ସେଦିନ ସେ ଚୁପ୍‌ଚାପ୍ ଘରକୁ ଯାଇ ଖିଆପିଆ ନ'କରି ମନ ଦୁଃଖରେ ଶୋଇପଡ଼ିଲା । ରେବତୀ ଯେତେ ଯାହା ପଚାରିଲେ ବି କିଛି କହିଲାନି ।

ଭୋକିଲା ପେଟରେ ମଧ୍ୟ ଚାହୁଁଚାହୁଁ ନିଦ ଘୋଟି ଆସିଲା ତାକୁ । ତା'ପରେ ସେ ଓହ୍ଲେଇପଡ଼ିଲା ତା' ସପନର ସାମ୍ରାଜ୍ୟରେ । ସେଠି ସେ ସପନାରୁ ପାଲଟିଗଲା 'ସ୍ୱପ୍ନେନ୍ଦୁ ଦାସ୍' ଓରଫ୍ ଦାସ୍ ସାହେବ । ସାହେବଙ୍କ ନାଲି ହୁଣ୍ଡାଇ କାର୍‌ଟା ଆସି ଲାଗିଗଲା ଅଫିସ୍ ପର୍ଟିକୋ ତଳେ । ଆଶ୍ଚର୍ଯ୍ୟ ! ସାହେବ ଆଜି ଠିକ୍ ଦଶଟାରେ ଅଫିସରେ ହାଜର । ଆଗୁଆ ଆସିଥିବା କର୍ମଚାରୀମାନଙ୍କ ମଧ୍ୟରେ ମଧୁର ଗୁଞ୍ଜରଣ ଖେଳିଗଲା । ହେଲେ ବଡ଼ବାବୁ ଘନଶ୍ୟାମ ଦୋରା ସବୁଦିନିଆ ଢଙ୍ଗରେ ଏଗାରଟା ପନ୍ଦରରେ ଆସି ଦେଖିବା ବେଳକୁ ପୋର୍ଟିକୋ ତଳେ ସାହେବଙ୍କ ଗାଡ଼ି ! ! ଦେଖିବା ମାତ୍ରେ ବୁଢ଼ା କଛାରେ ପୋଖରୀପାଣି ! ଭିତରେ ପଶୁପଶୁ ସାହେବ ଚିତ୍କାର କଲେ, "କିହୋ' ବଡ଼ବାବୁ ! ସମୟ କେତେଟା ବାଜିଲାଣି, ଦେଖିଲ !"

– "ସାର୍ ଆପଣ ! ! ସାର୍.. ଏଡ଼େ ଜଲଦି ଆପଣ..ସାର୍ !"

– "କ'ଣ ସାର୍ ସାର୍ ହଉଚ କିହୋ ?" ଚିତ୍କାର କଲେ ସାର୍, "ଏଇଟା କ'ଣ ତମ ଅଫିସ୍ ଆସିବା ସମୟ ? ଅଫିସକୁ ତମେ ଆଖଡ଼ା ଭାବିଚ କି ? ଯେତେବେଳେ ଇଚ୍ଛା ଆସିବ.. ଯିବ ? ?"

ସାହେବଙ୍କ ଉଗ୍ରରୂପ ଦେଖି ବୁଢ଼ାର ପାଟି ଅଠାଅଠା । ସେ ଭାବିଲେ, ମଝିରେ ମଝିରେ ନିଜ ଭାଗରୁ କିଛିକିଛି ଦାନାପାଣି ଦେଇ ସାର୍‌ଙ୍କୁ ତ ମୁଁ ସନ୍ତୁଷ୍ଟ କରି ରଖିଥିଲି, ଆଜି ସେ ଅଚାନକ ଆସି ଏମିତି ଚଢ଼ଉ କାହିଁକି କରୁଛନ୍ତି ? କ'ଣ ଭାଗଟା ଏଥର ଆଉ ଟିକିଏ ବଢ଼େଇବାକୁ ପଡ଼ିବ କି ?

ଦାସ୍ ସାହେବ ହଠାତ୍ ଗୋଟେ ଫାଇଲ୍ ବୁଢ଼ାର ମୁହଁ ଉପରକୁ ଫୋପାଡ଼ିଦେଇ ପାଟିକଲେ, "ଏ ଫାଇଲ୍‌ଟା ତୁମ ଟେବୁଲ୍ ଉପରେ କେତେଦିନୁ ପଡ଼ିଛି ? କ'ଣ ଭୋଗରାଗ କିଛି ମିଳିନି ବୋଲି ଫାଇଲ୍ ଆଗକୁ ଯାଉନାଇଁ ?"

"ହଁ.. ସାର୍ ! ନା'ନା'.. ସାର୍ ! ! ସେମିତି କିଛି ନାଇଁ !"

"କ'ଣ.. ହଁ ସାର୍, ନା.. ସାର୍, ହଁ ସାର୍, ନା.. ସାର୍, ହଉଚ କି ହୋ ? ବୁଢ଼ାଟେ ହେଲଣି, ଲାଜ ଲାଗୁନି ଲାଞ୍ଚ ଖାଇବାକୁ ! ରହ , ଆଜି ଦେଖୁଛି ତମ ପର୍ସନାଲ ଫାଇଲଟା ।"

ବୁଢ଼ା ଏବେ କାନ୍ଦୁଣୁମାନ୍ଦୁଣୁ ହୋଇ ଯୋଡ଼ହସ୍ତ ! "ସାର୍.. କ୍ଷମା କରନ୍ତୁ ସାର୍ ! ଆପଣଙ୍କ କଲମ ହଲିଲେ ମୋ' ପିଲାଛୁଆ ଭାସିଯିବେ ସାର୍ ! ପର୍ସନାଲ ଫାଇଲ୍‌ରେ ପ୍ଲିଜ୍ ନାଲି ଦାଗ ମାରନ୍ତୁନି ସାର୍ ! ମୋ' ଚାକିରିଟା ବଂଚାନ୍ତୁ । ଦି'ଦିଇଟା ବଢ଼ିଲା ଝିଅର ବୋଝ ସାର୍ ମୋ' ମୁଣ୍ଡ ଉପରେ । ଦୟା କରନ୍ତୁ ସାର୍ ।"

ବଡ଼ବାବୁଙ୍କ ବିକଳ ପ୍ରଳାପର କିଛି ବି ପ୍ରଭାବ ପଡୁନଥିଲା ଦାସ୍ ସାହେବଙ୍କ ଉପରେ । ସେ ଆଉ କେତୋଟି ଫାଇଲ୍ ଟାଣି ଆଣି ନାଲି କଲମରେ ପ୍ରଶ୍ନ ଚିହ୍ନମାନ ଟାଣୁଥିଲେ ଏବଂ ଉତ୍ୟକ୍ତ କଣ୍ଠରେ ବଡ଼ବାବୁଙ୍କ ଚଉଦପୁରୁଷଙ୍କୁ ଉଦ୍ଧାର କରୁଥିଲେ ।

ଠିକ୍ ଏତିକିବେଳ ରେବତୀ ତାକୁ ଜୋରରେ ହଲେଇଦେଇ ପାଟିକଲା, "କ'ଣ ନିଦୁଟାରେ ଏମିତି ବେହିୟାଙ୍କ ଭଳିଆ ଭଣ୍ଡସଣ୍ଡ ଗୁଡ଼ାକ ବକୁଚ ମ' ? ଉଠ ! କଡ଼ ଲେଟାଇ ଶୋଇପଡ଼ ।"

"ଯାଃ ! ଶଳା ବୁଢ଼ା ଖସିଗଲା ! ! ଏ ମାଇକିନାଟା ତ' ସବୁ ବିଗାଡ଼ିଦେଲା । ନ'ହେଲେ ହ୍ୟାପ ବୁଢ଼ାକୁ ଆଜି ଛଅମାସ ବସେଇ ଦେଇଥାନ୍ତି ସସ୍‌ପେଣ୍ଡ୍‌ରେ ଯେ, ଶଳା ଘରେ ବସି ନାମ ଭଜୁଥାନ୍ତା ।" ସପନା ମନେମନେ ଗାଜୁରୁ ମାଜୁରୁ ହେଲା ରେବତୀ ଉପରେ ।

*ସୁରେନ୍ଦ୍ର ନାଥ ସାହୁ*

---

ସପନା ତା' ସପନ ଦେଖା କଥା ଏବଂ ସପନରେ ଦୁର୍ନୀତି ବିରୁଦ୍ଧରେ ଲଢ଼େଇ କରୁଥିବା କଥା, ରେବତୀ ଛଡ଼ା ଆଉ କାହାକୁ ବି କହେନି । ହେଲେ ଏ ରହସ୍ୟ ତାଙ୍କ ଅଫିସରେ କେମିତି ପ୍ରଘଟ ହେଇଗଲା କେଜାଣି, କଥାଟା ଯାଇ ଖୋଦ୍ ବଡ଼ବାବୁଙ୍କ କାନରେ ପଡ଼ିଲା । ବୁଢ଼ା ଯେମିତି ଶୁଣିଚି, କ୍ରୋଧରେ ପୂରା କମ୍ପମାନ !

"କ'ଣ ହେଲା.. ? ସପନା... ! ଛାର ଚପରାସିଟେ ହୋଇ ସପନା ସାମଲ ସପନ ଦେଖିବ ? ସେ ପୁଣି ଆମମାନଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ? ? ଆମ ଭଳିଆ ରଥୀ-ମହାରଥୀମାନଙ୍କୁ ତା' ସପନ ଭିତରକୁ ଘୋଷାଡ଼ିବ ? କିଛି କମ୍ ସାହସ ନୁହେଁ ତ ସପନାର ! ! ନାଃ ! ଯା'ର କିଛି ଗୋଟେ ଫଇସଲା କରିବାକୁ ପଡ଼ିବ ମୋତେ !" ବଡ଼ବାବୁ କ୍ରୋଧରେ ବିଡ଼୍‌ବିଡ଼୍ ହୋଇ ସପନାର ପର୍ସନାଲ୍ ଫାଇଲ୍ ଖୋଜିଲେ ।

ପରଦିନ ସକାଳେ ସପନା ଅଫିସରେ ପଶୁପଶୁ ବଡ଼ବାବୁ ତା' ହାତକୁ ଟାଇପ୍ କରା କାଗଜ ଖଣ୍ଡେ ବଢ଼େଇ ଦେଇ କହିଲେ, "ଆଜିଠାରୁ ତୁ ଅଫିସ୍ ଷ୍ଟୋରୟାର୍ଡ଼ରେ ନାଇଟ୍ ୱାଚ୍‌ମ୍ୟାନ୍ କାମ କରିବୁ । ଭଜନା ବାରିକ ତୋ' ଜାଗାରେ ଅଫିସକୁ ଆସିବ !"

ବଡ଼ବାବୁଙ୍କ ହୁକୁମ୍ ଶୁଣି ସପନା ପୂରା ସ୍ତବ୍ଧ ! ଉପାୟ ଶୂନ୍ୟ ! ! ସିଏ ତ ହୁକୁମ୍ ର ଚାକର, ଆଉ କରିବ କ'ଣ ? କହିବା ବାହୁଲ୍ୟ, ସେଇଦିନୁ ସପନା ଷ୍ଟୋର୍‌ୟାର୍ଡ଼ରେ ନାଇଟ୍ ୱାଚମ୍ୟାନ୍ କାମ କରୁଛି । ସିଏ ତ ଜଣେ କର୍ମନିଷ୍ଠ ଚାକିରିଆ । ରାତିଜଗୁଆଳି ହେଲେ ଶୋଇବ କେମିତି ? ଶୋଇଲେ ସିନା ସପନ ଦେଖିଥାନ୍ତା ଆଉ ସପନ ଦେଖିଲେ ସିନା ଏ ଲାଞ୍ଚୁଆ, ମିଛୁଆ, ଦୁର୍ନୀତିଖୋର୍ ଲୋକଗୁଡ଼ାକୁ ପାନେପାନେ ଦେଇ ସାବାଡ଼୍ କରିଥାନ୍ତା । ଏବେ ସପନା ପାଇଁ ରାତିରେ ଶୋଇବା ମନା । ଅର୍ଥାତ୍ ସପନ ଦେଖିବା ମନା । ସେଥିପାଇଁ ସମାଜରେ ଯେତେସବୁ ଅନୀତି, ଦୁର୍ନୀତି ବଢ଼ି ବଢ଼ି ଚାଲିଛି ।

ଶେଷରେ ଆମେ ଏତିକି କହିବା, ସମାଜରେ ଦୁର୍ନୀତି ବ୍ୟାପିବାର ଅନେକ କାରଣ ଥାଇପାରେ । ହେଲେ ସପନା ଭଳି କିଛି ପ୍ରତିକ୍ରିୟାଶୀଳ ଲୋକ ସବୁ ଦେଖି, ସବୁ ସହି, କୁରୁସଭାରେ ଭୀଷ୍ମଙ୍କ ଭଳି ନିରବ ରହିବା ଏକ ପ୍ରମୁଖ କାରଣ ନିଶ୍ଚୟ ।



# ଅମିତ୍ରାକ୍ଷର

"ଓଃ ! ଏ ବର୍ଷ କି ଭୟଙ୍କର ଖରାରେ ବାବା ! !"

କପାଳରୁ ଝାଳ ପୋଛୁପୋଛୁ ଖରା ବିରୁଦ୍ଧରେ ଏଭଳି ଗୋଟେ ରୁକ୍ଷ ମନ୍ତବ୍ୟ ଦେଇ ମୁଁ ବନ୍ଧୁ ରଞ୍ଜିତ୍‌କୁ ଅନେଇଲି । ରଞ୍ଜିତ୍ ତା ଝାଳଭିଜା ରୁମାଲକୁ ଏକାଧିକବାର ଚିପୁଡ଼ି ପୁଣିଥରେ ବେକମୂଳେ ଭିଜାଉଥିଲା ।

ବିଦାୟୀ ଜୁନ୍‌ର ଏକ ରୌଦ୍ରଦଗ୍ଧ ଦି'ପହର ଖରାରେ ସିଝି, ବ୍ରହ୍ମପୁର ସହରର କୌଣସି ଏକ ଅଖ୍ୟାତ ଗଳି ମୁଣ୍ଡେ ଗୋଟେ ବନ୍ଦ ଓମ୍‌ଫେଡ୍ କେବିନ୍ ଛାଇରେ ଠିଆ ହେଇଥିଲୁ ଆମେ ଦୁଇବନ୍ଧୁ । ଅପେକ୍ଷା ଥିଲା ଖଣ୍ଡେ ରିକ୍ସାର । ହଁ, ଆମକୁ ନିହାତି ଲୋଡ଼ାଥିଲା ରିକ୍ସାଟିଏ । କଥା ହେଲା, ମୋ' ବାଲ୍ୟବନ୍ଧୁ ତଥା ସହପାଠି ରଞ୍ଜିତ୍ ବ୍ରହ୍ମପୁର ସହରର କୌଣସି ଗୋଟେ ବେସରକାରୀ ସଂସ୍ଥାରେ ସଦ୍ୟ ଚାକିରି ଖଣ୍ଡେ ପାଇ ପ୍ରଥମ ମାସର ଦରମା ପାଇଥାଏ । ଆଉ ମୁଁ ତା'ର ଗାଉଁଲି ପାଠୁଆ ସାଙ୍ଗଟିଏ, ଆସି ପହଂଚିଥିଲି ସୁଦୂର ଗାଆଁରୁ । ଉଦ୍ଦେଶ୍ୟ, ଦିନେ ଅଧେ ତା'ବସାରେ ରହି କିଛିଟା ସହରୀ ଜୀବନର ସ୍ୱାଦ ଚାଖିବା । ଏ ମଉକାରେ ରଞ୍ଜିତ୍ ବି ଚାହୁଁଥିଲା, ନୂଆ ଚାକିରି ଖୁସିରେ ମତେ ନେଇ ଗୋଟେ ହୋଟେଲ୍‌ରେ ଭି.ଆଇ.ପି ଲଂଚ୍‌ଟିଏ ଖୁଏଇ ଆପ୍ୟାୟିତ କରିବ । ସେ ପୁଣି ଯାହି ତାହି ହୋଟେଲ୍ ନୁହଁ, ସହରର ସବୁଠୁ ନାମିଦାମି, ଆଭିଜାତ୍ୟପୂର୍ଣ୍ଣ ହୋଟେଲ 'ମୋତି'ରେ !

ମୁଁ ରଞ୍ଜିତ୍‌କୁ ବୁଝେଇବାକୁ ଚେଷ୍ଟା କରିଥିଲି, "ଭାଇ ! ତୁ ବସାରେ ତ ନିଜେ ହାତରେ ରାନ୍ଧି ଖାଉଚୁ । ଏ ପ୍ରଚଣ୍ଡ ଖରାରେ ଚାରି ପାଞ୍ଚ କିଲୋମିଟର ବାଟ ଯାଇ ହୋଟେଲର ଏ.ସି କ୍ୟାବିନ୍‌ରେ ବସି ମାଂସ ବିରିଆନି ଖାଇବା ଅପେକ୍ଷା ବସାଘରେ ପଖାଳ ବାଇଗଣ ପୋଡ଼ା ବରଂ ଭଲ ଲାଗିବ । ସେଥିରେ ପୁଣି ତୋର ତ ଗାଡ଼ି ଫାଡ଼ି ନାଇଁ, ଏତେ ବାଟ ଏ ଖରାରେ ଆମେ ଯିବା କେମିତି ?"

ରଞ୍ଜିତ୍ କିନ୍ତୁ ନଛୋଡ଼ବନ୍ଧା ! ସେଦିନ ରବିବାର । ତା' ମୁଡ୍ ଉଠିଛି, ମାନେ ଯେନ ତେନ ପ୍ରକାରେଣ ମୋତି ହୋଟେଲ୍‌ରେ ମୋତେ ଆକଣ୍ଠ ଖୁଆଇ ତା' ଅକୁଣ୍ଠ ଆତିଥ୍ୟର ପରିଚୟ ଦବ ହିଁ ଦବ !

ସୁରେନ୍ଦ୍ର ନାଥ ସାହୁ

ତେଣୁ ଆମେ ବସାରୁ ବାହାରି ପାଖ ଛକରେ ଆସି ଠିଆ ହେଇଥିଲୁ ରିକ୍ସା ଅପେକ୍ଷାରେ । ଏ ଘଟଣା ଯେଉଁ ସମୟର, ସେତେବେଳେ ବ୍ରହ୍ମପୁର ସହରରେ ଅଟୋରିକ୍ସାମାନେ ବଜାରରେ ବୁଲିବା ବୟସରେ ପହଞ୍ଚିନଥିଲେ । ମଧ୍ୟବିତ୍ତ ବର୍ଗର ଅଧିକାଂଶ ଲୋକ ସାଇକେଲ୍ ଛଡ଼ା ଅନ୍ୟ କୌଣସି ଦୁଇଚକିଆ ଯାନରେ ବୁଲିବା ଅବସ୍ଥାକୁ ଆସିନଥିଲେ । ତେଣୁ ଆମଭଳି ସାଧାରଣ ବାଟୋଇଙ୍କୁ ନିର୍ଭର କରିବାକୁ ପଡୁଥିଲା ଚିରାଚରିତ ପାଲଟଣା, ପେଡ଼ାଲ୍‌ମରା ରିକ୍‌ସା ଉପରେ ।

ଆମେ ସେଭଳି ଗୋଟେ ରିକ୍ସା ଅପେକ୍ଷାରେ ହିଁ ଠିଆ ହୋଇଥିଲୁ । ମଧ୍ୟାହ୍ନ ଖରାର କର୍ଫ୍ୟୁ କବଳରେ କାକୁସ୍ଥ ଅବସ୍ଥାରେ ଥିଲା ସାରା ସହର ! ଦୋକାନ ବଜାର ଯାଇ ଖୋଲିବ ପାଞ୍ଚଟା ପରେ । ରାସ୍ତାଘାଟ ଶୂନ୍‌ଶାନ୍ ! ଏମିତିରେ ଭଲା କୋଉ ଦୁର୍ଭାଗା ରିକ୍ସାଟିଏ ଧରି ଏ ଅନାମଧେୟ ଛକକୁ ଆସିବ ହୋ' ? ଏହା ଭାବି ମୁଁ ମନେମନେ ବିରକ୍ତ ହେଲି ରଞ୍ଜିତ୍ ଉପରେ । ମୋ' ନୈରାଶ୍ୟଭରା ଦୃଷ୍ଟି ବାରମ୍ବାର ଲମ୍ବି ଯାଉଥିଲା ମଲା ସାପଟିଏ ଭଳି ଶୋଇଥିବା ପିଚୁ ସଡ଼କର ଶେଷମୁଣ୍ଡ ପର୍ଯ୍ୟନ୍ତ ! ହେଲେ ରିକ୍ସା କାଇଁ ?

ଯା' ହେଉ, ମରୁଡ଼ିଗ୍ରସ୍ତ ଇଲାକାରେ ଅକସ୍ମାତ୍ ପୁଳାଏ ମେଘ ସଂଚରିବା ଭଳି ଦୂରରୁ ଦେଖାଗଲା ରିକ୍ସାଟିଏ ! ! ମୁଁ ନିର୍ଘାତ ଖୁସିଟେ ହେଇଗଲି । ଅଳ୍ପ ସମୟ ଭିତରେ ରିକ୍ସା ଆସି ଠିଆ ହେଲା ଆମ ପାଖରେ ।

"ଏୟ୍......ରିକ୍ସା ! ନବୁ ?" ପରମ ଉତ୍କଣ୍ଠାରେ ପଚାରିଲା ରଞ୍ଜିତ୍ ।

"ନେବି ବାବୁ!" ରିକ୍ସାବାଲା ସିଟ୍‌ରୁ ଓହ୍ଲାଉ ଓହ୍ଲାଉ କହିଲା ।

"ହୋଟେଲ୍ ମୋତି ! କେତେ ନବୁ ?" ସେଭଳି କଣ୍ଠାଗ୍ରତ ସମୟରେ ରିକ୍ସାବାଲା ସହିତ ଭଡ଼ା ମୂଲାମୂଲିର ଅବକାଶ ନଥିଲେ ହେଁ ସେଇଟା ଥିଲା ମୋ' ବନ୍ଧୁର ସହଜାତ ଗୁଣ ।

"କୋଡ଼ିଏ ଟଙ୍କା ଦବୁ ବା'ବୁ ।" ତେଲୁଗୁ ରିକ୍ସାବାଲା ଦାନ୍ତ ନେଫେଡ଼ି କହିଲା ।

"ହେଃ ! ଆମକୁ କ'ଣ ଜଙ୍ଗଲି ଭାବିଲୁ କିରେ ? ? ଶଃ......ହୋଟେଲ୍ ମୋତି ଏଠୁ ଡାକେ ବାଟ ହବନି ! କହୁଚି କ'ଣ ନା' କୋଡିଏ ଟଙ୍କା ! ! ଦଶ ଟଙ୍କା ଦେବି । କ'ଣ କହୁଚୁ ? ?"

ରଞ୍ଜିତ୍‌ର କଥା ଶୁଣି ବୁଢ଼ା ରିକ୍ସାବାଲା ଟିକେ ଧକେଇଲା । ତା' କଳା କଛୋଟ୍ ବେକ ମୂଳରୁ ନିର୍ଲୋମ ହାଡୁଆ ଛାତି ଉପର ଦେଇ ସରସର ନିଗିଡ଼ି ପଡୁଥିବା ଝାଳକୁ ମୁଣ୍ଡରୁ ମଳିଛିଆ ଠେକାଟା ଖୋଲି ପୋଛି ଆଣି କହିଲା, "ଖରାଟା ଦେଖୁଚ ନା ବା'ବୁ ! ଏ ଉଦୁଉଦିଆ ଖରାରେ ଆମ ଖଟଣିର ମୂଲ ଆପଣ ନ'ଦେଲେ ଆମେ ମରିଯିବୁନାଇଁ ବାବୁ ? ହଉ ହେଲା.....କୋଡ଼ିଏ ନ'ଦେଲେ ନାଇଁ, ପଂଦର ଟଙ୍କା ଏକା ଦବ, ବସ୍ ।"

"ପନ୍ଦର ପନ୍ଦର ନାଇଁ । ବାର ଟଙ୍କା ଦେବି । ବାଆରରୁ ପଇସାଟେ ଅଧିକ ଦବିନି ।" କହି ରଞ୍ଜିତ୍ ରିକ୍ସା ଆରୋହଣ କଲା ଏବଂ ମୋତେ ବି ବସିବାକୁ ଇଙ୍ଗିତ କଲା ।

ବିଚରା ବୁଢ଼ା ଥିଲା ନିରୁପାୟ ! ଖୋଲିଥିବା ଠେକାଟିକୁ ପୁଣି ଭିଡ଼ିଲା ମୁଣ୍ଡରେ । ଅଗତ୍ୟା ଗଡ଼େଇଲା ରିକ୍ସା ହୋଟେଲ୍ ଆଡ଼କୁ ।

ମୁଁ ଦେଖିଲି, ଲୋକଟାର ବୟସ ପଚାଶରୁ ବେଶି ହବନି, କିନ୍ତୁ ଅତିରିକ୍ତ ଶ୍ରମ ଓ ଦାରିଦ୍ର୍ୟର ଦନ୍ତୁରିତ ଦୋ'ଚକି ଭିତରେ ପେଷିହୋଇ ହୁଏତ ଜଣାପଡୁଛି ଅଶିତିପରର ବୃଦ୍ଧ ଭଳି । ଆମେ ଦୁଇବନ୍ଧୁ ଥିଲୁ କିଞ୍ଚିତ୍ ପୃଥୁଳକାୟ, ତେଣୁ ତାକୁ ସମସ୍ତ ବଳ ଖର୍ଚ୍ଚକରି ଟାଣିବାକୁ ପଡୁଥିଲା ତା' ଦଦରା ଯାନଟିକୁ । ପଛପଟୁ ତା' ଶିରାଳ ପେଣ୍ଡାର କାଠୁଆ ମାଂସପେଷିକୁ ଦେଖି ମୁଁ ଅନୁମାନ କରି ପାରୁଥିଲି ସେ କଥା । ଧୀର ମନ୍ଥର ଗତିରେ ଗଡ଼ି ଚାଲିଥିଲା ଆମ ପାଲଟଣା ଯାନ ଝାଞ୍ଜିପିଟା ଖରାର ଉତ୍ତାଳ ଢ଼େଉରେ ସିଆର କାଟି କାଟି । ଆଗକୁ ରାସ୍ତା ଟିକେ ଉଠାଣି । ଏଥର ସିଟ୍‌ରୁ ତା' ହାଡୁଆ ପିଚାକୁ ଉଠେଇ ଠିଆ ପେଡ଼ାଲ୍ ମାରିବା ଆରମ୍ଭ କଲା ରିକ୍ସାବାଲା ବୁଢ଼ା । ପେଡ଼ାଲ୍ ଉପରେ ସବୁ ଶକ୍ତି ପ୍ରୟୋଗ କରି ରିକ୍ସାର ଗତିଶୀଳତାକୁ ବଜାୟ ରଖିବାପାଇଁ ପ୍ରୟାସ ଜାରି ରଖିଥିଲା ସେ । ତା' ଖର ନିଃଶ୍ୱାସର ସାଁ....ସାଁ...ଶବ୍ଦ ମତେ ଶୁଭୁଥିଲା ବାତ୍ୟାକାଳୀନ ବତାସର ପ୍ରଖରତା ଭଳି ! ପେଡ଼ାଲ୍ ପାଖରୁ ବେଳେବେଳେ ଯେଉଁ କଟ୍‌କଟ୍ ଆବାଜ୍ ନିର୍ଗତ ହେଉଥିଲା ସେଇଟା ରିକ୍ସାର ଘର୍ଷଣଶୀଳ ବେରିଙ୍ଗ୍‌ର ଅବାଞ୍ଛିତ ଶବ୍ଦ, ଅଥବା ତା' ଶୁଖିଲା ହାଡ଼ର ଆର୍ତ୍ତ ଚିତ୍କାର, ଏ କଥା ମୁଁ ଠଉରେଇ ପାରୁନଥିଲି ସହଜେ । ଜଂଘ ପର୍ଯ୍ୟନ୍ତ ଉଠେଇ ପିନ୍ଧିଥିବା ତା' ରଫୁକରା ଲୁଙ୍ଗିର ଭିତରପଟୁ ନିଗିଡ଼ି ପଡୁଥିଲା ଅଜସ୍ର ଝାଳ ପେଣ୍ଡା ଦେଇ ଗୋଇଠି ପର୍ଯ୍ୟନ୍ତ । ଝାଳ ମରି ଲୁଣ ଫୁଟିଯାଇଥିବା ତା' ବିବର୍ଣ୍ଣ ପିଠିଟା ମତେ ଦିଶୁଥିଲା ମରୁଡ଼ିଗ୍ରସ୍ତ ଇଲାକାର ବଞ୍ଜର ଜମି ଭଳି ! ଖରାକୁ ଖାତିର୍ ନକରି ମାତ୍ର ବାର ଟଙ୍କା ପ୍ରାପ୍ତି ଆଶାରେ ଆମକୁ ଟାଣି ନଉଥିଲା ଆମ ଗନ୍ତବ୍ୟ ସ୍ଥଳକୁ ସେ ଶୀର୍ଣ୍ଣକାୟ ବୃଦ୍ଧ । ଆମେ ଦୁଇ ପୃଥୁଳକାୟ ଯୁବକ ମାତ୍ର ବାର ଟଙ୍କା ବିନିମୟରେ ବଡ଼ ଆରାମରେ ବସିଥିଲୁ ତା' ରିକ୍ସା ପାଲର ନିରାପଦ ଛାଇରେ !

ହୋଟେଲ୍ ମୋତିର ଭବ୍ୟ ଫାଟକ ଆଗରେ ଅଟକିଲା ରିକ୍ସା !

ରଞ୍ଜିତ୍ ଖପ୍ କିନା ଓହ୍ଲେଇପଡ଼ି ବୁଢ଼ାର ଝାଳୁଆ ହାତକୁ କୋଡ଼ିଏ ଟଙ୍କିଆ ନୋଟ୍ ଖଣ୍ଡେ ବଢ଼େଇଦେଇ କହିଲା, "ଆଉ ଆଠ ଟଙ୍କା ଫେରେଇଲୁ ଜଲ୍‌ଦି ।"

ବୁଢ଼ା ନୋଟ୍‌ଟାକୁ ଏ'ପଟ ସେ'ପଟ ଦି'ଥର ଓଲଟେଇ ଯତନରେ ଫୋଲ୍ଡ଼ କରି ଧରିଲା । ତା' ହାଡୁଆ ଅଂଟାତଳୁ ଲୁଙ୍ଗି କାନିଟିକୁ ଖୋଲି ଗଣ୍ଠି ଫିଟେଇଲା ଖୁଚୁରା

ପାଇଁ; କିନ୍ତୁ ନିରାଶ ହେଲା । କାରଣ ତା' ଭିତରେ ଥିଲା ଖଣ୍ଡେ ମାତ୍ର ଦଶ ଟଙ୍କିଆ ନୋଟ୍ ଆଉ ଚାରିଟି ଟଙ୍କାକିଆ କଏନ୍! ଏବେ ସେ ଆମକୁ ଆଠ ଟଙ୍କା ଫେରେଇବ କେମିତି ? ଅଡୁଆରେ ପଡ଼ିଲା ବୁଢ଼ା ।

ବଡ଼ ବିନୀତ ଭଙ୍ଗିରେ ସେ କହିଲା, "ବାବୁ! ମୋ' କତିରେ ତ ଆଠ ଟଙ୍କା ଚିଲେରା ନାଇଁ । ଚାରି ଟଙ୍କା ଏକା ଅଛି । ଏତକ ରଖ ।"

"ମତେ ଆଉ ପାଠ ପଢ଼ାନି, ବୁଝିଲୁ ? ସିଧା ଆଠ ଟଙ୍କା ଫେରା ।" ରଞ୍ଜିତ୍ ପାଟିକଲା ।

"ଆଗିଆଁ! ଏ ଖରାରେ ବୁଲି ମୁଁ ଆଉ କୁଆଡୁ ଯୋଗାଡ଼ିବି ଚିଲେରା ଚାରିଟଙ୍କା ? ଆପଣମାନେ ବାବୁ, କୁଆଡ଼େ କେତେ ପଇସା ଖରଚ କରି ଦଉଚନ୍ତି । ଏ ଖରା ଝାଞ୍ଜିରେ ବୁଢ଼ା ମଣିଷଟାର ଖଟଣିକୁ ଦେଖି ଟଙ୍କା ଦି'ଚାରିଟା ଅଧିକ ଦେଇ ପକେଇଲେ କିଛି ପାଣିରେ ପଡ଼ିଯିବନି ବାବୁ! ଆଉରି ତମର ଧରମ ହବ ଏକା ।" ବୁଢ଼ା ନେହୁରା ହେଲା ।

ରଞ୍ଜିତ୍ ମନେମନେ ବୁଢ଼ା ଉପରେ ଭୀଷଣ ରାଗିଯାଇଥିଲା । ତତ୍କ୍ଷଣାତ୍ ସେ ନିଜ ପକେଟରୁ ଦୁଇଟଙ୍କିଆ କଏନ୍‌ଟେ କାଢ଼ି ବୁଢ଼ାକୁ ବଢ଼େଇଲା ଏବଂ ତା' ହାତରୁ ଦଶ ଟଙ୍କିଆ ନୋଟ୍ ଖଣ୍ଡିକ ଟାଣି ଆଣି କହିଲା, "ପାଇଲୁ ତୋ' ବାର ଟଙ୍କା । ଯା' ଏଥର ।"

ବୁଢ଼ା ମନେମନେ କ'ଣ ଗୁଡ଼ାଏ ବିଡ଼ିବିଡ଼ି ହେଲା, ହେଲେ ମୁହଁ ଉପରେ କିଛି କହି ପାରିଲାନି । ମୋ' ଧୈର୍ଯ୍ୟର ବନ୍ଧ କିନ୍ତୁ ଭାଙ୍ଗିଯାଇଥିଲା ବୁଢ଼ା ରିକ୍ସାବାଲାଟି ପ୍ରତି ରଞ୍ଜିତ୍‌ର ଏଭଳି ଅମାନବୀୟ ବ୍ୟବହାର ଦେଖି । ମୁଁ ତା'ଉପରେ ବିରକ୍ତ ହୋଇ କହିଲି, "ତୁ କେଡ଼େ ନିର୍ଦ୍ଦୟଟା କିରେ! ବିଚରା ବୁଢ଼ାର ଅବସ୍ଥା ଦେଖୁଚୁ । ସିଏ ଆମକୁ ଏ ମୁଣ୍ଡଫଟା ଖରାରେ ତା' ରିକ୍ସାରେ ବସେଇ ଏତେବାଟ ଟାଣି ଆଣିଲା । ସେଥିରେ ପୁଣି ତୁ ଟଙ୍କା ଚାରିଟା ପାଇଁ ତା' ସହିତ ଏଭଳି ବ୍ୟବହାର କରିପାରିଲୁ ? କୋଡ଼ିଏ ଟଙ୍କା ଦେଇଥିଲେ କ'ଣଟା ତୋ'ର ଭାସିଯାଆନ୍ତା ?"

"ଧ୍ୟାତ୍..... ! ତୁ କିଛି ଜାଣିନୁ । ଏ ବରଂପୁରିଆ ତେଲେଙ୍ଗା ରିକ୍ସାବାଲାଙ୍କୁ ଚିହ୍ନିନୁ ତୁ । ଆଜି ଯଦି ମୁଁ ତାକୁ ବିନା ଆପତ୍ତିରେ କୋଡ଼ିଏ ଟଙ୍କା ଦେଇଦେବି, କାଲି ଶଳା ମୋଠୁ ଏତିକି ବାଟକୁ ତିରିଶି ଟଙ୍କା ହାଙ୍କିବ । ଆଙ୍ଗୁଠି ଦେଖେଇଲେ ବାହା ଗିଳିବା ବାଲା ଏମାନେ । ଏଗୁଡ଼ାଙ୍କୁ ଗୋଟେ ଦୟାମାୟା କ'ଣ !"

ରଞ୍ଜିତ୍‌ର କଥା ଶୁଣି ମୁଁ ଚୁପ୍ ରହିଲି ସିନା, ହେଲେ ମୋ' ବିବେକ ମୋତେ ଭିତରୁ ଭିତରୁ ଚୋଟ ମାରୁଥାଏ । ବୁଢ଼ାର ଦୟନୀୟ ଚେହେରା ଓ ଅସହାୟତା ବାରମ୍ବାର ମୋ' ଆଖି ଆଗରେ ଭାସିଉଠୁଥାଏ । ମନେହେଲା, ମୁଁ ହୋଟେଲ୍ ମୋତିର ମଖମଲି କରିଡର୍

ଅତିକ୍ରମ କରି ଶୀତତାପ ନିୟନ୍ତ୍ରିତ ଡାଇନିଙ୍ଗ୍ ହଲ୍‌ରେ ପ୍ରବେଶ କଲା ପର୍ଯ୍ୟନ୍ତ ବୁଢ଼ାର ଅସହାୟ ଆଖି ଯୋଡ଼ିକ ମୋ' ପିଛା କରୁଛି ।

ଆମେ ଯାଇ ବସିଲୁ । ଅବିଳମ୍ବେ ବେଅରର୍ ଆସି ସଲାମ୍‌ଟିଏ ଠୁକିଲା ଏବଂ ରଞ୍ଜିତ୍ ହାତକୁ ବଢ଼େଇଦେଲା ସୁଦୃଶ୍ୟ ମେନୁକାର୍ଡ଼ ଖଣ୍ଡେ । ଅର୍ଡର ଦିଆଗଲା । ଆମ ଉଭୟଙ୍କ ରୁଚି ମୁତାବକ ଚମତ୍କାର ଆଇଟମ୍ ସବୁ ଆସି ଥୁଆହେଲା ଟେବୁଲ୍ ଉପରେ । ଖାଇବାରେ ଆମ ଦୁଇ ବନ୍ଧୁଙ୍କ ଚଏସ୍ ପ୍ରାୟ ସମାନ । ଖିଆ ସମାପ୍ତ ହେବା ପରେ ଗୋଟେ ଶୋଭନୀୟ ଚାଇନା ପ୍ଲେଟ୍‌ରେ କିଛି ଭଜା ଧନିଆ ଓ ମିଶ୍ରିର ମିଶ୍ରଣ ଏବଂ ଗୋଟେ ବିଲ୍ ଆଣି ଟେବୁଲ୍ ଉପରେ ଥୋଇଦେଇ ଗଲା ବେଅରର୍ । ମୁଁ ଜାଣେ ବିଲ୍‌ଟା ରଞ୍ଜିତ୍ ହିଁ ପେମେଣ୍ଟ କରିବ । ହେଲେ କୌତୂହଳ ବଶତଃ ବିଲ୍‌ଟାକୁ ଉଠେଇ ଆଣି ଦେଖିଲି ମୁଁ । ବିଲ୍‌ର ପରିମାଣଟା ଦେଖି ଆଖି ମୋର ଟେରା ହେଇଗଲା ! ! ଆମେ ଦୁଇ ବଂଧୁ ମଧ୍ୟାହ୍ନ ଭୋଜନରେ ମାତ୍ର ଛଅଶହ ଅଶି ଟଙ୍କାର ଦୁର୍ଲଭ ଖାଦ୍ୟ ଉଦରସ୍ଥ କରିଥିଲୁ । କିନ୍ତୁ ଆଶ୍ଚର୍ଯ୍ୟର କଥା, ରଞ୍ଜିତ୍ 'ପରବାଏ ନେହିଁ' ଢ଼ଙ୍ଗରେ ବସି ଦାନ୍ତ ଖୁଣ୍ଟୁଥାଏ ।

ବେଅରର୍ ଆସି ପୁଣିଥରେ ସଲାମ୍ ଠୁକିବା ମାତ୍ରେ ରଞ୍ଜିତ୍ ତା'ପର୍ସରୁ କାଢ଼ି ଗୋଟାଏ ପାଂଚଶହ ଟଙ୍କିଆ ଏବଂ ଗୋଟାଏ ଦୁଇଶହ ଟଙ୍କିଆ ନୋଟ୍ ବିଲ୍‌କାର୍ଡ଼ ଭିତରେ ପୂରେଇ ତା' ହାତକୁ ବଢ଼େଇଦେଲା । ମୋତେ କହିଲା, "ଚାଲ୍ ଯିବା ।"

ହେଟେଲର ପ୍ରସ୍ଥାନ ଦ୍ୱାର ଅତିକ୍ରମ କରି ବାହାରକୁ ଆସିବା ପୂର୍ବରୁ ମୁଁ ରଂଜିତ୍‌କୁ ମନେ ପକେଇଦେଲି, "ଆରେ ! ତୁ ଆଉ କୋଡ଼ିଏ ଟଙ୍କା ଫେରି ପାଇବା କଥା । ଆଣିଲୁନି ?"

"କୋଉ କୋଡ଼ିଏ ଟଙ୍କା ?" ପଚାରିଲା ରଞ୍ଜିତ୍ ।

"କାଇଁକି...... ! ଆମ ବିଲ୍ ଆମାଉଣ୍ଟ ଛଅଶହ ଅଶୀ । ଆଉ ତୁ ଦେଲୁ ସାତଶହ ଟଙ୍କା । କୋଡ଼ିଏ ଟଙ୍କା ଫେରି ପାଇବୁନି ?" ଆଶ୍ଚର୍ଯ୍ୟରେ ପଚାରିଲି ମୁଁ ।

ରଞ୍ଜିତ୍ ଗୋଟେ ସଂଭ୍ରାନ୍ତିଆ ହସ ହସି କହିଲା, "ସେ କୋଡ଼ିଏ ଟଙ୍କା ବେଅରର୍ ପାଇଁ ଟିପସ୍ ।"

"ଟିପସ୍ ! !"

" ହଁ ବାବା ! ଟିପସ୍ ! ଯେଉଁ ଟୋକାଟା ଆମକୁ ସର୍ଭ କରୁଥିଲା, ସେଇଟା ତା'ର ବକ୍‌ସିସ୍ !" ସିଏ ମତେ ସରଳ ଭାଷାରେ ବୁଝେଇଦେଲା ।

"କିନ୍ତୁ ସିଏ ତ ଦରମା ନେଇ ଚାକିରି କରୁଚି । ତା' ଡ୍ୟୁଟି ହେଲା ଗ୍ରାହକଙ୍କୁ ସର୍ଭିସ୍ ଦେବା । ଆମେ ପୁଣି ତାକୁ ବକ୍‌ସିସ୍ ଦେବା କ'ଣ ନିହାତି ଦରକାର ?" ପଚାରିଲି ମୁଁ ।

ରଞ୍ଜିତ୍ ମୋ' କଥାକୁ କାନରେ ନ'ପୂରାଇ ରୁମ୍‌କୁ ଫେରିବା ପାଇଁ ରିକ୍‌ସାଟିଏ ଡାକିଲା, "ଏ ରିକ୍‌ସା ନବୁ ?"

"ନେବି ବାବୁ ।"

"କାଠଗୋଲା ପାଖ ଛକକୁ କେତେ ନବୁ ?"

"ଆଗିଆଁ କୁଡ଼ିଏ ଟଙ୍କା ଦେବେ ।"

"ହେଃ...... ! ଏଇ ପରା ଦେଖାଯାଉଚି ଛକଟା । ଚାଲିକି ଗଲେ ଦି' ମିନିଟିର ବାଟ । କହୁଚି କ'ଣ ନା' କୋଡ଼ିଏ ଟଙ୍କା ! ଦଶ ଟଙ୍କା ଦେବି, କ'ଣ କହୁଚୁ ?"

ରଞ୍ଜିତ୍ ରିକ୍‌ସାବାଲା ସହିତ ଦର କଷୁଥିଲା ଏବଂ ମୁଁ ଆଶ୍ଚର୍ଯ୍ୟରେ ଚାହିଁ ରହିଥିଲି ମୋ' ବନ୍ଧୁ ଭଳି ଦେଖାଯାଉଥିବା ସେ ବିଚିତ୍ର ଜୀବଟାକୁ ! !



# ଡାଏରିର ଶେଷପୃଷ୍ଠା

(୧)

ଲିଭିଆସୁଥିବା ସଞ୍ଜସଳିତା ଭଳି ନିସ୍ତେଜ ହୋଇ ଶେଯରେ ପଡ଼ିଥିଲେ ଜଗବନ୍ଧୁ ବାବୁ । କେବଳ ଦମକାଏ ପବନର ଅପେକ୍ଷା । ଧପ୍ ! ଛାତି ଭିତରୁ ସେଇ ଟିକକ ଚାଲିଗଲେ, ସବୁ ଶେଷ !

'କେମିତି ଏଡ଼େ ଶୀଘ୍ର ଶେଷ ହେଇଯିବ ସବୁ ?' ପ୍ରଶ୍ନ ଉଠୁଥିଲା ପିଲାମାନଙ୍କ ମନରେ । ସିଏ ଆମ ବାପା । ଘରର ମେରିଖୁଣ୍ଟ । ପରିବାରର ମେରୁଦଣ୍ଡ ! କେତେ କଷ୍ଟ କରି ସେ ଆମକୁ ମଣିଷ କରିଛନ୍ତି । ଦିଗହଜା ଜାହଜ ପାଇଁ ବତିଘର ଭଳି ଜୀବନସାରା ଦିଗଦର୍ଶନ ଦେଇ ଆସିଛନ୍ତି ଆମକୁ । ଆମେ ତ ବାପାଙ୍କ ଋଣ ଶୁଝିପାରିବୁ ନାଇଁ । ଶେଷ ସମୟରେ ତାଙ୍କର ସେବାଶୁଶ୍ରୁଷା କରିବା ସୁଯୋଗ ହେଲେ କିଛିଦିନ ମିଳୁ ଆମକୁ । ଏହି ଆନ୍ତରିକ ଇଚ୍ଛା ରଖି ବାପାଙ୍କ ସେବାରେ ନିଜକୁ ସମର୍ପିଦେଇଥିଲେ ପୁଅ ସମ୍ବିତ୍ ଓ ଝିଅ ସଞ୍ଜନା । ସେମାନଙ୍କ ସହିତ ସମତାଳରେ ଶ୍ୱଶୁରଙ୍କ ସେବାରେ ଲାଗିଥିଲେ ବୋହୂ ବିନୀତା ।

ଡାକ୍ତରମାନଙ୍କ ଅନେକ ଚେଷ୍ଟା ପରେ ବି ଜଗବନ୍ଧୁ ବାବୁଙ୍କ ସ୍ୱାସ୍ଥ୍ୟ ଅବସ୍ଥାରେ ଉନ୍ନତିର କିଛି ଲକ୍ଷଣ ଦିଶୁନଥିଲା । ବହୁତ କଷ୍ଟରେ କେବଳ ଡାହାଣ ହାତଟା ଟିକିଏ ହଲେଇ ପାରୁଥିଲେ ସେ । ଡା: ମହେଶ ମହାପାତ୍ର ତାଙ୍କ ଫ୍ୟାମିଲି ଡାକ୍ତର । ସେ ଚେତାବନୀ ଦେଇଥିଲେ, ପାରାଲିସିସ୍ ରୋଗୀପାଇଁ ବେଡ୍‌ସୋର୍ ଗୋଟେ ଚିନ୍ତାଜନକ ଲକ୍ଷଣ । ରୋଗୀର ବେଡ୍‌ସୋର୍ ଆରମ୍ଭ ହେଲାଣି । ତେଣୁ ତାଙ୍କ ଭିତରର ସ୍ୱାସ୍ଥ୍ୟପ୍ରତି ଯେତିକି ଧ୍ୟାନ ଦିଆଯାଉଛି, ତାଆଠୁ ଅଧିକ ବାହ୍ୟ ପରିବେଶ, ଲୁଗାପଟା ଆଉ ରୁମ୍‌ର ସଫାସୁତରା ପ୍ରତି ଧ୍ୟାନ ଦେବାକୁ ହେବ ।

ଡାକ୍ତରଙ୍କ ନିର୍ଦ୍ଦେଶାନୁସାରେ ପ୍ରତି ତିନି/ଚାରି ଘଣ୍ଟା ଅନ୍ତରରେ ରୁମ୍‌ଫ୍ରେସନର୍ ସ୍ପ୍ରେ କରାଯାଉଥିଲା ତାଙ୍କ କୋଠରୀ ସାରା । ପୁଳାଏ ସୁଗନ୍ଧିତ ଅଗରବତି ଅନବରତ ଜଳୁଥିଲା ଶେଯ ପାଖରେ । ବେଡ୍‌ସୋର୍ ଜନିତ ପଚାଗନ୍ଧ ସହିତ ବେଳେବେଳେ ତାଙ୍କ ଅଣ୍ଟାତରେ ମଳଦ୍ୱାରରୁ ବହି ଆସୁଥାଏ ତରଳ ଶ୍ରାବ । ତେଣୁ ପରଫ୍ୟୁମ୍ ଓ ଅଗରବତୀର ସୁଗନ୍ଧରେ ପରିବେଶକୁ ସୁସ୍ଥ ଓ ସୁଗ୍ରାହ୍ୟ କରି ରଖିବାକୁ ପ୍ରୟାସ କରାଯାଉଥିଲା ।

ପୁଅ, ବୋହୂ ଓ ଝିଅର ଅକୁଣ୍ଠ ସେବା-ଯତ୍ନ ସତ୍ତ୍ୱେ ସେଦିନେ ସକାଳେ ଏଭଳି ପରିସ୍ଥିତି ସୃଷ୍ଟି ହେଲା ଯେ, ଟିକନ୍ ଆଉ ଲୁସୀ ଜେଜେଙ୍କ ଶେଯଠାରୁ ଦୂରେଇରହି କେବଳ ଅନେଇ ରହିଲେ ତାଙ୍କୁ ଲୁହ ଟଳମଳ ଆଖିରେ । ନାତି, ନାତୁଣୀ ଦୁହେଁ ଜେଜେଙ୍କୁ ବହୁତ ଭଲ ପାଆନ୍ତି, ହେଲେ ଡାକ୍ତରଙ୍କ ପରାମର୍ଶ, ଏଭଳି ପରିସ୍ଥିତିରେ ଜେଜେଙ୍କ ପାଖକୁ ଯିବା ମନା ।

ସମ୍ବିତ୍ ଓ ସଞ୍ଜନା କିନ୍ତୁ ଅବିଳମ୍ବେ ଲାଗିପଡ଼ିଲେ ବାପାଙ୍କ ସେବାରେ । ସଞ୍ଜନା ବାପାଙ୍କ ପାଖରେ ବସି ବେଡ୍‌ସୋର୍ ହୋଇଥିବା ସ୍ଥାନଗୁଡ଼ିକୁ ଡେଟଲପାଣିରେ ପୋଛି ସଫା କଲା । ଦାମିକା ଟେଲକମ୍ ପାଉଡ଼ର୍ ମେଞ୍ଚେ ଆଣି ବୋଳିଲା କ୍ଷତ ଉପରେ, ପିଠି ସାରା ଓ ବେକମୂଳେ ।

ସମ୍ବିତ୍ ମଧ୍ୟ ବାପାଙ୍କର ବଡ଼ ଅନୁରାଗୀ । ସେ ନିଜେ ବାପାଟେ ହେଲାଣି, ତଥାପି ସେ ବାପାଙ୍କୁ ଭୟ, ଭକ୍ତି, ଶ୍ରଦ୍ଧା କରେ । ପାଖରେ ବସି ସେ ଆଉଁଶିଦେଲା ବାପାଙ୍କ ଗୁଡ଼ଭର୍ତ୍ତି ଶୁଖିଲା ଗାଲଟାକୁ । ବାପା ଜୁଲୁଜୁଲୁ କରି ଅନେଇଥିଲେ କେବଳ । ପ୍ରତିକ୍ରିୟା ନାହିଁ । ଶେଯଟା ଓଦା ହୋଇ ଯାଇଥିଲା । କୁନିପୁଅକୁ ଉଠାଇବା ଭଳି ସମ୍ବିତ୍ ବାପାଙ୍କ କଙ୍କାଳସାର ପଙ୍ଗୁ ଦେହଟାକୁ କୋଳରେ ଉଠାଇ ଧରିଲା । ବୋହୂ ବିନୀତା ନିର୍ବିକାର ଭାବେ ଆସି ଶେଯରେ ପଡ଼ିଥିବା ପୁରୁଣା ବେଡ୍‌ସିଟ୍‌କୁ ବଦଳେଇ ସଫାଟିଏ ବିଛେଇଦେଲେ । ସମ୍ବିତ୍ ପୁଣି ଯତ୍ନରେ ଶୁଆଇଦେଲା ତାଙ୍କୁ ଶେଯଉପରେ । ସଞ୍ଜନା ସଫା ପାଣିମଗ୍ ଓ ଗ୍ଲାସ୍ ଆଣି ରଖିଦେଲା ତାଙ୍କ ତକିଆ ପାଖେ । ଆଜି କେଉଁ ଔଷଧ, କେତେବେଳେ ଖିଆଯିବ, ସେ ସବୁ ଯୋଗାଡ଼ି ରଖିଲା ସମ୍ବିତ୍ ଟେବୁଲ୍ ଉପରେ ଏବଂ ବିନୀତାକୁ ଚେତେଇଦେଲା, ଠିକ୍ ସମୟରେ ମନେ ପକେଇ ବାପାଙ୍କୁ ଔଷଧ ଦେବାପାଇଁ ।

ରାତି ସରିଆସୁଥିବା ଆକାଶର ଦୁଇଟି ନିଷ୍ପ୍ରଭ ତାରା ଭଳି ଦିଶୁଥିବା ବାପାଙ୍କ ମଳିନ ଆଖିକୋଣେ ଜମିଯାଇଥିଲା ମେଞ୍ଚେ ଲେଞ୍ଚରା । ଗୋଟେ ସଫା ତୁଳାରେ ଲେଞ୍ଚରା ପୋଛୁପୋଛୁ ସମ୍ବିତ୍ କହିଲା, "ବାପା ! ଆଜି ପଥ୍ୟ ଖାଇବାରେ ଅବାଧ୍ୟ ହେବନି, ପ୍ଲିଜ୍ । ବିନୀତାର କଥା ମାନି ଔଷଧ ବି ଠିକ୍‌ଠିକ୍ ଖାଇଦେବ । ଡାକ୍ତର ଡାକିଥିଲେ, ସେଥିପାଇଁ ମୁଁ ଆଜି ଟିକେ କଟକ ଯାଉଛି । ସନ୍ଧ୍ୟାସୁଦ୍ଧା ଫେରି ଆସିବି ।"

ପକ୍ଷାଘାତଗ୍ରସ୍ତ ଜଗବନ୍ଧୁ ଥିଲେ ବାକ୍‌ଶକ୍ତିହୀନ ! ସେ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣେଇବାର ବିଫଳ ପ୍ରୟାସ କଲେ । ଅବଶ ଆଖିପତା ତାଙ୍କର ମୁଦି ହୋଇ ଆସିଲା । ସତେ ଯେମିତି ସେ ଶାନ୍ତ, ନିର୍ବିକାର ଭାବେ ଆଉ କିଛି ସମୟ ଶୋଇବାକୁ ଚାହୁଁଛନ୍ତି ।

ସମଗ୍ର ଦେହଟା ତାଙ୍କର ଅଚଳ ହୋଇ ଯାଇଥିଲା, କିନ୍ତୁ ବୋଧଶକ୍ତି ଆଂଶିକଭାବେ ସକ୍ରିୟ ଥିଲା । ହୁଏତ ସେ ବୁଝି ପାରୁଥିଲେ ଓ ହୃଦୟଙ୍ଗମ କରିପାରୁଥିଲେ ପିଲାମାନଙ୍କର ବ୍ୟସ୍ତତା । ତାଙ୍କ ପଙ୍ଗୁ-ସ୍ଥବିର ଓ ଅଚଳ ଦେହର ଅକାମି କବ୍‌ଜା ଗୁଡ଼ିକୁ ସଜାଡ଼ି ପୁଣିଥରେ ସକ୍ରିୟ କରିଦେବା ପାଇଁ ପିଲାମାନେ କେମିତି ଲାଗିପଡ଼ିଛନ୍ତି, ତାହା ସେ ଜାଣୁଥିଲେ । ମନ ଭିତରେ ମାପୁଥିଲେ ପୁଅ, ଝିଅ ଓ ବୋହୂର ଭଲପାଇବାର ଗଭୀରତାକୁ ।

ବୋହୂଟା ପରଝିଅ ହେଲେ ବି ନିଜ ଝିଅ ସଞ୍ଜନାଠୁଁ କୋଉ ଗୁଣରେ କମ୍ ନୁହେଁ । ଝିଅ ପୁଅ ଦୁହେଁ ନିଜନିଜ ଘରସଂସାରର ବୋଝ ମୁଣ୍ଡେଇ ରହୁଛନ୍ତି ଦୂର-ଦୂରାନ୍ତରରେ । ସେମାନଙ୍କ ପୁଅ ଝିଅମାନେ ମଧ୍ୟ ବଡ଼ ହେଲେଣି । ସଂସାର ବିସ୍ତାରିଲାଣି । ହେଲେ ଗାଆଁରେ ରହୁଥିବା ବୁଢ଼ା ବାପା, ମାଆଙ୍କପ୍ରତି ସେମାନଙ୍କର ଭଲପାଇବା ଅତୁଟ ରହିଛି । ଦେହ ପା' ରେ କିଛି ଟିକିଏ ଓଲମ ବିଲମ ହେଲେ ଭାଇ ଭଉଣୀ ଦୁହେଁ ନିଜ ସୁଖ, ସୁବିଧାକୁ ପଛରେ ପକାଇ, ଜଣେ ଚଣ୍ଡିଗଡ଼ରୁ ଆଉଜଣେ ପୁନେରୁ ଧାଇଁ ଆସୁଛନ୍ତି ଗାଆଁକୁ ।

ଜଗବନ୍ଧୁ ବାବୁଙ୍କ ରିଟାୟାରମେଣ୍ଟ୍ ପରେ ପୁଅ, ଝିଅ ଏମିତିକି ଜ୍ୱାଇଁ ଶୁଭକାନ୍ତ ବି ଅନେକଥର ଡାକିଥିଲେ ବାପା,ମାଆଙ୍କୁ ଶେଷ ଜୀବନଟା ସେମାନଙ୍କ ସାଙ୍ଗରେ ଯାଇ କଟେଇବା ପାଇଁ । କିନ୍ତୁ ଶେଷ ପର୍ଯ୍ୟନ୍ତ ଜଗବନ୍ଧୁ ଗାଆଁ ମାଟିର ମୋହରେ ବାନ୍ଧିହୋଇ ରହିବାକୁ ଚାହିଁଥିଲେ । ତା'ଛଡ଼ା ସେ ଥିଲେ ବଡ଼ ସ୍ୱାଭିମାନୀ ମଣିଷ । ପିଲାମାନଙ୍କୁ ନାନା ମିଠାକଥା କହି ଭୁଲେଇଦିଅନ୍ତି । ଅସଲ କଥା ହେଲା, ପିଲାଙ୍କ ସରସସୁନ୍ଦର ଫୁଲବଗିଚା ଭିତରେ ଦୁଇଟା 'କ୍ୟାକ୍‌ଟସ୍' ହୋଇ ରହିବାକୁ ସେ ପସନ୍ଦ କରନ୍ତି ନାହିଁ । ବନ୍ଧୁମେଳରେ ବେଳେବେଳେ ରସିକାମି କରି ସେ କହନ୍ତି, ବିବାହର ପ୍ରଥମ କିଛି ବର୍ଷ ଯେମିତି ନବଦମ୍ପତିଙ୍କ ଯୁଗ୍ମଜୀବନଟା ମଧୁମୟ ମଧୁମୟ ଲାଗେ, ବାର୍ଦ୍ଧକ୍ୟରେ ମଧ୍ୟ ବୁଢ଼ାବୁଢ଼ୀ, ଯୋଡ଼ିଜୀବନ କାଟିବାରେ ଗୋଟେ ଅଲଗା ଚାର୍ମ୍ ଅଛି । ଅବଶ୍ୟ ଉଭୟଙ୍କ ସ୍ୱାସ୍ଥ୍ୟ ଯଦି ଅନୁମତି ଦିଏ ।

ସ୍ୱାସ୍ଥ୍ୟସଚେତନ ଜଗବନ୍ଧୁବାବୁ ଅବସର ନେବା ପରେ ଦୁଇଦଶନ୍ଧିରୁ ଅଧିକ କାଳ ସପତ୍ନୀକ ସୁସ୍ଥ ଓ ନିରାମୟ ବାର୍ଦ୍ଧକ୍ୟ ଅତିବାହିତ କଲେ । ହେଲେ ଯୁଆଳିରୁ ପଟେ ବଳଦ ଘାଲେଇପଡ଼ିଲେ ଶଗଡ଼ର ଗତି ବେତାଳିଆ ଧରିବା ଭଳି ପତ୍ନୀ ସୁଜାତାଙ୍କ ସ୍ୱାସ୍ଥ୍ୟ ବିଗିଡ଼ିବା ପରେ ଜଗବନ୍ଧୁଙ୍କ ଅବସ୍ଥା ଟଳମଳ ହେବାକୁ ଲାଗିଲା । ତଥାପି ତାଙ୍କର ସେଇ ଗୋଟେ ଜିଦ୍, ସେ ଏଇଠି ହିଁ ରହିବେ । ଏଇ ଗାଆଁ ମଶାଣି ମାଟିରେ ହିଁ ମିଶିବେ । ବାପାଙ୍କ ସିଦ୍ଧାନ୍ତକୁ ପିଲାମାନେ ଛୋଟବେଳୁ ହିଁ ସମ୍ମାନ ଦେଇ ଆସିଛନ୍ତି, ନିଜର ଯେତେ ଅସୁବିଧା ହେଉ ପଛେ ।

*ସୁରେନ୍ଦ୍ର ନାଥ ସାହୁ*

---

ଏବେ ସମ୍ପିତ୍ ଅଛି ପୁନେର ଗୋଟେ ସଫ୍ଟୱେଅର୍ କୋମ୍ପାନୀରେ । ଝିଅ, ଜୋଇଁ ଚଣ୍ଡିଗଡ଼ରେ । ଜୋଇଁ ସରକାରି ଗସ୍ତରେ ଯାଇଛନ୍ତି ଆମେରିକା, ଚାରିମାସ ପାଇଁ । ନ'ହେଲେ ସିଏ ମଧ୍ୟ ଶ୍ୱଶୁରଙ୍କ ଦେହଖରାପ ଖବର ଶୁଣି ଆସିଥାନ୍ତେ ।

ଗତବର୍ଷ ଠିକ୍ ଏହି ସମୟରେ ସୁଜାତାଙ୍କ ଅସୁସ୍ଥତାକୁ ନେଇ କମ୍ ହଇରାଣ ହେଇନାହାନ୍ତି ପିଲାମାନେ । ନିଜନିଜ ଚାକିରି, ପିଲାଙ୍କ ପାଠପଢ଼ା, ଭବିଷ୍ୟତ, ସବୁ କଥାକୁ ଅଣଦେଖା କରି ଦୁହେଁ ଆସି ଦୁଇମାସରୁ ଅଧିକ କାଳ ଏଠି ରହିଥିଲେ । ମାଆର ସେବା-ଚିକିତ୍ସା କରେଇଥିଲେ । ହେଲେ ଅଟକେଇ ରଖି ପାରିଲେନି ମାଆକୁ ।

ରଞ୍ଜାରୁ ଗୋଟେ ଡାଳ ଭାଙ୍ଗିଗଲେ ଶିମ୍ବଲଟା ଅନ୍ୟଡାଳରେ ଲଟେଇଗଲା ପରି ମା' ଚାଲିଗଲା ପରେ ଏ ସ୍ନେହରଙ୍କୁଣା ଭାଇଭଉଣୀ ଦିଇଟା ବାପାଙ୍କ ଆଡ଼କୁ ଢ଼ଳି ପଡ଼ିଥିଲେ । ହେଲେ ବିଧିର ବିଡ଼ମ୍ବନା ! ଆଜି ବାପାଙ୍କ ଅବସ୍ଥା ବି ତଦ୍ରୂପ । ଡାକ୍ତର କହୁଥିଲେ, କେବଳ ପକ୍ଷାଘାତ ନୁହେଁ, ଢିଅନ୍ତା ମଢ଼ାକୁ କାଉ, ଶାଗୁଣା ଘେରିବା ପରି ବୁଢ଼ାଙ୍କୁ ଚାରିଆଡୁ ଘେରିଛନ୍ତି ନାନା ପ୍ରକାର ଦୁରାରୋଗ୍ୟ ରୋଗ ! ବୟସ ତାଙ୍କର ପଞ୍ଚାଅଶି ଟପିଲାଣି । ଏ ବୟସରେ ପୁଣି ସେ ସଂପୂର୍ଣ୍ଣ ସୁସ୍ଥ ହେଇ ଶେଯରୁ ଉଠି ବସିବେ, ଏ ଆଶା ଛାଡ଼ିଦିଅ । ହେଲେ 'ଆଶା' ତ ଅସରା ଗପର ଅସରନ୍ତି ଚଢ଼େଇ । ଗୋଟେ ପରେ ଗୋଟେ ଉଡୁଥିବ, ଗପ ସରୁନଥିବ । ସେ ଚଢ଼େଇକୁ ଛାଡ଼ି ଗପ ଲେଖା ହେଇ ପାରିବନି କି 'ଆଶା'କୁ ଛାଡ଼ି ଜୀବନ ଜିଇଁ ହେବନାହିଁ ।

ସଞ୍ଜନା ବସିଥିଲା ବାପାଙ୍କ ଶେଯ ପାଖରେ । ସେ ତାଙ୍କ ଡାହାଣ ହାତଟାକୁ କହୁଣି ପାଖରୁ ଆସ୍ତେକରି ଦୁଇଥର ଭାଙ୍ଗି କହିଲା, "ବାପା ! ତମର ଏ ହାତଟା ଧୀରେଧୀରେ ଚଳିଲାଣି । ପାଣିଗ୍ଲାସ୍ ଉଠେଇ ପାରୁଚ । ଚେଷ୍ଟା କଲେ କଲମ ବି ଧରିପାରିବ । ହେଇଟି ବାପା ! ତମ ମୁଣ୍ଡପାଖରେ କାଗଜ ଫାଳେ ଆଉ କଲମଟା ରଖିଛି । ଯାହା ଯେତେବେଳେ ଅସୁବିଧା ଲାଗିବ, ମନକୁ ଯାହା ଆସିବ ଲେଖିଦଉଥିବ । ଡାକ୍ତର ମହାପାତ୍ର କହିଛନ୍ତି, ସିଏ ଆସିଲେ ତମ ଲେଖା ଷ୍ଟଡ଼ି କରିବେ । ଦରକାର ହେଲେ ଔଷଧ ବଦଳାଇବେ । ତମେ ବ୍ୟସ୍ତ ହୁଅନାଇଁ ବାପା ! ଖୁବ୍ ଶୀଘ୍ର ତମେ ଭଲ ହେଇଯିବ । ଆଉ ତମେ ପୂରାପୂରି ଭଲ ନ'ହେବା ପର୍ଯ୍ୟନ୍ତ ଆମେ ତମକୁ ଛାଡ଼ି କୁଆଡ଼େ ଯାଉନୁ ।"

ପରାଲିସିସ୍ ପ୍ରଭାବରେ ବାପାଙ୍କ ବିବର୍ଣ୍ଣ ମୁହଁ ସମେତ ଓଠଟା ଗୋଟିଏ ପାଖକୁ ବଙ୍କେଇ ଯାଇଥାଏ । ଝିଅର କଥା ଶୁଣି ସେ ବିକଳ ଓଠ ଫାଙ୍କରୁ ଝରିପଡ଼ିଲା କ୍ଲେଶମିଶ୍ରିତ ଧାରେ ମ୍ଳାନ ହସ । ସେ ହସ ଭିତରେ ଲୁଚିରହିଥିଲା ସତେ ଯେମିତି ଗୋଟେ ଯନ୍ତ୍ରଣାଦଗ୍ଧ ହୃଦୟର ଅନେକ ଅକୁହା କଥା ।

ସମ୍ବିତ୍ ରୁମ୍ ବାହାରକୁ ଆସି ବାରଣ୍ଡା ଉପରେ ଅପେକ୍ଷା କରିଥିଲା ସଞ୍ଜନାକୁ । ସଞ୍ଜନା ଓ ବିନୀତା ବାପାଙ୍କ କୋଠରୀର କବାଟକୁ ନିଶବ୍ଦରେ ଆଉଜେଇ ଆସିଲେ ବାରଣ୍ଡା ଉପରକୁ । ସମ୍ବିତ୍ ପଚାରିଲା, "ଆଚ୍ଛା ସଞ୍ଜୁ ! କାଲି ପିଣ୍ଟୁକୁ ଫୋନ୍ କରିଥିଲୁ ଟି ?"

"କଲି ଆଉ କେତେବେଳ ? ସିଏ ତ ରାତି ଗୋଟେ ଯାଏଁ ପଢ଼ାପଢ଼ି କରି ଲେଟ୍‌ରେ ଶୋଉଛି । ଉଠୁଚି ଦଶଟାରେ । ଚୁଡ଼ା କଦଳୀ କ'ଣ ଦିଇଟା ଖାଇଦେଇ ଧାଉଁଚି ଟିଉସନ୍ ଯେ, ପୁଣି ଫେରୁଚି ଦିନ ଦୁଇଟାରେ । ଫୋନ୍ କଲେ ବି ବେଳେବେଳେ ଉଠାଉନି ।"

"ତମେ କେମିତିକା ମାଆ କେଜାଣି ! ପିଲାଟାର ବୋର୍ଡ଼ ପରୀକ୍ଷା ମୁଣ୍ଡ ଉପରେ । ବାପା ଯାଇ ଆମେରିକାରେ । ତମେ ଆସି ଏଠି । ପୁଅଟା ଚଣ୍ଡିଗଡ଼ ଭଳି ଜାଗାରେ ଏକେଲା । ବିଚରା ହୋଟେଲରେ ଏଣୁତେଣୁ ଖାଇ କେତେ ହଉରାଣ ନ'ହଉଥିବେ କହିଲ ?" ବିନୀତା ଭାଉଜ ମନ ଦୁଃଖରେ କହିଲେ ।

ସମ୍ବିତ୍ ଜୋର୍‌ଦେଇ କହିଲା, "ନାଇଁ ସଞ୍ଜୁ ! ମୁଁ ଆଜି ହିଁ ଯାଇ ତତ୍କାଳରେ ତୋ'ପାଇଁ ଟିକଟ କରି ଆଣୁଚି । ତୁ କାଲି ଚଣ୍ଡିଗଡ଼ ଚାଲିଯା' । ବାପାଙ୍କ ସେବାଯତ୍ନ ପାଇଁ ଆମେ ଅଛୁ । ବାପାଙ୍କ ବର୍ତ୍ତମାନ ଅପେକ୍ଷା ପିଣ୍ଟୁର ଭବିଷ୍ୟତ ତୋ'ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ।"

ସଞ୍ଜନା ଓଢ଼ଣିକାନିରେ ଲୁହ ପୋଛୁପୋଛୁ ପଚାରିଲା, "ଆଚ୍ଛା ଭାଇ ! ମୁଁ ଶୁଣୁଛି, ତମେ କୋମ୍ପାନୀ ଜବ୍ ଛାଡ଼ିଦବ ବୋଲି ଠିକ୍ କରିଛ ? ପୁଣି ଏ ପାଗଳାମି କାହିଁକି ? ଗତବର୍ଷ ମା' ଦେହ ଖରାପ ସମୟରେ ପରା ଥରେ ଚାକିରି ଛାଡ଼ି ବୁଦ୍ଧି ଶିଖିଥିଲ ।"

"ଆଲୋ' ପାଗଳୀ ! ମୁଁ କ'ଣ ଚାକିରି ଛାଡ଼ିବି ? ପ୍ରାଇଭେଟ୍ କୋମ୍ପାନୀ ଜବ୍ । ସିନିଅରିଟି ବର୍ଷେ ବି ହେଇନି । ଏମିତି ଆଉ ପନ୍ଦରଦିନ ଛୁଟିରେ ରହିଗଲେ, ଚାକିରି ପରା ଆପେ ମୋ'ଠୁଁ ଛାଡ଼ି ପଳେଇବ ।"

"ବାଃ ! ବଡ଼ ସହଜରେ ତ ଏକଥା କହିଦଉଚ । ହେଲେ ଆଜିକାଲି ଚାକିରିର ଅବସ୍ଥା ଯାହା, ଆଉଗୋଟେ ଚାକିରି ତମକୁ କ'ଣ ଏଡ଼େ ସହଜରେ ମିଳିଯିବ ?"

ଅଳ୍ପଦୂରରେ କାନ୍ଥକୁ ଆଉଜି ଅସ୍ୱସ୍ତିରେ ଠିଆ ହୋଇଥିବା ଟିକନ୍ ଆଉ ଲୁସୀକୁ କୋଳକୁ ଟାଣିଆଣି ସଞ୍ଜନା ପୁଣି କହିଲା, "ତା' ଛଡ଼ା ଏମାନଙ୍କ କଥା ବି ଟିକିଏ ଚିନ୍ତା କର । ବିଚରା ପିଲା ଦିଇଟା ସ୍କୁଲ ଯିବା ବନ୍ଦ କରି ଦେଢ଼ମାସ ହେଲା ଏଠି ପଡ଼ିଛନ୍ତି । ଏମାନଙ୍କ ଭବିଷ୍ୟତ ବିଷୟରେ ଭାବିବା ତମର କ'ଣ କର୍ତ୍ତବ୍ୟ ନୁହେଁ ?"

"ହଁ, ତୋ' ଭାଉଜ ମଧ୍ୟ ଏକଥା କହୁଚି ଯେ, ହେଲେ ମୁଁ କ'ଣ କରିବି କହ ? ବାପା ସୁସ୍ଥ ନ'ହେବା ପର୍ଯ୍ୟନ୍ତ ଆମେ ଏଠୁ କୁଆଡ଼େ ଯିବାର ତ ପ୍ରଶ୍ନ ଉଠୁନି । ଭାବୁଛି, ଏଇ

ଆମ ଗାଁ ସ୍କୁଲରେ ବରଂ ଟିକନ୍‌, ଲୁସୀର ନାଁ ଲେଖେଇଦେବି । ବାପାଙ୍କ ଦେଖାଶୁଣା ଚାଲିବା ପର୍ଯ୍ୟନ୍ତ ଆମେ ବି ଏଠି ଚଳିବୁ । ତୁ କ'ଣ କହୁଚୁ କହ ?" ପ୍ରଶ୍ନଟି ପଚାରି ସମ୍ବିତ୍ କାହ୍ନୁକୁ ଆଉକି ନୈରାଶ୍ୟଭରା ଦୀର୍ଘଶ୍ୱାସ ଛାଡ଼ିଲା ।

"ଆଚ୍ଛା ଭାଇ ! ବାପାଙ୍କୁ ମୁଁ ସାଙ୍ଗରେ ଚଣ୍ଡିଗଡ଼ ସିଫ୍ଟ କରିନେଲେ କେମିତି ହୁଅନ୍ତା ?" ପ୍ରସ୍ତାବ ଦେଲା ସଞ୍ଜନା ।

"ଧୁତ୍ !.. ତୋ' ମୁଣ୍ଡ ଫୁଣ୍ଡ ଖରାପ ହେଲାଣି ନା' କଣ ? ଏ ଅବସ୍ଥାରେ ବାପାଙ୍କୁ ତୁ ନବୁ ଚଣ୍ଡିଗଡ଼ ! !"

ବିନୀତା ଏଥର ମୁହଁ ଖୋଲିଲେ, "ଦେଖ ସଞ୍ଜୁ ! ଜୋଇଁ ରହିଲେ ବିଦେଶରେ । ମୁଣ୍ଡ ଉପରେ ପୁଅର ବୋର୍ଡ଼ ଏକ୍‌ଜାମ୍ ! ଘରେ ତମେ ଏକେଲା ମାଇପିଲୋକ । ଏମିତିରେ ଜଣେ ମରଣାନ୍ତକ ରୋଗୀର କ୍ୟାର୍ ନେବା କ'ଣ ଖେଳଘର କଥା ହେଇଛି ? ତା' ଛଡ଼ା ଆମେ ଥାଉ ଥାଉ.. !"

"ସଞ୍ଜୁ ! ତୁ ସେ ଫାଲତୁ ଆଇଡ଼ିଆ ସବୁ ମୁଣ୍ଡରୁ ଓହ୍ଲା । ଆଉ ନିଜେ ଯିବାପାଇଁ ପ୍ରସ୍ତୁତି କର ।" ସମ୍ବିତ୍ ତା' ଶେଷ କଥା ଶୁଣେଇ ଝଡ଼ବେଗରେ ଚାଲିଗଲା ବାହାରକୁ ।

"ଆଚ୍ଛା ଭାଉଜ !" ସଞ୍ଜନା ପୂର୍ବାପେକ୍ଷା କଣ୍ଠସ୍ୱର ନିମ୍ନ କରି ପଚାରିଲା, "କାଲି ଭାଇ ଏତେ ସମୟ ଧରି ଡ଼ାକ୍ତର ମହାପାତ୍ରଙ୍କ ସହିତ ଫୋନରେ କଥା ହେଉଥିଲେ । ପଚାରିଲେ ସେ ମତେ ଏଡ଼େଇ ଦଉଛନ୍ତି । ଆକ୍‌ଚୁଆଲ୍ କଥାଟା କ'ଣ ? ବାପାଙ୍କ ବିଷୟରେ ଡ଼ାକ୍ତର କ'ଣ କହିଲେ ?"

ବିନୀତା ପ୍ରଥମେ ଟିକିଏ ନିରବିଗଲେ କିଛି ସମୟ ପାଇଁ । ସଞ୍ଜୁର ବାରମ୍ବାର ଅନୁରୋଧ ପରେ ସେ କହିବାକୁ ବାଧ୍ୟ ହେଲେ, "କାଲି ଡାକ୍ତର ମହାପାତ୍ର ତାଙ୍କ ଶେଷ କଥା ଶୁଣେଇଦେଲେ, ସେ ଆଉ ବାପାଙ୍କ ଟ୍ରିଟମେଣ୍ଟ୍ ଦାୟିତ୍ୱ ନେବେନାହିଁ । ସେ କହିଲେ, ଇନ୍‌ଭେଷ୍ଟିଗେସନ୍‌ରୁ ଯାହା ଜଣାପଡୁଛି, ବାପା ଟୋଟାଲ୍ ପାରାଲିସିସ୍ ଆଉ ବେଡ଼ସୋର୍ ପାଇଁ ଯେତିକି ଯନ୍ତ୍ରଣା ଭୋଗୁଛନ୍ତି, ଭିତରେ ଭିତରେ ତା'ର ଦଶଗୁଣା କଷ୍ଟ ଭୋଗୁଥିବେ ମଲ୍‌ଟିପଲ୍ ଡିଜର୍ଡ଼ର୍ ଯୋଗୁଁ । ଏଭଳି ପରିସ୍ଥିତିରେ ରୋଗୀ ବେଳେବେଳେ ମାନସିକ ଭାରସାମ୍ୟ ହରାଇ ଆତ୍ମହତ୍ୟା ବି କରିପକାନ୍ତି; କିନ୍ତୁ ବାପା କାହା ମନରେ କଷ୍ଟ ନ'ଦେବାପାଇଁ ଆଉ ଆମକୁ ବିଚଳିତ ନ କରିବାପାଇଁ ନିଜ ଭିତରର ଯନ୍ତ୍ରଣାକୁ ନିଜେ ନୀଳକଣ୍ଠ ଶିବଙ୍କ ଭଳି ପିଇ ପଡ଼ି ରହିଛନ୍ତି । ସେ ବହୁତ କଷ୍ଟ ଭୋଗୁଥିବେ । ଏଭଳି ବିଷମ ପରିସ୍ଥିତିରେ ଅକସ୍ମାତ୍ କେତେବେଳେ ତାଙ୍କର ଦୃଷ୍ଟି ଆଉ ଶ୍ରବଣଶକ୍ତି ବି ନିଷ୍କ୍ରିୟ ହେଇଯାଇ ପାରେ ।

ମେମୋରୀ ଫେଲ୍ ହେଇଯାଇ ପାରେ । ଏମିତିକି ସେ କୋମାକୁ ବି ଚାଲିଯାଇ ପାରନ୍ତି । ଆଉ, ଥରେ ଯଦି କୋମା ଷ୍ଟେଜ୍‌କୁ ଗଲେ, ତା'ହେଲେ କଥା ସରିଲା । ଏମିତିରେ ବାପାଙ୍କ ଟ୍ରିଟମେଣ୍ଟ୍ କାଳେ ଆଗକୁ ବଢ଼େଇ କିଛି ଲାଭ ନାହିଁ, କାରଣ ମୃତ୍ୟୁ ପ୍ରାୟ ନିଶ୍ଚିତ ହେଇଗଲାଣି । କେବଳ ଠିକ୍ ସମୟଟା ଜାଣିହଉନି ।" ଏତିକି କହୁ କହୁ ବିନୀତାଙ୍କ କଣ୍ଠସ୍ୱର ଓଦା ହୋଇଆସିଲା ।

ସଞ୍ଜନା କୋହ ସମ୍ଭରଣ କରି ତା' ଅଶ୍ରୁଳ ଆଖିପତାକୁ ଓଢ଼ଣି କାନିରେ ଚାପିଧରି କହିଲା, "ତା'ହେଲେ ଭାଉଜ ତମେ କୁହ, ବାପାଙ୍କୁ ଏଭଳି ଅବସ୍ଥାରେ ଛାଡ଼ି ମୁଁ କେମିତି ଚାଲିଯାଇ ପାରିବି ଚଣ୍ଡିଗଡ଼ ?"

(୨)

ପିତାମହ ଭୀଷ୍ମଙ୍କଭଳି ମୁମୂର୍ଷୁ ଜଗବନ୍ଧୁ ଯନ୍ତ୍ରଣାର ଶରଶଯ୍ୟାରେ ଛଟପଟ ହୋଇ ସମୟକୁ 'ଇଚ୍ଛାମୃତ୍ୟୁ'ର ଭିକ୍ଷା ମାଗୁଥିଲେ । ମୃତ୍ୟୁ ଚଗଲା ଟୋକା ଭଳି ତାଙ୍କ ସହିତ ଲୁଚକାଳି ଖେଳି ଚାଲିଥିଲା । ଏ କଥା ବି ସତ ଯେ, ମୃତ୍ୟୁ କାହାର ବୋଲକରା ନୁହେଁ । ମଣିଷର ଗୁହାରି ଶୁଣିବାମାତ୍ରେ ସେ ଦୁଆର ମୁହଁରେ ଆସି ପହଞ୍ଚିଯାଏନି କିବା ରହିଯା' କହିଲେ ଅଟକିଯାଏ ନାହିଁ । ମୃତ୍ୟୁ ସବୁବେଳେ ନିଜ ଇଚ୍ଛାରେ, ନିଜ ବାଟରେ ଏବଂ ଠିକ୍ ତା' ହିସାବରେ ଆସେ । ଏହା ଗୋଟେ ସାର୍ବଜନୀନ ସତ୍ୟ !

ଜଗବନ୍ଧୁବାବୁ କିନ୍ତୁ ଏ ତତ୍ତ୍ୱର ଥିଲେ ଘୋର ବିରୋଧୀ । ସେ ଭାବୁଥିଲେ, ସବୁ ପରିସ୍ଥିତିରେ ମଣିଷ ମୃତ୍ୟୁଦେବତାର ପଞ୍ଜିକୃତ ମରଣକୁ ଅନେଇ ବସିବା କ'ଣ ନିହାତି ଦରକାର ? ବାର୍ଦ୍ଧକ୍ୟର ଶେଷ ପାହାଚରେ ପହଞ୍ଚି ମଣିଷ ଏମିତି ଅଚଳ, ଅଥର୍ବ, ପଙ୍ଗୁ ଅବସ୍ଥାରେ ଅହର୍ନିଶ ପୂତିଗନ୍ଧମୟ ନରକଯନ୍ତ୍ରଣା ଭୋଗି ଶେଯରେ ପଡ଼ିଥିବ । ତା' ପାଇଁ ତା' ପୁଅ, ଝିଅ, ନାତି, ନାତୁଣୀ, ପରିବାର-ପରିଜନ ନିଜ ସୁଖସୁବିଧାକୁ ଜଳାଞ୍ଜଳି ଦେଇ ତାକୁ ଘେରି ବସିଥିବେ ଆଉ ଦୂରରେ ରହି ତାମ୍‌ସା ଦେଖୁଥିବ ମୃତ୍ୟୁ ! ନା ! ମୃତ୍ୟୁର ଏଭଳି ସ୍ୱେଚ୍ଛାଚାରିତାକୁ ପ୍ରଶ୍ରୟ ଦେବା କଦାପି ଉଚିତ ନୁହେଁ । ଏଭଳି ପରିସ୍ଥିତିରେ ମଣିଷ ବରଂ 'ସ୍ୱେଚ୍ଛାମୃତ୍ୟୁ'କୁ ଆପଣେଇ ନେବା ଉଚିତ । ମୁମୂର୍ଷୁ ଅବସ୍ଥାରେ ଦୀର୍ଘକାଳ ଯନ୍ତ୍ରଣା ଭୋଗୁଥିବା ରୋଗୀଟି ଯଦି ନିଜ ଇଚ୍ଛାରେ ମରଣ ଚାହୁଁଚି, ତାହା କଦାପି ଆତ୍ମହତ୍ୟା ସହିତ ତୁଳନୀୟ ନୁହେଁ । 'ସ୍ୱେଚ୍ଛାମୃତ୍ୟୁ'କୁ ମାନ୍ୟବର ସୁପ୍ରିମ୍‌କୋର୍ଟ ଯେତେବେଳ ସ୍ୱୀକୃତି ଦେଇ ସାରିଛନ୍ତି, ତାକୁ କାର୍ଯ୍ୟକାରୀ କରିବାରେ ଅସୁବିଧା କେଉଁଠି ?

ସେଦିନ ରାତିରେ କୋମା ତାଙ୍କୁ କବଳିତ କରିବା ପୂର୍ବରୁ ଏଭଳି ଗୋଟେ ବିଚିତ୍ର ବୈଚାରିକ ଝଡ଼ ଜାଗି ଉଠିଥିଲା ଜଗବନ୍ଧୁବାବୁଙ୍କ ଦୁର୍ବଳ ଚେତନା ଭିତରେ । ସେ ଝଡ଼ ସାରାସାତି ଚାଲିଥିଲା ।

ପରଦିନ ସ୍ୱାଭାବିକ ରୀତିରେ ରାତି ପାହିବା ବେଳକୁ ଗୋଟେ ଅସ୍ୱାଭାବିକ ଘଟଣା ଘଟି ସାରିଥାଏ । ଜଗବନ୍ଧୁ ବାବୁ ଆକ୍ରାନ୍ତ ହୋଇସାରିଥାନ୍ତି କୋମାରେ ! ବାପାଙ୍କର ଏ ଅବସ୍ଥା ଦେଖି ସମ୍ବିତ୍, ସଞ୍ଜନା ଓ ବିନୀତା ପରସ୍ପରକୁ ଅସହାୟ ଆଖିରେ ଅନେଇବା ଛଡ଼ା ଆଉ କିଛି ଉପାୟ ନଥିଲା । ବିନୀତା କାନ୍ଦକାନ୍ଦ କଣ୍ଠରେ କହିଲେ, "ମୁଁ କାଲି ରାତି ସାଢ଼େ ଦଶଟାରେ ଆସି ବାପାଙ୍କୁ ଶେଷ ଔଷଧ ବଟିକାଟା ଖୁଆଇ ଯାଇଥଲି । କୋମାର ସେମିତି କିଛି ଲକ୍ଷଣ ଦେଖି ପାରିଲିନି । ସଞ୍ଜନା କହିଲା, "ତମେ ଗଲା ପରେ ମୁଁ ପୁଣି ଆସିଥିଲି ଏ ରୁମକୁ । ବାପା ପୂରା ନିଦରେ ଶୋଇ ପଡ଼ିଥିଲେ । ସମ୍ବିତ୍ ହତାଶଭରା କଣ୍ଠରେ କହିଲା, "ଡାକ୍ତର ମହାପାତ୍ର ତ ହାତ ଟେକି ଦେଇଛନ୍ତି । ଏଭଳି ଅବସ୍ଥାରେ ବାପା କେତେଦିନ ପଡ଼ିବେ, ସେକଥା କିଏ କହିପାରିବ ! !"

ଏତିକିବେଳେ ସମ୍ବିତର ଆଖି ଆବିଷ୍କାର କଲା ବାପାଙ୍କ ତକିଆ ପାଖରେ ସଞ୍ଜୁ ରଖିଥିବା କାଗଜ ଖଣ୍ଡିକ । ତା' ଉପରେ ଅସ୍ପଷ୍ଟଭାବେ କିଛି ଲେଖା ହୋଇଥିଲା । ବାପା କୋମାକୁ ଯିବା ଆଗରୁ ବୋଧେ କିଛି ଲେଖିବାକୁ ଚେଷ୍ଟା କରିଛନ୍ତି । କାଗଜ ଖଣ୍ଡିକ ଆଣି ସେ ଦେଖିଲା । ଗୋଟେ ଦୁର୍ବଳ ହାତରେ ଆତ୍ମପ୍ରକାଶ କରିଥିଲା ବିକଳାଙ୍ଗ ଓ ଅସ୍ପଷ୍ଟ କେତୋଟି ଅକ୍ଷର । ଲେଖାଟି ପଢ଼ି ଆଶ୍ଚର୍ଯ୍ୟ ହେଲା ସେ । ଲେଖା ହୋଇଥିଲା, 'ଡାଏରିର ଶେଷ..' କେବଳ ଦୁଇଟି ଶବ୍ଦ..! ଛଅଟି ଅକ୍ଷର ! ଅକ୍ଷରଗୁଡ଼ିକର ବିକଳ ଆକୃତି ଦେଖିଲେ ମନେ ହେଉଥିଲା, ସେ ଛଅଟି ଅକ୍ଷର ମଧ୍ୟ ବାପା ବଡ଼ କଷ୍ଟରେ ଲେଖିଥିବେ । ହୁଏତ ଆଉକିଛି ଲେଖିଥାନ୍ତେ; କିନ୍ତୁ ତାଙ୍କ ପକ୍ଷରେ ସମ୍ଭବ ହେଇନି । ହେଲେ ଏ ଲେଖାର ଅର୍ଥ କ'ଣ ହେଇପାରେ ? କାଗଜ କଣ୍ଡିକ ଦେଖାଇଲା ସେ ସଞ୍ଜନା ଏବଂ ବିନୀତାଙ୍କୁ । ସେ ଦୁହେଁ ବି ବିସ୍ମିତ ହେଲେ । 'ଡାଏରିର ଶେଷ..!' ଯା'ର ଅର୍ଥ କ'ଣ ହେଇପାରେ ? ? ତିନିଯୋଡ଼ା ଆଖିରୁ ଏବେ ଅସହାୟତାର ଅଶ୍ରୁ ସହିତ ଝରିବାକୁ ଲାଗିଲା ବିନ୍ଦୁ ବିନ୍ଦୁ ବିସ୍ମୟ !

ସଞ୍ଜନା ପଚାରିଲା, "ଭାଇ ! ବାପା ନିୟମିତ ଡାଏରି ଲେଖୁଥିଲେ ଟି ?"

"ହଁ, ନିୟମିତ ନ'ହେଲେ ବି ଜୀବନର ବିଶେଷ ଘଟଣାଗୁଡ଼ିକୁ ସେ ଡାଏରିରେ ଟିପି ରଖୁଥିଲେ । ହେଲେ ଆଜିକୁ ଦେଢ଼ମାସ ହେଲା ସିଏ ପାରାଲିସିସ୍‌ରେ ଅଚଳ ହୋଇ ପଡ଼ିଛନ୍ତି । ଆଉ ଡାଏରି ଲେଖିଲେ କେତେବେଳ ?" ସମ୍ବିତ୍ କହିଲା ।

"ତାହା ତ ସତ । ହେଲେ ସେ ଡାଏରି ଅଛି କୋଉଁଠି, ଟିକେ ଦେଖିଲ । କାଳେ ତା' ଭିତରୁ କିଛି ସୁରାକ୍ ଆମକୁ ମିଳିବ ।" ସଞ୍ଜନା କହିଲା ।

ସମ୍ବିତ୍ ଜାଣେ, ବାପାଙ୍କ ଡାଏରି ଖଣ୍ଡିକ କେଉଁଠି ଥାଏ । ଡାଏରି ତ ନୁହେଁ, ବରଂ ସେ ଗୋଟେ ଜଳନ୍ତା ଆଗ୍ନେୟଗିରି । ସମାଜର ଅନ୍ଧ ପରମ୍ପରା, କୁସଂସ୍କାର, ଅପସଂସ୍କୃତି ଓ ଦୁର୍ନୀତି ବିରୁଦ୍ଧରେ ସେ ଯେତେସବୁ ଆହ୍ୱାନ୍‌ମୂଳକ ଲେଖା ଲେଖିଛନ୍ତି, ସେ ସବୁର ବ୍ଲୁ-ପ୍ରିଣ୍ଟ୍ ପ୍ରଥମେ ଏହି ଡାଏରିରେ ହିଁ ପ୍ରସ୍ତୁତ ହୁଏ । କିଛି ଲେଖା ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଆନ୍ଦୋଳନର ରୂପ ନିଏ । ଆଉକିଛି ଅଫୁଟାବୋମା ଭଳି ରହିଯାଏ ଡାଏରିର ନିବୁଜ ପୃଷ୍ଠା ଭିତରେ ।

ସମ୍ବିତ୍ ଅନାୟାସରେ ପାଇଗଲା ଡାଏରି ଖଣ୍ଡିକ ବାପାଙ୍କ ଖୋଲା ଆଲ୍‌ମାରିରୁ । ଓଲଟେଇଲା ପୃଷ୍ଠା ପରେ ପୃଷ୍ଠା । ଅଟକିଗଲା ତା' କୌତୂହଳୀ ଆଖି ଡାଏରିର ଶେଷଆଡ଼କୁ । ସଞ୍ଜନା ଏବଂ ବିନୀତା ମଧ୍ୟ ଉତ୍କଣ୍ଠିତଭାବେ ଅନେଇ ରହିଥାନ୍ତି । ସମ୍ବିତ୍ ମନେମନେ ଡାଏରିରୁ ଅଳ୍ପକିଛି ପଢ଼ି କହିଲା, "ସଞ୍ଜୁ ! ଗତ ବର୍ଷ ଠିକ୍ ଏଇ ମଇ, ଜୁନ୍, ବେଳକୁ ମାଆର କଣ୍ଡିସନ୍ ମଧ୍ୟ ଖୁବ୍ ଖରାପ ଥିଲା । ଆମେ ସମସ୍ତେ ଆସିଥିଲେ । ତାକୁ ବଞ୍ଚେଇବାକୁ ଆମେ ବହୁତ ଚେଷ୍ଟା କରିଥିଲେ; କିନ୍ତୁ ପାରିଲେନି । ସେ ଚାଲିଗଲା । ସେତେବେଳର କେତେଟା ବିଶେଷ ଘଟଣା, ତାରିଖ ଓ ବାର ସହିତ ବାପା ଏଥିରେ ଲେଖି ରଖିଛନ୍ତି । ଏଥିରୁ ଆମକୁ କ'ଣ ମିଳିବ, କହିଲୁ ?"

ବିନୀତା କହିଲେ, "ନିଶ୍ଚୟ କିଛି ମିଳିପାରେ । ବାପା ଲେଖିଛନ୍ତି, 'ଡାଏରିର ଶେଷ..' ! ତମେ ଶେଷ ଆଡ଼କୁ କେତେ ପୃଷ୍ଠା ପଢ଼ିକି ଦେଖ । ହୁଏତ ତାଙ୍କ ମନର କିଛି ଅକୁହା କଥା ଡାଏରିରେ ସେ ଲେଖିଥିବେ ।"

ସଞ୍ଜନା ମଧ୍ୟ ଭାଇକୁ ସେଇ ଏକାପ୍ରକାର ଅନୁରୋଧ କରିବାରୁ ସମ୍ବିତ୍ ପଢ଼ା ଆରମ୍ଭ କଲା:

ତା: ୧୭.୦୫.୨୦୧୧ (ମଙ୍ଗଳବାର, ସକାଳ ୮ଟା)

ଗତକାଲି ମୋ' ସ୍ତ୍ରୀ ସୁଜାତାର କ୍ୟାନ୍ସର ପିଡ଼ିତ ବିକଳାଙ୍ଗ ଦେହଟାକୁ ହସ୍ପିଟାଲରୁ ଫେରେଇଦେଲେ ଡାକ୍ତର । ତାକୁ ଷ୍ଟ୍ରେଚର୍‌ରେ ବୋହି ଆଣି ଗାଡ଼ିରେ ଲଦିବା ବେଳେ ହସ୍‌ପିଟାଲର ଷ୍ଟାଫ୍ ଏବଂ ନର୍ସମାନେ ପରସ୍ପର ମଧ୍ୟରେ ଯାହା ଆଲୋଚନା କରୁଥିଲେ, ତାହା ମୋ' କାନରେ ବାଜିଲା । ହୁଏତ ମୁଁ ଶୁଣିବି ବୋଲି ସେମାନେ କହୁଥିଲେ, – ଏମିତିକା କ୍ୟାନସେର୍ ଖିଆ ଅଧାମରା ପେସେଣ୍ଟ୍‌କୁ ହସପିଟାଲ୍ ବେଡ୍‌ରେ ପକେଇ ଲାଭ କ'ଣ ?

ଖାଲି ପଇସା ଗଣିବା ସାର । ବୁଢ଼ୀ ଯେତେଦିନ ପଡ଼ିବ, ଘରେ ପଡୁ । କ'ଣ ଅଛି ତା' ଦେହରେ ? ବଞ୍ଚିବାର ଆଶା ତ ନାହିଁ । ଏମିତି ଅବସ୍ଥାରେ ମଣିଷ ବଞ୍ଚିରହିଲେ ବି କୋଉ କାମକୁ ? କେବଳ ପିଲାମାନଙ୍କ ସେବାଯତ୍ନ ପାଉଛି ବୋଲି ବୁଢ଼ୀର ନିଃଶ୍ୱାସ ଚାଲିଛି, ନ'ହେଲେ କେବେଠୁ ଯାଆନ୍ତାଣି !'

ଏଭଳି ସମ୍ବେଦନହୀନ କଠୋର ମନ୍ତବ୍ୟ ହସ୍ପିଟାଲ୍‌ର ସ୍ୱାସ୍ଥ୍ୟସେବୀମାନଙ୍କ ଠାରୁ କେବେ ଆଶା କରାଯାଇ ନ'ପାରେ । କିନ୍ତୁ ମୁଁ ମର୍ମେମର୍ମେ ଅନୁଭବ କଲି, ସେମାନଙ୍କ ଆଲୋଚନା ଆମପାଇଁ ଅପ୍ରିୟ ହେଲେ ବି ଅସତ୍ୟ ନୁହେଁ । ଏଭଳି ଅନେକ ମୁମୂର୍ଷୁ ରୋଗୀଙ୍କୁ ସେମାନେ ପ୍ରତିଦିନ ହ୍ୟାଣ୍ଡେଲ୍ କରୁଛନ୍ତି । ମୃତ୍ୟୁକୁ ଅତି ନିକଟରୁ ଦେଖୁଛନ୍ତି । 'ଜୀବନଟା ଗୋଟେ ପାଣି ଫୋଟକା'ର ବାସ୍ତବରୂପ ସେମାନେ ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଥିବେ । ତେଣୁ ସେମାନଙ୍କ ନିକଟରେ ସମ୍ବେଦନଶୀଳତା ଥିଲେ ମଧ୍ୟ ନିଜ ଅଭିଜ୍ଞତାରୁ ସେମାନେ ଯାହା କହୁଛନ୍ତି ମିଛ ନ'ହେଇପାରେ । ମୁଁ ନିଜକୁ ଏ ପ୍ରକାର ପ୍ରବୋଧନା ଦେଲି ଏବଂ ସେଇ ଗାଡ଼ିରେ ବସି ଘରକୁ ଫେରିଲି ।

ସୁଜାତା ଘରେ ପହଞ୍ଚିବା ପରେ ବିଚରା ସମ୍ବିତ୍ ତା' ମାଆର ଅବସ୍ଥା ଦେଖି ପୂରାପୂରି ହତାଶ । ସଞ୍ଜୁ ବି ! ବେଙ୍ଗଖିଆ ସାପ ଭଳି କ୍ୟାନସର୍ ସୁଜାତାର ଗୋଡ଼ ଆଡୁ ଅଧାଅଧି ଗିଳିସାରିଲାଣି । ଗତ ତିନିବର୍ଷ ତଳେ ତା'ର ଦୁଇଟାଯାକ କର୍କଟ ଆକ୍ରାନ୍ତ ସ୍ତନ କଟା ସରିଥିଲା । ଗତମାସରେ ଆଣ୍ଠୁ ତଳକୁ ବାଁ ଗୋଡ଼ଟା ଅଧା କଟାହୋଇ କୃତ୍ରିମ ଗୋଡ଼ ଲାଗିଛି । ଏବେ ତା' ପାକସ୍ଥଳିଟି ଭିତରେ ଭିତରେ ପଚିବା ଆରମ୍ଭ କରୁଛି । ଖରାଦିନିଆ ଜଙ୍ଗଲନିଆଁ ଭଳି କ୍ୟାନସର୍ ଜୀବାଣୁ ମାଡ଼ିଚାଲିଛି ତା' ଦେହସାରା ! ଚିକିତ୍ସାବିଜ୍ଞାନ କହୁଚି, ମଣିଷ କ୍ୟାନସରକୁ କାବୁ କରିସାରିଲାଣି । ମୁଁ ଜାଣେ, ତାହା କେବଳ ଆପେକ୍ଷିକ ସତ୍ୟ ! କିନ୍ତୁ ତା' ସୁଫଳ ଆମକୁ କାହିଁକି ମିଳୁନି ? ପିଲାମାନେ ତ ଚିକିତ୍ସାରେ କିଛି ଅବହେଳା କରିନାହାନ୍ତି । ଲୋକେ କହୁଛନ୍ତି, ମଣିଷକୁ ଗତ ଜନ୍ମର କର୍ମଫଳ ଏ ଜନ୍ମରେ ଭୋଗିବାକୁ ପଡ଼େ । ସେ ଯାହାବି ହେଉ, ଜଣେ ବୟସ୍କ ଓ ସିରିଏସ୍ କ୍ୟାନ୍‌ସର୍ ରୋଗୀକୁ ଡାକ୍ତର ଫେରେଇଦେବା ପରେ ଆମଭଳି ମଧ୍ୟବିତ୍ତଙ୍କ ପକ୍ଷରେ ଆଉ ଚାରା କ'ଣ ଅଛି, ଦୁଇହାତ ଉପରକୁ ଟେକି ନିଜକୁ ସମର୍ପିଦେବା ଛଡ଼ା..!!

ତା: ୨୦.୦୫.୨୦୨୧ (ଶୁକ୍ରବାର, ଅପରାହ୍ନ ୪ଟା)

ଆଜିକୁ ତିନିଦିନ ହେଲା ସୁଜାତା ମଲାଭଳି ପଡ଼ିଛି ଶେଯରେ । ମୁଁ ବୁଝିପାରୁନି, ତା'ର ଏଭଳି ଅବସ୍ଥାରେ ଭାଇ ଭଉଣୀ ଦି'ଇଟା ପାଗଳଙ୍କ ଭଳି କାହିଁକି ଲାଗିଛନ୍ତି ତା'ପିଛା ।

ସମ୍ବିତ୍ ଦେଢ଼ମାସ ହେଲା ଛୁଟିନେଇ, ତା' ପିଲାମାନଙ୍କୁ ଧରି ଏଠି ପଡ଼ି ରହିଛି । ଏବେ ସେ ଯଥାଶୀଘ୍ର ଚାକିରିରେ ଜଏନ୍ କରିବା କଥା । ନ'ହେଲେ ପ୍ରାଇଭେଟ୍ କୋମ୍ପାନୀ ଜବ୍, କେତେବେଳେ ଚାଲିଯିବ ଠିକଣା ନାହିଁ । ଏଣେ ତା' ପିଲାମାନଙ୍କ ପଢ଼ାରେ ବ୍ୟାଘାତ । ସଞ୍ଜନାଟା ମଧ୍ୟ ନିଜ ସ୍ୱାମୀ ଆଉ ପୁଅ ପିଣ୍ଟୁକୁ ଚଣ୍ଡିଗଡ଼ରେ ଛାଡ଼ି ମାସେ ହେଲା ଏଠି ମାଆକୁ ଜଗିବସିଛି । ମାତୃବତ୍ସଳ ସନ୍ତାନମାନଙ୍କର ଏଭଳି ଉତ୍ସର୍ଗିକୃତ ସେବା ବିନିମୟରେ ସୁଜାତା ଭଲା ଉଠି ବସିବାର ସମ୍ଭାବନା ଯଦି ଥାଆନ୍ତା, କିନ୍ତୁ ସେମିତି କିଛି ହେବାର ସମ୍ଭାବନା ନାହିଁ ।

ଏଭଳି ଅବସ୍ଥାରେ ଆମ ବୁଢ଼ାବୁଢ଼ୀ ଦୁଇଜଣଙ୍କୁ ନେଇ ପୁନେରେ ରଖିବା ସମ୍ବିତ୍ ପାଇଁ ବଡ଼ ଦୁରୁହ ବ୍ୟାପାର । ପୁନେ ଭଳି ବ୍ୟୟବହୁଳ ସହରରେ ବିଚରା ସ୍ୱଳ୍ପ ଦରମାରେ ଚାକିରି ଖଣ୍ଡେ କରୁଚି । ସେଥିରେ ତା' ତେଲ-ଲୁଣର ସଂସାର, ଘରଭଡ଼ା, ପିଲାଙ୍କ ପାଠପଢ଼ା, ଦେହ ପା'..  ଏମିତି କେତେ କଥା ଅଛି । ମୁଁ ଥରେ ପ୍ରସ୍ତାବ ଦେଇଥିଲି, ମୋତେ ନେଇ କୋଉଗୋଟେ ବୃଦ୍ଧାଶ୍ରମରେ ଛାଡ଼ିଦେବାପାଇଁ, ହେଲେ ମୋ' କଥାରେ ଭାଇଭଉଣୀ ଦୁହେଁ ଚିହିଁକି ଉଠିଲେ । ସତ କହିବାକୁ ଗଲେ, ଏ ଯୁଗରେ ବୁଢ଼ା ବାପା, ମାଆଙ୍କ ପ୍ରତି ଶ୍ରଦ୍ଧା, ସଦିଚ୍ଛା ରଖୁଥିବା ସନ୍ତାନମାନଙ୍କ ପାଇଁ ଏ ଗୋଟେ ବଡ଼ ଧର୍ମସଙ୍କଟର କଥା ! ! ବେଳେବେଳେ ମୁଁ ଭାବେ, ଯା'ର କ'ଣ ସମାଧାନର ପନ୍ଥା କିଛି ନାହିଁ ?

ତା: ୨୬.୦୫.୨୦୨୧ (ଗୁରୁବାର, ସକାଳ ୭ଟା)

କାଲି ଦିନସାରା ସୁଜାତା ପଡ଼ି ରହିଥିଲା ମୋ' କୋଠରୀର ଗୋଟେ କୋଣେ । ସମ୍ବିତ୍, ସଞ୍ଜନା ପାଳି କରି ଜଗୁଛନ୍ତି ତାକୁ । ବିନୀତା ସମୟ ଦେଖି ପଥ୍ୟ, ଔଷଧ ଦେବାରେ ଲାଗିଛି । କେଇଖଣ୍ଡ ଶୁଖିଲା ହାଡ଼ ଉପରେ ଲୋଚାକୋଚା ଚମଡ଼ାଟେ ଢ଼ାଙ୍କି ହୋଇ ବସିଛି ସୁଜାତା । ଆଖି ମିଟିମିଟି କରୁଛି କେବଳ । ବେଳେବେଳେ ଯନ୍ତ୍ରଣାରେ ଛଟ୍‌ପଟ୍ ହଉଛି । ଓଃ ! ଏତେ କଷ୍ଟ ଯେ, ତା' କଷ୍ଟ ଦେଖିଲେ ପଥର ଆଖିରୁ ବି ଲୁହ ଖସିପଡ଼ିବ । ଆମେ ସମସ୍ତେ ଜାଣିଲୁଣି, ସୁଜାତାର ଏବେ ଯିବା ସମୟ ନିକଟତର ହେଲାଣି; କିନ୍ତୁ କିଏ କହିବ, ସେ ସମୟ କେତେବେଳେ ଆସିବ ! ! ପ୍ରକାରାନ୍ତରେ ଆମେ ତା'ଶେଷ ସମୟର ଅପେକ୍ଷା ହିଁ ଅଛୁ ।

କାଲି ରାତି ଅଧରେ ହଠାତ୍ ମୋ' ନିଦ ଭାଙ୍ଗିଗଲା । ସୁଜାତା ଅସ୍ୱଷ୍ଟ ଶବ୍ଦରେ କିଛି ବିଳିବିଳୋଉଥିବାର ମୁଁ  ଶୁଣିପାରିଲି । ତା' ପାଖକୁ ଗଲି । ସେ କ'ଣ କହୁଚି ଶୁଣିବାକୁ

ଚେଷ୍ଟା କଲି । ସୁଜାତା ମୁହଁରୁ କେବଳ ଗୋଟିଏ ଶବ୍ଦ ବାହାରୁଥିଲା, 'ଓଃ ! ମୁକ୍ତି... ଓଃ ! ଉ..ଦ୍ଧା..ର କର । ପ୍ରଭୁ.. ମତେ ମୁକ୍ତି ଦିଅ ! ଏ କଷ୍ଟ ଆଉ ମୁଁ ସହିପାରୁନି ପ୍ରଭୁ !'

ମୁଁ ସୁଜାତା ପାଖରେ ବସିଲି । ତା' କେଶଶୂନ୍ୟ ହାଡୁଆ ମୁଣ୍ଡଟାକୁ ଆଦରରେ ଟିକିଏ ଆଉଁଶିଦେଲି । ଆଖି ମିଟିମିଟି କରି ସିଏ ମୋତେ ଅନେଇ ରହିଲା । "କିଛି କହିବ, ସୁଜାତା ?" ପଚାରିଲି ମୁଁ କଅଁଳିଆ କଣ୍ଠରେ । କ୍ଳେଶପ୍ରଦ କ୍ଷୀଣ ସ୍ୱରରେ ତା' ମୁହଁରୁ ବାହାରିଲା କେବଳ ଗୋଟିଏ ଶବ୍ଦ ! 'ମୁକ୍ତି'.. ! । ଏ ଗୋଟିଏ ଶବ୍ଦ ଉଚ୍ଚାରଣ କରୁକରୁ ଅବଶ ଆଖିପତା ତା'ର ମୁଦି ହୋଇଆସିଲା ।

ଯନ୍ତ୍ରଣାଜଡ଼ିତ ଜୀବନ କବଳରୁ ମୁକ୍ତି ପାଇଁ ତା' ବ୍ୟାକୁଳତା ମୋ' ହୃଦୟକୁ ମଧ୍ୟ ଆକ୍ରାନ୍ତ କଲା । ମୁଁ ଠାକୁରଙ୍କୁ ପ୍ରାର୍ଥନା କଲି, 'ହେ ପ୍ରଭୁ ! ସୁଜାତାକୁ ଆଉ ଏତେ କଷ୍ଟ ଦିଅନାହିଁ ଠାକୁରେ । ଦୀର୍ଘ ଦିନ ଧରି ସେ କେତେ ଯନ୍ତ୍ରଣା ଭୋଗିଲାଣି । ସିଏ ମୋ' ପିଲାମାନଙ୍କର ମା' ହେଲେ ବି ଆଜି ଆମପାଇଁ ପାଲଟିଯାଇଛି ଯନ୍ତ୍ରଣାର ଗୋଟେ ଦୁର୍ଲଂଘ୍ୟ ପାହାଡ଼ ! ତା' ପାଇଁ ପୁଅଝିଅ ଦୁହେଁ ନିଜର ସବୁକାମ ଛାଡ଼ି ବାନ୍ଧିହୋଇ ବସିଛନ୍ତି ତା'ପାଖରେ । ସେମାନଙ୍କୁ ହନ୍ତସନ୍ତ କରନାହିଁ ପ୍ରଭୁ । ସୁଜାତାକୁ ଚଞ୍ଚଳ ପାର୍ କରିଦିଅ । ମୁକ୍ତି ଦିଅ ତାକୁ ।'

ସେହିକଥା ଭାବିଭାବି ରାତିରେ ଆଉ ନିଦ ହେଲାନି ମତେ । ଏ ପରିସ୍ଥିତିରେ ଅତୀତର ଗୋଟେ ଘଟଣା ମୋ' ସ୍ମରଣକୁ ଆସିଲା । ପ୍ରାୟ ତିରିଶି ବର୍ଷ ତଳର କଥା......

ଆମ ବଗିଚାରେ ଗୋଟେ ପିଜୁଳିଗଛ ଥିଲା । ବହୁତ ମିଠା ଫଳ । ସବୁ ଋତୁରେ ଫଳେ । ପ୍ରଚୁର ପରିମାଣରେ । ସେତେବେଳେ ଆମ ପିଲାମାନେ ଛୋଟ ଥିଲେ । ସେମାନଙ୍କ ପାଇଁ ସେ ପିଜୁଳି ଗଛଟା ଥିଲା ପ୍ରକୃତିର ବରଦାନ ଭଳି ।

ସମୟାନ୍ତରରେ ଗଛଟା କାହିଁକି କେଜାଣି, ପତ୍ରଝଡ଼ା ଦେଇ ରୁଗ୍ଣ ହେବାକୁ ଆରମ୍ଭ କଲା । ଫଳ ଆସିବା କମିଗଲା । ଧୀରେଧୀରେ ଶାଖା ପ୍ରଶାଖା ପତ୍ରଶୂନ୍ୟ ହେବାକୁ ଲାଗିଲା । ଗଛଟା ମରିଯିବ ଭାବି ଆମେ ବହୁତ ମନଦୁଃଖ କଲୁ । ବିଶେଷକରି ଆମ ପିଲାମାନେ । ଗଛଟିକୁ ବଞ୍ଚେଇ ରଖିବାକୁ ଆମେ ଅନେକ ଉପାୟ କରିଥିଲୁ । ହେଲେ କ୍ରମେ ଗଛଟା ଶୁଖି ମରିଗଲା । କିଛିଦିନ ପରେ ତା' ଶୁଖିଲା ଗଣ୍ଡିରେ ଉଇ ଚରିବା ଆରମ୍ଭ କଲା ।

ଏଡ଼େ ସୁସ୍ୱାଦୁ ପିଜୁଳି ଗଛଟା ଯେତେବେଳେ ହଠାତ୍ ମରିଗଲା, ମନ ତ ଦୁଃଖି ହେବ; କିନ୍ତୁ ଗଛଟିକୁ ତ ଆଉ ପୁନର୍ଜୀବନ ଦେଇହବନି । ବରଂ ସେଠାରେ ଆଉ ଗୋଟେ ଫଳଗଛ ଲଗାଯାଇ ପାରେ । ଏହାଭାବି ମୁଁ ଦିନେ କୁରାଢ଼ି ଧରି ବାହାରିଲି ଉଇଖିଆ ଗଛଟିକୁ

ମୂଳରୁ କାଟିଦେବା ପାଇଁ । ସୁଜାତା ମୋ’ ବାଟ ଓଗାଳି ଠିଆ ହେଲା । କହିଲା, “ତମେ କେଡ଼େ ନିର୍ଦ୍ଦୟ ଲୋକ କିହେ ! ଯେଉଁ ଗଛ ଜୀବନ ସାରା ତମକୁ, ତମ ପିଲାମାନଙ୍କୁ ମିଠାଫଳ ଯୋଗାଇଲା, ଶେଷରେ ତମେ ତାକୁ କାଟିଦେବାକୁ ବାହାରିପଡ଼ିଲ ?

ମୁଁ କହିଲି, “ସୁଜାତା, ସେଇଟା ଆଉ ଗଛ ହେଇକି ନାହିଁ । ଗଣ୍ଡିଟା ଶୁଖିଲା କାଠରେ ପରିଣତ ହୋଇଗଲାଣି । ତାକୁ କାଟି ଆଣିଲେ ଅନ୍ୟ କିଛି କାମରେ ଲାଗିବ ।”

ମୋ’ କଥାର ପ୍ରଭାବ କିଛି ପଡ଼ିଲାନି ସୁଜାତା ଉପରେ । ସେ ପୁଣି ମତେ ଅନୁରୋଧ କଲା ଗଛଟା ନ’କାଟିବାକୁ । ପିଜୁଳିଗଛଟି ପ୍ରତି ସୁଜାତାର ମମତ୍ୱବୋଧ ଦେଖି ମୋତେ ହସ ମାଡ଼ିଲା । ମୁଁ କହିଲି, “ଦେଖ ସୁଜାତା ! ଗଛର ସୃଷ୍ଟି ମାଟିରୁ । ଏଇ ମାଟିରେ ହିଁ ସିଏ ଦିନେ ମିଶିବ । ମୁଁ ଆଜି ତାକୁ କାଟି କାମରେ ଲଗେଇଲେ ସେ ମାଟିକୁ ଯିବ, ଆଉ ଏଠି ଖରାବର୍ଷା ଖାଇ ଉଇ ଚରିଗଲେ ମଧ୍ୟ ସେଇ ମାଟିରେ ମିଶିବ ।”

ସୁଜାତା କହିଲା, “ସେକଥା ମତେ ବି ଜଣା । ହେଲେ ସେ ସେମିତି ନଷ୍ଟ ହେଉ ପଛେ, ତମେ ତାକୁ କାଟିବ କାହିଁକି ?” ସୁଜାତାର କ୍ରୋଧ ଆଉ ଅଭିମାନ ଭରା ଭାଷା ସହିତ ମୁଁ ପରିଚିତ ଥିଲି । ତଥାପି ତାକୁ ବୁଝାଇବାକୁ ଚେଷ୍ଟା କଲି, “ଦେଖ ! ଆମ ଜୀବଜଗତ ପାଇଁ ଗଛର କିଛି ପ୍ରତିବଦ୍ଧତା ରହିଛି । ଜୀବନ ସାରା ଗଛ ଆମକୁ ଫୁଲ, ଫଳ, ପତ୍ର, ଡାଳ, ଆଦି ଯୋଗାଏ । ନିଜେ ବିଷ ପିଇ ଆମକୁ ଶୁଦ୍ଧ ଅମ୍ଳଯାନ ଦିଏ । ଶାଖା ପ୍ରଶାଖାରେ ଜୀବଯନ୍ତୁମାନଙ୍କୁ ଆଶ୍ରୟ ଦିଏ । ଜୀବଜଗତ ପ୍ରତି ଗଛର ଏଭଳି ଅନେକ ଦାୟିତ୍ୱ ରହିଛି, ଯାହା ମାଆଟିଏ ଭଳି ସେ ପ୍ରତ୍ୟାଶା ନ’ରଖି ଜୀବନ ତମାମ୍ ଆମକୁ ଦେଇ ଚାଲିଥାଏ । ଶେଷରେ ଏଭଳି ଗୋଟେ ସମୟ ଆସେ, ତା’ପାଖରେ ଆଉ ଫୁଲଫଳର ପ୍ରାଚୂର୍ଯ୍ୟ ରହେନାହିଁ । ଗଛ ଦେହରୁ ସବୁଜିମା ହଜିଗଲେ ମଣିଷ ପାଇଁ ସେ ପରିତ୍ୟକ୍ତ ହୋଇଯାଏ । ପରିଣତ ହୁଏ କେବଳ ଶୁଖିଲା କାଠରେ । ସେତିକିବେଳେ ତାକୁ ନିଜ ସ୍ଥାନରୁ ହଟିବାକୁ ପଡ଼େ । ନଚେତ୍ ସେ ପରିସର ଭିତରେ ଥିବା ଛୋଟଛୋଟ ଗଛମାନେ ଉଧେଇ ପାରନ୍ତି ନାହିଁ । ପୁରୁଣା ରୁଗ୍ଣ ଗଛଟି ହଟିଲେ ସେ ସ୍ଥାନରେ ମୁଣ୍ଡ ଟେକିବାକୁ ସୁଯୋଗ ପାଆନ୍ତି ନୂଆ ଚାରାମାନେ । ‘ପୁରାତନର ବିଲୟ: ନୂତନର ଉଦୟ’ ଏ ହେଉଛି ପ୍ରକୃତିର ନିୟମ । ସୃଷ୍ଟିରେ ଏକମାତ୍ର ସତ୍ୟ ‘ପରିବର୍ତ୍ତନ !’ ଯାହା ଆମେ ସ୍ୱୀକାର କରିବାକୁ ବାଧ୍ୟ ! ”

ମୋ’ର ଏହି ଯୁକ୍ତି ବୋଧେ ସୁଜାତାର ମର୍ମକୁ ଛୁଇଁଲା । ସେ କିଛି ସମୟ ପାଇଁ ନିଜ ଭିତରେ ବୁଡ଼ିଗଲା । ପୁଣି ସ୍ୱପ୍ନରୁ ଉଠିବାଭଳି ହଠାତ୍ ପ୍ରକୃତିସ୍ଥ ହୋଇ ପଚାରିଲା, “ଗଛ ଆଉ ମଣିଷ ଭିତରେ ଫରକ୍ କ’ଣ ? ଆମେ ବି ଦିନେ ବୁଢ଼ାବୁଢ଼ୀ ହେବା, ରୁଗ୍ଣ

ଅଥର୍ବ ହେବା । ଉଇ ଖିଆ କାଠ ଭଳି ଆମ ଭିତରଟା ମଧ୍ୟ ଦିନେ ଫମ୍ପା ହେଇଯିବ । ସେତେବେଳେ ଆମ ପାଖରେ ଆମ ପିଲାଙ୍କୁ, ଆମ ପରିବାରକୁ କି ସମାଜକୁ ଦେବାପାଇଁ କିଛି ନଥିବ । ଆମେ ବି ଏମିତି ଦିନେ ପୂରା ଅଲୋଡ଼ା, ପରିତ୍ୟକ୍ତ ହେଇଯିବା ନା ?"

ସୁଜାତାର ଭାବପ୍ରବଣତା ଦେଖି ମୁଁ ଗଛକଟା ସ୍ଥଗିତ ରଖିଲି । ତାକୁ ଡାକିନେଇ ପାଖରେ ବସାଇ କହିଲି, "ଦେଖ, ଗଛ ଆଉ ମଣିଷ ଜୀବନକୁ ଏଡ଼େ ସହଜରେ ଯୋଡ଼ି ଦିଆଯାଇ ପାରିବନାହିଁ । ମଣିଷ ହେଉଛି ସୃଷ୍ଟିର ସର୍ବଶ୍ରେଷ୍ଠ ପ୍ରାଣୀ । ମଣିଷର ନିଜ ଘର ପରିବାର, ନିଜ ସମାଜ ଓ ରାଷ୍ଟ୍ର, ବିଶେଷକରି ବିଶ୍ୱର କଲ୍ୟାଣ ନିମନ୍ତେ ଅନେକ କିଛି କର୍ତ୍ତବ୍ୟ ଓ ଦାୟିତ୍ୱ ରହିଛି । ଶେଷ ପର୍ଯ୍ୟନ୍ତ ନିଜ ଦାୟିତ୍ୱ ନିଷ୍ଠାର ସହିତ ସମ୍ପାଦନ କରିବା ହିଁ ମଣିଷର ଧର୍ମ । ପ୍ରକୃତି ମଣିଷକୁ ବୁଦ୍ଧିମାନ ପ୍ରାଣୀରୂପେ ଗଢ଼ିଛି । ତେଣୁ ଶହେବର୍ଷର ବୃଦ୍ଧ ବି ନିଜ ବୁଦ୍ଧି ବିବେକ ଖଟେଇ ସମାଜ ପାଇଁ କିଛି କଲ୍ୟାଣକର କାମ କରିଦେଇ ପାରନ୍ତି । ତେଣୁ 'ମଣିଷଗଛ' ଫଳଶୂନ୍ୟ ହୋଇଗଲା ଭାବି ଆମେ ତାକୁ ପରିତ୍ୟାଗ କରିଦେଇ ପାରିବାନି ।"

"ହଁ ସେକଥା ସତ । ହେଲେ ଆମେ ଜାଣିବାରେ କିଛି ଲୋକଙ୍କ ଜୀବନରେ ଏମିତି ବି ସମୟ ଆସେ, ଯେତେବେଳେ ସେ ରୋଗ ଆଉ ବାର୍ଦ୍ଧକ୍ୟରେ ସଢ଼ିସଢ଼ି ଜୀବନପ୍ରତି ବିରକ୍ତ ହୋଇଯାଏ । ସେ ନିଜେ ଚାହୁଁଥାଏ ମରଣ; କିନ୍ତୁ ମୃତ୍ୟୁ ତାକୁ ଆପଣେଇ ନେଉ ନଥାଏ । ତାକୁ ପ୍ରାଣଭରି ଭଲ ପାଉଥିବା ପରିବାର ଲୋକେ ବି ତା'କଷ୍ଟ, ଯନ୍ତ୍ରଣା ସହି ନପାରି ମନେମନେ ତା' ମୁକ୍ତି କାମନା କରୁଥାନ୍ତି । କିନ୍ତୁ ନିଜେ କିଛି କରିପାରୁ ନଥାନ୍ତି । ସେତିକିବେଳେ ....... ? ?" ସୁଜାତା ମୋତେ ପ୍ରଶ୍ନିଳ ଆଖିରେ ଅନେଇଲା ।

ଗଛକାଟିବା ଭଳି ଗୋଟେ ସାମାନ୍ୟ କଥାକୁ ନେଇ ସୁଜାତା ମନରେ ଯେଉଁ ଭାବାନ୍ତର ସୃଷ୍ଟି ହେଲା, ସେଥିପାଇଁ ମୁଁ ତା' ଭାବନାକୁ ସମବେଦନା ଜଣାଇ କହିଲି, "ମଣିଷ ଜୀବନରେ ଇଏ ଗୋଟେ ବିଡ଼ମ୍ବିତ ସମୟ । ସମସ୍ତଙ୍କ ଜୀବନରେ ଏଭଳି ଦିନ ଆସେନାହିଁ । ଜୀବନହାଟର କିଣାବିକା ସାରି ମଣିଷ ଯେତେବେଳେ ବାହୁଡ଼େ ସେତେବେଳେ ସାଙ୍ଗରେ ନେବାପାଇଁ ତା' ହାତରେ ଥାଏ କେବଳ ଦୁଇଟା ବୋଝ । ଗୋଟାଏ 'ବାର୍ଦ୍ଧକ୍ୟ' ଆର ଗୋଟିକ 'ରୋଗ' ! ଦୁର୍ବଳ ହାତରେ ସେ ବୋଝ ଦୁଇଟା ବୋହି ମଣିଷ ଆଉ କେତେ ବାଟ ଚାଲିପାରିବ ? ପାଦ ଟଳମଳ ହେଉହେଉ ଅକସ୍ମାତ୍ ଯଦି ଝୁଣ୍ଟିପଡେ, ସେଠୁ ଆଉ ଉଠିବାକୁ ବଳ ନଥିବ । ପାଦ ଥକିଯାଇଥିବ । ଦେହର କଳକବଜା ସବୁ ଅଚଳ ହେଇସାରିଥିବ । କେବଳ ପବନ ଟିକକ ଚାଲିଥିବ, କଷ୍ଟରେ । ଅସହାୟ ମଣିଷଟା ପଡ଼ିଥିବ ମରଣର ବାଟ

ଚାହିଁ । ହେଲେ ମରଣ ଆସୁନଥିବ । ଆୟୁଷ ସରୁନଥିବ । ଯେତେ ଧନବଳ, ଜନବଳ, ମନବଳ ଦୃଢ଼ ଥାଉ, ସବୁକିଛି ଅଲୋଡ଼ା ହୋଇଯିବ । ମୃତ୍ୟୁ ହିଁ ତା'ର ଏକମାତ୍ର ମୁକ୍ତିଦାତା । ଗୋଟେ ପଙ୍ଗୁ, ଅଥର୍ବ ଜୀବନକୁ ଧରି ମରଣ ଆସିବା ପର୍ଯ୍ୟନ୍ତ ବଞ୍ଚିରହିବା ବଡ଼ ଯନ୍ତ୍ରଣାଦାୟକ ! ସେ ଯନ୍ତ୍ରଣା କେବଳ ଶେଯରେ ପଡ଼ିଥିବା ଲୋକଟି ପାଇଁ ନୁହେଁ ବରଂ ତା' ପରିବାର-ପରିଜନଙ୍କ ପାଇଁ । ବେଳେବେଳେ ସମାଜ ପାଇଁ ମଧ୍ୟ ! ସେ ଅବସ୍ଥାରେ 'ଇଚ୍ଛାମୃତ୍ୟୁ' ହିଁ ତା'ପାଇଁ ଶ୍ରେୟସ୍କର । ତମେ ଶୁଣିଥିବ, ଇଚ୍ଛାମୃତ୍ୟୁକୁ ଏବେ ଆମ ଦେଶରେ ସାମ୍ବିଧାନିକ ସ୍ୱୀକୃତି ମିଳିଛି । ତା'ପାଇଁ ଆଇନ୍ ତିଆରି ହେଲାଣି । ଦୀର୍ଘଦିନ ଯନ୍ତ୍ରଣା ଭୋଗୁଥିବା ଜଣେ ମୁମୂର୍ଷୁ ରୋଗୀ ଅଥବା ତା'ପରିବାର ଲୋକଙ୍କର ପୂର୍ଣ୍ଣ ସ୍ୱୀକୃତି ମିଳିଲେ ଆଇନର ସହାୟତା ନେଇ ତାଙ୍କୁ ସମ୍ମାନର ସହିତ 'ଇଚ୍ଛାମୃତ୍ୟୁ' ପ୍ରଦାନ କରାଯାଇପାରେ ।"

ମୋ' କଥା ଶୁଣି ହଠାତ୍ ସୁଜାତାର କଣ୍ଠସ୍ୱର ବଦଳିଗଲା । ଅଚାନକ୍ ମୁହଁରେ ତା'ର ଦେଖିଲି ଅସ୍ୱାଭାବିକ ପରିବର୍ତ୍ତନ ! ସେ ଆବେଗଭରା କଣ୍ଠରେ କହିଲା, "ଶୁଣ ! ମୋତେ ତମେ ଆଜି କଥା ଦିଅ । ମୋ' ଜୀବନରେ ସେଭଳି ଅବସ୍ଥା ଯଦି କେବେ ଆସେ, ତମେ ମୋତେ ମୁକ୍ତି ଦେବ । ମୁଁ ଆଜିଠାରୁ ତୁମକୁ ମୋ' 'ଇଚ୍ଛାମୃତ୍ୟୁ'ର ସ୍ୱୀକୃତି ଦେଇଦେଲି ।"

ମୁଁ ହସିହସି କହିଥିଲି, "ତମେ ପାଗଳୀ ହେଇଗଲଣି ନା' କ'ଣ ! ସେଭଳି ଅବସ୍ଥା କେବେ, କାହା ଜୀବନରେ ଆସିବ, କି ନ'ଆସିବ, ସେ କଥା କ'ଣ ଆଗରୁ କୁହାଯାଇ ପାରେ ?"

"ତାହା ତ' ସତ ! ହେଲେ ତମ ଆଖି ଆଗରେ ଯଦି ମୁଁ ସେ ଅବସ୍ଥାକୁ ଚାଲିଯାଏ, ତା'ହେଲେ ମୋତେ କୌଣସି ଉପାୟରେ ମୁକ୍ତି ନିଶ୍ଚୟ ଦେବ ।"

ମୁଁ ଥଟ୍ଟାରେ କହିଲି, "ଆଉ ତମ ଆଗରେ ମୋ' ଅବସ୍ଥା ଯଦି ସେଭଳି ହେଇଯାଏ.. ?"

ମୋ' ପ୍ରଶ୍ନ ଶୁଣି ସୁଜାତାର ଆଖି ଛଳଛଳ ହୋଇଗଲା । ସେଦିନ ସେତିକିରେ ଆମ ବିତର୍କର ଅସମାହିତ ଅନ୍ତ ଘଟିଥିଲା ।

ତିରିଶି ବର୍ଷ ତଳର ସେ କଥାଟି ଆଜି ସୁଜାତାର ଏ ଅବସ୍ଥା ଦେଖି ମୋ'ର ମନେପଡ଼ିଲା । ତା'ବ୍ୟାକୁଳତା ଦେଖିଲେ ମନେ ହେଉଥିଲା, ସେ ମୋ'ଠାରୁ ବୋଧେ ସେହି ମୁକ୍ତି ହିଁ କାମନା କରୁଛି ।

ତା: ୨୮.୦୫.୨୦୨୧ (ଶନିବାର, ମଧ୍ୟାହ୍ନ)

*ସୁରେନ୍ଦ୍ର ନାଥ ସାହୁ*

କାଲି ସକାଳେ ଚଣ୍ଡିଗଡ଼ରୁ ଜୋଇଁ ଶୁଭକାନ୍ତଙ୍କ ଫୋନ୍ ଆସିଥିଲା ସଞ୍ଜୁ ପାଖକୁ । ସେପାଖରୁ ସେ କ'ଣ କହିଲେ କେଜାଣି, ସଞ୍ଜୁ ଫୋନ୍ ରଖିବା ପରେ ଦୁଃଖିଦୁଃଖି ଜଣା ପଡୁଥିଲା । ଯେତେକରି ପଚାରିବାରୁ ବି ସେ ମୋତେ କିଛି କହିଲାନି । ମୁଁ କିନ୍ତୁ ଘଟଣାଟା ବୁଝିବାରେ ଅକ୍ଷମ ନଥିଲି । ଶୁଭକାନ୍ତ ତାଙ୍କ ଚାକିରିକୁ ନେଇ ସବୁବେଳେ ବ୍ୟସ୍ତ ରହୁଛନ୍ତି । ପୁଅଟା ଘରେ ଏକେଲା । ମାଆ ବିନା ଘର ଅଚଳ ହୋଇ ଯିବଣି । ବାପ-ପୁଅଙ୍କ ଖିଆପିଆରେ ଠିକ୍ ନାହିଁ । ଚଳିବାରେ ଅସୁବିଧା । ଏମିତିରେ ସଞ୍ଜୁ ଏତେ ଦିନ ଧରି ଏଠି ଆସି ରହିଲାଣି ତା' ମାଆର ଅସୁବିଧା ପାଇଁ । ଶୁଭକାନ୍ତ ଧୌର୍ଯ୍ୟଶୀଳ ଲୋକ ହେଲେ ମଧ୍ୟ ସବୁ କଥାର ଗୋଟେ ସୀମା ଅଛି । ସେ ନିଶ୍ଚୟ କିଛି କହିଥିବେ ସଞ୍ଜୁକୁ । ମଣ୍ଟୁ ବି ତା' ମାଆର ଅନୁପସ୍ଥିତିରେ ବ୍ୟସ୍ତ ହେଉଥିବ । ସେଥିପାଇଁ ସଞ୍ଜୁର ଆଖି ଜକେଇ ଯାଇଥିଲା । ସିଏ ଯେମିତି ଜଣେ ପତିର ପତ୍ନୀ । ଗୋଟେ ପୁଅର ମା' ! ଠିକ୍ ସେମିତି ଏ ପାଖରେ ସେ ଗୋଟେ ମାଆର ଝିଅ ମଧ୍ୟ । କର୍ତ୍ତବ୍ୟବୋଧର ବନ୍ଧନ କାଟି ଏଠାରୁ ସେ ସହଜେ ମୁକ୍ତ ହେଇପାରୁନି !

କାଲି ଅପରାହ୍ଣରେ କିଏ ଜଣେ ଆସି ସମ୍ବିତ୍ ହାତରେ ସ୍ପିଡ୍‌ପୋଷ୍ଟ ଚିଠିଖଣ୍ଡେ ଆଣି ଦେଲା । ଚିଠି ବିଷୟରେ ମୁଁ ଯାହା ବୁଝିଲି, ସମ୍ବିତର କୋମ୍ପାନୀରୁ ଆସିଛି ୱାର୍ଣ୍ଣିଂ ଲେଟର୍ ! ଗୋଟେ ସପ୍ତାହ ଭିତରେ ଜଏନ୍ ନକଲେ ଫାଇନାଲ୍ ପେମେଣ୍ଟ୍ ଆସି ନେଇଯିବାପାଇଁ । ସେ ବିଷୟରେ ସମ୍ବିତ୍‌କୁ ପଚାରିବାରୁ ସିଏ ମୋତେ କିଛି କହିଲାନି, କିନ୍ତୁ ତା' ମନର ଅବସ୍ଥା ମୁଁ ବେଶ୍ ବୁଝିପାରୁଛି । ସିଏ ତା' ମାଆକୁ ଏଭଳି ଅବସ୍ଥାରେ ଛାଡ଼ି ପୁନେ ଯାଇ ଚାକିରିରେ କେମିତି ଜଏନ୍ କରିପାରିବ ? ତା' ପାଇଁ ଗୋଟେ ପାଖରେ ପୁଅର କର୍ତ୍ତବ୍ୟ ଓ ମମତ୍ୱର ଡୋର, ଅନ୍ୟପାଖେ ନିଜର ଜୀବନ-ଜୀବିକା, ପିଲାଙ୍କ ଭବିଷ୍ୟତ । ମମତାର ବନ୍ଧନ କାଟି ସିଏ ମଧ୍ୟ ଏଠାରୁ ମୁକ୍ତ ହେଇ ପାରୁନି ।

ମୁଁ ସୁଜାତାର ଶେଯ ପାଖରେ ବସିଥିଲି । ସୁଜାତା ରୀତିମତ୍ ଯନ୍ତ୍ରଣାରେ ଛଟପଟ୍ ହେଉଥିଲା । ସାରା ରାତି । ବେଳେବେଳେ ବିଳିବିଳୋଉଥିଲା.. ଆଃ ! ପ୍ରଭୁ ! ! ମୋତେ ମୁକ୍ତି ଦିଅ..ହେ ଭଗବାନ୍ ! ଓଃ ! ମୁକ୍ତି ଦିଅ ! ମୁକ୍ତି .. ଓଃ ! ମୁଁ ଆଉ ବଂଚିବାକୁ ଚାହୁଁନି ପ୍ରଭୁ..ଆଃ ! !

ସମଗ୍ର ପରିସ୍ଥିତିକୁ ଅନୁଧ୍ୟାନ କରିବା ପରେ ମୁଁ କେବଳ ଏତିକି ଜାଣିଲି , ସୁଜାତାକୁ ମୁକ୍ତି ଦରକାର ଜୀବନ-ଯନ୍ତ୍ରଣାରୁ ଏବଂ ତା' ପିଲାମାନଙ୍କର ମୁକ୍ତି ଦରକାର ବିବଶତାର ବନ୍ଧନରୁ ।

*ସୁରେନ୍ଦ୍ର ନାଥ ସାହୁ* ______________________

ଅବଶିଷ୍ଟ ରାତି ମୋ' ମସ୍ତିଷ୍କ କୁରୁକ୍ଷେତ୍ରରେ ଧର୍ମ-ଅଧର୍ମ, ପାପ-ପୁଣ୍ୟର ବିଚାରକୁ ନେଇ ରୀତିମତ ଚାଲିଥିଲା ଗୋଟେ ବୌଦ୍ଧିକସଂଗ୍ରାମ । ସେତିକିବେଳେ ମୋ' କାନ ପାଖରେ ଗୁଞ୍ଜରିତ ହେଲା ପବିତ୍ର ଭଗବତ୍‌ଗୀତାର ଗୋଟେ ଅନନ୍ୟ ଶ୍ଳୋକ..

ଯ ଏନ ବେତ୍ତିହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍ :
ଉଭୌ ତୌ ନ ବିଜାନିତୋ ନାୟଂ ହନ୍ତି ନ ହନ୍ୟତେ । (୨/୧୯)

ଜୀବନ ଓ ମୃତ୍ୟୁକୁ ନେଇ, ଆତ୍ମା ଓ ପରମାତ୍ମାକୁ ନେଇ, ଭଗବାନ୍ ଶ୍ରୀକୃଷ୍ଣଙ୍କର ଏ ହେଉଛି ଗଭୀର ତତ୍ତ୍ୱପୂର୍ଣ୍ଣ ଉପଦେଶ, ଜୀବନ-ଦର୍ଶନର କଥା । ମୋହଗ୍ରସ୍ତ ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ ବୁଝାଉଛନ୍ତି, ଆତ୍ମା କାହାଦ୍ୱାରା 'ହତ' ହୁଏ ନାହିଁ କିମ୍ବା ଆତ୍ମା କାହାକୁ 'ହତ୍ୟା' କରେ ନାହିଁ । ଉଭୟ ଏକ, ଅଭିନ୍ନ ଏବଂ ପରମାତ୍ମାଙ୍କ ଅଂଶବିଶେଷ ! ଏହି ତତ୍ତ୍ୱକୁ ମୋହଗ୍ରସ୍ତ ମଣିଷ ଅଜ୍ଞାନତା ବଶତଃ ବୁଝିପାରେ ନାହିଁ । ସେ ପୁଣି ବୁଝାଉଛନ୍ତି, ହେ ଅର୍ଜ୍ଜୁନ ! ସମୟ ଓ ପରିସ୍ଥିତିକୁ ଆଖି ଆଗରେ ରଖି, ବିବେକ ଅନୁମୋଦିତ ଭାବେ ତୁମେ ଯେଉଁ କର୍ମ କରିବ ତାହା ହିଁ ମହତ୍ ଏବଂ ସମାଜ ପାଇଁ କଲ୍ୟାଣକାରୀ ହେବ ।

ଭଗବତ୍‌ଗୀତାର ଏହି ତତ୍ତ୍ୱକୁ ମୁଁ ନିଜେ ମନେମନେ ବ୍ୟାଖ୍ୟା କଲି । ବିଶ୍ଳେଷଣ କଲି । ଶ୍ରୀକୃଷ୍ଣଙ୍କ ମୁଖରୁ ଏଭଳି ଉପଦେଶମାନ ଶୁଣିବାପରେ ଅର୍ଜ୍ଜୁନଙ୍କର ମୋହଭଙ୍ଗ ହୋଇଥିଲା ଏବଂ ସେ ଗାଣ୍ଡିବ ଉଠାଇଥିଲେ ନିଜ ବନ୍ଧୁ, ପ୍ରିୟଜନଙ୍କୁ ବଦ୍ଧ କରିବାପାଇଁ । ଗୀତାର ସେହି ଆତ୍ମା-ପରମାତ୍ମା ସମ୍ପର୍କୀୟ ଗୁଢ଼ ରହସ୍ୟ ମୋ' ଭିତରର ଅର୍ଜ୍ଜୁନକୁ ମଧ୍ୟ ମୁଁ ବୁଝାଇବାକୁ ଚେଷ୍ଟା କଲି, - ଦେଖ, ସମାଜରେ ଧର୍ମର ପ୍ରତିଷ୍ଠା ପାଇଁ ଅର୍ଜ୍ଜୁନ ନିଜ ପ୍ରିୟଜନଙ୍କୁ ବଦ୍ଧ କରିଥିଲେ; କିନ୍ତୁ ତାଙ୍କୁ ହତ୍ୟାକରୀ କୁହାଯିବନାହିଁ । କୃଷକ ତା' ଫସଲର ସୁରକ୍ଷା ପାଇଁ ଜୀବମାନଙ୍କୁ କୀଟନାଶକ ଦେଇ ହତ୍ୟାକରେ, ତାକୁ ମଧ୍ୟ ହତ୍ୟାକରୀ କୁହାଯିବନାହିଁ । ପରିବାରର ମଙ୍ଗଳପାଇଁ ଏବଂ ସୁଜାତାକୁ ଯନ୍ତ୍ରଣାମୁକ୍ତ କରିବାପାଇଁ ଆଜି ତୁମକୁ ବି ସମୟୋଚିତ ପଦକ୍ଷେପ ନେବାକୁ ପଡ଼ିବ । ତାହା ସମାଜ ଆଖିରେ ନିନ୍ଦନୀୟ ହୋଇପାରେ ; କିନ୍ତୁ ତୁମେ ସେଥିପାଇଁ କଦାଚିତ ଦୋଷୀ ହେବନାହିଁ ।'

ମୋ'ର ଏହି ଯୁକ୍ତି ଶୁଣି ମୋ' ଭିତରର ଅର୍ଜ୍ଜୁନ ଜୀବନଦର୍ଶନର ବାସ୍ତବ ଦିଗଟିକୁ ବୁଝିପାରିଥିଲା ଏବଂ ଅସ୍ତ୍ରଧାରଣ କରିବାକୁ ପ୍ରସ୍ତୁତ ହେଲା । ମୋ' ଅର୍ଜ୍ଜୁନ ହାତରେ ଗାଣ୍ଡିବ ପରିବର୍ତ୍ତେ ଥିଲା ମାତ୍ର ଦଶଗୋଟି ହାଇପାୱାର ନିଦ ବଟିକା । ସେହି ଅମୋଘ ଅସ୍ତ୍ରଟିକୁ ସେ ଛାତିକୁ ଦୃଢ଼ କରି ପ୍ରୟୋଗ କଲା । ସେତିକିରେ ଗୋଟେ ଯନ୍ତ୍ରଣାଦାୟକ ଜୀବନର ଅବସାନ ଘଟିଥିଲା ।

*ସୁରେନ୍ଦ୍ର ନାଥ ସାହୁ*

---

ରାତିର ଅବଶିଷ୍ଟ ସମୟ ମୋତେ ଆଉ ନିଦ ହେଲାନାହିଁ । ମୁଁ ସୁଜାତାର ଶେଯ ପାଖରେ ବସି ଭଗବତ୍ ଗୀତାର ସେହି ଅନନ୍ୟ ଶ୍ଲୋକଟିକୁ ବାରମ୍ବାର ଆବୃତ୍ତି କରିଚାଲିଲି..

*ଯ ଏନ ବେତ୍ତିହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍ :*
*ଉଭୌ ତୌ ନ ବିଜାନିତୋ ନାୟଂ ହନ୍ତି ନ ହନ୍ୟତେ ।*
*ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି.. ନୈନଂ ଦହତି ପାବକଃ :*
*ନଚୈନଂ କ୍ଲେଦୟନ୍ତ୍ୟାପୋ.. ନଶୋଷୟତି ମାରୁତଃ..*

ସକାଳୁ ସକାଳୁ ସଞ୍ଜନାର କାନ୍ଦଣା ଶୁଣି ମୁଁ ପ୍ରକୃତିସ୍ଥ ହେଲି । ସେତେବେଳକୁ ଆମ ପରିବାର ରଙ୍ଗମଞ୍ଚରୁ ସୁଜାତା ନାମକ ମୁଖ୍ୟ ଚରିତ୍ରଟିର ଚିର ବିଦାୟ ଘଟିସାରିଥାଏ ।

ହତ୍ୟା ନୁହେଁ, ବରଂ ମୁଁ ସୁଜାତାକୁ ମୁକ୍ତି ଦେଇଛି । ଏ କାମ ମୁଁ ଶତପ୍ରତିଶତ ସୁସ୍ଥ ମସ୍ତିଷ୍କରେ ଏବଂ ବିବେକ ଅନୁମୋଦିତ ଭାବେ କରିଛି, ଏଥିରେ ମୁଁ ନିଃସନ୍ଦେହ !

'ଇଚ୍ଛାମୃତ୍ୟୁ'କୁ 'ହତ୍ୟା' ବୋଲି ବିଚାରୁଥିବା ସମାଜ, ମୋ' ସିଦ୍ଧାନ୍ତକୁ ସହଜରେ ଗ୍ରହଣ କରିବ କି ନା' ମୁଁ ଜାଣେନାହିଁ ।

ସୁଜାତାର ଅନ୍ତିମକ୍ରିୟା ଆଜି ଦିନ ଦଶଟାରେ ସରିଲା । ଶ୍ମଶାନରୁ ଫେରି ସମ୍ବିତ୍ ଦୀର୍ଘନିଃଶ୍ୱାସ ଛାଡ଼ି ମୋ' ଆଗରେ ଆସି ଠିଆହେଲା, ସତେ ଯେମିତି ଗୋଟେ ବଡ଼ ବୋଝ ଓହ୍ଲାଇଗଲା ତା' ମୁଣ୍ଡ ଉପରୁ ।

ତା: ୩୦.୦୫.୨୦୨୧ (ସୋମବାର, ଅପରାହ୍ନ ୨ ଟା)

ସୁଜାତାର ଦେହାନ୍ତ ହେବାର ଆଜି ଚତୁର୍ଥ ଦିନ । ଘରର ପରିବେଶକୁ ଚଳଚଞ୍ଚଳ କରି ରଖିବାରେ ସୁଜାତାର ଯଦିଓ କିଛି କର୍ତ୍ତୃତ୍ୱ ନଥିଲା, ତା' ସତ୍ତ୍ୱେ ତା' ଅବର୍ତ୍ତମାନରେ କାହିଁକି କେଜାଣି ମୋତେ ଘରଟା ଖାଁ ଖାଁ ଲାଗୁଛି । ମାଆର ସେବାରେ ପିଲାମାନେ ଯେତିକି ବ୍ୟସ୍ତ ରହୁଥିଲେ ତାଆଠୁ ଅଧିକ ବ୍ୟସ୍ତତା ଏବେ ଲାଗିରହିଛି ଘରେ । ସମ୍ବିତର ଆଉ ନିଃଶ୍ୱାସ ନେବାକୁ ଫୁରୁସତ୍ ନାହିଁ । ଘରର ସମସ୍ତେ ଉତ୍ସାହର ସହିତ ଯେ ଯା' କାମରେ ଲାଗିଛନ୍ତି । ସୁଜାତା ଦୀର୍ଘ ଦିନ ଧରି ଗୋଟେ ଦୁରାରୋଗ୍ୟ ବ୍ୟାଧିରେ ପଡ଼ିଥିଲା, ତେଣୁ ଆମର ପ୍ରଥମ କର୍ତ୍ତବ୍ୟ, ଘରଟିକୁ ସଂପୂର୍ଣ୍ଣଭାବେ ସଫେଇ କରିବା ଏବଂ ନୂତନଭାବେ ରଙ୍ଗ ଦେବା । ସେ କାମ ପ୍ରାୟ ସରିଆସିଲାଣି । ସେତିକି କାମ କରିବାକୁ ପ୍ରାୟ ତିନିଦିନ ଲାଗିଗଲା । ଆସନ୍ତାକାଲିଠାରୁ ପ୍ରତିରୁମ୍‌ରେ ଶାନ୍ତିହୋମର ଆୟୋଜନ ହେଉଛି । ଘରେ ସାତ୍ତ୍ୱିକ ଭୋଜନ ସହିତ ଦିନରେ ଶାନ୍ତି ହୋମ ଓ ଭାଗବତ ପାଠ । ରାତିରେ ଭଗବତ୍ ଗୀତା ଆଲୋଚନା ଏବଂ ସୁଜାତାଙ୍କ ସ୍ମୃତି ଚାରଣ । ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ସମୂହ ପ୍ରାର୍ଥନା । ଦଶାହ

ପର୍ଯ୍ୟନ୍ତ ନିଷ୍ଠାର ସହିତ ଘରେ କେବଳ ଏତିକି ପାଳନ କରିବାପାଇଁ ମୁଁ ପିଲାମାନଙ୍କୁ ଅନୁରୋଧ କରିଛି । ସେମାନେ ନିର୍ବିବାଦରେ ମୋ' କଥା ମାନି ପାଳନ କରୁଛନ୍ତି ।

ତା: ୦୨.୦୬.୨୦୨୧ (ଗୁରୁବାର, ଅପରାହ୍ଣ ୪ଟା)

ଆଜି ସୁଜାତାଙ୍କ ମୃତ୍ୟୁର ସପ୍ତମ ଦିନ । ଘରେ କେହି ମରିଯିବା ପରେ ବିଭିନ୍ନ ପ୍ରେତକର୍ମ ହୁଏ । ପ୍ରେତାତ୍ମାକୁ ସନ୍ତୁଷ୍ଟ କରିବାପାଇଁ ପାରମ୍ପରିକ ରୀତିରେ ଅନେକ ନୀତି ନିୟମ ପାଳନ କରାଯାଏ । କୌଣସି ବିଜ୍ଞାନସମ୍ମତ କାରଣ ନଥାଇ ଏ ପ୍ରକାର ବିଧିବିଧାନ, ପ୍ରେତ କ୍ରିୟାକର୍ମକୁ ମୁଁ ଆଦୌ ବିଶ୍ୱାସ କରେନାହିଁ । ମୋ' ବିଚାରକୁ ସମ୍ମାନ ଜଣାଇ ଘରେ ପିଲାମାନେ ମଧ୍ୟ ଏଭଳି କିଛି କ୍ରିୟାକର୍ମ ପାଳନ କରୁନାହାନ୍ତି ।

ମୃତ୍ୟୁ ପରେ ପ୍ରେତକର୍ମର ଅଧିକାଂଶ ବିଧି ବିଧାନ କେବଳ ପୂର୍ବଜମାନଙ୍କୁ ଆମେ ଅନ୍ଧାନୁକରଣ କରି ଲୋକଦେଖାଣିଆ ଭାବେ ପାଳନ କରୁଛେ ବୋଲି ମୋ'ର ମତ । ମଣିଷ ମଲା ପରେ କିଛି ଲୋକଙ୍କୁ ଭୁରିଭୋଜନ ଦେଇଦେଲେ ଯେ, ତା' ଆତ୍ମାର ସନ୍ତୁଷ୍ଟି ବିଧାନ ହୋଇଯାଏ, ଏ ଯୁକ୍ତିରେ ମୋ' ବିବେକ ଏକମତ ହୋଇପାରେନା । ମୃତକର ଅସ୍ଥିକୁ ନେଇ ଗଙ୍ଗାନଦୀରେ ଭସେଇଦେଲେ ସେ ମୁକ୍ତି ପାଇଯାଏ, ଏ ତତ୍ତ୍ୱର ମଧ୍ୟ ମୁଁ ଘୋର ବିରୋଧୀ । ପିଲାମାନେ ନିଜ ବାପା, ମାଆଙ୍କୁ ସେମାନଙ୍କ ଜୀବନକାଳ ଭିତରେ ଭଲରୂପେ ମୁଠେ ଖାଇବାକୁ ନଦେଇ ମୃତ୍ୟୁପରେ ବ୍ରାହ୍ମଣଭୋଜନ ଦେବା କେବଳ ହିପୋକ୍ରାସିର ଲକ୍ଷଣ ବୋଲି ମୁଁ କହେ । ସମସ୍ୟାର ସମ୍ମୁଖିନ ହେଲେ ସମାଧାନର ବାଟ ନ'ଖୋଜି ଜ୍ୟୋତିଷଙ୍କୁ ଖୋଜିବା ନିହାତି ମୂର୍ଖାମି ବୋଲି ମୁଁ କହେ । ଏଭଳି ଅନେକ ଚିରାଚରିତ ପ୍ରଥା, ପରମ୍ପରା ଓ କୁସଂସ୍କାର ବିରୋଧରେ ବିଭିନ୍ନ ପତ୍ରପତ୍ରିକାରେ ଲେଖି ମୁଁ ଅନେକଥର ସମାଲୋଚିତ ହୋଇଛି । ଯା'ହେଉ ମୁଁ ଆଜି ଖୁସି ଯେ, ମୋ' ସଂସ୍କାରମୂଳକ ଲେଖାର ପ୍ରଭାବ ସମାଜ ଉପରେ ପଡ଼ିଛି କି ନାହିଁ, ତାହା ସମୟ କହିବ, କିନ୍ତୁ ମୋ' ସନ୍ତାନମାନେ ଅନ୍ତତଃ ଏହାର ଅନୁସରଣ କରୁଛନ୍ତି, ଏହା ମୋ' ପାଇଁ ଗୌରବର କଥା । ମୋ' କହିବା ପ୍ରକାରେ ସେମାନେ ଘରେ କେବଳ ଶାନ୍ତି ହୋମ, ଗୀତା ପଠନ ଏବଂ ସୁଜାତାଙ୍କ ସ୍ମୃତି ଚାରଣ କରୁଛନ୍ତି । ମୁଁ ପିଲାମାନଙ୍କୁ ବୁଝାଇଛି, ନିୟମିତ କିଛିଦିନ ହୋମ କରିବା ଦ୍ୱାରା ଘରର ଦୂଷିତ ପରିବେଶ ଶୁଦ୍ଧ ଓ ପବିତ୍ର ହୁଏ । ଗୀତାପାଠ କରିବା ଦ୍ୱାରା ମନଭିତରୁ ନକାରାତ୍ମକ ଭାବନା ଦୂରିଭୂତ ହେବ । ଈଶ୍ୱରବିଶ୍ୱାସ ଦୃଢ଼ିଭୂତ ହେବ । ମାତୃବିୟୋଗର ଦୁଃଖ ଦୂର ହୋଇ ମନ ଶାନ୍ତ ରହିବ ।

ଆଜି ମଧ୍ୟାହ୍ନରେ ଚଣ୍ଡିଗଡ଼ରୁ ଜ୍ୱାଇଁ ଶୁଭକାନ୍ତ ପିଂଟୁକୁ ସାଙ୍ଗରେ ନେଇ ଆସି ପହଂଚିଲେ । ଆଉ କେତେଜଣ ଆମ ନିକଟତର ବନ୍ଧୁ ଓ ଶୁଭାକାଙ୍କ୍ଷୀ ମଧ୍ୟ ଘରକୁ ଆସି ସମବେଦନା ଜଣାଇ ଗଲେ ।

ତା: ୦୫.୦୬.୨୦୨୧ (ରବିବାର, ଅପରାହ୍ଣ, ୩ଟା)

ସୁଜାତା ଦେହାନ୍ତ ହେବାର ଆଜିକୁ ଦଶଦିନ ହେଲା । ମୁଁ ଅନୁଭବ କରୁଛି, ଘରେ ପ୍ରତିଦିନ ହୋମ ଏବଂ ଗୀତାପାଠ କରିବାଦ୍ୱାରା ଆମ ଘରର ବାତାବରଣ ଅତି ଆଶ୍ଚର୍ଯ୍ୟଜନକ ଭାବେ ବଦଳିଯାଇଛି । ଅପୂର୍ବ ଶାନ୍ତ ଆଉ ପବିତ୍ରମୟ ଲାଗୁଛି ପରିବେଶ । ପ୍ରଥମରୁ ହିଁ ଆମେ ପାରମ୍ପରିକ ରୀତିରେ ଦଶାହକାର୍ଯ୍ୟ ପାଳନ କରିବା ସପକ୍ଷରେ ନଥିଲୁ । ତା' ବଦଳରେ ଆଜି ଘରକୁ ଆମନ୍ତ୍ରିତ ହୋଇ ଆସିଥିଲେ ବିଶିଷ୍ଟ ଶାସ୍ତ୍ରଜ୍ଞ ପଣ୍ଡିତ ପ୍ରବୋଧ କୁମାର ହୋତା । ତାଙ୍କ ସହିତ ଆଉ ଚାରିଜଣ ବିଶିଷ୍ଟ ପଣ୍ଡିତ । ସମସ୍ତେ ଗୀତାଜ୍ଞାନୀ ଏବଂ ବେଦଶାସ୍ତ୍ରରେ ନିପୁଣ । ଏହି ନିଆରା ଦଶାହ କାର୍ଯ୍ୟକ୍ରମରେ ଆମକୁ ସହଯୋଗ କରିଥିଲେ ମୁକ୍ତବିଚାର ରଖୁଥିବା ଆମର କିଛି ପଡ଼ୋଶୀ, ଉଚ୍ଚବିଚାର ସମ୍ପନ୍ନ କିଛି ଲେଖକବନ୍ଧୁ ଏବଂ ମୋ' ସମଧର୍ମୀ କିଛି ସାମ୍ବାଦିକ ବନ୍ଧୁ । ପଣ୍ଡିତ ହୋତା ମହୋଦୟ ବେଦମନ୍ତ୍ର ଉଚ୍ଚାରଣ ପୂର୍ବକ ଆମ ଦୈନିକ ଯଜ୍ଞର ପୂର୍ଣ୍ଣାହୂତି ଦେଲେ । ଅନ୍ୟ ପଣ୍ଡିତମାନେ ଭଗବତ୍ ଗୀତାର କିଛି ସ୍ମରଣୀୟ ଶ୍ଲୋକ ଆବୃତ୍ତି କରି ତା' ଉପରେ ବିଶଦ ଆଲୋଚନା କରିଥିଲେ । ପରିଶେଷରେ ସୁଜାତାଙ୍କ ସ୍ମୃତି ଚାରଣ କରାଗଲା । ତାଙ୍କ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଦିଆଗଲା । ସ୍ୱର୍ଗତ ଆତ୍ମାର ସଦ୍‌ଗତି ପାଇଁ ସମୁହ ପ୍ରାର୍ଥନା ଓ ଶାନ୍ତିପାଠ କରାଗଲା । ପରିଶେଷରେ ସାମାନ୍ୟ ସାତ୍ତ୍ୱିକ ଭୋଜନରେ ସମସ୍ତଙ୍କୁ ଅପ୍ୟାୟିତ କରାଗଲା ।

ପଣ୍ଡିତ ହୋତା ମହୋଦୟ ମୋ' ପୁଅ, ବୋହୂ, ଝିଅ, ଜ୍ୱାଇଁ ଓ ନାତି ନାତୁଣୀମାନଙ୍କୁ ପାଖରେ ବସାଇ ସାଂସାରିକ ଜୀବନଚର୍ଯ୍ୟା ଉପରେ ଅନେକ ମହତ୍ ଉପଦେଶ ଦେଇ ଶେଷରେ କହିଥିଲେ - ପିଲାମାନେ ! ପ୍ରତିବର୍ଷ ଆମେ ମୃତବ୍ୟକ୍ତିଙ୍କ ଶ୍ରାଦ୍ଧଦିବସ ପାଳନ କରୁଛେ । ତୁମେମାନେ ମଧ୍ୟ ନିର୍ଦ୍ଦିଷ୍ଟ ଦିବସରେ ତୁମ ମାଆଙ୍କର ଶ୍ରାଦ୍ଧ ପାଳନ କରିପାର । ପାରମ୍ପରିକ ବିଧି ଅନୁସାରେ କେହି ପିଣ୍ଡ ଦାନପୂର୍ବକ, କେହି କେହି ବ୍ରାହ୍ମଣ ଭୋଜନ ଦେଇ ଅଥବା କେହି ଗଙ୍ଗା, ଗୟା, ଗୋଦାବରୀ ଯାଇ ଶ୍ରାଦ୍ଧ ପାଳନ କରନ୍ତି । ଏ ସବୁ କରିବା ନ' କରିବା ତୁମ ମାନସିକତା ଉପରେ ନିର୍ଭର କରେ । ତାହା ତୁମେ କରିପାର; କିନ୍ତୁ ଗୋଟେ କଥା ମନେ ରଖିବ । ବର୍ଷରେ ଅନ୍ତତଃ ସେହି ଗୋଟିଏ ଦିନ, ଶ୍ରାଦ୍ଧ ଦିବସରେ, ଶ୍ରଦ୍ଧାର ସହିତ ହୃଦୟରେ ତୁମ ମାଆଙ୍କୁ ସ୍ମରଣ କରି ନିରୋଳାରେ ବସିବ । ପ୍ରତ୍ୟେକ ମଣିଷର କିଛି ଭଲ ଓ ମନ୍ଦ ଗୁଣ ଥାଏ । ତୁମ ମାଆଙ୍କର ସେମିତି କିଛି ଭଲଗୁଣ ଥିବ ନିଶ୍ଚୟ । ତା' ଭିତରୁ ତାଙ୍କର ଗୋଟିଏ ଭଲଗୁଣକୁ ମନରେ ଗଣ୍ଠି ପକାଇବ । ଶପଥ ନେବ, ତାଙ୍କର ସେହି ଭଲ ଗୁଣଟିକୁ ତୁମେ ନିଜ ଜୀବନରେ ଆପଣେଇ ନେବା ପାଇଁ ଏବଂ ତାକୁ ନିଷ୍ଠାର ସହିତ ପାଳନ

କରିବ । ତା' ପରବର୍ଷ ଶ୍ରାଦ୍ଧ ଦିବସରେ ଶ୍ରଦ୍ଧାର ସହିତ ତାଙ୍କର ଆଉ ଗୋଟେ ମହତ୍ ଗୁଣକୁ ଆପଣେଇ ନେବ । ଏଭଳି ପ୍ରତିବର୍ଷ କରିବାଦ୍ୱାରା ତୁମ ନିଜ ଜୀବନଟି ଅନେକ ମହତ ଗୁଣରେ ମହକି ଉଠିବା ସହିତ ତୁମ ଆଗାମୀ ପିଢ଼ିର ପିଲାମାନଙ୍କ ଜୀବନ ମଧ୍ୟ ମଧୁମୟ ହେବ । ତୁମେ ଏତିକି କରିବା ଅବସରରେ ତୁମ ମାଆଙ୍କ ଆତ୍ମାକୁ ମଧ୍ୟ ଶାନ୍ତି ଓ ସଦ୍‌ଗତି ମିଳି ସାରିଥିବ ।

ପଣ୍ଡିତ ହୋତାଙ୍କର ଏହି ଉପଦେଶ ମୋ'ଦୃଷ୍ଟିରେ ଅତ୍ୟନ୍ତ ମୂଲ୍ୟବାନ୍ ଥିଲା । କାରଣ ସେ ମୋ' ମନର କଥା ହିଁ ପିଲାମାନଙ୍କୁ କହିଥିଲେ । ସେଥିପାଇଁ ମୁଁ ପଣ୍ଡିତ ମହାଶୟଙ୍କ ନିକଟରେ କୃତଜ୍ଞ ରହିଲି ।

ତା: ୦୬.୦୬.୨୦୨୧ (ସୋମବାର, ମଧ୍ୟାହ୍ନ)

କୃଷ୍ଣପକ୍ଷର ଅନ୍ଧାର ହଟିବା ପରେ ଘଡ଼ି ମାରି ଉଠୁଥିବା ଜହ୍ନର ଅଲୋକ ଭଳି ସୁଜାତାର ସବୁକାମ ସରିବାପରେ ପିଲାମାନଙ୍କ ଉଦାସଭରା ମୁହଁଟିମାନ ଆଜି ଉଜ୍ଜ୍ୱଳ ଦିଶୁଛି । ସୁଜାତା ମରି ଆଜିକୁ ଏଗାରଦିନ ଏବଂ ପିଲାମାନଙ୍କ ମୁହଁରେ ପୂର୍ଣ୍ଣମୀର ଆନନ୍ଦ । ଯା' ହେଉ, ମୁଁ ସୁଜାତାକୁ ଜୀବନ ଯନ୍ତ୍ରଣାରୁ ମୁକ୍ତି ଦେଲି ଏବଂ ପିଲାଙ୍କ ମୁହଁରେ ଆଶ୍ୱସ୍ତି ଓ ଆନନ୍ଦ ଫେରେଇ ଆଣିପାରିଲି । ସେଥିପାଇଁ ମୋତେ ଆଜି ବେଶ୍ ଖୁସି ଲାଗୁଛି ।

ସମ୍ବିତ୍ ଆଉ ସଞ୍ଜନା ନିଜନିଜ କର୍ମକ୍ଷେତ୍ରକୁ ଫେରିବାକୁ କାଲିଠାରୁ ପ୍ରସ୍ତୁତି ଆରମ୍ଭ କଲେଣି । ଅନ୍ୟପକ୍ଷରେ କହିବାକୁ ଗଲେ ସୁଜାତା ମରିବା ପରଦିନରୁ ହିଁ ଟିକନ୍ ଆଉ ଲୁସୀ ସେମାନଙ୍କ ଜାମାପଟା ସଜାଡ଼ିକି ରଖିଥିଲେ । କେତେବେଳେ ଚଞ୍ଚଳ ପୁନେରେ ଯାଇ ପହଂଚିବେ, ଦିନ ଗଣୁଥିଲେ । ଗତ ରାତିରେ ଆମ ଘରେ ଗୋଟେ ଗୁରୁତ୍ୱପୂର୍ଣ୍ଣ ବିଷୟର ଘୂର୍ଣ୍ଣିଝଡ଼ ଉଠିଥିଲା । ସେ ଝଡ଼ର କେନ୍ଦ୍ରବିନ୍ଦୁ ଥିଲି ମୁଁ ଆଉ ବିଷୟବସ୍ତୁ ଥିଲା, ମୋ' ଅବଶିଷ୍ଟ ଜୀବନ ! ମୋ' ପୁଅ, ବୋହୂ, ଝିଅ, ଜ୍ୱାଇଁ ଏମିତିକି ଆମ ଘରର କନିଷ୍ଠତମ ସଦସ୍ୟ ଲୁସୀ ମଧ୍ୟ କହିଲା ଯେ, ମୁଁ ଏ ଗାଁ ଘରର ମୋହ ତୁଟେଇ ସେମାନଙ୍କ ସହିତ 'ପୁନେ'ରେ ଯାଇ ରହିବା ଠିକ୍ ହେବ ।

ଏଭଳି ଏକ ସାମୁହିକ ଆକ୍ରମଣର ଶିକାର ହେବି ବୋଲି ମୁଁ ଆଗରୁ ଜାଣିଥିଲି । ସେଥିପାଇଁ ସଜାଡ଼ିକି ରଖିଥିଲି ସାଞ୍ଜୁଟିଏ । ଆଉ ସେ ସାଞ୍ଜୁ ଗୋଟିକ ହେଉଛି 'ଭୋଳି' । ମୁଁ ପିଲାମାନଙ୍କୁ ମୋ' ଶେଷ ନିଷ୍ପତ୍ତି ଶୁଣେଇଲି, "ଦେଖ ! ତୁମ ମାଆ ଚାଲିଗଲା ପରେ ମୁଁ ଏ ଘରେ ଏକା ହେଇଗଲି ସତ; କିନ୍ତୁ ଅସହାୟ ହେଇନି କି ଅସମର୍ଥ ହେଇଯାଇନି । ମୋଟାମୋଟି ସୁସ୍ଥ ଅଛି । ଏବେ ବି ମୋ' ହାତ ବଙ୍କୁଲିବାଡ଼ି ଖୋଜିନି । ହଁ ଏକଥା ଅବଶ୍ୟ ସତ ଯେ, ନିଜ ହାତରେ ମୁଁ ରୋଷେଇବାସ କରି ଚଳି ପାରିବିନି । ମୋ' ହାତ ଗୋଡ଼କୁ, ମୋ' ବୋଲହାକ

କରିବାପାଇଁ ଜଣେ ଲୋକ ଦରକାର । ଆଗରୁ ମୁଁ ସେ ବ୍ୟବସ୍ଥା କରିକି ରଖିଛି । ଆମ ଗାଁ ରଘୁ ବେହେରାର ପୁଅ 'ଭୋଳି'କୁ ତମେମାନେ ସମସ୍ତେ ଜାଣିଛ । ତା' ବାପା, ମା ମଲାପରେ ସେ ଅନାଥ ହେଇଗଲା । ତା' ନିଜର ବୋଲି ଗାଆଁରେ ଭିଟାମାଟି ଚକଡ଼େ କି ଜମିମାଣେ ନାହିଁ । ତା' ଦୁଃଖ ଦେଖିନପାରି ତମ ମା' ତାକୁ ଧରମ ପୁଅ କରିଥିଲା । ଆମରି ସହାୟତାରେ ସେ ଗାଁ ମୁଣ୍ଡରେ ପାନ ଗୁମୁଟିଟିଏ ଦେଇ ଭଲରେ ଚଳୁଛି । ବାହାସାହା ହେଇ ଏବେ ସେ ସୁଖରେ ଅଛି । ତମ ମାଆକୁ ସେ ଦେବୀ ଭଳି ମାନୁଥିଲା । ମୋତେ ବି ଖୁବ୍ ଖାତିରି କରେ । ତା' ପରିବାର ମୁଣ୍ଡ ଗୁଞ୍ଜିବାପାଇଁ ଚାଳିଆ ଖଣ୍ଡେ ନାହିଁ । ତମ ମା' ତାକୁ କଥା ଦେଇଥିଲା, ସେ ନିଜେ ଘରଖଣ୍ଡେ ନ'ତୋଳିଲା ପର୍ଯ୍ୟନ୍ତ ତା' ସ୍ତ୍ରୀକୁ ଧରି ଆମରି ଏଇ ଘରର ଗୋଟେ ବଖରାରେ ରହିବ । ତମେମାନେ ତ ସବୁବେଳେ ବାହାରେ ରହୁଚ । ଭୋଳିର ପିଲାମାନେ ଏ ଘରେ ରହିଲେ ସେମାନଙ୍କ ପାଇଁ ଆଶରା ମିଳିଯିବ ଆଉ ଘରର ରକ୍ଷଣାବେକ୍ଷଣ ବି ହେଇପାରିବ । ସେ ମଉକାରେ ମୋ'ପାଇଁ ଦୁଇଓଳି ଦି'ମୁଠା ଖାଇବାକୁ ବି ମିଳିଯିବ । ଟିକିଏ ଶାନ୍ତିରେ, ନିରୋଳାରେ ତମ ମାଆର ସ୍ମୃତିକୁ ମନେ ପକାଇ ଏ ଘରେ ଆଉ କିଛିଦିନ ବିତେଇବାପାଇଁ ମତେ ସୁଯୋଗ ଦିଅ । ଅତି କମ୍‌ରେ ଗୋଟେ ବର୍ଷ । ତା' ଭିତରେ ସମ୍ବିତର ଚାକିରିଟା ମଜବୁତ୍ ହେଇଯାଇଥିବ । ତା' ଆର୍ଥିକ ପରିସ୍ଥିତି ବି କିଛିଟା ସୁଧୁରିଯାଇଥିବ । ବୁଢ଼ା ବାପର ବୋଝ ଉଠାଇବାକୁ ହେଲେ ପୁଅ କାନ୍ଧରେ ଢ଼େର୍ ବଳ ଥିବା ଦରକାର । ସେ ପର୍ଯ୍ୟନ୍ତ ମୁଁ ଏଠାରେ ବେଶ୍ ଭଲରେ ଚଳିପାରିବି ବୋଲି ବିଶ୍ୱାସ । ମୋ'ପାଇଁ ତମେମାନେ କେହି ବ୍ୟସ୍ତ ହେବନି । ଏବେ ତମେସବୁ ମନ ଖୁସିରେ ଯେ'ଝା ରାସ୍ତାରେ ଯାଅ ।"

ଯା' ହେଉ ମୋ' ଦମ୍ଭଭରା ଯୁକ୍ତି ଆଗରେ ପିଲାମାନେ ମୁଣ୍ଡ ନୁଆଁଇଲେ । ଆଜି ସକାଳେ ହିଁ ସେମାନେ ଘର ଖାଲି କରି ନିଜନିଜ କର୍ମସ୍ଥଳିକୁ ଚାଲିଗଲେ ।

ଘରେ ଆଜି ମୁଁ ଏକେଲା । କାଲିଠାରୁ ମୋ' ସହିତ ଭୋଳି ଆଉ ତା' ସ୍ତ୍ରୀ ଆସି ରହିବେ । ମୁ ବଡ଼ ଦମ୍ଭରେ ସିନା କହିଦେଲି, ହେଲେ ଘରୁ ପିଲାମାନେ ବିଦାୟ ନେଇ ଚାଲିଗଲା ପରେ ମୋ' ଭିତରର ଏକେଲାପଣ, ଏ ଘରର ନିର୍ଜନତା ମୋତେ କିଛିଟା ଅସ୍ୱସ୍ତି ଦେଉଛି । ସୁଜାତାର ବିୟୋଗଜନିତ ନିଃସଙ୍ଗତା ମୁଁ ଏବେ ଅନୁଭବ କରୁଛି । ମୁଁ ଜାଣେ, ମୋ' ଅବଶିଷ୍ଟ ଜୀବନ ଏଭଳି ନିଃସଙ୍ଗତା ଭିତରେ ହିଁ କଟେଇବାକୁ ପଡ଼ିବ । ମନକୁ ଦୃଢ଼ କରିବାକୁ ଚେଷ୍ଟା କରୁଛି ମୁଁ ।

ସମ୍ବିତର ଡ଼ାଏରିପଢ଼ା ଏଠି ଅଟକିଗଲା । ଆଗକୁ କିଛି ପୃଷ୍ଠା ଖାଲି । ସଞ୍ଜନା ଓ ବିନୀତା ଉତ୍କଣ୍ଠାରେ ଚାହିଁ ରହିଥିଲେ ସମ୍ବିତ୍ ମୁହଁକୁ । ସମ୍ବିତ୍ ତା' ଓଦା ଆଖିକୁ ରୁମାଲରେ ପୋଛି ଖାଲିପୃଷ୍ଠା ଗୁଡ଼ିକ ଓଲଟେଇ ଚାଲିଲା । ପୁଣି ଅଟକିକଲା ତା' ହାତ ଗୋଟାଏ ଲେଖାଥିବା

ପୃଷ୍ଠଉପରେ । ସମ୍ବିତ୍ ଦେଖିଲା, ସେ ଗୋଟିକ ଡ଼ାଏରିର ଶେଷ ପୃଷ୍ଠା । ସମ୍ବିତ୍ ପଢ଼ିଲା...

ତା: ୦୮.୦୨.୨୦୨୨ (ମଙ୍ଗଳବାର ଅପରାହ୍ଣ)

ଦୀର୍ଘ ବ୍ୟବଧାନ ପରେ ଆଜି ପୁଣି କିଛି ଲେଖିବି ବୋଲି ଡାଏରି ଧରିଲି । ଯା' ଭିତରେ ପ୍ରାୟ ଆଠ ମାସ ବିତିଯାଇଛି । ସୁଜାତାର ବିୟୋଗ ପରେ ଏବଂ ପିଲାମାନେ ଚାଲିଯିବା ପରେ, ମୋ' ଏକାକୀ ଜୀବନରେ ସେମିତି କିଛି ବିଶେଷ ଘଟଣା ମନକୁ ଛୁଇଁନଥିଲା । କାହାକୁ ନେଇ ମୁଁ ଡାଏରି ଲେଖିଥାନ୍ତି ? ଏବେ କିଛି ଲେଖିବି ଭାବିଛି । ମନକୁ ଦୃଢ଼ କରୁଛି । ମନକୁ ଦୃଢ଼ କରୁକରୁ ଆଙ୍ଗୁଠି କୋହଳ ପଡ଼ିଯାଉଛି କଲମ ଉପରେ, ଶାରୀରିକ ଦୁର୍ବଳତା କାରଣରୁ । ଗତ ଦେଢ଼ମାସ ହେଲା, ମୋ' ସ୍ୱାସ୍ଥ୍ୟ ଅବସ୍ଥା ଧୀରେଧୀରେ ଅବନତ ହେବାର ମୁଁ ଅନୁଭବ କରିପାରୁଛି । ଭାବିଛି, ନିଜ ମନକଥା ଆଜି ଡାଏରିରେ କିଛି ଲେଖିଦେବି । ଆସନ୍ତାକାଲି ଲେଖିବାପାଇଁ ହୁଏତ ମୁଁ ଆଉ ସମର୍ଥ ଥିବି କି ନା' ଜଣାନାହିଁ । ଆଜିକାଲି ହାତଗୋଡ଼ ଭୀଷଣଭାବେ ଥରୁଛି । ବଡ଼ ଦୁର୍ବଳ ଲାଗୁଛି । କଲମ ଚଲେଇବାକୁ ବଳ ପାଉନି । ଦୃଷ୍ଟିଶକ୍ତି ବି କମିଗଲାଣି । ବେଳେବେଳେ ମନେ ହେଉଛି, ଘନ ଅନ୍ଧକାର ମାଡ଼ି ଆସିଲାଣି ମୋ' ଆଡ଼କୁ । କାନ ପାଖରେ ଅହ..ରହ.. ଶୁଭୁଛି ଘୋ' ଘୋ' ଶବ୍ଦ । ମୁଁ ଭାବୁଛି, ଏ ସବୁ ଅତିବାର୍ଦ୍ଧକ୍ୟର ଲକ୍ଷଣ ହେଇଥିବ । ତଥାପି ଦମ୍ଭ ଧରି ଏକାଏକା ବାଟ ଚାଲିବାକୁ ଚେଷ୍ଟା କରୁଛି । ମଝିରେ ମଝିରେ ଝିଅ, ଜୋଇଁ ଫୋନ୍ କରି ମୋ' ଦେହ ପା' ଖବର ବୁଝୁଛନ୍ତି । ସମ୍ବିତ୍ ପ୍ରାୟ ପ୍ରତି ଦୁଇ ଚାରିଦିନରେ ଥରେ ଫୋନ୍ କରି ମୋ' ସୁବିଧା ଅସୁବିଧା କଥା ବୁଝୁଛି । ସ୍ୱାସ୍ଥ୍ୟରେ ଟିକିଏ କିଛି ଅସୁବିଧା ହେଲେ ମୋତେ ଆସି ତା' ପାଖକୁ ନେଇଯିବ ବୋଲି କହୁଛି । ହେଲେ ଏ ପର୍ଯ୍ୟନ୍ତ ସତମିଛ କହି ମୁଁ ତା' କଥାକୁ ଏଡ଼େଇ ଚାଲିଛି । ମୁଁ ଭାବୁଛି, ରୋଗର ସିନା ଚିକିତ୍ସା କରିହବ, ବାର୍ଦ୍ଧକ୍ୟର କି ଚିକିତ୍ସା ଅଛି ଦୁନିଆରେ ? ଶେଷ ଅବସ୍ଥାରେ ମୋ' ପୁଅ କାନ୍ଧରେ ଯାଇ କାହିଁକି ବୋଝଟିଏ ହେବି ?

ଭୋଳି ଆଉ ତା' ସ୍ତ୍ରୀ ମୋତେ ଏଠି ଯେତିକି ସେବାଯତ୍ନ ଦେଇ ରଖିଛନ୍ତି, ସେକଥା ଲେଖିଲେ ମୋ' ପିଲାମାନେ ବିଶ୍ୱାସ କରିବେନି । ବିଚରା ଅଭାବି ହେତୁ ମୋତେ କେବଳ ଡାକ୍ତର ଦେଖେଇ ପାରୁନି, ସେଥିପାଇଁ ତା'ର ବହୁତ ମନସ୍ତାପ । ହେଲେ ମୂର୍ଖଟା ଜାଣିପାରୁନି, ଡାକ୍ତରଙ୍କ ପାଖରେ ମୋ'ର ଏବେ କିଛି କାମ ନାହିଁ । ଯା'ହେଉ, ସେ ଦୁଇପ୍ରାଣୀଙ୍କ ସେବାଯତ୍ନ ଉପରେ ମୁଁ ବହୁତ ଖୁସି ।

ଆଗରୁ ମୁଁ ଘଣ୍ଟାଘଣ୍ଟା ଧରି ଲେଖି ପାରୁଥିଲି । ଏବେ କିନ୍ତୁ ପାରୁନି । ଆଜିକାଲି ମୋ' ଆଙ୍ଗୁଠିମାନେ ଆଉ ବୋଲ ମାନୁନାହାନ୍ତି । ଭାରି କଷ୍ଟରେ ଲେଖୁଛି । ଆଜି ଏ ଲେଖା

ହୁଏତ ମୋ' ଶେଷ ଡାଏରିଲେଖା ଏବଂ ଏଇଟା ମୋ' ଡାଏରିର ଶେଷପୃଷ୍ଠା । ଆଇନ୍ ଅନୁସାରେ ଏହି ଶେଷପୃଷ୍ଠାର ଲେଖାଟି ହେବ ମୋ'ର ଅନ୍ତିମ ଇଚ୍ଛାପତ୍ର ବା 'ଉଇଲ୍‌ନାମା' । ଡାଏରି ମାଧ୍ୟମରେ ମୋ'ର ଏହି ଶେଷ ଅନୁରୋଧ । ଏହା କେବଳ ମୋ' ପିଲାମାନଙ୍କ ପାଇଁ ନୁହେଁ, ବରଂ ମୋ' ସରକାର, ମୋ' ଦେଶର ଆଇନ୍‌ବ୍ୟବସ୍ଥା ତଥା ମୋ' ସମାଜର ଶିକ୍ଷିତ ଓ ସଚେତନବର୍ଗଙ୍କ ଉଦ୍ଦେଶ୍ୟରେ ।

ଏକଥା ସତ୍ୟ ଯେ, ଜୀବନ ଆରମ୍ଭ ନୁହେଁ କି ମୃତ୍ୟୁ ଶେଷ ନୁହେଁ । ଶୈଶବ, ଯୌବନ ଓ ବାର୍ଦ୍ଧକ୍ୟ ଭଳି 'ମୃତ୍ୟୁ' ମଧ୍ୟ ଶରୀରର ଏକ ସାଧାରଣ ଜୈବିକ ପରିବର୍ତ୍ତନ ! ପ୍ରକୃତିର ଏକ ଚିରାଚରିତ ପ୍ରକ୍ରିୟା । ତେଣୁ ମୃତ୍ୟୁପାଇଁ ବ୍ୟସ୍ତ, ବିବ୍ରତ ଅଥବା ଦୁଃଖିତ ହେବାର କିଛି କାରଣ ନାହିଁ । ଏବେ ବାର୍ଦ୍ଧକ୍ୟର ଶେଷ ପାହଚରେ ପହଞ୍ଚିସାରିଲିଣି ମୁଁ । ଅଚାନକ୍ କେତେବେଳେ ମୋତେ ମୃତ୍ୟୁ କବଳିତ କରିନେବ କହିପାରୁନି । ତେଣୁ ମୁଁ ଆଗରୁ କହିରଖେ:

- ମୋ' ମୃତ୍ୟୁ ଯଦି ଅକସ୍ମାତ୍ ରାସ୍ତା ଦୁର୍ଘଟଣାରେ ହୁଏ, ଏଥିପାଇଁ କେହି ବ୍ୟସ୍ତ, ବିବ୍ରତ କି ବିଚଳିତ ହେବନାହିଁ । ଡେଡ୍‌ବଡ଼ିକୁ ଯଥାଶୀଘ୍ର ରାସ୍ତାରୁ ହଟେଇଦେବ । ମୁଁ ଚାହେଁନି, ମୋ' ମୃତଦେହଟି ପାଇଁ ଘଣ୍ଟାଘଣ୍ଟା ଧରି ରାସ୍ତା ଅବରୋଧ ହୋଇରହୁ । ସାଧାରଣ ଲୋକେ ଅସୁବିଧା ଭୋଗକରନ୍ତୁ ।
- ଅତିବାର୍ଦ୍ଧକ୍ୟ ଓ ଅସାଧ୍ୟ ରୋଗରେ ପଡ଼ି ମୁଁ ଯଦି ଦୀର୍ଘକାଳ ଧରି ମୁମୂର୍ଷୁ ଅବସ୍ଥାରେ ଶଯ୍ୟାଶାୟୀ ହୋଇ ରହିଲି ଏବଂ ମୃତ୍ୟୁ ମୋତେ ସହଯୋଗ କଲାନି, ତା'ହେଲେ ଏତଦ୍ୱାରା ମୁଁ ସୁସ୍ଥ ମନ ଓ ମୁକ୍ତ ହୃଦୟରେ ନିଜର 'ଇଚ୍ଛାମୃତ୍ୟୁ' ପାଇଁ ସମ୍ମତି ଦେଉଛି । ସରକାର ଓ ଆଇନ୍ ବିଭାଗ ନିଟରେ ପ୍ରାର୍ଥନା କରୁଛି, ଦୟାକରି ମୋ' 'ଇଚ୍ଛାମୃତ୍ୟୁ'କୁ ସ୍ୱୀକୃତି ଦେବେ । ମୋ'ର ଏହି ଶେଷ ଇଚ୍ଛାକୁ ପୂରଣ କରିବା ପୂର୍ବରୁ ଯଥା ସମ୍ଭବ ମୋ' ଶରୀରର ସୁସ୍ଥ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ କୌଣସି ଦୁଃସ୍ଥ, ଅସହାୟ, ଆଶାୟୀ ପ୍ରାର୍ଥୀଙ୍କୁ ଦାନ କରିଦେଲେ ମୋ' ଆତ୍ମା ପରମ ଶାନ୍ତି ପାଇବ ।
- ଏତଦ୍‌ଭିନ୍ନ ଅନ୍ୟ କୌଣସି ବି କାରଣରୁ ଯଦି ମୋ'ର ମୃତ୍ୟୁ ହୁଏ, ତା' ହେଲେ ମୋ' ମୃତ ଶରୀରକୁ ଶୋକାକୁଳ ଶୋଭାଯାତ୍ରାରେ ସ୍ୱର୍ଗଦ୍ୱାର ଶ୍ମଶାନକୁ ନେଇ ଘୃତ-ଚନ୍ଦନକାଷ୍ଠରେ ଦାହ କରନ୍ତୁ, ଏ ଅଭିଳାଷ ମୋ'ର ଆଦୌ ନାହିଁ ବରଂ ତାକୁ ତତକ୍ଷଣାତ୍ ହସ୍ତାନ୍ତର କରିଦିଆଯାଉ କୌଣସି ମେଡ଼ିକାଲ୍ ହସପିଟାଲ୍‌କୁ । ପୋଡ଼ାଘରୁ ଗୁଅ ଖଣ୍ଡେ ମିଳିବା ଭଳି ମୋ' ବାର୍ଦ୍ଧକ୍ୟ ଜର୍ଜରିତ ଶରୀର ଭିତରୁ

ଆଉ କିଛି ମିଳୁ କି ନ ମିଳୁ, 'କଙ୍କାଳ' ଗୋଟିକ ନିଶ୍ଚୟ ମିଳିବ ଏବଂ ସେହି ଗୋଟିକ ମେଡ଼ିକାଲ୍ କଲେଜ ଲାବ୍ରୋଟାରିରେ ଠିଆ ହୋଇ ପିଲାମାନଙ୍କୁ ଅନ୍ତତଃ ଡାକ୍ତରୀଶିକ୍ଷାରେ ସହାୟତା ଦେଉଥାଉ । ସେତିକିରେ ହିଁ ମୋ' ଆତ୍ମାକୁ ମିଳିବ ଅପାର ଆନନ୍ଦ ! ଏ ମୋ' ଜୀବନର ଚରମ ଅଭିଳାଷ ।  ଶେଷ ଇଚ୍ଛାପତ୍ର ।

....... ଏଠି ସରିଥିଲା ବାପାଙ୍କ ଡାଏରି ଲେଖା । ପଢ଼ା ସରିଲା ବେଳକୁ ସଞ୍ଜନା ଓ ବିନୀତା ସ୍ଥାଣୁ ପାଲଟି ସାରିଥାନ୍ତି । ସମ୍ବିତ୍ ବାପାଙ୍କ ଡାଏରିଟାକୁ ଆବେଗରେ ଚାପିଧରିଲା ଛାତିରେ ।

ଭାଇ, ଭାଉଜ ଓ ଭଉଣୀ, ତିନିହେଁ ପରସ୍ପରକୁ କେବଳ ଚାହିଁ ରହିଲେ ଗୋଟାଏ ଲେଖା ଆତଙ୍କିତ ପ୍ରଶ୍ନବାଚୀ ଭଳି ! ସମ୍ବିତ୍ ବାଷ୍ପାକୁଳ କଣ୍ଠରେ କହିଲା, "ବାପାଙ୍କର ଏ ଶେଷ ଇଚ୍ଛା, ଏ ଅଭିନବ ଅଭିବ୍ୟକ୍ତି, ଯାକୁ ଆମକୁ ଯେ କୌଣସି ପ୍ରକାରେ ପୂରଣ କରିବାକୁ ହିଁ ପଡ଼ିବ ।"



**ଗଳ୍ପ: ଆସନ୍ତାକାଲିର**

# ମିସ୍ ମିରାକଲ୍

(୧)

ଆଜିକାଲି ଗ୍ରୀଷ୍ମ ଗୋଟେ ଋତୁ ନୁହେଁ, ଗୋଟେ ଆତଂକ ! ବିଶେଷ କରି ଏ କଂକ୍ରିଟ୍ ଜଂଗଲରେ ବିଚରଣ କରୁଥିବା ମଣିଷମାନଂକ ପାଇଁ ଦି'ପହର ଖରା ସଂତ୍ରାସବାଦୀଠୁଁ ବି ଅଧିକ ଭୟଂକର ! ! ଜୁନ୍ ସକାଳର ନାବାଳକ ଖରା ମଧ୍ୟ ଏଠି ପାଲଟିଯାଏ ପ୍ରଚଂଡ ଅତ୍ୟାଚାରୀ । ତେଣୁ ଖରାପ୍ରତି ସମସ୍ତେ ସତର୍କ । ବିଶେଷକରି ଏ ସହରର ଫିନ୍‌ଫିନ୍ ଗୋରୀମାନେ ଖରାର ରୋଷଦୃଷ୍ଟିରୁ ନିଜ ଚେହେରାକୁ ଏଡ଼େଇବା ପାଇଁ ଦେହରେ ସ୍କାର୍ଫ ଢାଂକି, ଆଖିରେ ସନ୍‌ଗ୍ଲାସ୍ ଦେଇ ବୁଲୁଥାଂତି ।

ମୀରା କଥା କିନ୍ତୁ ଅଲଗା ! ସେ ଏମିତି ଗୋଟେ ଝିଅ, ଖରାକୁ ଯିଏ ମୋଟେ ଖାତିରି କରେନା ! ଖରାକୁ ଡରି ମୀରା ମୁହଁରେ ମାସ୍କ ଭିଡ଼େନାହିଁ କି ମୁଣ୍ଡ ଉପରେ ଓଢ଼ଣୀ ଢାଙ୍କେନି । ହାତରେ ଛତା ଧରେନି କି ଅଫିସ୍ ଯିବା କେବେ ବଂଦ କରେନି । ହେଲେ କାହିଁକି କେଜାଣି ଆଜି ସେ ଅଫିସ୍ ଯିବନି ବୋଲି ଠିକ୍ କରିଛି । ଶେଯ ଛାଡ଼ିବା ପରଠୁଁ ସେ ମୁଂଡପୋତି ଚୁପ୍‌ଚାପ୍ ଶେଯରେ ହିଁ ବସି ରହିଛି ଏବଂ କିଛିଗୋଟେ ଭାବୁଚି । କ'ଣ ଭାବୁଚି ସିଏ ସେତିକିବେଲୁ ବସି ? କିଛି ଗୋଟେ ଖରାପ ସ୍ୱପ୍ନ ଦେଖିଲା କି ? ଦେଖିଥିବ ! ଅବଶ୍ୟ ସ୍ୱପ୍ନକୁ ତା'ର ପ୍ରାଣେଭୟ ! !

ତା' ସାନ ଭଉଣୀ ଟ୍ୱିଂକଲ୍ ଡ୍ରେସିଂଟେବୁଲ୍‌ରୁ ଉଠିଆସି ସ୍କୁଟି ଚାବିଟା ଭେନିଟିରେ ପୂରାଉ ପୂରାଉ ପଚାରିଲା, "କ'ଣ ଦିଦି ! ଏତେ ଡେରିରେ ଉଠିଲୁ ଯେ ? ଆଜି ଅଫିସ୍ ଯିବୁନି ନା କ'ଣ ?".

"ନା' ରେ ! ଦେହଟା ଟିକିଏ ଭଲ ଲାଗୁନି । ଆଜି ରେଷ୍ଟ୍ ନେବି ଭାବୁଚି ।" ଅଳସ ଭାଂଗୁ ଭାଂଗୁ କହିଲା ମୀରା ।

"ଭଲ କରିଚୁ । ତୋର ସେଇଟା ଅଫିସ୍ ନା କୋଇଲା ଖାଦାନ୍ କେଜାଣି ! ମଣିଷ ଦିନ ରାତି ଏତେ ଖଟିଲେ ଦେହ ଖରାପ ହବନି ? ଠିକ୍ ଅଛି, ମୁଁ ମଧ୍ୟ ଛୁଟି ନେବି । ଚାଲ୍ ଡକ୍ଟର ପାଖକୁ ଯିବା !"

*ସୁରେନ୍ଦ୍ର ନାଥ ସାହୁ* ________________________

"ଆରେ..... ! ତୁ ପାଗଳୀ ହେଲୁ ନା' କ'ଣ ! ମୋ'ର ସେମିତି କିଛି ହେଇନି । ତୁ ତୋ'ର ଅଫିସ୍ ଯା ! ଘରେ ସୋମେନ୍ ଅଛି ପରା ? ତୁ କାଇଁକି ବ୍ୟସ୍ତ ହଉଚୁ ?"

"ଠିକ୍ ଅଛି । ମୁଁ ଯାଉଚି ! ଦରକାର ହେଲେ ମୋତେ ଫୋନ୍ କରିବୁ । ଭାଇ ଆଉ ତୋ'ପାଇଁ ମୁଁ ବ୍ରେକଫାଷ୍ଟ୍ ବନେଇକି ରଖିଦେଇଛି । ଖାଇନବ ।"

"ହଉ, ଆମେ ଖାଇବୁ । ତୁ ଯା' । ହେଇଟି ଟ୍ୱିଂକଲ୍! ଖରା ବଢ଼ିଲାଣି । ସନ୍‌ଗ୍ଲାସ୍ ଆଉ ଗ୍ଲୋଭସ୍ ପିଂଧିକି ଯିବୁ । ମୁହଁରେ ସ୍କାର୍ଫ ଭିଡ଼ିବୁ । ଆଚ୍ଛା ! ସନ୍‌କ୍ରୀମ୍ ଲଗେଇଚୁ ଟି ?"

"ଓଃ ହୋ' ଦିଦି ! ତୁ ମୋ'ପାଇଁ ଏତେ ବ୍ୟସ୍ତ ହଉଚୁ, କାଇଁ ନିଜ ଦେହର ତ ସେମିତି ଯତ୍ନ ନଉନୁ ?"

"ଆରେ ପାଗଳୀ ! ମୋର ଏ ବୟସ୍କ କଳା ଦେହଟାକୁ ଖରା ଜାଳିପୋଡ଼ି ଆଉ କେତେ କଳା କରିପାରିବ ଯେ ମୁଁ ତା' ଯତ୍ନ ନେବି ? ବୁଝିଲୁ ଟ୍ୱିଂକଲ୍! ଆମେ ଦି'ଭଉଣୀ ଗୋଟେ ମା' ପେଟରୁ ଜନ୍ମ ହେଇଥିଲେ ମଧ୍ୟ ଭଗବାନ୍ ତୋତେ ଯେଉଁ ରୂପରଂଗ ଦେଇ ଗଢ଼ିଛଂତି, ବଡ଼ ହିସାବରେ ମୋର ବି ତା' ଉପରେ କିଛି ଅଧିକାର ଅଛି । ସେଥିପାଇଁ କହୁଚି । ହେଇଟି......ଶୁଣ୍ , ଖରାରେ ଏତେ ବାଟ ବାଇକ୍ ଚଲେଇକି ଯାଆନି ! ସ୍କୁଟିଟା ଗୋରେଗାଓଁ ଷ୍ଟେସନ୍ ଷ୍ଟାଣ୍ଡରେ ରଖି ସେଠୁ ଲୋକାଲ୍ ଟ୍ରେନ୍‌ରେ ଯିବୁ, ବୁଝିଲୁ ।"

"ହଉ ବାବା, ହେଲା । ସିଆଡ଼େ ତୋ' ମୋବାଇଲ୍ ରିଂ ହେଲାଣି । ତୋ' ଅଫିସରୁ ବୋଧେ କିଏ କଲ୍ କରୁଚି ।"

"ହଁ.......ଦେଲୁ ଦେଲୁ । ମୋ' ହାତକୁ ବଢ଼େଇଦେଲୁ ମୋବାଇଲଟା ।" ମୀରା ଶେଯରେ ବସି ହାତ ବଢ଼େଇଲା ।

ଟ୍ୱିଂକଲ୍ ମୋବାଇଲ୍ ସ୍କ୍ରିନ୍‌ରେ ଆଖି ପକେଇ କହିଲା, "ଆରେ ହେ' ! ଇଏତ ଶ୍ୟାମଳ ବାବୁ! ତା'ମାନେ ଏବେ ମୁଁ ବୁଝିଲି ତୋ'ଦେହ ଖରାପର ଅସଲ କାରଣଟା ! ତୋର ଆଜି ରେଷ୍ଟ୍ ଆଉ ଶ୍ୟାମଳ ଜିଜୁଙ୍କର ସକାଳୁ ସକାଳୁ ଫୋନ୍! ତା'ମାନେ ଆଜି ଗୋଟେ ସ୍ପେସିଆଲ୍ ଡେ, ନିଶ୍ଚୟ !"

"ଟ୍ୱିଂକଲ୍ ! ବେଶୀ ଫାଜିଲାମି ନ'କରି ମୋତେ ଫୋନ୍ ଦେଲୁ ।" ମୀରା ହାତ ବଢ଼େଇଲା ।

"ହଉ ବାବା ! ମୈ କ୍ୟୁଁ କବାବ୍ ମେ ହଡ୍ଡି ବନୁଂଗୀ ! ଏଂଜୟ୍ ୟୁଅର୍ ସେଲ୍‌ଫ୍ ! ହାଭ୍ ଏ ନାଇସ୍ ଡେ । ବାଏ !"

ମୀରା ଟ୍ୱିଂକଲ୍‌କୁ ବିଦାକରି ମୋବାଇଲ୍ ରିସିଭ୍ କଲା, "ହେଲୋ....... ଶ୍ୟାମ୍ !"

"ହେଲୋ....ମୀରା ! କ'ଣ କହୁଥିଲା ସେ ନଟି ଗାର୍ଲ ଟ୍ୱିଂକଲ୍ ? ଆଉ ତମେ....ଆଜି

ଅଫିସ୍ ଯିବନି ନା' କଣ ?"

"ନା ! ଛୁଟି ନଉଚି ।"

"ଛୁଟି ନଉଚ ? କ'ଣ ଦେହ ଭଲ ଅଛି ତ ?"

"ମନ ଭଲ ନାଇଁ !"

"ମାନେ ! !"

"ଆଗରେ ଭୀଷଣ ଅଂଧାର ! ପଛରେ ଭୀଷଣ ଅଂଧାର ! ପାଦ ତଳର ମାଟି ଦିଶୁନି । କେବଳ ଗୋଟେ ଗଛ ଦିଶୁଛି । ପ୍ରକାଂଡ ଗଛଟେ । ଅଦ୍ଭୁତ ରଂଗର ଫୁଲ,ଫଳ,ପତ୍ରରେ ଭରପୂର ! ହଠାତ୍ କୁଆଡୁ ପ୍ରଚଂଡ ଝଡ଼ ଆସିଲା ଆଉ ଗଛଟା ମୋ' ଆଖି ସାମ୍ନାରେ ମୂଳରୁ ଉପୁଡ଼ି ପଡ଼ିଲା ! ଧୂଳିସାତ୍ ହେଇଗଲା ! ବାସ୍ !"

"କ'ଣ ଏମିତି ପାଗଳୀଂକ ଭଳି ଗପୁଚ ? ସ୍ୱପ୍ନ ଦେଖୁଥିଲ କି ?"

"ହଁ ଶ୍ୟାମ୍ ! ଗୋଟେ ଦୁଃସ୍ୱପ୍ନ ! ! ସେ ସ୍ୱପ୍ନର ଅର୍ଥ କ'ଣ, ବସି ମୁଁ ଭାବୁଚି ।"

"ମୀରା ! ତମକୁ ମୁଁ ଅନେକଥର କହିଚି, ସ୍ୱପ୍ନ ସହିତ ବାସ୍ତବ ଜୀବନର କୌଣସି ସଂପର୍କ ନଥାଏ । ସେ ଉଦ୍ଭଟ ଦୃଶ୍ୟସବୁ କାହିଁକି ନିଜ ଆଡ଼କୁ ଟାଣୁଚ ?"

"କିଂତୁ ଶ୍ୟାମ୍ ! ମୋ' ବାସ୍ତବ ଜୀବନ ସହିତ ଏ ସ୍ୱପ୍ନର ନିବିଡ଼ ସଂପର୍କ ଅଛି ! ଆଚ୍ଛା.... ! ତମେ ଆଜି ଫ୍ରି ଅଛ ?"

"ତମ ପାଇଁ ମୋ' ସମଗ୍ର ଜୀବନଟା ଅବସ୍ୟୁଲଟ୍‌ଲି ଫ୍ରି । ଏଥିରେ ତମର ସଂଦେହ ଅଛି ନା କ'ଣ ?"

"ପ୍ଲିଜ୍ ଶ୍ୟାମ୍ ! ଆଜି ଚାରିଟାବେଳେ ଆମେ 'ଲଭର୍ସ ପଏଂଟ୍'ରେ ଟିକେ ମିଶିବା । ନିଶ୍ଚୟ ଆସିବ !"

"ଆଶ୍ଚର୍ଯ୍ୟ ! ଅଚାନକ୍ ! ! କିଛି ଜରୁରି କଥା ଅଛି ?"

"ଫୋନ୍‌ରେ ଆଉ ବେଶୀ କିଛି କହିବା ସମ୍ଭବ ନୁହେଁ ଶ୍ୟାମ୍, ପ୍ଲିଜ୍ ! ଫୋନ୍ ରଖୁଚି ।"

(୨)

'ଲଭର୍ସ ପଏଂଟ୍' !

ମୁଂବାଇର ଗୋରେଗାଁଓ ଇଲାକାରେ ସର୍ବସାଧାରଣଂକ ପାଇଁ ଉଦ୍ଦିଷ୍ଟ ଛୋଟ, ସୁଂଦର ଅଥଚ୍ ଦୁର୍ନାମମୁକ୍ତ ପାର୍କଟିଏ । ପାର୍କ ଚତୁର୍ପାର୍ଶ୍ୱରେ ଦୋକାନ, ବଜାର, କୋଳାହଳ ଏବଂ ପ୍ରତି ତିନି ମିନିଟ୍‌ରେ ଲୋକାଲ୍ ଟ୍ରେନ୍‌ର ଅବିରାମ ଧାଉଁଡ଼ିଶବ୍ଦ ସତ୍ତ୍ୱେ 'ଲଭର୍ସ ପଏଂଟ୍'

ସତେଅବା ଧ୍ୟାନମଗ୍ନ ତପସ୍ୱୀଟେ ! ପାଣି ଭିତରେ ରହି ପଦ୍ମପତ୍ର ଯେମିତି ପାଣିର ଝଂଜାଳରୁ ମୁକ୍ତ, ସେମିତି ଏ ପାର୍କ ମହାନଗରୀ ମଝିରେ ନିରୋଳା ତପୋବନଟିଏ ଭଳି ମନେହୁଏ । ସେଥିପାଇଁ 'ଲଭର୍ସ ପଏଂଟ୍' ପ୍ରେମୀଯୁଗଳଙ୍କ ପାଇଁ ବିଶେଷ ଆକର୍ଷଣ ! ମୀରାର ବି !

ଶ୍ୟାମ ସହିତ ତା'ର ପ୍ରଥମ ପରିଚୟ ଏଇଠି । ହୃଦୟ ଦିଆନିଆ ବି । ପାର୍କର ନିର୍ଦ୍ଧାରିତ କୋଣ ବେଂଚରେ ବସି ମୀରା ଭାବୁଥିଲା ସେ ପ୍ରଥମ ଦିନର କଥାଗୁଡ଼ିକ ।

ଶ୍ୟାମ୍ ! ଶ୍ୟାମଳେଂଦୁ ମହାଂତି । ଓଡ଼ିଶାର ପିଲା । ବାପା, ମାଆ ତା'ର ଦୀର୍ଘ ତିରିଶ ବର୍ଷ ଧରି ମୁଂବାଇର ବାସିଂଦା । ଓଡ଼ିଶାର ମାଟି ପାଣି ସହିତ ସେମାନଂକର ଏବେ କୌଣସି ସଂପର୍କ ହିଁ ନାଇଁ । ଶ୍ୟାମଳର ଜନ୍ମ,କର୍ମ,ପାଠପଢ଼ା,ଚାକିରି, ସବୁକିଛି ଏଇ ସହରରେ ।

ଆଉ ମୀରା........! ସିଏ ରାଜସ୍ଥାନୀ ଝିଅ ! ସେ ବିଶ୍ଳେଷଣ କରି ଦେଖୁଥିଲା, 'ମୀରା' ଆଉ 'ଶ୍ୟାମ' ! ଏ ଦୁଇଟି ନାଁ ଭିତରେ ସତେ ଯେମିତି ରହି ଅସିଛି ଯୁଗଯୁଗ ଧରି ଗୋଟେ ଅଲୌକିକ ସଂପର୍କ ! ଗୋଟେ ଅଦ୍ଭୂତ ଆକର୍ଷଣ ! ! ସବୁ ଯୁଗରେ ମୀରାପାଇଁ ଶ୍ୟାମ ଅପ୍ରାପ୍ୟ, ଅପହଂଚ । ଅଥଚ୍ ମୀରାର ହୃଦୟ ଭିତରେ ଶ୍ୟାମ ଯୁଗଯୁଗ ଧରି ବଂଦି ! ସବୁ ଯୁଗରେ ମୀରା ଶ୍ୟାମଂକୁ ହୃଦୟ ଦେଇଛି ଏବଂ ସମାଜ ଆଖିରେ ନିଜେ ହିଁ ହେଇଛି ନିଂଦିତା ! ଦିନେ ସେ ମେଓ୍ୱାର ରାଜପରିବାରର କୁଳବଧୂ ହୋଇ ଭୁଲ କରିଥିଲା । ଆଜିପୁଣି ସେଭଳି ଗୋଟେ ଭୁଲର ପୁନରାବୃତ୍ତି ହେବାକୁ ଯାଉଛି ମୀରା ଜୀବନରେ । ହେଲେ....... !

ହଠାତ୍ ଶ୍ୟାମର ସ୍ପର୍ଶରେ ପ୍ରକୃତିସ୍ଥ ହେଲା ମୀରା !

"ମୀରା ! ମୋ'ର ଟିକେ ଡେରି ହେଲା । ଚୁପ୍‌ଚାପ୍ ବସି କ'ଣ ଭାବୁଥିଲ ?"

"ଭଗବାନ୍ କରଂତୁ, ତୁମପାଇଁ ଆଜିର ପ୍ରତିକ୍ଷା ମୋ'ର ଶେଷ ପ୍ରତିକ୍ଷା ହେଉ, ସେକଥା ହିଁ ଭାବୁଥିଲି ।"

"ମାନେ ! ତମେ କ'ଣ କହୁଚ ଜାଣିପାରୁଛଟି ?"

"ହଁ, ଅନେକ ଭାବିଚିଂତି ମୁଁ ଏକଥା କହୁଚି, ଆଉ ଆମେ ଆଜି ଯାହା **ନିଷ୍ପତ୍ତି** ନେବା ଖୁବ୍ ଭାବିଚିଂତି ହିଁ ନେବା !"

"କଥାରେ ମତେ ଆଉ ପ୍ରହେଳିକା ଦେଖାଅନି ମୀରା ! ଘଟଣା କ'ଣ ସିଧା ସିଧା କୁହ ?"

"ଶ୍ୟାମ୍ ! ମୁଁ ଯାହା କହିବାକୁ ଚାହୁଚି, ସେ କଥା ତମକୁ ଅଜଣା ନୁହେଁ । ମୁଁ ଶୁଣିଲି, ଆମ ବିବାହକୁ ନେଇ ତମ ଘରେ ଗତ ରାତିରେ ଗୋଟେ ଭୀଷଣ ଝଡ଼ ଉଠିଛି । ଆଉ ସେ ଝଡ଼ର କେଂଦ୍ରବିଂଦୁ ହେଉଚି ମୁଁ !"

"ଓଃ ! ସେଇ ଝଡ଼ ବୋଧେ ତମ ସ୍ୱପ୍ନର ସେ ଫୁଲଫଳ ଭରା ପ୍ରକାଂଡ ଗଛଟାକୁ ମୂଳରୁ ଓପାଡ଼ି ଦେଇଛି, ନୁହେଁ ?"

"ଶ୍ୟାମ୍ ! ମୁଁ ଏକଥା ବି ଶୁଣିଛି, ବୋଉ ତମର ପ୍ରତିଜ୍ଞା କରିଛଂତି, ସେ ବଂଚି ଥାଉଥାଉ ମୋ'ଭଳି ଗୋଟେ ଅସୁଂଦରୀ ଶ୍ୟାମଳୀ ଝିଅକୁ ବୋହୂ କରି ଘରକୁ ନେଇ ପାରିବେନି !"

"ତା' ହେଲେ ତମେ ମୋ' ପ୍ରତିଜ୍ଞା ବି ଶୁଣିଥିବ ? ମୁଁ ବାପା, ବୋଉଂକୁ ରୋକ୍‌ଠୋକ୍ ଶୁଣେଇଦେଇଛି, ଯଦି ମୁଁ ବାହା ହେବି, ମୀରା ହିଁ ହେବ ମୋ' ଜୀବନ ସାଥୀ !"

"ନା' ଶ୍ୟାମ୍ ! ତମେ ସେଭଳି ନିଷ୍ପତ୍ତି ନିଅନାହିଁ.....ପ୍ଲିଜ୍ ! ଘରର ତମେ ଗୋଟେବୋଲି ପୁଅ । ରୂପ ଗୁଣ ସଂପନ୍ନ । ସମାଜରେ ତମର ପ୍ରତିଷ୍ଠା ଅଛି । ତମ ବାପା ବୋଉ ତମକୁ ନେଇ କେତେ ସ୍ୱପ୍ନ ଦେଖିଥିବେ । ତମେ ଚାହିଲେ ଅନେକ ରୂପବତୀ ଝିଅ ତମକୁ ମିଳିବେ । ମୋ'ଭଳି ଗୋଟେ ଆକର୍ଷଣହୀନା ଅସୁଂଦରୀ ଝିଅପାଇଁ .... !"

"ହୁଁ! ଅସୁଂଦରୀ ! କିଏ ଅସୁଂଦରୀ ମୀରା ? ବୁଝିଲ, ପାପ ପୂଣ୍ୟ ଆଉ ସ୍ୱର୍ଗ ନରକ ଭଳି ସୁଂଦର ଆଉ ଅସୁଂଦରବୋଧ ମଧ୍ୟ ଗୋଟେ ଆପେକ୍ଷିକ ବିଚାର । ସୌନ୍ଦର୍ଯ୍ୟ ଫୁଲରେ ନ'ଥାଏ କି ନାରୀର ଦେହରେ ନ'ଥାଏ ମୀରା, ଥାଏ ଦେଖିବା ଲୋକର ଦୃଷ୍ଟିଭଂଗୀ ଆଉ ବିଚାରରେ ! ତମକୁ ମୋ' ବୋଉ ଯେଉଁ ଦୃଷ୍ଟିରେ ଦେଖୁଚି,ତମେ ତାକୁ ଅସୁଂଦରୀ ଲାଗିପାର । ହେଲେ ମୋ' ଆଖିରେ ତମେ ଅଦ୍ୱିତୀୟା, ଅପରୂପା, ଅନନ୍ୟା ! ତମର ଆଉ କିଛି କହିବାର ଅଛି ?"

"ଶ୍ୟାମ୍ ! ତଥାପି ମୋ' ଦେହର ରଂଗ ଶ୍ୟାମଳ । ଅନ୍ୟ ଝିଅମାନଂକଭଳି ମୁଁ ଆକର୍ଷଣୀୟା ନୁହେଁ, ଏକଥା ତମେ କ'ଣ ଅସ୍ୱୀକାର କରିପାରିବ ?"

"ମୀରା ! ତମେ ବେଶ୍ ଜାଣିଚ, ମୁଁ ତମ କଳା ଦେହଟାକୁ ନୁହେଁ ବରଂ ତମ ଉଜ୍ୱଳ ମନଟାକୁ ହିଁ ଭଲ ପାଇଛି । ତମ ଚେହେରାକୁ ନୁହେଁ ବରଂ ତା' ଭିତରେ ମୋତି ଭଳି ଚମକୁଥିବା ତମ ହୃଦୟଟାକୁ ହିଁ ଦେଇଛି ମୋ' ହୃଦୟ ! ମୁଁ ଦେହର ପୂଜାରୀ ନୁହେଁ ମୀରା, ମନର ପୂଜାରୀ !"

"ତମେ ବେଶୀ ସେଂଟିମେଂଟାଲ୍ ହେଇପଡୁଛ, ଶ୍ୟାମ ! ଭାବପ୍ରବଣତାକୁ ନେଇ ସାରା ଜୀବନ ଜିଇଁ ହୁଏନି । ଆମେ ସମାଜ ଭିତରେ ରହି କେବଳ ନିଜ କଥା ହିଁ ଭାବିଲେ ଚଳିବନି । ଅତି କମ୍‌ରେ ବାପା ବୋଉଂକ ସ୍ୱପ୍ନକୁ ସାକାର କରିବା ତମର ପ୍ରଥମ କର୍ତ୍ତବ୍ୟ । ଏମାନଂକ ସ୍ୱୀକୃତି ନଥାଇ ମୁଁ ତୁମର ପତ୍ନୀ ହେଇଯିବି ସତ, ହେଲେ ତୁମ ଘରର ବୋହୂ ହେଇ ପାରିବିନି ।"

"ପାରିବ ମୀରା ! ନିଶ୍ଚୟ ପାରିବ ! ଏହାର ସମାଧାନ କେବଳ ସମୟ ହିଁ କରିବ । ଆମର ଖାଲି ଟିକିଏ ଧୈର୍ଯ୍ୟ ଦରକାର । ଆତ୍ମବିଶ୍ୱାସ ଦରକାର । ସମୟ ଲାଗିପାରେ, ହେଲେ ଦିନେ ନା ଦିନେ ମୁଁ ମୋ' ବୋଉକୁ ମନେଇବି ଆଉ ତମକୁ ହିଁ ଜୀବନସାଥୀ କରିନେବି । ଏତିକି ବିଶ୍ୱାସ ରଖ ମୋ'ଉପରେ"

"ନାଇଁ ଶ୍ୟାମ୍, ତମେ ସେ ଜିଦ୍ ଛାଡ଼ । ମୋ' କଥା ମାନ । ତମ ବୋଉଙ୍କୁ 'ମୀରା' ନୁହେଁ, ବରଂ 'ରାଧାରାଣୀ' ଭଳି ଗୋରୀ, ସୁଂଦରୀ ବୋହୂଟେ ଦରକାର । ମୁଁ ଶୁଣୁଚି, ସିଏ ଆମ 'ଟ୍ୱିଂକଲ୍'କୁ କାଳେ ଭାରି ପସଂଦ କରଂତି ! ଟ୍ୱିଂକଲ୍ ବି ତମକୁ ମନେମନେ ଲାଇକ୍ କରେ । ବରଂ ତମେ...... !"

"କିଂତୁ ମୀରା ! ତମେ ଜାଣ, ମୋ' ଜୀବନଦର୍ଶନ ଅଲଗା । ମଣିଷର ଅନ୍ତଃଚେହେରା ଆଗରେ ବାହ୍ୟ ଚେହେରାଟା କେଡ଼େ ଗୌଣ, ମୁଁ ତାହା ପ୍ରମାଣ କରିବାକୁ ଚାହେଁ । ତମେ ମତେ ସହଯୋଗ କରିବନି ?"

"ନା ! ମୁଁ ପାରିବିନି ଶ୍ୟାମ୍ ! ଆମ ପ୍ରେମକୁ ପାଥେୟ କରି ମୁଁ ଆଜୀବନ ଅଭିଆଡ଼ୀ ରହିପାରିବି, ହେଲେ ସାରା ଜୀବନ ଗୋଟେ ଭୟଂକର 'ସୁନାମି'ର ସାମ୍ନା କରିପାରିବିନି ମୁଁ ।" ଏତିକି କହି ମୀରା ଉଠିଲା ଏବଂ ଗେଟ୍ ଆଡ଼କୁ ଝଡ଼ ବେଗରେ ଚାଲିଲା ।

"ଆରେ....... ! ଆରେ...... ! ତମେ କୁଆଡ଼େ ଯାଉଚ ?"

"ବାଏ.....ଶ୍ୟାମ୍ ! ପ୍ଲିଜ୍ ମତେ ଆଉ ଅଟକାଅନି । ଏଇଠୁ ଆଉ ଆଜିଠୁ, ଆମ ରାସ୍ତା ଅଲଗା ହେଉ । ପ୍ଲିଜ୍ ତମେ ନିଜ ରାସ୍ତାରେ ଯାଅ ଆଉ ମୋତେ ମୋ' ରାସ୍ତାରେ ଏକା ଏକା ଚାଲିବାକୁ ଦିଅ । ଏ ମୋର ଶେଷ ନିଷ୍ପତ୍ତି !"

(୩)

ସିନେ-ସିଟି ମୁଂବାଇ ମହାନଗରୀରେ ଶ୍ୟାମଳ ଛୋଟଟିବେଳୁ ଦେଖି ଆସୁଛି ଅସୁମାରୀ ସୁଂଦରୀଙ୍କ ଭିଡ଼ । ହେଲେ ତା' ଜୀବନ ଦର୍ଶନ ଟିକେ ଅଲଗା । ସେ ଜାଣେ, ଏମାନେ ସବୁ ଚକ୍‌ମକ୍ ସୁନା ଫଗୁଆ ଭିତରେ ଗୋଟେ ଗୋଟେ ବିଷାକ୍ତ କଂକଡ଼ାବିଛା ! ଭାରି ବିପଦଜନକ ! ତେଣୁ ଏ ଦିଗରୁ ସିଏ ବେଳୁଁ ହିଁ ସତର୍କ । ସେ ଜାଣିଛି, ଏ ରଂଗମଖା ମହାନଗରୀରେ ସବୁ ରଂଗର ଝିଅ ମିଳିପାରନ୍ତି, କିନ୍ତୁ ମୀରା ଭଳି ଶ୍ୟାମଳୀ, ସାଦାସିଧା ଓ ହୃଦୟବତୀ ଝିଅଟେ ମିଳିବା ବାଠିକର ପାଠ ! ଅବଶ୍ୟ ମୀରା ପାଇଁ ତାକୁ ଖୋଜିବାକୁ ପଡ଼ିନି । ତା' ନିରସ ଜୀବନର ଧୂ ଧୂ ମରୁରେ ଆଂଜୁଳାଏ ଶୀତଳ ମୌସୁମୀ ଭଳି ଅଚାନକ ଦିନେ

ଦେଖା ଦେଇଥିଲା ମୀରା ଏବଂ ତାକୁ ନେଇ ଶ୍ୟାମଳ ଆଜି ବି ଦେଖୁଛି ସଜଳ ଶ୍ରାବଣର ସ୍ୱପ୍ନ ! ହେଲେ ମୀରା ଏବେ ତା' ହାତ ମୁଠାରୁ ଖସିବାକୁ ବସିଲାଣି ।

ଶ୍ୟାମଳ ବୁଝିପାରୁନି, ଶ୍ୟାମଳୀ ଝିଅମାନଂକ ପ୍ରତି ତା'ବୋଉର ଏତେ ଘୃଣା, ଏତେ ବିତୃଷ୍ଣା କାହିଁକି ! ଜାତି, ଧର୍ମ, ଗୁଣ, କର୍ମ ଯାହା ବି ହଉ ପଛେ, ତାକୁ ଲୋଡ଼ା ଙ୍ଗିଂକଲ୍ ଭଳି ଗୋଟେ ଦିବ୍ୟସୁଂଦରୀ, ଫିନ୍‌ଫିନ୍ ଗୋରୀ ବୋହୂ !

ମୀରା ପାର୍କରୁ ବାଟଭାଂଗି ଚାଲିଗଲା ପରେ ଶ୍ୟାମଳ ଘରକୁ ଫେରି ସାରା ରାତି ଶେଯରେ ପଡ଼ି ଛଟପଟ ହେଲା । ଅନେକ ଭାବିଲା । ସତେ ଯେମିତି ସେ ଜୀବନ-ଯୁଦ୍ଧରେ କିଂକର୍ତ୍ତବ୍ୟ ବିମୂଢ଼ ଅର୍ଜ୍ଜୁନ ପାଲଟି ଯାଇଛି । ଗୋଟେ ପାଖରେ ତା' ବୋଉର ଦୁର୍ଜ୍ଜୟ ବାହିନୀ, ଅନ୍ୟପାଖରେ ମୀରା ଏବଂ ତା'ର ଅସହାୟ ସେନାଦଳ । ମୀରା ଅସ୍ତ୍ର ତ୍ୟାଗ କରିସାରିଲାଣି । ଏଭଳି ପରିସ୍ଥିତିରେ ସେ କ'ଣ କରିପାରିବ, କିଛି ସ୍ଥିର କରି ପାରୁନଥିଲା ଶ୍ୟାମଳ ! ଆଜି ପର୍ଯ୍ୟନ୍ତ ସେ କେବେ ବି ଅବାଧ୍ୟ ହେଇନି ତା' ବୋଉର; କିଂତୁ ଗୋଟେ ନିରୀହ ଝିଅର ହାତ ଧରି ଏତେ ବାଟ ଆଗେଇ ଆସିବା ପରେ ବୋଉର ମନ ରଖିବା ପାଇଁ କେମିତି ସେ ତାକୁ ଅଧା ବାଟରେ ଛାଡ଼ି ଅନ୍ୟକାହା ହାତ ଧରି ଆଗକୁ ଚାଲିବ ?

ରାତି ସାରା ଏହି ଦୁର୍ଭାବନା ଭିତରେ ଉବୁଟୁବୁ ହେଉହେଉ ଭୋ'ର ବେଳକୁ ତା' ଆଖି ଲାଗି ଆସୁଥିଲା । ହଠାତ୍ ମୋବାଇଲ୍ ଆଲାର୍ମ ଶବ୍ଦରେ ପ୍ରକୃତିସ୍ଥ ହେଲା ଶ୍ୟାମଳ । ସାତଟା ବାଜୁଥିଲା । ଆଖି ମଳିମଳି ମୋବାଇଲକୁ ଦେଖିବାକ୍ଷଣି ବିସ୍ମିତ ହେଲା ସେ । ଆଶ୍ଚର୍ଯ୍ୟ ! 'ସୋମେନ୍'ର ଗୁଡ଼ାଏ ମିସ୍‌ଡ଼କଲ୍ ! ଫୋନ୍‌ଟା ସାଇଲେଂଟ୍ ମୋଡ୍‌ରେ ଥିବା ହେତୁ ସେ ଜାଣିପାରିନି, ହେଲେ ସୋମେନ୍ ରାତିରେ ଏତେ ଗୁଡ଼ାଏ କଲ୍ କାହିଁକି କରିଛି ! ! ସଂଗେସଂଗେ ସେ କଲ୍‌ବ୍ୟାକ୍ କଲା ସୋମେନ୍ ମୋବାଇଲ୍‌କୁ । ସୋମେନ୍ ଧରିଲା । କିଂତୁ ସେ କୋହଭରା କଂଠରେ ଯେଉଁ ଦୁଃସଂବାଦ ଦେଲା, ସେଥିରେ ଶ୍ୟାମଳର ପାଦତଳୁ ସତେ ଯେମିତି ମାଟି ଉଭେଇଯିବ ! ! ବଜ୍ରପାତର ପ୍ରତିଧ୍ୱନୀ ପରି କେବଳ 'ଆଶାଲୋକ୍ ହସ୍ପିଟାଲ୍'ର ନାଆଁଟା ହିଁ ବାରଂବାର ତା' କାନ ପାଖରେ ପ୍ରତିଧ୍ୱନିତ ହେଲା ।

ତତ୍‌କ୍ଷଣାତ୍ ସେହି ଅଧୁଆ ମୁହଁରେ ଶ୍ୟାମଳ ବାଇକ୍ ଧରି ଛୁଟିଲା '୭୧-ନେହେରୁ ପ୍ଲେସ୍'ରେ ଥିବା 'ଆଶାଲୋକ୍ ହସ୍ପିଟାଲ୍' । ସେଠାରେ ପହଂଚିବା ମାତ୍ରେ ସୋମେନ୍ ତାକୁ ଧରି ଭୋ' ଭୋ' ହେଇ କାଂଦିବାକୁ ଲାଗିଲା । ଘଟଣା କ'ଣ ଜାଣିବାକୁ ଶ୍ୟାମଳ ବ୍ୟଗ୍ର !

ସୋମେନ୍ କାଂଦି କାଂଦି କହିଲା, "ଭାଇ ! କାଲି ଉପର ଓଳି ମୀରା ଦିଦି ତମ ସହିତ ଦେଖା କରିବାକୁ ପାର୍କକୁ ଯାଇଥିଲା ନା ? ସେଠାରୁ ସେ ଗୋରେଗାଓଁ ଷ୍ଟେସନ୍‌କୁ

ଗଲା । ସେଇଠି ତାକୁ ଟ୍ୱିଂକଲ୍ ଅପେକ୍ଷା କରିଥିଲା । ଷ୍ଟେସନରୁ ଦୁଇ ଭଉଣୀ ସ୍କୁଟି ଚଲାଇ ବସାକୁ ଫେରୁଥିଲେ । ଦିଦି ନିଜେ ବୋଧେ ଗାଡ଼ି ଚଲଉଥିଲା । ରାସ୍ତାରେ ନିଶ୍ଚୟ କେଉଁ କାରଣରୁ ଟିକିଏ ଅନ୍ୟମନସ୍କ ହେଇଥିବ । ହଠାତ୍ ଗୋଟେ ଫ୍ଲାଇଓଭର୍ ପିଲର୍ ଦେହରେ ସ୍କୁଟି ବାଡ଼େଇ ହେଇ ତଳକୁ ଖସି ପଡ଼ିଲା । ଠିକ୍ ସେତିକି ବେଳକୁ ତଳ ରାସ୍ତାରେ ଯାଉଥିଲା ଗୋଟେ ବିରାଟ ମାଲ୍‌ବୋଝେଇ ଟ୍ରକ୍ ! ମୋ' ମୀରା ଦିଦି ଉପରେ ଗାଡ଼ିଟା.....ଓଃ ! ସବୁ ସରିଗଲା ମୋର ! ଭାସିଗଲି ଭାଇ ମୁଁ ! ତା'ବିନା ମୁଁ ବଂଚିବି କେମିତି ଭାଇ ?"

"ଓଃ......ମାଇ ଗଡ୍ !" କହୁକହୁ ଶ୍ୟାମଳ ନଥ୍ କିନା ବସିପଡ଼ିଲା ତଳେ ।

"ମୋ' ମୀରା ଦିଦି ଆଉ ନାହିଁ ଭାଇ ! ଟ୍ୱିଂକଲ୍‌ର ଚେତା ଫେରିନି ଏ ପର୍ଯ୍ୟଂତ !" ସୋମେନ୍ କୋହ ସଂବରଣ କରି କହିଲା ।

ଛାତିଫଟା ଗୋଟେ ଗଭୀର ଦୀର୍ଘଶ୍ୱାସ ଛାଡ଼ି ଶ୍ୟାମଳ ଆଖିତଳେ ଜମି ଆସୁଥିବା ଲୁହକୁ ରୁମାଲ୍‌ରେ ଚାପିଧରିଲା । ମୀରା ଯେଉଁ ଦୁର୍ଭାବନା ମୁଂଡରେ ପୂରାଇ ଦୁର୍ଘଟଣାର ଶିକାର ହେଲା, ଶ୍ୟାମଳ ସ୍ୱଷ୍ଟ ଜାଣିପାରୁଥିଲା ତା' କାରଣଟା ! ରହି ରହି ବିଜୁଳି ଝଟ୍‌କା ଭଳି ମୀରାର ଶେଷ କଥା ପଦିକ ଶ୍ୟାମଳର କୋମଳ ହୃଦୟକୁ ବାରଂବାର ଆଂଦୋଳିତ କରୁଥିଲା....'ପ୍ଲିଜ୍ ଶ୍ୟାମ୍ ! ତମେ ନିଜ ରାସ୍ତାରେ ଯାଅ, ଆଉ ମତେ ମୋ' ରାସ୍ତାରେ ଏକା ଏକା ଯିବାକୁ ଦିଅ' !

ସିଷ୍ଟର୍ ଆସି ଖବର ଦେଲେ, ଡାକ୍ତର ଡାକୁଛଂତି, ଭିତରକୁ ଯିବାପାଇଁ ।

ଅଂତର୍ଜାତୀୟ ସ୍ତରରେ ପ୍ରତିଷ୍ଠା ପାଇଥିବା 'ଆଶାଲୋକ୍ ହସ୍ପିଟାଲ୍'ର ପରିଚାଳନା ମୁଖ୍ୟ ଡାକ୍ତର ଡି. ମହାପାତ୍ର । ଭାଗ୍ୟକୁ ଜଣେ ଓଡ଼ିଆ ଲୋକ ! ସେ ନିଜେ ଏ'କେସ୍‌ର ଦାୟିତ୍ୱ ନେଇଥିଲେ । ଚେଂବର ଭିତରେ ଡାକ୍ତର ଅପେକ୍ଷା କରିଥିଲେ । ସାମନା ଚେୟାରରେ ବସିବାକୁ କହି ସୋମେନକୁ ସେ ପଚାରିଲେ, "ତମେ ତ ମୀରା ଆଉ ଟ୍ୱିଂକଲ୍‌ର ଭାଇ, ଆଉ ଏ ବାବୁ ?" ଶ୍ୟାମଳ ଆଡ଼କୁ ଆଖି ଉଠେଇ ପଚାରିଲେ ସେ ।

"ସାର୍ ! ସିଏ ଆମର ଜଣେ ଫ୍ୟାମିଲି ଫ୍ରେଂଡ୍ । ଶ୍ୟାମଳ ବାବୁ ।"

"ଶ୍ୟାମଳ, ମାନେ ଶ୍ୟାମ୍ ! ମୀରା ଅନ୍‌କନସସ୍ ଥିବା ଅବସ୍ଥାରେ ଏଇ ନାଁ'ଟିକୁ ବୋଧେ ବାରଂବାର ଦୋହରଉଥିଲା ।"

ଡାକ୍ତରଂକ କଥାଶୁଣି ଶ୍ୟାମଳ ହତଭାଗ୍ୟ ଅପରାଧୀଟିଏ ଭଳି ତଳକୁ ମୁଂଡପୋତି ନିରବରେ ଲୁହ ଢ଼ାଳିଲା ।

"ଆ'ମ୍ ଏକ୍ସଟ୍ରିମ୍‌ଲି ସରି ! ସେ ଝିଅ ଯେଉଁ ଅବସ୍ଥାରେ ଆସି ଏଠି ପହଂଚିଥିଲା, ଆମେ

ତାକୁ ବଂଚେଇବାକୁ ପାରୁପର୍ଯ୍ୟଂତ ଚେଷ୍ଟା କଲୁ । ହେଲେ ଈଶ୍ୱରଂକ ଇଛା ବୋଧେ ଅନ୍ୟ ପ୍ରକାର ଥିଲା ।" ଡାକ୍ତର ଆବେଗଭରା କଂଠରେ କହିଲେ ।

"ସାର୍ ! ମୀରାକୁ ଆମେ ଟିକେ ଦେଖି ପାରିବୁନି ?" ଶ୍ୟାମଳ କୋହପୂର୍ଣ୍ଣ କଂଠରେ ପଚାରିଲା ।

"ଆକ୍ସିଡାଂଟ୍ ଯେଉଁଭଳି ଭାବରେ ହେଇଚି, ଦେଖିବାପାଇଁ ତା' ଦେହରେ ଅବଶେଷ ଆଉ କିଛି ବି ନାହିଁ। ତଥାପି ତା' ଡେଡ୍‌ବଡ଼ି ପୋଷ୍ଟମର୍ଟମ୍ ପରେ ଆମେ ତମକୁ ହେଂଡଓଭର୍ କରିଦବୁ ।" ଡାକ୍ତର କହିଲେ ।

"ସାର୍! ମୋ' ସାନ ଭଉଣୀ ଟ୍ୱିଂକଲ୍? ତାକୁ ମୁଁ ଟିକେ ଦେଖିଥାଂତି ।"ସୋମେନ ନିଜ କୋହ ସଂଭାଳି ଅନୁରୋଧ କଲା ।

"ସରି ! ସେ ଏବେ ବି ଅନ୍‌କନ୍‌ସସ୍ ଅବସ୍ଥାରେ ଅଛି । ତା'ଛଡ଼ା ଆମ ହସ୍ପିଟାଲ୍‌ର କିଛି ବିଶେଷ କଟକଣା ଅଛି । ପେସେଂଟ ସଂପୂର୍ଣ୍ଣ ସୁସ୍ଥ ନ'ହେବା ପର୍ଯ୍ୟଂତ କିଂବା ସୁସ୍ଥ ହୋଇ ସେ ନିଜେ ଦେଖା କରିବାକୁ ନ'ଚାହିବା ପର୍ଯ୍ୟଂତ ଆମେ କାହାରିକୁ ଅନୁମତି ଦେଇପାରିବୁନି ।"

"ପ୍ଲିଜ୍ ସାର୍! କେବଳ ଥରକ ପାଇଁ ସୁଯୋଗ ଦିଅଂତୁ ।" ସୋମେନ୍ ଦୁଇହାତ ଯୋଡ଼ି କହିଲା ।

"କ୍ଷମା କରିବ ! ଆଦୌ ସଂଭବ ନୁହେଁ । ଅତି କମ୍‌ରେ ଗୋଟେ ମାସ ତମମାନଂକୁ ଅପେକ୍ଷା କରିବାକୁ ପଡ଼ିବ । ଆମେ ଯଥାସଂଭବ ଚେଷ୍ଟା କରୁଛୁ , ଦୁଇଭଉଣୀଙ୍କ ଭିତରୁ ଅଂତତଃ ଏ ଝିଅଟି ବଂଚିଯାଉ ବୋଲି । ବରଂ ତୁମେ ଦୁହେଁ ଟ୍ୱିଂକଲ୍‌ର କୁଇକ୍ ରିକଭରି କାମନା କରି ଭଗବାନଂକ ପାଖରେ ପ୍ରାର୍ଥନା କର ।"

"ସାର୍! ପୂରା ମାସେ? ହେଲେ ତା' ସ୍ୱାସ୍ଥ୍ୟ ବିଷୟରେ ଜାଣିବାପାଇଁ ଆମେ ଅଂତତଃ ଆପଣଂକ ସହିତ ଯୋଗାଯୋଗ କରିପାରିବୁ ଟି ?"

"ନିଶ୍ଚୟ ! ହେଇଟି ମୋ' କାର୍ଡ଼ ରଖ । ନିହାତି ଦରକାର ହେଲେ ଫୋନ୍ କରିବ । ଟ୍ୱିଂକଲ ଯେଉଁଦିନ ପୂରା ସୁସ୍ଥ ହେଇ ତୁମମାନଂକୁ ଦେଖିବାକୁ ଚାହିବ, ମୁଁ ନିଜେ ମେସେଜ୍ ଦେବି । ଏବେ ତୁମେମାନେ ଯାଇପାର । ହଁ ମୁଁ ସବୁ ବ୍ୟବସ୍ଥା କରିଦଉଚି, ଡେଡ୍‌ବଡ଼ି ସାଂଗରେ ନେଇକି ଯିବ ।"

ସହର ସୀମାରେ ଇଲେକ୍‌ଟ୍ରିକ୍ କ୍ରେମାଟୋରିଅମ୍ । ମୀରାର ଡେଡ୍‌ବଡି ଆଂବୁଲାନ୍ସରୁ ଓହ୍ଲେଇ ଶେଷ ସଂସ୍କାର ପାଇଁ ରଖି ଦିଆଗଲା ତଳେ । ଶ୍ୟାମଳ ଭାବୁଥିଲା, ସତରେ.... ବିଧିର କି ବିଡ଼ଂବନା ! ଯେଉଁ ଶ୍ୟାମଳୀ ଝିଅଟି ମୁହଁରେ ସ୍କାର୍ଫ ନ'ଭିଡ଼ି ଦି'ପ୍ରହର ପ୍ରଚଂଡ଼

ଖରାରେ ବେଧଡ଼କ୍ ଘୂରି ବୁଲୁଥିଲା ସହର ତମାମ୍, ତାକୁ ଆଜି ଦେହସାରା ଧଳା କପଡ଼ା ଭିଡ଼ି ଅପେକ୍ଷା କରିବାକୁ ପଡ଼ିଲା ଜୀବନର ଶେଷଯାତ୍ରା ପାଇଁ !

ଶ୍ୟାମଳ ଆବେଗର ସହିତ ମୀରାର ଡେଡ୍‌ବଡ଼ି ଆଗରେ ନଇଁ ପଡୁପଡୁ ଅଟକିଗଲା । ସହସା ତା' କାନ ପାଖରେ ପୁଣିଥରେ ପ୍ରତିଧ୍ୱନିତ ହେଲା ମୀରାର ଶେଷ କେଇପଦ କଥା, 'ପ୍ଲିଜ୍ ଶ୍ୟାମ ! ତମେ ତମ ବାଟରେ ଯାଅ ଆଉ ମୋତେ ମୋ' ରାସ୍ତାରେ ଏକାଏକା ଯିବାକୁ ଦିଅ !'

(୪)

"ବାପା ରେ ! ଦିନରାତି ମୀରାକୁ ମନେ ପକେଇ ତୁ ଆଉ କଷ୍ଟ ଭୋଗନା ବାପା ।" ଶ୍ୟାମଳର ବୋଉ ପାଖରେ ବସି ତା' ଅବିନ୍ୟସ୍ତ କେଶକୁ ସଜାଡ଼ୁ ସଜାଡ଼ୁ ସାଂତ୍ୱନା ଦେଲେ ତାକୁ । "କିଏ ଜାଣିଥିଲା, ଏମିତି ଅଘଟଣ ଘଟିବ ବୋଲି ? ଯିଏ ଚାଲିଗଲା ତାକୁ ଝୁରିହେଲେ ସିଏ ତ ଆଉ ଫେରି ଆସିବନି । ବରଂ ଯିଏ ଅଛି, ତା'ଖବର ଟିକିଏ ରଖୁଥା' । ଆହାଃ ! ବିଚାରୀ ଟ୍ୱିଂକଲ୍ ! ଆଜିକୁ ମାସେ ହେଲା ପଡ଼ିଚି ହସ୍ପିଟାଲରେ । କେତେ ପଇସା ଖରଚ ହଉଥିବ । କି ଟ୍ରିଟ୍‌ମେଂଟ୍ ହଉଚି, କେମିତି ଅଛି, ଜାଣିବାର ବି ଉପାୟ ନାଇଁ ।"

ବୋଉ କଥା ଶୁଣି ଶ୍ୟାମଳ ନିରବରେ ହସିଲା । ସେ ବେଶ୍ ବୁଝିପାରୁଥିଲା, ଟ୍ୱିଂକଲ୍ ପ୍ରତି ତା' ବୋଉର ଏ ଅଯାଚିତ ଦରଦ କାହିଁକି ? ସେ କହିଲା, "ଟ୍ରିଟ୍‌ମେଂଟ୍‌ର ସବୁ ଖର୍ଚ୍ଚ ତା' କଂପାନୀ ଦଉଚି । ସେଥିପାଇଁ ତୁ ମୁଂଡ ଖେଳେଇବା ଦରକାର ନାଇଁ ।"

"ହଉ, ଭଗବାନ୍ କରଂତୁ ଟ୍ୱିଂକଲ୍ ଜଲଦି ଭଲ ହେଇଯାଉ । ତାକୁ ଦେଖିବାକୁ ଭାରି ମନ ହଉଚିରେ ! ହେଇଟି ବାପ ! ଡାକ୍ତର ଖବର ଦେଲେ ତୁ ଯେତେବେଳେ ହସ୍ପିଟାଲ୍ ଯିବୁ, ମତେ ଆଉ ତୋ' ବାପାଂକୁ ସାଂଗରେ ନେଇକି ଯିବୁ, ବୁଝିଲୁ ।"

ଯୋଗକୁ ସେଇଦିନ ହିଁ ଅପରାହ୍ନ ତିନିଟା ବେଳକୁ ଡାକ୍ତର ମହାପାତ୍ରଂକ ମେସେଜ୍ ଆସିଲା, "ପେସେଂଟ୍ ଓକେ ! କମ୍ ଆଂଡ ମିଟ୍ !"

ଶ୍ୟାମଳ ସଂଗେସଂଗେ ସୋମେନ୍‌କୁ ଫୋନ୍ କରି ବୁଝିଲା ଯେ, ତା' ପାଖକୁ ମଧ୍ୟ ଠିକ୍ ସେଇ ମେସେଜ୍ ଯାଇଛି । ଆଉ କାଳ ବିଳଂବ ନ'କରି ଦୁହେଁ ଠିକ୍ ଚାରିଟାରେ ଯାଇ ପହଂଚିଗଲେ ଡାକ୍ତରଂକ ଚେଂବର୍ ଆଗରେ । ଟ୍ୱିଂକଲ୍‌କୁ ଦେଖିବାପାଇଁ ଶ୍ୟାମଳର ବାପା, ବୋଉ ବି ସାଂଗରେ ଯାଇଥାଂତି । ଡ: ମହାପାତ୍ର ଖବର ପାଇବା ମାତ୍ରେ ଚେଂବର୍ ଭିତରୁ ବାହାରି ଆସି କହିଲେ, "ଓଃ ! ଆପଣମାନେ ଆସିଗଲେଣି ? ହଉ, ମୋ' ପଛେପଛେ ଆସଂତୁ ।" ଏତିକି କହି ସେ ୱାର୍ଡ଼ ପରେ ୱାର୍ଡ଼ ଅତିକ୍ରମ କରି ଯାଇ ଅଟକିଗଲେ ଗୋଟେ

ସ୍ୱତଂତ୍ର କ୍ୟାବିନ୍ ନିକଟରେ । କ୍ୟାବିନ୍‌ର ଦରଆଉଜା ଦୁଆର ଖୋଲିଦେଇ କହିଲେ,"ଏ ଝିଅଟିକୁ ଚିହ୍ନିପାରୁଛଂତି ଆପଣମାନେ ?"

ଝିଅଟା ଅବଶ୍ୟ ଆଗ ଅପେକ୍ଷା ଅଧିକ ସୁଂଦରୀ ଦିଶୁଥିଲା, ହେଲେ ଭାଇ ନିଜ ଭଉଣୀକୁ ଚିହ୍ନିବାରେ ଅସୁବିଧା କେଉଁଠି ? ସୋମେନ୍ କହିଲା, 'ସାର୍ ! ସିଏ ପରା ଟ୍ୱିଂକଲ୍ ! ମୋ' ସାନ ଭଉଣୀ ।"

ସଜଫୁଟା ଫୁଲଟିଏ ପରି ଟ୍ୱିଂକଲ୍ କେବିନ୍ ଭିତରୁ ହସହସ ମୁହଁରେ ଅନେଇ ରହିଥିଲା । ସୋମେନ୍ ଧାଇଁଯାଇ ତାକୁ ସ୍ନେହରେ କୋଳାଗ୍ରତ କରି କହିଲା, "ଟ୍ୱିଂକଲ୍ ! ତୋତେ ଏମିତି ସ୍ୱାସ୍ଥ୍ୟରେ ପୁଣିଥରେ ଦେଖିବି, ମୋର ବିଶ୍ୱାସ ନ'ଥିଲା ରେ । ଭଗବାନଂକ ଖେଳ ବଡ଼ ବିଚିତ୍ର ! ମୀରା ଦିଦିକୁ ଆମଠୁଁ ଅତି ନିର୍ଦ୍ଦୟଭାବେ ଛଡ଼େଇନେଲେ, ଆଉ ତତେ ନିଖୁଣ ରୂପରେ ପଠେଇଦେଲେ ନୂଆ ଜୀବନଟେ ଦେଇ !"

ଟ୍ୱିଂକଲ୍ ନିରବରେ ହସିଲା । ସେ ସୋମେନ୍‌କୁ ପାଖରେ ବସେଇ ତା' ଚିବୁକ୍‌ରେ ବଢ଼ି ଉଠିଥିବା କଅଁଳ ଶ୍ମଶ୍ରୁ ପୁଳାକୁ ଅନେଇ ପଚାରିଲା, "ତୁ ଦାଢ଼ି କାଇଁକି କାଟିନୁ ରେ ? କ'ଣ ତୋ' ମୀରା ଦିଦି ପାଇଁ ଶୋକ ପାଳନ କରୁଚୁ ? ଆରେ ପାଗଳା ! ତୋ' ମୀରା ଦିଦି ମରିନିରେ...... ବଂଚିଛି !"

"ହଁ, ମୋ' ମନକୁ ବୁଝେଇବାପାଇଁ ତୁ ଯାହା କହ ଟ୍ୱିଂକଲ୍ ! ଆମେ ମୀରା ଦିଦି ଭଳି ଦିଦିଟେ ଆଉ ପାଇବା ? ସିଏ ପରା ଆମପାଇଁ ଦିଦିଠୁଁ ଅଧିକ ମାଆ ଥିଲା !" ସୋମେନ୍ ତା' ଆଖିକୋଣେ ଜମୁଥିବା ଲୁହ ଓ ହୃଦୟରେ ଉଠୁଥିବା କୋହକୁ ଅଟକେଇ କହିଲା ।

ଟ୍ୱିଂକଲ୍ ତାକୁ କୋଳକୁ ଭିଡ଼ିଆଣି କହିଲା, "ସୋମେନ୍ ! ବିଶ୍ୱାସ୍ କର, ମୁଁ ଟ୍ୱିଂକଲ୍ ନୁହେଁ ରେ, ତୋ' ମୀରା ଦିଦି । ଦୁଃଖର କଥା, ଡାକ୍ତର ଅଂକଲ୍ ବହୁତ ଚେଷ୍ଟା କରି ମଧ୍ୟ ଟ୍ୱିଂକଲ୍‌କୁ ବଂଚେଇ ପାରିଲେନି ।"

"ଟ୍ୱିଂକଲ ! କ'ଣ ଏମିତି ପାଗଳୀଙ୍କ ପରି ଗପୁଚୁ ?" ସୋମେନ୍ ଆଖିରେ ବିସ୍ମୟ ଜମାଟ ବାଂଧିବାକୁ ଆରଂଭକଲା ।

ଶ୍ୟାମଳ କେବିନ୍ ଭିତରକୁ ପଶିଆସି କହିଲା, "ଟ୍ୱିଂକଲ୍ ! ତମେ ଏମିତି କ'ଣ ଯା'ତୁ ସିଆତୁ କହୁଚ ? ନିଜେ ସ୍ୱଦେହରେ ଏଠି ବସିଛ, ଆଉ କହୁଚ, ଟ୍ୱିଂକଲକୁ ବଂଚେଇ ହେଲାନି ! ନିଜେ ତ ଠିକ୍ ହେଇଗଲ । ଏବେ ଆମ ସମସ୍ତଂକୁ ପାଗଳ କରିଦବନା କ'ଣ ?"

"ଶ୍ୟାମଳ ! ତମେ ଅଂତତଃ ବିଶ୍ୱାସ କର, ମୁଁ ଟ୍ୱିଂକଲ୍ ନୁହେଁ, ମୀରା !! ଟ୍ୱିଂକଲ ଭଳି ଦେଖାଯାଉଚି ସତ, ହେଲେ ଅସଲରେ ମୁଁ ମୀରା ! ମନେ ପକାଅ, ସେଦିନ 'ଲଭର୍ସ ପଏଂଟ୍'

ପାର୍କରୁ ତମଠୁ ବିଦାୟ ନେଇ ମୁଁ ଟ୍ୱିଂକଲ ସହିତ ତା' ବାଇକ୍‌ରେ ଘରକୁ ଫେରୁଥିଲି । ହଠାତ୍ ସେ ଫ୍ଲାଇଓଭର୍ ତଳକୁ........!"

"ସେତିକି ଥାଉ ! ଆକ୍ସିଡାଂଟ୍ ବିଷୟରେ ସବୁକଥା ଆମକୁ ଜଣା । ଆକ୍ସିଡାଂଟ୍ ପରେ ତମେ ତ ଅନ୍‌କନ୍‌ସସ୍ ଥିଲ । ହେଲେ ମୀରାର ଅବସ୍ଥା ଆମେ ନିଜ ଆଖିରେ ଦେଖିଛୁ ।"

ଶ୍ୟାମଳର ବାପା ସତ୍ୟେଂଦ୍ରବାବୁ ଟ୍ୱିଂକଲ୍‌ର ଖଟ ପାଖକୁ ଆସିଲେ । ସ୍ନେହରେ ତା' ମୁଂଡ଼ ଉପରେ ହାତ ବୁଲାଇ କହିଲେ, "ଆରେ ମା' ଟ୍ୱିଂକଲ୍ ! ତୁ ଭଲ ହେଇଗଲୁ ଶୁଣି ଖୁସି ଲାଗିଲା । ତୋ ଶୁଭ ମନାସି ଆମେ ସମସ୍ତେ ତତେ ଦେଖିବାକୁ ଆସିଛୁ । ଏ ସମୟରେ ତୁ ଏମିତି ଗୋଳମାଳିଆ କଥାବାର୍ତ୍ତା କାହିଁକି କରୁଚୁ ?"

"ମତେ ବିଶ୍ୱାସ କରଂତୁ ଅଂକଲ୍ ! .......ଆଂଟି ! ଆପଣ ବି ବିଶ୍ୱାସ କରଂତୁ, ମୁଁ ଟ୍ୱିଂକଲ୍ ନୁହେଁ, ମୀରା !!"

"ଡୋଂଟ୍ ବି ସିଲ୍ଲି, ଟ୍ୱିଂକଲ୍ ! ମୀରା ଅବଶ୍ୟ କହୁଥିଲା, ତମେ କୁଆଡ଼େ ମତେ ମନେମନେ ଭଲ ପାଅ ବୋଲି, ହେଲେ ସିଏ ଚାଲିଗଲା ପରେ ତା'ଭଳି ଅଭିନୟ କରି ତମେ ମୋ' ଜୀବନ-ପରିଧୀ ଭିତରକୁ ଆସିବାର ଅପଚେଷ୍ଟା ଆଦୌ କରିବନି ।" ଶ୍ୟାମଳ ବିରକ୍ତି ପ୍ରକାଶ କଲା ।

"ହେ ଭଗବାନ ! ମୁଁ ବୁଝିପାରୁନି, ଏମାନଂକୁ ଆଉ କି ପ୍ରମାଣ ଦେବି ଯେ, ମୁଁ ମୀରା.....ମୀରା.....ମୀରା !" ଟ୍ୱିଂକଲ୍‌ର ଆଖି ଅଶ୍ରୁଳ ହୋଇ ଉଠିଲା ।

ଶ୍ୟାମଳ କହିଲା, "ତମେ କି ପ୍ରମାଣ ଦବ ଆମକୁ ? ଆମେ ପରା ମୀରାର ଡେଡ୍‌ବଡ଼ି ଏଠୁ ନେଇ ନିଜ ହାତରେ ଦାହ କରିଛୁ ! ଯା'ଠୁ ଅଧିକ ପ୍ରମାଣ ତମେ କ'ଣ ଦବ ? ବହୁତ ହେଇଗଲା, ଏଥର ବଂଦକର ତମର ଅଭିନୟ ।"

ଟ୍ୱିଂକଲ୍‌ର ଏଭଳି ଅଦ୍ଭୁତ ବ୍ୟବହାର ଦେଖି ସତ୍ୟେଂଦ୍ରବାବୁ ଡ: ମହାପାତ୍ରଂକୁ ମନେମନେ ଖୋଜୁଥିଲେ । ଡାକ୍ତର ପହଂଚିବା କ୍ଷଣି ତାଙ୍କୁ ପରଦା ସେପାଖକୁ ଡାକନେଇ ଧୀର କଂଠରେ ପଚାରିଲେ, "ସାର୍ ! ଟ୍ୱିଂକଲ୍ ବ୍ରେନ୍ ଡ୍ୟାମେଜ୍ ପାଇଁ ଟ୍ରିଟ୍‌ମେଂଟ୍ ହଉଥିଲା ବୋଲି ଶୁଣୁଥିଲି । ଏବେ ତା' କଣ୍ଡିସନ୍ ପୂରାପୂରି ଠିକ୍ ତ ?"

" କାହିଁକି ? ସିଏ ଆପଣମାନଂକୁ ଚିହ୍ନିପାରୁନି ନା କ'ଣ ?"ପଚାରିଲେ ଡାକ୍ତର ।

"ଆମକୁ ତ ଚିହ୍ନୁଚି, ହେଲେ ଆଜ୍ଞା.. ସେ ନିଜକୁ ଚିହ୍ନିପାରୁନି !!"

ସତ୍ୟେଂଦ୍ରବାବୁଂକ କଥାଶୁଣି ଡ: ମହାପାତ୍ରଂକ ଉଜ୍ଜ୍ୱଳ ମୁହଁରେ ଏକ ବିଚିତ୍ର ହସ ଚହଟିଗଲା । ସେ ହସରେ ସତେ ଯେମିତି ଭରି ରହିଥିଲା ଅନେକ ଅଜଣା ରହସ୍ୟ !!

*ସୁରେନ୍ଦ୍ର ନାଥ ସାହୁ*

---

ଘଟଣାଟି କ୍ରମଶଃ କୁହେଳିକାମୟ ହୋଇଯାଉଥିବା ଦେଖି ଡ. ମହାପାତ୍ର କହିଲେ, "ହଉ, ଆପଣମାନଂକୁ ଆଉ ବେଶୀ ସମୟ ଅଂଧାରରେ ରଖିବା ଠିକ୍ ହେବନି । ଶୁଣଂତୁ, ଆପଣମାନେ ଏବେ ଯାହାକୁ ଦେଖୁଛଂତି, ସେ ପୂରାପୂରି ମୀରା ନୁହେଁ କି ଗୋଟାପଣେ ଟ୍ୱିଂକଲ୍ ବି ନୁହେଁ !"

"ମାନେ....... !" ଅନ୍ୟ ଗ୍ରହର ବିଚିତ୍ର ଜୀବଟିଏ ଦେଖିବାଭଳି ସହସା ଚାରିଯୋଡ଼ା ବିସ୍ମୟ ବିସ୍ଫାରିତ ଆଖି ସେ ଅଦ୍ଭୁତ ଚରିତ୍ରଟିକୁ ଘେରିଗଲେ !

"ଘଟଣାଟା ଆପଣମାନଂକୁ ନିଶ୍ଚୟ ଅସଂଭବ ଆଉ ବିଭ୍ରାଂତିକର ଲାଗୁଥିବ, କିଂତୁ ଇଏ ହେଉଚି ଆମ ଆଧୁନିକ ଚିକିତ୍ସାବିଜ୍ଞାନର ଚମତ୍କାରିତା ! !" ଡ:ମହାପାତ୍ର ସହଜ କଂଠରେ କହିଲେ ।

"ତା'ମାନେ........ପ୍ଲାଷ୍ଟିକ୍ ସର୍ଜରୀ ! ଗୋଟେ ମାସ ଭିତରେ ମୀରା ପରିଣତ ହେଇଗଲା ଟ୍ୱିଂକଲ୍ ରେ ! ନା' ବିଶ୍ୱାସ ହଉନି ସାର୍ ! ! ଆମ ଚିକିତ୍ସାବିଜ୍ଞାନ ଆଜି ବି ଏତେ ଅଗ୍ରଗତି କରିନି ବୋଧେ ।" ଶ୍ୟାମଳ ମୁଂଡ଼ ହଲେଇଲା ।

"ମି:ଶ୍ୟାମଳ ! ତମେ ବ୍ରେନ୍ ଟ୍ରାନ୍ସପ୍ଲାଂଟେସନ୍ ବା ମସ୍ତିଷ୍କ ପ୍ରତିରୋପଣ ବିଷୟରେ ଶୁଣିଥିବ ? ଏ ହେଉଛି ତାହାରି ଚମତ୍କାରିତା !" ଡ: ମହାପାତ୍ର କହିଲେ ।

"ବ୍ରେନ୍ ଟ୍ରାନ୍ସପ୍ଲାଂଟେସନ୍ !" ସମସ୍ତେ ବିସ୍ମୟାଭିଭୂତ ଓ ସ୍ତବ୍ଧ ହୋଇଗଲେ କିଛି ସେକେଂଡ୍ ପାଇଁ ।

"ମାଇ ଗଡ୍ ! କିଂତୁ ଡକ୍ଟର୍, ଏହା କେମିତି ସଂଭବ ହେଲା ?" ପଚାରିଲେ ସତ୍ୟେଂଦ୍ର ବାବୁ ।

"ଏ ସବୁ ଯୋଗାଯୋଗର କଥା, ଆଜ୍ଞା । ଏକା ସମୟରେ, ପ୍ରାୟ ସମବୟସ୍କ ଦୁଇଜଣ ଦୁର୍ଘଟଣାଗ୍ରସ୍ତ ରୋଗୀ, ସୁଯୋଗକୁ ଅପେକ୍ଷା କରି ବସିଥିବା ଜଣେ ବିଶେଷଜ୍ଞ ପାଖରେ ଠିକ୍ ସମୟରେ ଆସି ପହଂଚିବା ଗୋଟେ ସଂଯୋଗ ! ମୀରା ଏବଂ ଟ୍ୱିଂକଲ୍ କ୍ଷେତ୍ରରେ ତାହା ହିଁ ଘଟିଥିଲା ।

'ବ୍ରେନ୍ ଟ୍ରାନ୍ସପ୍ଲାଂଟେସନ୍' ଉପରେ ମୁଁ ଆମେରିକାରୁ ସ୍ପେସିଆଲାଇଜେସନ୍ କରି ଆସିଛି । ସେଦିନ ଏ ଦୁଇ ଭଉଣୀ ଦୁର୍ଘଟଣାଗ୍ରସ୍ତ ହୋଇ ଯେତେବେଳେ ମୋ' ହସ୍ପିଟାଲ୍‌ରେ ଆସି ପହଂଚିଲେ ମୁଁ ଦେଖିଲି, ମୀରା ନାମକ ଝିଅଟିର ଅବସ୍ଥା ଅତ୍ୟଂତ ଉଦ୍‌ବେଗଜନକ ! ଆକ୍ସିଡାଂଟ୍‌ରେ ତା'ର କେବଳ ମୁଂଡ ଭାଗଟିକୁ ଛାଡ଼ି ସମଗ୍ର ଦେହଟା ମେଂଚାଏ ହାଡ଼ ଓ ମାଉଁସରେ ପରିଣତ ହୋଇଯାଇଥିଲା । ସୋମେନ୍, ତମେମାନେ ଯେତେବେଳେ ମୀରାର

ଶବଦାହ କଲ, ସେ କଥା ଜାଣି ପାରିଥିବ ।" ଡାକ୍ତର ସୋମେନ୍ ଆଡ଼କୁ ଅନେଇ ପ୍ରଶ୍ନକଲେ । ସୋମେନ୍ କହିଲା, "କିଂତୁ ସାର୍ ! ମୁଁ ଦେଖିଛି, ତା'ମୁଂଡ ମଧ୍ୟ କ୍ଷତବିକ୍ଷତ ହୋଇ ବ୍ୟାଂଡେଜ୍ ଭିଡ଼ା ହେଇଥିଲା !"

"ସେଇଟା ଆମେ କରିଥିଲୁ ! ମୁଂଡରେ ମାଡ଼ ନ ହେଇଥିବା କାରଣରୁ ମୀରାର ମସ୍ତିଷ୍କଟି ପୂରାପୂରି ନିଖୁଣ ଅବସ୍ଥାରେ ଥିଲା । ଆମେ ଅସ୍ତ୍ରୋପଚାର କରି ଖପୁରି ଭିତରୁ ତା 'ବ୍ରେନ୍'ଟିକୁ କାଢ଼ିଆଣି ପ୍ରିଜର୍ଭ କରିଦେଲୁ ଏବଂ ବ୍ୟାଣ୍ଡେଜ୍ କରି ତା' ମୃତ ଶରୀରକୁ ଛାଡ଼ିଦେଲୁ ।

ତେଣେ ଟ୍ୱିଂକଲ୍‌ର ଅବସ୍ଥା ମଧ୍ୟ ସଂକଟାପନ୍ନ ଥିଲା । ତା'ଦେହର ଗୋଟେ ଦୁଇଟା ସ୍ଥାନରେ ସାମାନ୍ୟ ଅଘାତ ଲାଗିଥିଲା ସତ, ହେଲେ ସିଭିଅର ଭାବେ ବ୍ରେନ୍ ଡ୍ୟାମରେଜ୍ ହେଇଥିଲା । ଆମେ ପରୀକ୍ଷା କରି ଦେଖିଲୁ, ଏଭଳି ପରିସ୍ଥିତିରେ ରୋଗୀର 'ବ୍ରେନ୍‌ଡେଥ୍' ମାନେ ମୃତ୍ୟୁ ସୁନିଶ୍ଚିତ ! ମୃତ୍ୟୁ ପରେ ଏ ଝିଅଟିର ଏଡ଼େ ସୁଂଦର ଅକ୍ଷତ ଦେହଟା ମୁଠାଏ ପାଉଁଶରେ ପରିଣତ ହେଇଯିବ । ମୁଁ ଦେଖିଲି,ଏଭଳି ପରିସ୍ଥିତିରେ ଯଦି ଈଶ୍ୱର ଚାହାଂତି, ତା'ହେଲେ ଦୁଇ ଭଉଣୀଂକ ଭିତରୁ ଜଣକୁ ବଂଚେଇହବ ! ମୀରାର ନିଖୁଣ ମସ୍ତିଷ୍କଟିକୁ ଆଣି ଟ୍ୱିଂକଲ୍‌ର ଖପୁରି ଭିତରେ ଇନ୍‌ପ୍ଲାଂଟ୍ କଲେ ହୁଏତ ଜଣେ ବଂଚିଯିବ ! ହେଲେ ଏତେବଡ଼ ପଦକ୍ଷେପ ନେବା ଆଗରୁ ଆମକୁ ଆଇନ୍‌ଗତ ଅନୁମୋଦନର ଆବଶ୍ୟକତା ଥିଲା, କିନ୍ତୁ ସେ ରିସ୍କ୍ ମୁଁ ନିଜେ ନେଲି ହାତକୁ । ସଂଗେସଂଗେ ମୁଁ ମୋର କିଛି ବିଶ୍ୱସ୍ତ ଡାକ୍ତର ବଂଧୁଂକ ସହାୟତାରେ ଅପରେସନ୍ ଆରଂଭ କଲି । ମୀରାର ମସ୍ତିଷ୍କଟିକୁ ନେଇ ଟ୍ୱିଂକଲ୍‌ର ମୁଂଡ ଭିତରେ ପ୍ରତିରୋପଣ କରିବାକୁ ଆମକୁ ପ୍ରାୟ ସାଢ଼େ ଚାରିଘଂଟା ସମୟ ଲାଗିଲା । ମୋ' ଦେଶରେ ଏଇଟା ମୋ'ର ପ୍ରଥମ ସଫଳତା !" ଡ; ମହାପାତ୍ର ନିଜ ବକ୍ତବ୍ୟ ଶେଷ କରି ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ।

ସତ୍ୟେଂଦ୍ର ବାବୁ ନବ ଉଭାବିତ ଝିଅଟି ଉପରୁ ଆଖି ନ'ଉଠାଇ କହିଲେ, "ଡକ୍ଟର ! ଘଟଣାଟା ମୋତେ ଆଧୁନିକ ବିଜ୍ଞାନର କାଳ୍ପନିକ କାହାଣୀ ଭଳି ଲାଗୁଛି !"

ଡାକ୍ତର ହସିହସି କହିଲେ, "କଳ୍ପନାର କ୍ଷୁଦ୍ର ବୀଜ ଭିତରେ ହିଁ ବାସ୍ତବତାର ଚାରାଟିଏ ଲୁକ୍କାୟିତ ଥାଏ । ସୁଯୋଗ ମିଳିଲେ ସେ ପାଲଟିଯାଏ ମହାଦ୍ରୁମ । ମୁଁ ଗର୍ବର ସହିତ କହିବି, ଏହି ଝିଅଟି ଏ ଯୁଗର ଗୋଟେ ନବ ଉଦ୍ଭାବନ । 'ମୀରା' ଏବଂ 'ଟ୍ୱିଙ୍କଲ୍' ର କଂବିନେସନ୍‌ରେ ଜୀବନ ପାଇଥିବା ହେତୁ ମୁଁ ଏ ଝିଅର ନାଆଁ ରଖିଛି 'ମିରାକଲ୍' !

ଏ ସମଗ୍ର ଘଟଣା ଶ୍ୟାମଳଙ୍କ ସ୍ୱଳ୍ପଶିକ୍ଷିତା ବୋଉଂକୁ ଲାଗୁଥିଲା, ଅଂଧକାର କୋଠରୀ ଭିତରେ ଅଦ୍ଭୁତ ଯାଦୁଖେଳ ଦେଖିବାଭଳି । ବହୁତ ଭାବିଚିଂତି ସେ ଡାକ୍ତରଂକୁ ରହସ୍ୟର

ମଂଜ କଥାଟି ପଚାରିଲେ, "ଆଜ୍ଞା ! ମୀରାର ବ୍ରେନ୍ ଟ୍ୱିଂକଲ୍ ମୁଂଡରେ ପୂରେଇଦେଲେ ସିଏ କ'ଣ ମୀରା ପାଲଟିଯିବ ?"

ଡକ୍ଟର ଅଳ୍ପହସି ପୁଣିଥରେ ବୁଝେଇବାକୁ ଚେଷ୍ଟାକଲେ, "ଦେଖଂତୁ ମ୍ୟାଡ଼େମ୍ ! ଆପଣମାନେ ସମସ୍ତେ ଶିକ୍ଷିତ । ଆପଣମାନେ ଜାଣିଥିବେ, ଆମ ମନ, ଜ୍ଞାନ, ବୁଦ୍ଧି, ବିବେକ, ଗୁଣ, କର୍ମ, ସ୍ୱଭାବ, ଏ ସବୁର କଂଟ୍ରୋଲ୍ ରୁମ୍ ହେଉଛି ଆମ ମସ୍ତିଷ୍କ ! ମସ୍ତିଷ୍କ ହିଁ ମଣିଷର ଅସଲ ପରିଚୟ । ସମଗ୍ର ଜୀବନର ସବୁ ଡାଟା ସେଇ ମସ୍ତିଷ୍କ ଭିତରେ ହିଁ ସଂରକ୍ଷିତ ହୋଇ ରହିଥାଏ । ଗୋଟେ କଥାରେ କହିଲେ, ମସ୍ତିଷ୍କ ହେଉଛି ଚେତନାର ଗନ୍ତାଘର । ମସ୍ତିଷ୍କ ହିଁ 'ଅହଂ' ବା 'ମୁଁ'ର ପରିଚୟ ! ମୀରା ଆଉ ଟ୍ୱିଂକଲ୍‌ର କଂବିନେସନ୍‌ରେ ସୃଷ୍ଟି ହେଇଥିବା 'ମୀରାକଲ୍' ର ମୁଂଡ ଭିତରେ ଯେହେତୁ ମୀରାର ମସ୍ତିଷ୍କ ଅଛି, ତାକୁ ଆପଣମାନେ ନିର୍ଦ୍ୱଂଦ୍ୱରେ 'ମୀରା' ଭାବରେ ଗ୍ରହଣ କରିପାରଂତି ।"

"ସାର୍" ! ତଥାପି ମୋ ମନରେ ଟିକେ ଦ୍ୱଂଦ୍ୱ ରହିଯାଉଛି । ତା' ମେମୋରୀକୁ ଟିକିଏ ପରୀକ୍ଷା କରିବି ବୋଲି ଭାବୁଛି ।" ଶ୍ୟାମଳ ପଚାରିଲା ।

"ନିଶ୍ଚୟ......ନିଶ୍ଚୟ ! ପରୀକ୍ଷା କରି ଦେଖିପାର । ମୀରା ଆଉ ତୁମ ଭିତରେ ଅଭୁଲାସ୍ମୃତି ଯଦି କିଛି ଅଛି, ଯେଉଁଟାକି ଟ୍ୱିଂକଲ୍ ଜାଣିନଥିବ, ତାକୁ ପଚାରିପାର ।" ଡ: ମହାପାତ୍ର ସହମତି ଦେଲେ ।

"ସାର୍ ! ଏ ଦୁହେଁ ରାଜସ୍ଥାନୀ ଝିଅ । ଓଡ଼ିଆ ଲେଖିପଢ଼ି ଜାଣଂତିନି । କିଂତୁ ମୁଁ ମୀରାକୁ ଓଡ଼ିଆରେ ଗୋଟେ ଛୋଟ ବାକ୍ୟ ଲେଖିବା ଶିଖେଇଥିଲି । ସେ ଏବେ ଲେଖିପାରିବ ?" ଶ୍ୟାମଳ ପ୍ରଶ୍ନକଲା ।

"କାହିଁକି ପାରିବନି ? ସେହି କାମଟି ବ୍ରେନ୍ ଭିତରେ ସଂରକ୍ଷିତ ଥିବା ମେମୋରୀର । ବ୍ରେନ୍ ସୁରକ୍ଷିତ ଅଛି, ମାନେ ସେ ନିଶ୍ଚୟ ଲେଖି ପାରିବ ।" ଏହା କହି ଡ: ମହାପାତ୍ର ପକେଟ୍‌ରୁ କଲମ ଓ ନୋଟପ୍ୟାଡ଼୍ ଖଂଡିକ ବାହାର କରି 'ମୀରାକଲ୍' ହାତକୁ ବଢ଼ାଇ କହିଲେ, "ମିସ୍ ମିରାକଲ୍ ! ରାମାୟଣରେ ଲେଖାଅଛି, ସୀତା ଅଗ୍ନିପରୀକ୍ଷାରେ ପାସ୍ କରିବାପରେ ହିଁ ଶ୍ରୀରାମ ତାଙ୍କୁ ଗ୍ରହଣ କରିଥିଲେ । ଏବେ ତୁମପାଇଁ ଅଗ୍ନିପରୀକ୍ଷାର ସମୟ ! ତୁମକୁ ବି ପାସ୍ କରିବାକୁ ପଡ଼ିବ । ଶ୍ୟାମଳ ତୁମକୁ ଓଡ଼ିଆରେ ଯେଉଁ ବାକ୍ୟଟି ଲେଖିବା ଶିଖେଇଛଂତି ଏଠିରେ ଲେଖ ।"

ଏତିକିରେ ମନେହେଲା ମୀରାକଲ୍ କ୍ରମଶଃ ଲାଜରେ ତରଳିବାକୁ ଆରଂଭ କଲା । ସଂକୋଚରେ ମୁଂଡପୋତି ସେ କିଛି ଲେଖିବାକୁ ଆରମ୍ଭ କଲା । ଶ୍ୟାମଳ ଲକ୍ଷ୍ୟକରୁଥାଏ, ଟ୍ୱିଂକଲ୍‌ର ଚପଳତାଭରା ଦୁଇ ଆଖିରେ କ୍ରମଶଃ ଉକୁଟି ଉଠୁଛି ମୀରାର ସ୍ୱଭାବ ସୁଲଭ

ସଲ୍ଲଜତା ! ଟ୍ୱିଂକଲ୍‌ର ଦୁଷ୍ଟାମୀଭରା ମୁଖମଂଡଳରେ ସ୍ୱଷ୍ଟ ପ୍ରତିଫଳିତ ହେଉଛି ମୀରାର ନମ୍ର ନିରୀହ ଆଚରଣ ! ମୀରାର ସ୍ମୃତି ପଟଳରେ ସାଇତା ହୋଇ ରହିଥିବା ଧାଡ଼ିଏ ଅକ୍ଷର ନିର୍ଭୁଲ ଭାବେ ଉତାରି ପାରୁଛଂତି ଟ୍ୱିଂକଲ୍‌ର ଅନଭ୍ୟସ୍ତ ଅଂଗୁଳିମାନେ ! ! ଦେଖୁଦେଖୁ କାଗଜର କାଠଗଡ଼ାରେ ରାଜସାକ୍ଷୀ ଭଳି ଆସି ଠିଆହେଲେ କେତୋଟି ପରିଚିତ ଶବ୍ଦ, 'ହେ' ଶ୍ୟାମ୍ ! ମୀରା ଚିରକାଳ ତୁମର ।'

ବାକ୍ୟଟି ଉପରେ ସମସ୍ତଂକ ଦୃଷ୍ଟି ପଡ଼ିବାମାତ୍ରେ ସଂକୋଚରେ ମଥାନତ କଲା ଶ୍ୟାମଳ ।

ଡ: ମହାପାତ୍ର ସ୍ମିତ ହସି ଅନେଇଲେ ସତ୍ୟେଂଦ୍ର ଦଂପତିକୁ । ସତ୍ୟେଂଦ୍ର ବାବୁ କୃତଜ୍ଞତାଭରା କଂଠରେ କହିଲେ, "ସାର୍ ! ବ୍ରେନ୍ ଟ୍ରାନ୍ସପ୍ଲାଂଟେସନ୍ କ୍ଷେତ୍ରରେ ଆପଣଂକର ଏ ପ୍ରଥମ ସଫଳତା କାହାଣୀ ସାରା ଦୁନିଆ ଜାଣିବ, ଏକଥା ଅବଶ୍ୟ ସତ । କିଂତୁ ତା' ସହିତ ଆମର ଗୋଟେ ବଡ଼ ସମସ୍ୟାର ସମାଧାନ ଆପଣ କରିଦେଲେ !"

"କେମିତି ?" ଡ: ମହାପାତ୍ର ପ୍ରଶ୍ନିଳ ଆଖିରେ ଅନେଇଲେ ସତ୍ୟେଂଦ୍ର ବାବୁଂକୁ ।

"ଅସଲରେ ମୀରାର ଶାଂତ, ସରଳ ଆଉ ନମ୍ର ଆଚରଣ ପାଇଁ ଶ୍ୟାମଳ ତାକୁ ଭଲପାଇ ବିବାହ କରିବାକୁ ସ୍ଥିର କରିଥିଲା । କିଂତୁ ତା' ମଳିନ ଓ ଆକର୍ଷଣହୀନ ଚେହେରା ପାଇଁ ତା' ବୋଉ ତାକୁ ବୋହୂ କରିବାକୁ ମୁହଁ ମୋଡୁଥିଲେ । ସେ ଚାହୁଥିଲେ, ତୋଫାଗୋରୀ ସୁଂଦରୀ ଝିଅ ଟ୍ୱିଂକଲ୍‌କୁ ହିଁ ବୋହୂ କରିବେ । ମୀରା ଓ ଟ୍ୱିଂକଲ୍, ଏ ଦୁଇ ଭଉଣୀଙ୍କ ଭିତରୁ କିଏ ହେବ ଆମ ଘରର ବୋହୂ, ସେଥିପାଇଁ ସବୁବେଳେ ମା-ପୁଅ ଭିତରେ ଝଗଡ଼ା । ଏବେ ଦେଖଂତୁ, ଶ୍ୟାମଳକୁ ତା' ମନପସଂଦର ମୀରା ମିଳିଗଲା ଏବଂ ତା' ବୋଉକୁ ସେ ଚାହୁଥିବା ସୁଂଦରୀ ଟ୍ୱିଂକଲ୍ ।"

"ଆଉ ଆପଣଂକୁ..... ?" ଥଟ୍ଟାରେ ପଚାରିଲେ ଡାକ୍ତର ।

ସତ୍ୟେଂଦ୍ର ବାବୁ ମନଖୋଲା ହସି କହିଲେ, "ମୋତେ ମିଳିଲା 'ଟୁ-ଇନ୍ ୱାନ୍ ! ମାନେ, ମୀରା ଯୁକ୍ତ ଟ୍ୱିଂକଲ୍, ମିରାକଲ୍ !"



# ଅଲୌକିକ ସମୟଯାତ୍ରୀ

**ପ୍ରାକ୍ ସୂଚନା:** ଉଡ଼ନ୍ତା ଥାଳିଆ ବା 'ୟୁ. ଏଫ୍. ଓ.' ସଂପର୍କରେ ଆମେ ଅନେକ କଥା ଶୁଣିଛେ । ବହିପତ୍ରରେ ବି ପଢ଼ିଛେ । କିଛି ବର୍ଷ ପୂର୍ବେ ଏପରି ଏକ ଅଦ୍ଭୁତ ଉଡ଼ନ୍ତା ବସ୍ତୁ ଆକାଶରେ ଦେଖାଦେଇଥିଲା ବୋଲି ଲୋକେ କହନ୍ତି । କିଛି ଲୋକ ଏହାକୁ ଏକାଧିକ ଥର ଦେଖିଛନ୍ତି ବୋଲି ଦାବି କରୁଛନ୍ତି । ପୃଥିବୀର ମହାନ୍ ବୁଦ୍ଧିଜୀବୀ ଓ ଅନ୍ତରୀକ୍ଷ ବିଜ୍ଞାନୀମାନେ ମଧ୍ୟ ଏ ରହସ୍ୟକୁ ସ୍ୱୀକାର କରନ୍ତି । ସେ ସଂପର୍କରେ ଏବେ ବି ଅନୁସନ୍ଧାନ ଚାଲିଛି; କିନ୍ତୁ ସଂତୋଷଜନକ ଉତ୍ତର ମିଳିନାହିଁ ।

ଏଠାରେ ପ୍ରଶ୍ନ ଉଠୁଛି, 'ଉଡ଼ନ୍ତା ଥାଳିଆ' ପ୍ରକୃତରେ କ'ଣ ? ଏହା ଯଦି ପୃଥିବୀ ପ୍ରେରିତ ଯାନ ନୁହେଁ, ତା'ହେଲେ ସେ ଆସିଲା କୁଆଡୁ? ପୁଣି ଉଭେଇଗଲା କେଉଁଆଡ଼େ ? ତାହା ଯଦି ଅନ୍ୟ କୌଣସି ଗ୍ରହରୁ ପୃଥିବୀକୁ ପଠାଯାଇଛି, ତା'ହେଲେ ପୃଥିବୀ ବାହାରେ ଆଉଗୋଟେ ବୁଦ୍ଧିମାନ୍ ଜୀବଜଗତ ଅଛି ବୋଲି ଆମକୁ ସ୍ୱୀକାର କରିବାକୁ ପଡ଼ିବ । ପୃଥିବୀ ବାହାରର ଜୀବଜଗତ ଅନୁସଂଧାନ ପାଇଁ 'ସର୍ଚ୍ଚ ଫର୍ ଏକ୍ସଟ୍ରା ଟେରିଟୋରିଆଲ୍ ଇନ୍‌ଟେଲିଜେନ୍ସ' (ସେଟି) ନାମକ ଏକ ସଂସ୍ଥା ମହାକାଶରେ କାର୍ଯ୍ୟ କରୁଛି । ହେଲେ 'ଉଡ଼ନ୍ତା ଥାଳିଆ' ଏବଂ ଏହାର ପ୍ରେରକ ସଂପର୍କରେ ସିଏ ମଧ୍ୟ ନିରବ !!

୧୯୪୭ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଏକ ଏୟାରଫୋର୍ସ ଦଳ ନିଉ ମେକ୍ସିକୋ ଠାରେ ଗୋଟେ 'ଉଡ଼ନ୍ତା ଥାଳିଆ' ଏବଂ ଦୁଇଜଣ ବିଚିତ୍ର 'ଆଲିଆନ୍' (ଅନ୍ୟ ଗ୍ରହର ଜୀବ)ଙ୍କ ସଂଧାନ ପାଇଥିଲେ । ୧୯୬୧ ମସିହା ସେପ୍ଟେମ୍ବର ୧୯ ତାରିଖ ଦିନ ଆଉ ଏକ ବିଚିତ୍ର ଘଟଣା ଘଟିଥିଲା ! ଆଲିଏନ୍‌ମାନେ ପୃଥିବୀ ପୃଷ୍ଠରୁ 'ବେଟିହିଲ୍' ନାମକ ଜଣେ ବ୍ୟକ୍ତିଙ୍କୁ ଅପହରଣ କରି ନେଇଥିଲେ । ଅବଶ୍ୟ ତାଙ୍କ ଶରୀରର କେତେକ ପରୀକ୍ଷା ନିରୀକ୍ଷା କରିବା ପରେ ସେମାନେ ତାଙ୍କୁ ପୁଣି ଛାଡ଼ି ଦେଇଥିଲେ ବୋଲି କୁହାଯାଉଛି । ୧୯୭୩ ମସିହା ନଭେମ୍ବର ୩୦ ତାରିଖରେ ଆମେରିକାର ଦଳେ ବାୟୁସେନା ଅଧିକାରୀ ଏପରି ଏକ 'ଉଡ଼ନ୍ତା ଯାନ' ପଛରେ ଦୀର୍ଘ ଦୁଇ ଘଂଟା ଧରି ଗୋଡ଼ାଇଥିଲେ । କିନ୍ତୁ ତା' ଖୋଜଖବର ପାଇଲେନି !

*ସୁରେନ୍ଦ୍ର ନାଥ ସାହୁ* ___________

ଉପରୋକ୍ତ ଘଟଣାଗୁଡ଼ିକରୁ ମନେ ହେଉଛି, ଆମ ସୌରଜଗତ ବାହାରେ ପୃଥିବୀ ପରି ନିଶ୍ଚୟ ଗୋଟେ ଜୀବଜଗତ ଅଛି ଏବଂ ସେ ଗ୍ରହରେ ମଣିଷ ଠାରୁ ଉନ୍ନତ ମସ୍ତିଷ୍କ ସଂପନ୍ନ ପ୍ରାଣୀମାନେ ବାସ କରୁଛନ୍ତି ।

ପୃଥିବୀରେ ଏ ପ୍ରକାର ଯେତେ ଘଟଣା ଘଟିଛି, ସବୁଠୁ ରହସ୍ୟଜନକ ବୋଧହୁଏ ଡ.ଭବେଶ୍ କୁମାର ନାମକ ଜଣେ ବ୍ୟକ୍ତିଙ୍କ ଅପହରଣ ଘଟଣା ! ଏ ସଂପର୍କରେ କିଛି ଲୋକ ଏବେ ବି ଜାଣିନାହାନ୍ତି ଏବଂ କିଛି ଲୋକ ଘଟଣାଟିକୁ ଭୁଲି ସାରିଲେଣି । ସର୍ବସାଧାରଣଙ୍କ ଅବଗତି ନିମନ୍ତେ ସେ ଅବିଶ୍ୱସନୀୟ କାହାଣୀ ଏଠାରେ ପୁଣିଥରେ ଉପସ୍ଥାପନ କରାଯାଉଛି । ଘଟଣାଟା ଏହିଭଳି......

ଡ. ଭବେଶ୍ କୁମାର, ଦକ୍ଷିଣଭାରତର କୋଚି ସହରର ଜଣେ ଜଣାଶୁଣା ଡାକ୍ତର । ବୟସ ପ୍ରାୟ ପଇଁତିରିଶ । ବୟସ ଅନୁପାତରେ ସମଗ୍ର ସହରରେ ସେ ବେଶ୍ ଲୋକପ୍ରିୟତା ହାସଲ କରିସାରିଥିଲେ ଜଣେ ଭଲ ଡ଼ାକ୍ତର ହିସାବରେ । ଲୋକେ ତାଙ୍କୁ 'ଡ.କୁମାର୍' ନାଁରେ ହିଁ ବେଶି ଜାଣିଥିଲେ ।

୧୯୬୫ ମସିହା ଜୁଲାଇ ୫ ତାରିଖର ଘଟଣା । ସେ ଦିନଟି ଥିଲା ଡ. କୁମାରଙ୍କର ଜନ୍ମତିଥି । କାର୍ଯ୍ୟକ୍ଷେତ୍ରରୁ ସେ ଦିନକପାଇଁ ଛୁଟି ଆଣିଥିଲେ । ଉଦ୍ଦେଶ୍ୟ ଥିଲା, ନିଜର ପ୍ରିୟତମା ପତ୍ନୀ 'ଶୋଭା' ଏବଂ କୁନିଝିଅ 'ଏନି' ସହିତ ସାରାଦିନ ବୁଲାବୁଲି କରି ମଜାରେ କଟେଇଦେବେ । ପ୍ରତିବର୍ଷ ଜନ୍ମତିଥିରେ ସେ ତାହା ହିଁ କରନ୍ତି ।

ସେଦିନ ସକାଳୁ ସେ ଟିକିଏ ଚଂଚଳ ଉଠିପଡ଼ିଲେ । ଶେଯ ଛାଡ଼ିବା ପୂର୍ବରୁ 'ହାପିବର୍ଥ ଡେ' ଶୁଭକାମନା ସହିତ ଶୋଭାଙ୍କ ହାତରୁ କପେ ଗରମ କଫି ଏବଂ ଗେହ୍ଲିଝିଅ ଏନିର କୁନି ଓଠରୁ ସ୍ନେହଭରା ଚୁମ୍ବନଟିଏ ନେବାକୁ ଭୁଲିନଥିଲେ ସେ । ଏନିକୁ ସେ ଭାରି ଭଲ ପାଆନ୍ତି । ନିଜ ଜୀବନଠାରୁ ବି ଅଧିକ । ଝିଅକୁ କୋଳରେ ଧରି ସେ ପଚାରିଲେ, "ଆଚ୍ଛା ମା' ଏନି ! କହିଲୁ, ଆମେ ଆଜି କୋଉ କୋଉ ଜାଗା ବୁଲିବାକୁ ଯିବା ?

ଏନି ତା' ଦରୋଟି ଭାଷାରେ କହିଲା, "ପାପା... ! ଆଜି ତମର ବର୍ଥ ଡେ' ! ସେଥିପାଇଁ ଆଜି ମୁଁ ତୁମକୁ ବୁଲେଇବାକୁ ନେବି । ଆମେ ଆଜି ପ୍ରଥମେ ଯିବା ଚିଡ଼ିଆଘର ! ମୁଁ ତୁମକୁ ସେଠାରେ ଦେଖେଇବି ବାଘ, ଭାଲୁ, ହାତୀ ଆଉ କେତେ କିସମର ପକ୍ଷୀ ! ତା'ପରେ ଆମେ ଯିବା ପ୍ଲାନେଟୋରିଅମ୍ । ସେଠାରେ ତମେ ଗ୍ରହ-ନକ୍ଷତ୍ରମାନଙ୍କ ଖେଳ ଦେଖିବ । ସେଠୁ ଆମେ ସିନେମାହଲ୍ ଯାଇ କମିକ୍ ସିନେମାଟେ ଦେଖିବା । (ପାଠକେ

ଜାଣି ରଖନ୍ତୁ, ଏ ଘଟଣା ସମୟରେ ଟି. ଭି. ର ପ୍ରସାର ଘଟିନଥିଲା । 'ଆପୁଘର' କିମ୍ବା 'ନିକୋପାର୍କ' ଭଳି ଖେଳଉଦ୍ୟାନ ମଧ୍ୟ ଆରମ୍ଭ ହେଇନଥିଲା) ଶେଷରେ ଆମେ ଯିବା ସି-ବିଚ୍ ! ଆମେ ଆଜି ସାରା ଦିନ ଖାଲି ବୁଲିବା, ଖେଳିବା ଆଉ ଆଇସ୍‌କ୍ରିମ୍ ଖାଇବା । କ'ଣ ମାଇ ଡାର୍ଲିଂ ପାପା, ତମେ ଖୁସି ତ ?"

ଡ. କୁମାର୍ ଝିଅ ଗାଲକୁ ସ୍ନେହରେ ଚିମୁଟିଦେଇ କହିଲେ, "ଠିକ୍ ଅଛି, ଆମ ସୁନାଝିଅ ଆଜି ମୋତେ ଯୁଆଡ଼େ କହିବ, ସେଆଡ଼େ ମୁଁ ବୁଲିବାକୁ ଯିବି । ଏବେ ତୁ ଯା' ମାମ୍‌ଙ୍କୁ କହ ଚଂଚଳ ବାହାରିପଡ଼ିବେ ।"

ଏନି ଚାଲିଗଲା । ଡ.କୁମାର ଶେଯ ଛାଡ଼ି ଉଠିଲେ । ଚଟାପଟ୍ ନିତ୍ୟକର୍ମାଦି ଶେଷକରି ପ୍ରସ୍ତୁତ ହୋଇଗଲେ । ଟିଫିନ୍ ଆଜି ବାହାରେ ଖିଆ ହେବ ! ଜନ୍ମଦିନ ଉପଲକ୍ଷେ ତିଆରି କରିଥିବା ଧୂସର ରଙ୍ଗର ସୁଟ୍ ସହିତ ଗୋଲାପି ଛିଟବାଲା ନେକ୍‌ଟାଇଟା ଖୁବ୍ ମାନିଲା ତାଙ୍କୁ । ଏନି ଏବଂ ତା' ମାମା ମଧ୍ୟ ପ୍ରସ୍ତୁତ ହୋଇ ସାରିଥିଲେ ।

ସକାଳ ଠିକ୍ ସାଢ଼େ ନଅଟା ବେଳେ ଡ. କୁମାରଙ୍କ ଫିଆଟ୍ ଗାଡ଼ି ଘର ଛାଡ଼ିଲା । ବାଟରେ ଟିଫିନ୍ ଖିଆ ହେଲା । ଏନିର ଯୋଜନା ଅନୁସାରେ ଦିନ ତମାମ୍ ସେମାନେ ବୁଲିଲେ । ବାହାରେ ଖିଆପିଆ କଲେ । ବୁଲାବୁଲି ସାରି ସି-ବିଚ୍ ରେ ପହଂଚିବା ବେଳକୁ ସଂଧ୍ୟା ସାତଟା । ଡ. କୁମାର୍ ଏନି ପାଇଁ ଗୋଟେ ସୁନ୍ଦର ଖେଳନା କିଣେଇ ଦେଇଥିଲେ । ସେଇଟା ଥିଲା ଗୋଟେ ଜାପାନୀ ଝିଅ-କଣ୍ଢେଇ । ବେଶ୍ ବଡ଼ଟେ । ପ୍ରାୟ ଏନିର ଉଚ୍ଚା । ନାଆଁ ତା'ର 'ଲୋଲୋ' ! ଲୋଲୋକୁ ଧରି ଏନି ସମୁଦ୍ର ବାଲିରେ ବସି ଖେଳିବାକୁ ଲାଗିଲା । କିଛି ସମୟ ପରେ ସେମାନେ ସେଠୁ ଘରକୁ ଯିବାକୁ ଉଠିଲେ ।

ଏନି ତା' କୁନିକୁନି ସ୍ୟାଣ୍ଡେଲ୍ ପିନ୍ଧି ସମୁଦ୍ର ବାଲିରେ ଚାଲି ପାରିଲାନି । ହାତରେ ପୁଣି ଏତେବଡ଼ କଣ୍ଢେଇଟେ ! ଡ. କୁମାର୍ ଏନି ହାତରୁ କଣ୍ଢେଇଟା ଆଣି ନିଜେ ଧରିଲେ । ଆଉ ହାତଟା ବଢ଼ାଇଦେଲେ ଏନି ଆଡ଼କୁ । ଏନି ତାଙ୍କ ବିଷି ଆଙ୍ଗୁଠିକୁ ଭିଡ଼ି ଧରି ଗୋଡ଼ରେ ସମୁଦ୍ରବାଲି ଉଡ଼େଇ ଉଡ଼େଇ ବାଟ ଚାଲିବାକୁ ଲାଗିଲା । ଶୋଭାଦେବୀ ବାପଝିଅଙ୍କ ପଛେ ପଛେ ଚାଲିଥାନ୍ତି ।

ଠିକ୍ ଏତିକିବେଳେ ! ହଁ...ଏତିକିବେଳେ ଘଟିଗଲା ଗୋଟେ ଅଲୌକିକ ଘଟଣା ! ହଠାତ୍ ଆକାଶର ଅନ୍ଧକାର ବକ୍ଷରେ ତଡ଼ିତ୍ ଝଲକ୍ ପରି କିଛି ଗୋଟେ ଚକ୍‌ମକ୍ କଲା । ସତେ ଯେମିତି ଗୋଟେ ସେକେଣ୍ଡ୍ ପାଇଁ ରାତିଟା ପରିଣତ ହେଇଯାଇଥିଲା ଦିନ

ଦି'ପହରରେ! ସେ ଅଂଚଳରେ ବୁଲୁଥିବା ସବୁଲୋକ ଏ ବିସ୍ମୟକର ଦୃଶ୍ୟ ଦେଖିଛନ୍ତି ଏବଂ ସେ ଅଦ୍ଭୁତ ଉଜ୍ଜ୍ୱଳତାରେ କ୍ଷଣକପାଇଁ ଅନ୍ଧ ହୋଇ ଯାଇଛନ୍ତି। ସେହି କ୍ଷଣିକ ଭିତରେ ହିଁ ଘଟିଯାଇଥିଲା ଗୋଟେ ଅବିଶ୍ୱାସ୍ୟ ଘଟଣା! ସମୁଦ୍ର କୂଳେ ବୁଲୁଥିବା ଲୋକମାନଙ୍କ ଭିତରୁ ହଠାତ୍ ଜଣେ ଲୋକ ଅଦୃଶ୍ୟ ହୋଇ ଯାଇଥିଲେ ଏବଂ ସେ ହେଉଛନ୍ତି, ଡ. ଭବେଶ୍ କୁମାର୍!

ଶୋଭାଦେବୀ ଆଖି ମଳିମଳି ଅନେଇବା ବେଳକୁ ଡ. କୁମାର୍ ଆଉ ସେଠାରେ ନାହାନ୍ତି! ହଠାତ୍ ସେ କିଛି ବୁଝିପାରିଲେନି। ଚାରି ଆଡ଼କୁ ଥରେ ଦୃଷ୍ଟି ଘୂରେଇ ଆଣି ବିସ୍ମିତ ହେଲେ ସେ। ମନେ ମନେ ଭାବିଲେ, କିଛି ନ'କହି ହଠାତ୍ କୁଆଡ଼େ ଚାଲିଗଲେ କୁମାର୍! ଏନି ମଧ୍ୟ ଚାରିଆଡ଼କୁ ଖୋଜିଲା ଖୋଜିଲା ଆଖିରେ ଅନେଇଲା। ସିଏ ମଧ୍ୟ ବୁଝିପାରୁନଥିଲା,ଏ ଖୋଲା ବାଲି ପଡ଼ିଆରେ ତା' ବାବା ହଠାତ୍ କୁଆଡ଼େ ଯାଇ ଲୁଚିପଡ଼ିଲେ! ସେ 'ଲୋଲୋ'କୁ କୋଳରେ ଧରିଥିଲେ। ତାଙ୍କ ବିଷିଆଙ୍ଗୁଠିକୁ ସେ ନିଜେ ମୁଠାକରି ଧରିଥିଲା। ଏବେ ବି ମୁଠେଇ ଧରିଛି, ହେଲେ ମୁଠା ଭିତରେ ତା' ବାବାଙ୍କ ଆଙ୍ଗୁଠି ନାହିଁ କି ବାବା ନାହାନ୍ତି! ଆଶ୍ଚର୍ଯ୍ୟ....! ସେ ଗଲେ କୁଆଡ଼େ? ଏନି ଆଖିରେ କିଛି ଶଙ୍କା, କିଛି ଭୟ.. କିଛି କୌତୂହଳ!!

ଶୋଭାଦେବୀ ଦୁଇ ଚାରିଥର ବଡ଼ ପାଟିରେ 'କୁ...ମା...ର! କୁ...ମା....ର' ଡାକିବା ପରେ କଂଠ ତାଙ୍କର ବାଷ୍ପରୁଦ୍ଧ ହୋଇ ଆସିଲା। ମନେ ମନେ ସେ ଆତଙ୍କିତ ହୋଇ ପଡ଼ିଥିଲେ। ଏନିକୁ ସେ ଛାତିରେ ଲଗେଇ କାନ୍ଦି ଉଠିଲେ। ଏନି ମଧ୍ୟ ତା' ମାମାଙ୍କ ଅବସ୍ଥା ଦେଖି ଭେଁ....ଭେଁ....କାନ୍ଦିବାକୁ ଆରମ୍ଭ କଲା।

ମା' ଝିଅଙ୍କ କାନ୍ଦ ଶୁଣି ସମୁଦ୍ରକୂଳେ ବୁଲୁଥିବା କିଛି ଲୋକ ଆସି ଜମା ହେଇଗଲେ। ଘଟଣାଟି ଶୁଣିବା ପରେ ସେମାନେ ବିଶ୍ୱାସ କରି ପାରିଲେନି ଯେ, ଏଭଳି ଅସମ୍ଭବ କଥାଟେ ଘଟିଥାଇ ପାରେ! ପ୍ରଚଣ୍ଡ ଆଲୋକରେ ସମସ୍ତଙ୍କ ଆଖି ଝଲସି ଯାଇଥିଲା, ଏ କଥା ଅବଶ୍ୟ ସତ; ହେଲେ ଠିକ୍ ଏତିକିବେଳେ ହଠାତ୍ ଜଣେ ଲୋକ ଖୋଲା ସମୁଦ୍ର କୂଳରୁ କୁଆଡ଼େ ଅଦୃଶ୍ୟ ହେଇଗଲେ, ତାହା କଦାପି ସମ୍ଭବ ନୁହେଁ। ହୁଏତ ସେ ଅଚାନକ କିଛି କାମରେ ଦୂରକୁ ଚାଲିଯାଇଛନ୍ତି, ଫେରି ଆସିବେ! ଲୋକେ ଏପରି କୁହାକୁହି ହେଲେ ଏବଂ ଯେ-ଝା ବାଟରେ ଚାଲିଗଲେ।

କେତେକ ବୁଦ୍ଧିମାନ୍ ବ୍ୟକ୍ତି କିନ୍ତୁ କଥାଟାକୁ ଗୁରୁତ୍ୱ ଦେଇ ବିଚାର କଲେ। ସେତେବେଳେ ତ 'ଟି. ଭି.' କିମ୍ବା ଟେଲିଫୋନ୍ ଯୋଗାଯୋଗ ବ୍ୟବସ୍ଥା ଏତେ ଉନ୍ନତ

ନଥିଲା । ତା' ସତ୍ତ୍ୱେ ସମ୍ବାଦଟା ସହର ସାରା ବ୍ୟାପିବାକୁ ରାତିଟିଏ ବି ଲାଗିଲାନି । ପରଦିନ ରାଜ୍ୟ ସାରା ଖେଳେଇ ହୋଇଗଲା ଏ ରହସ୍ୟମୟ ଘଟଣା ! !

କେତେକ ଜ୍ୟୋତିର୍ବିଜ୍ଞାନୀ ମତ ଦେଲେ, ମହାକାଶରେ ପ୍ରତି ମୁହୂର୍ତ୍ତରେ ଏପରି ଅନେକ ମହାଜାଗତିକ ଘଟଣା ଘଟି ଚାଲିଛି, ଯାହା ଆମେ ଜାଣିପାରୁନେ । ସେପରି ହୁଏତ କିଛି ଅଲୌକିକ ଘଟଣା ଘଟିଛି । ସମ୍ଭବତଃ ଦୁଇଟି ଗ୍ରହାଣୁ ପିଣ୍ଡ ମଧ୍ୟରେ ସଂଘର୍ଷ ଯୋଗୁଁ ଏପରି କିଛି ହୋଇଥାଇ ପାରେ ।

କିନ୍ତୁ ଗ୍ରହାଣୁ ସଂଘର୍ଷ ଫଳରେ ପୃଥିବୀ ପୃଷ୍ଠରୁ ମଣିଷଟେ ଉଭାନ୍ ହେଇଯିବା କେତେଦୂର ସମ୍ଭବ ? ଏ ପ୍ରଶ୍ନର ଉତ୍ତର କାହାପାଖରେ ନଥିଲା । ଏହି ଘଟଣାକୁ କେନ୍ଦ୍ର କରି ଜ୍ୟୋତିର୍ବିଜ୍ଞାନୀମାନେ ଲାଗିପଡ଼ିଲେ ବୈଜ୍ଞାନିକ ଅନୁସନ୍ଧାନରେ । ବର୍ଷବର୍ଷ ଧରି ଚାଲିଲା ଗବେଷଣା । ହେଲେ କିଛି ସୁଫଳ ମିଳିଲାନି । ଲୋକେ କାଳକ୍ରମେ ଘଟଣାଟିକୁ ଭୁଲିଯିବାକୁ ବସିଥିଲେ ।

ଠିକ୍ ଏତିକିବେଳେ 'ଜର୍ଜ ଏରିନୋ' ନାମକ ଜଣେ ଆମେରିକୀୟ ଜ୍ୟୋତିର୍ବିଜ୍ଞାନୀ ଚମକପ୍ରଦ ତଥ୍ୟଟିଏ ଆବିଷ୍କାର କଲେ । ସେ ଘୋଷଣା କଲେ ଯେ, ସୁଦୂର କୌଣସି ଗ୍ରହରୁ ପ୍ରେରଣ କରାଯାଇଥିବା 'ମ୍ୟାଗ୍-ଲାଇଟ୍'ର ଆକର୍ଷଣ ବଳରେ ଡ. କୁମାର ଅନ୍ତର୍ଦ୍ଧାନ ହୋଇଯାଇଥିବା ସମ୍ଭବ ! 'ଜର୍ଜ ଏରିନୋ'ଙ୍କ ଏହି ଯୁଗାନ୍ତକାରୀ ତଥ୍ୟ ଡ. କୁମାରଙ୍କ ଅନ୍ତର୍ଦ୍ଧାନ ପର୍ବରେ ଗୋଟେ ରୋମାଂଚକର ନୂତନ ଅଧ୍ୟାୟ ଯୋଡ଼ିଦେଲା । ସେ କାଳେ ଅନୁସନ୍ଧାନ କରି ଜାଣି ପାରିଥିଲେ ଯେ, ପୃଥିବୀ ପୃଷ୍ଠରୁ ମଣିଷ ଚୋରି ଘଟଣା କିଛି ନୂଆ ନୁହେଁ । ପୂର୍ବେ ପୃଥିବୀର ବିଭିନ୍ନ ଅଂଚଳରୁ ଏଭଳି ତିନିଥର ମଣିଷ ଅପହରଣ ହେଇଛି । ତାଙ୍କ ମତ ଅନୁସାରେ , ଆମ ସୌର ଜଗତ ବାହାରେ, ପୃଥିବୀ ଠାରୁ ଶହଶହ ଆଲୋକବର୍ଷ ଦୂରରେ ହୁଏତ କୌଣସି ଜୀବଜଗତ ଅଛି । ସେ ଗ୍ରହରେ ଅତିବିଜ୍ଞାନୀ ପ୍ରାଣୀମାନେ 'ମ୍ୟାଗ୍-ଲାଇଟ୍'ର ଉଦ୍ଭାବକ ହେଇଥିବେ । 'ମ୍ୟାଗ୍-ଲାଇଟ୍' ଏଭଳି ଏକ ଶକ୍ତିଶାଳୀ ଆଲୋକ, ଯାହାର ବେଗ ସାଧାରଣ ଆଲୋକର ବେଗ ଠାରୁ ଶହ ଶହ ଗୁଣ ଅଧିକ ହେଇଥିବ ! 'ମ୍ୟାଗ୍-ଲାଇଟ୍'ର ଅର୍ଥ ମ୍ୟାଗନେଟିକ୍ ଲାଇଟ୍, ଅର୍ଥାତ୍ ଚୁମ୍ବକୀୟ ଆଲୋକ ! ମ୍ୟାଗ୍-ଲାଇଟ୍ ର ଶକ୍ତିଶାଳୀ ରେଖା ଯେଉଁ ଜୀବକୋଷ ଗୁଚ୍ଛ ଉପରେ ପଡ଼ିବ, ତାକୁ ସେ ଆଖି ପିଛୁଳାକେ ଟାଣିନେବ ଶହ ଶହ ଆଲୋକବର୍ଷ ସେପାରିକୁ !

ବୈଜ୍ଞାନିକ 'ଏରିନୋ'ଙ୍କ ଏହି ଅବିଶ୍ୱସନୀୟ ତଥ୍ୟ ସାରା ପୃଥିବୀବାସୀଙ୍କୁ ଚମକେଇ ଦେଇଥିଲା । ହେଲେ ତାହା ଥିଲା କେବଳ ଅନୁମାନସିଦ୍ଧ ! ଅନୁମାନକୁ ଆଧାର

କରି କୌଣସି ବୈଜ୍ଞାନିକ ଅନୁସନ୍ଧାନକୁ ଆଗେଇ ନେବା ସମ୍ଭବ ନୁହେଁ । ଏଥିପାଇଁ ଜର୍ଜ ଏରିନୋଙ୍କୁ ସେମିତି କିଛି ସହଯୋଗ କିମ୍ବା ସରକାରୀ ପ୍ରୋତ୍ସାହନ ମିଳିଲାନି । ଲୋକେ ମଧ୍ୟ ଏ ଅଦ୍ଭୁତ ତଥ୍ୟକୁ ସହଜରେ ଗ୍ରହଣ କରି ପାରିଲେନି ଏବଂ ଡ. କୁମାରଙ୍କ ଅପହରଣ ଘଟଣାଟି କ୍ରମଶଃ ଲୋକମାନଙ୍କ ମାନସପଟରୁ ଲିଭିବାକୁ ଲାଗିଲା ।

ସେହି କାଳରାତିର ଘଟଣାକୁ ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ଭୁଲି ପାରିନଥିଲେ କେବଳ ଦୁଇଜଣ । ସେମାନେ ଥିଲେ, ଡ. କୁମାରଙ୍କ ପତ୍ନୀ 'ଶୋଭାଦେବୀ' ଏବଂ ଝିଅ 'ଏନି' ! ଶୋଭାଦେବୀ କାଳକ୍ରମେ ବୁଢ଼ୀ ହେଲେ ଏବଂ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଏନି ବଡ଼ ହେଲା, ବାହା ହେଇ ଘରସଂସାର କଲା । ଦିନେ ସେ ମଧ୍ୟ ବୁଢ଼ୀ ହେଲା ।

ଏନି ଯେତେବେଳେ ଅଶୀ ବର୍ଷର ବୁଢ଼ୀ (ପ୍ରାୟ ୨୦୪୦ ମସିହା ବେଳକୁ), ସିଏ ତା' ନାତି ନାତୁଣୀମାନଙ୍କୁ ପାଖରେ ବସାଇ ନିଜ ଜୀବନରେ ଘଟିଥିବା ଏ ଅଦ୍ଭୁତ କାହାଣୀଟି କହେ । ପିଲାମାନେ ବିଶ୍ୱାସ କରନ୍ତିନି । ଏନିବୁଢ଼ୀ ତା' ପେଳୁଆ ନିଷ୍ପ୍ରଭ ଆଖିରେ ଆକାଶ ଆଡ଼କୁ ଘଣ୍ଟା ଘଣ୍ଟା ଧରି ଅନାଇ ରହେ । ମନକୁ ମନ ପ୍ରଶ୍ନ କରେ, ସତରେ ତା' ବାପା ଗଲେ କୁଆଡ଼େ ? ?

ଈଶ୍ୱରଙ୍କ ଅସୀମ କୃପା, ଡ. କୁମାର ସେଦିନ ସଂଧ୍ୟାରେ ସମୁଦ୍ର କୂଳରୁ ଉଭାନ୍ ହୋଇଯିବା ପରେ ବି ସଶରୀରରେ ଥିଲେ ! ସେ ଚିତ୍ ହେଇ ପଡ଼ିଥିଲେ ତଳେ । ଅଚେତ୍ ଅବସ୍ଥାରେ । ତାଙ୍କ ଛାତି ଉପରେ ମୁହଁମାଡ଼ି ପଡ଼ିଥିଲା ଏନିର କଣ୍ଢେଇ 'ଲୋଲୋ' । କୁମାରଙ୍କ ଚେତା ଧୀରେଧୀରେ ଫେରି ଆସୁଥିଲା । ଅଳ୍ପ ସମୟ ପରେ ସଂପୂର୍ଣ୍ଣ ପ୍ରକୃତିସ୍ଥ ହେଲେ ସେ; କିନ୍ତୁ ବିଶ୍ୱାସ କରି ପାରିଲେନି ନିଜକୁ ! ବୁଝି ପାରିଲେନି ଘଟଣା କ'ଣ ! ! ଆଖି ପିଛୁଳାକେ କ'ଣ ସବୁ ଓଲଟ ପାଲଟ ହେଇଗଲା ।

ସେ ମନେ ପକାଇବାକୁ ଚେଷ୍ଟାକଲେ କିଛି ସମୟ ପୂର୍ବର ଘଟଣା । ସିଏ ତାଙ୍କ ପତ୍ନୀ ଏବଂ କୁନି ଝିଅ ସହିତ ସମୁଦ୍ର କୂଳରେ ବୁଲୁଥିଲେ । ରାତି ଆଠଟା ହେବ । ହଠାତ୍ ଆକାଶ ବକ୍ଷରେ ଦେଖା ଦେଇଥିଲା ଅତ୍ୟୁଜ୍ଜ୍ୱଳ ଗୋଟେ ଆଲୋକ ! ଅନ୍ଧାରିଆ ସମୁଦ୍ର କୂଳଟା କ୍ଷଣକପାଇଁ ଝଲସି ଉଠିଲା ଦିନ ପରି ! ଠିକ୍ ସେତିକିବେଳେ ଗୋଟେ ସୂକ୍ଷ୍ମ ଆଲୋକ ରେଖା ତଡ଼ିତ୍ ବେଗରେ ମାଡ଼ି ଆସିଥିଲା ତାଙ୍କରି ଆଡ଼କୁ । ତା'ପରେ.....ତା'ପରେ .....ଆଉ କିଛି ତାଙ୍କ ସ୍ମୃତି ପଟଳରେ ଧରା ପଡ଼ିଲାନି !

ସେ ଭାବିଲେ, ଶୋଭା ଆଉ ଏନି ତ ମୋ' ପାଖରେ ହିଁ ଥିଲେ । ଗଲେ କୁଆଡ଼େ ? ଆଉ ମୁଁ...... ? ଏ କେଉଁ ଜାଗାରେ ଆସି ଶୋଇଛି ? ଏ' ତ ବଡ଼ ଅଜବ

ଘଟଣା ! ! ସେ ପୁଣି ଭାବିବାକୁ ଲାଗିଲେ, ହଠାତ୍ କିଛି ଅଘଟଣ ଘଟି ମୁଁ ଅକସ୍ମାତ୍ ମରିଗଲି କି ? ଏ କ'ଣ ମୃତ୍ୟୁ ପରର ଅନୁଭୂତି ? ? ଏପରି ନାନା ଦୁର୍ଭାବନା ଭିତରେ ସେ ତାଙ୍କ ଶଙ୍କାକୁଳ ଦୃଷ୍ଟି ଚାରି ଆଡ଼କୁ ଥରେ ଘୂରେଇ ଆଣିଲେ । ହଠାତ୍ ଆଖି ଆଗରେ ଯାହା ଦେଖିଲେ, ସେଥିରେ ସେ ବିସ୍ମୟରେ କାଠ ପାଲଟିଗଲେ !

ସେ ଦେଖିଲେ, ତାଙ୍କୁ ଘେରି କେତେକ ଅଦ୍ଭୁତ ଜୀବ ଠିଆ ହେଇଛନ୍ତି ! ସେମାନଙ୍କ ଶରୀର ଗଠନ ବଡ଼ ଅଜବ ପ୍ରକାର ! ଡ. କୁମାର ସାହସ ସଂଚୟ କରି ପୁଣି ଥରେ ସେମାନଙ୍କୁ ନିରୀକ୍ଷଣ କଲେ । ବୁଝିପାରିଲେନି, ଏମାନେ 'ମଣିଷ' ନା 'ବାଦୁଡ଼ି' ! ମଣିଷ ଭଳି ମୁହଁ ଅଥଚ୍ ବାଦୁଡ଼ି ଶରୀର ! ଏମିତିକା ବିଚିତ୍ର ପ୍ରଣୀ ବି ପୃଥିବୀରେ ଥାଇପାରନ୍ତି ବୋଲି ତାଙ୍କର ଧାରଣା ନଥିଲା । ମଣିଷ-ମୁହଁ ସାଙ୍ଗକୁ ସେମାନଙ୍କ କାନଗୁଡ଼ିକ ଗୋରୁ କାନ ପରି ବଡ଼ ଆଉ ଲମ୍ବାଳିଆ ! ହାତ ଓ ପାଦର ଗଠନ ମଧ୍ୟ ସାଧାରଣ ମଣିଷର ହାତପାଦ ପରି; କିନ୍ତୁ ଦେହର ଉଭୟ ପାଖରେ, ମଣିବନ୍ଧଠାରୁ ଆଣ୍ଠୁ ପର୍ଯ୍ୟନ୍ତ ଝୁଲି ରହିଥିଲା କୁଂଚକୁଂଚ ହୋଇ ବଡ଼ ଚମଡ଼ା ଡେଣା ଦୁଇଟା, ଅବିକଳ ବାଦୁଡ଼ିର ଯେମିତି ଥାଏ ! ସେମାନଙ୍କ ଉଚ୍ଚତା ଥିଲା ସାଧାରଣ ମଣିଷ ଭଳି ଏବଂ ସେମାନେ ଥିଲେ ଚାରିଜଣ ।

ଡ. କୁମାରଙ୍କ ଚେତା ଫେରିବା ଦେଖି ସେ ବାଦୁଡ଼ି-ମଣିଷମାନେ ପରସ୍ପର କିଛି ଆଲୋଚନା କଲେ । ଟେଲିଗ୍ରାଫିକ୍ କୋଡ୍ ପରି ସେମାନଙ୍କ ଭାଷା ଥିଲା ନିହାତି ଦୁର୍ବୋଧ୍ୟ । କେବଳ ଟିକ୍....ଟାକ୍, ଟେର୍‌ର....ଟିକା, ଟିର୍‌ର୍......ଟିକ୍‌କା ଇତ୍ୟାଦି ଶବ୍ଦ ଶୁଭୁଥିଲା ।

ଡ. କୁମାର୍ ଉଠିବାକୁ ଚେଷ୍ଟା କଲେ; କିନ୍ତୁ ପାରିଲେନି । ତାଙ୍କୁ ଖୁବ୍ ଦୁର୍ବଳ ଲାଗୁଥିଲା । ସେଥିରେ ପୁଣି ଗୋଟେ ହାତରେ ସେ 'ଲୋଲୋ'କୁ ଧରିଥିଲେ । ଦୁଇଜଣ ବାଦୁଡ଼ି-ମଣିଷ ଆସି ତାଙ୍କୁ ଉଠିବାରେ ସାହାଯ୍ୟ କଲେ । କୁମାର୍ ଉଠିବା ପରେ ଜାଣିପାରିଲେ, ସେ ଗୋଟେ ବିଶାଳ ଲାଇଟ୍ ହାଉସ୍ ତଳେ ବସିଛନ୍ତି । ବନ୍ଦରମାନଙ୍କରେ ଏପରି ଲାଇଟ୍ ହାଉସ୍ ଥାଏ । କିନ୍ତୁ ଏତେ ବଡ଼ ଲାଇଟ୍ ହାଉସ୍ ସେ କେବେ କଳ୍ପନା ବି କରିନଥିଲେ । ତା' ଶିଖରଟା ଦେଖିବା ପାଇଁ ସେ ଯେତେବେଳେ ଉପରକୁ ଚାହିଁଲେ, ତାଙ୍କ ଆଖି ପାଇଲାନି । ସେ ମନେ ମନେ ଭାବିଲେ, କୋଚିନ୍ ବନ୍ଦରରେ ତ ଏତେବଡ଼ ଲାଇଟ୍ ହାଉସ୍ ନାହିଁ ! ତା' ହେଲେ... ! ! ଏ କେଉଁ ଜାଗା ? ଆଉ ଏ ବିଚିତ୍ର ପ୍ରାଣୀମାନେ... ? ଏ କଥା ଭାବିବା ବେଳକୁ ଡ. କୁମାରଙ୍କର ମୁଣ୍ଡ ଆଉ କାମ କଲାନି !

ଏତିକିବେଳେ ଜଣେ ବାଦୁଡ଼ି-ମଣିଷ ଦୂରକୁ ନିରୀକ୍ଷଣ କରି ହୁଇସିଲ୍ ମାରିବା ଭଳି ଶବ୍ଦ କଲା । ଅଳ୍ପ ସମୟରେ ସେଠାରେ ଆସି ପହଂଚିଲା ଗୋଟେ ବିଚିତ୍ର ଯାନ ।

ଆଶ୍ଚର୍ଯ୍ୟର କଥା, ସେ ଯାନରେ ଚକ ଲାଗିନଥିଲା କି ତା'ର କେହି ଚାଳକ ନଥିଲେ । ଚକ ଲାଗିବା ଜାଗାରେ ଖଂଜା ହେଇଥିଲା କୁକୁର ଗୋଡ଼ ଭଳି ସରୁ ସରୁ ଚାରିଟା କବ୍‌ଜାବାଲା ନଳୀ । ବାଦୁଡ଼ି-ମଣିଷମାନେ ଡ. କୁମାରଙ୍କ ଦୁଇ ଡେଣାକୁ ଧରି ଟେକି ନେଇ ସେ ଯାନ ଭିତରେ ବସାଇଦେଲେ । ଗୋଟେ ବିଚିତ୍ର ଶବ୍ଦ କଲେ । ସେତିକିରେ ଯାନଟା ତା' ଚାରିଗୋଡ଼ରେ ଚାଲିବାକୁ ଲାଗିଲା । ତା'ପରେ କୁକୁର ପରି ଧାଇଁଲା ! ବାଦୁଡ଼ି-ମଣିଷମାନେ ତା' ପଛେ ପଛେ ଉଡ଼ିବାକୁ ଲାଗିଲେ । ଡ.କୁମାର୍ ଆଶ୍ଚର୍ଯ୍ୟରେ ଦେଖୁଥାନ୍ତି, ଯାନଟା କିପରି ଗତି କରୁଛି । ଚାରିଗୋଡ଼ିଆ ପ୍ରାଣୀଟେ ଧାଇଁଲାବେଳେ ତା' ଗୋଡ଼ଗୁଡ଼ିକ ଯେମିତି ଦ୍ରୁତ ଆଗପଛ ହେଉଥାଏ, ଭାଙ୍ଗୁଥାଏ ପୁଣି ସିଧା ହେଉଥାଏ, ଯାନର ଗୋଡ଼ଗୁଡ଼ିକ ମଧ୍ୟ ଠିକ୍ ସେମିତି ହେଉଥିଲା । ଡ.କୁମାରଙ୍କୁ ମନେ ହେଲା, ସେ ମୋଟେ କ୍ଷୀପ୍ର ଗତିଶୀଳ ଚିତାବାଘ ପିଠିରେ ବସିଛନ୍ତି । କିଛିଟା ଭୟ ଓ କୌତୂହଳ ସହିତ ସେ ବେଶ୍ ଆମୋଦିତ ବି ହେଲେ । ଗୋଟେ ମିନିଟ୍ ମାତ୍ର । ଯାନ ଏବଂ ତା' ପଛେପଛେ ଉଡ଼ି ଆସୁଥିବା ବାଦୁଡ଼ି-ମଣିଷମାନେ ଅଟକିଗଲେ ଗୋଟେ ଗମ୍ବୁଜାକାର ଘର ଆଗରେ । ସେମାନେ କୁମାରଙ୍କୁ ଯାନ ଭିତରୁ ଟେକିନେଇ ସେ ଘର ଭିତରେ ଛାଡ଼ିଦେଲେ ଏବଂ ଯିଏ ଯୁଆଡ଼େ ଉଡ଼ି ଚାଲିଗଲେ ।

କୁମାର ଗମ୍ବୁଜ ଭିତରେ ଚାରିଆଡ଼କୁ ଥରେ ଦୃଷ୍ଟି ପହଁରେଇ ଆଣିଲେ । ଦେଖିଲେ, ଗୋଟିଏ ପାଖରେ ଅଛି ବଡ଼ ପାଣିକୁଣ୍ଡଟିଏ । ତା' ଭିତରେ ଗୋଟେ ପ୍ରକାଣ୍ଡ ରୋହି ମାଛ । ଅନ୍ୟପାଖରେ ମଲା ଭଳି ପଡ଼ିରହିଥିଲା ଗୋଟେ ଚିତ୍ରାହରିଣୀ ।

ପଠିରେ କାହାର ନରମ ସ୍ପର୍ଶ ପାଇ ଚମକି ପଡ଼ିଲେ ଡ.କୁମାର୍ ! ବୁଲିପଡ଼ି ଦେଖିଲେ, ଧଳାଦାଢ଼ି ଏବଂ ଗହଳ ନିଶରେ ମୁହଁର ତିନି ପା' ଘୋଡ଼େଇ ରଖିଥିବା ଜଣେ ବଳିଷ୍ଠ ବୁଢ଼ା ହସହସ ମୁହଁରେ ତାଙ୍କ ଆଗରେ ଠିଆ ହେଇଛନ୍ତି । ଦେହରେ ତାଙ୍କର ଅତି ପୁରୁଣା, ଫଟା, ମସିଆ କୋଟ୍-ପ୍ୟାଂଟ୍ ! ସେ ସ୍ପଷ୍ଟ ଇଂରାଜୀରେ ଡ. କୁମାର୍‌ଙ୍କୁ ଅଭିନନ୍ଦନ ଜଣାଇଲେ, "ଆସ ମୋର ପ୍ରିୟ ପୃଥିବୀବାସୀ ବନ୍ଧୁ ! ପୃଥିବୀର କେଉଁ ଅଂଚଳରୁ ତମେ ଧରା ହେଇ ଆସିଛ କହିଲ ?"

ଡ. କୁମାର୍ ବିସ୍ମୟରେ ଅବାକ୍ ! ବୃଦ୍ଧଙ୍କ କଥାରୁ ସେ ଅଗମୂଳ କିଛି ବୁଝି ପାରିଲେନି । ବୁଢ଼ା ପୁଣି କହିଲେ, "କ'ଣ..... ! କିଛି ବୁଝିପାରୁନ ? ମୁଁ ମଧ୍ୟ ପ୍ରଥମେ ଯେତେବେଳେ ଏ ଗ୍ରହକୁ ଧରାହେଇ ଆସିଥିଲି, କିଛି ବୁଝି ପାରିନଥିଲି । ପୃଥିବୀର ସମୟ ହିସାବ ଅନୁସାରେ ସାଢ଼େ ପାଂଚବର୍ଷ ହେଲା ମୁଁ ଏଠାରେ ଅଛି । ଏବେ ବି ଏ ଗ୍ରହ ଏବଂ ଗ୍ରହବାସୀଙ୍କ ବିଷୟରେ ବେଶି କିଛି ଜାଣିନି ।"

*ସୁରେନ୍ଦ୍ର ନାଥ ସାହୁ*

ଡ. କୁମାର ସତେ ଯେମିତି ଆକାଶରୁ ଖସିପଡ଼ିଲେ । ସେ ପଚାରିଲେ, "ଏ କ'ଣ ପୃଥିବୀ ନୁହଁ...! ପୃଥିବୀ ବାହାରର କୌଣସି ଗ୍ରହ ?"

ବୁଢ଼ା ହସିହସି ଜବାବ ଦେଲେ, "କେବଳ ପୃଥିବୀ ବାହାର କି ସୌରଜଗତ ବାହାର କହିଲେ ଚଳିବନି । ପୃଥିବୀଠାରୁ ଏ ଗ୍ରହର ଦୂରତା ଅଢ଼େଇ ଆଲୋକବର୍ଷ !"

"ଏ ବୁଢ଼ା ବୋଧେ ଜଣେ ବଦ୍ଧ ପାଗଳ !" କୁମାର ମନେମନେ ଭାବିଲେ ।

"ମୁଁ ଆଦୌ ପାଗଳ ନୁହେଁ । ଯାହା କହିଲି, ଶତକଡ଼ା ଶହେ ସତ ! ତୁମେ ମତେ ବିଶ୍ୱାସ ନ'କଲେ ପରେ ପସ୍ତେଇବ ।" ବୃଦ୍ଧ ନିରୁଦ୍‌ବେଗ କଂଠରେ କହିଲେ ।

"ଅସମ୍ଭବ !" ଡ. କୁମାରଙ୍କ ପାଟି ଖନି ମାରିଗଲା । "ମୁଁ ତ ଏଇ ଅଧଘଂଟା ଆଗରୁ ଦକ୍ଷିଣ ଭାରତର 'କୋଚି' ସମୁଦ୍ର କୂଳରେ ମୋ' ପରିବାର ସହିତ ବୁଲୁଥିଲି !"

ବୁଢ଼ା କହିଲେ, "ତୁମ ରୂପଭେକ ଦେଖିବା ପରେ ଅବଶ୍ୟ ମୁଁ ଜାଣି ପାରିଥିଲି, ତୁମେ ଭାରତୀୟ ହେଇଥିବ । ପେସାରେ ତମେ ଜଣେ କେମିଷ୍ଟ୍ କିମ୍ବା ଡାକ୍ତର ହେଇଥିବ, ଏହା ତମ ହାତରେ ଥିବା ନିୟମିତ ଗ୍ଲୋଭସ୍ ପିନ୍ଧା ଚିହ୍ନକୁ ଦେଖିଲେ ଜାଣି ହେଉଚି । ତମେ ଧରିଥିବା କଣ୍ଟେଇଟିକୁ ଦେଖିଲେ ମନେହୁଏ, ତମେ ତମ ପିଲାଛୁଆଙ୍କ ପାଖରୁ ହଠାତ୍ ଅଲଗା ହେଇଯାଇଛ । ତୁମ ଭାରତୀୟମାନଙ୍କର ଗୋଟେ ଗୁଣ ମତେ ଭାରି ଭଲ ଲାଗେ । ତୁମମାନଙ୍କ ପାରିବାରିକ ଜୀବନ ବେଶ୍ ସୁନ୍ଦର ଆଉ ଶୃଂଖଳିତ । ମୁଁ ଜଣେ ଆମେରିକୀୟ । ପେସାରେ ସାମ୍ବାଦିକ । ମୋ' ଘର-ପରିବାର କିମ୍ବା ନିଜ ଲୋକ ବୋଲି କେହି ନାହିଁ ଦୁନିଆରେ ! ୧୯୬୦ ମସିହାରେ 'ରିଚାର୍ଡ଼୍ ଡନ୍' ନାମକ ଜଣେ ସାମ୍ବାଦିକ ହଠାତ୍ ନିରୁଦ୍ଧିଷ୍ଟ ହୋଇଯାଇଥିଲେ ବୋଲି ତୁମେ ସମ୍ବାଦପତ୍ର ମାନଙ୍କରେ ପଢ଼ିଥିବ । ମୁଁ ସେହି ରିଚାର୍ଡ଼୍ ! ଏଠାକୁ ମୁଁ ଧରାହୋଇ ଆସିଥିଲି ତୁମପରି 'ମ୍ୟାଗ୍‌ଲାଇଟ୍'ର ଆକର୍ଷଣ ବଳରେ ।"

"ମ୍ୟାଗ୍‌ଲାଇଟ୍‌ର ଆକର୍ଷଣ !! ସେଇଟା କ'ଣ ? ମୁଁ କିଛି ବୁଝିପାରୁନି, ସାର୍ ! ବିଶ୍ୱ ବିଖ୍ୟାତ ବିଜ୍ଞାନୀ ଆଇନ୍‌ଷ୍ଟାଇନ୍‌ଙ୍କ ଉଦ୍ଭାବିତ ତଥ୍ୟ ଅନୁସାରେ କୌଣସି ବସ୍ତୁ କିମ୍ବା ପ୍ରାଣୀ ଆଲୋକବେଗରେ ଗତି କରିବା ସମ୍ଭବ ନୁହେଁ । କିନ୍ତୁ ଆପଣ କହୁଛନ୍ତି, ଆମେ 'ମ୍ୟାଗ୍‌ଲାଇଟ୍'ର ଆକର୍ଷଣ ଯୋଗୁଁ ଅଢ଼େଇ ଆଲୋକବର୍ଷ ଅତିକ୍ରମ କରି ଏଠାରେ ଆସି ପହଂଚିଯାଇଛେ !!" କୁମାର୍ ବିସ୍ମିତ କଂଠରେ ପଚାରିଲେ ।

ବୃଦ୍ଧ ରିଚାର୍ଡ଼୍ କହିଲେ, "ଦେଖ ବନ୍ଧୁ, ଆଇନ୍‌ଷ୍ଟାଇନ୍‌ଙ୍କ ତଥ୍ୟ ଆଉ ନିୟମ ତୁମ ପୃଥିବୀବାସୀଙ୍କ ପାଇଁ ସତ ହେଇପାରେ; କିନ୍ତୁ ଏ ଗ୍ରହର ଅତିବିଜ୍ଞାନୀ ପ୍ରାଣୀ ବାଦୁଡ଼ି-

ମଣିଷମାନଙ୍କ ପାଇଁ ତାହାମିଛ ! ଦେଖିବ ଆସ...." ଏହା କହି ସେ କୁମାରଙ୍କ ହାତ ଧରି ଗମ୍ବୁଜ ବାହାରକୁ ଟାଣିନେଲେ । କିଛି ଦୂରରେ ଲାଇଟ୍‌ହାଉସ୍ ପରି ଦେଖାଯାଉଥିବା ସେ ଆକାଶଛୁଆଁ ନଳା ଆଡ଼କୁ ଦେଖାଇ କହିଲେ, "ସେଇଟା ହେଉଚି 'ମ୍ୟାଗ୍‌ଲାଇଟ୍' ଟାୱାର ! ଅଢ଼େଇ ଆଲୋକବର୍ଷ ଯାତ୍ରାର ଅସଲ ପ୍ଲାଟ୍‌ଫର୍ମ । ତୁମେ କୋଟି ସମୁଦ୍ର କୂଳରୁ ଧରା ହେଇ ସିଧା ତା' ଶୀର୍ଷଦେଶରେ ଆସି ପହଂଚିଲ । ସେଠୁ ତଳ ପର୍ଯ୍ୟନ୍ତ ଗୋଟେ ସ୍ୱୟଂଚାଳିତ ଲିଫ୍ଟ ଅଛି । ତମେ ତଳେ ପହଂଚିବା ପରେ ବାଦୁଡ଼ି-ମଣିଷମାନେ ତୁମକୁ ଆଣି ଏଠାରେ ଛାଡ଼ିଦେଲେ ।"

ରିଚାର୍ଡ୍‌ଙ୍କ କଥା ଶୁଣି କୁମାରଙ୍କ ବିସ୍ମୟଭାବ କଟିବ କ'ଣ, ବଢ଼ିବଢ଼ି ଚାଲିଲା । ବୁଢ଼ା ତାଙ୍କୁ ପାଖରେ ପଡ଼ିଥିବା ଗୋଟେ ବେଂଚ୍ ପରି ଆସନରେ ବସିବାକୁ କହି ନିଜେ ବି ବସିଲେ । ବୁଝାଇଲେ, "ବନ୍ଧୁ, ତମେ ବ୍ୟସ୍ତ ହୁଅନି । ଆରାମ୍‌ରେ ବସ । ଏ ଗ୍ରହ, ଗ୍ରହବାସୀ ଏବଂ ସେମାନଙ୍କ ଦ୍ୱାରା ଉଦ୍ଭାବିତ ଅଦ୍ଭୁତ ଆଲୋକ 'ମ୍ୟାଗ୍‌ଲାଇଟ୍' ସଂପର୍କରେ ମୁଁ ଯେତିକି ଜାଣିଛି, ତୁମକୁ କହିବି । ତା'ପରେ ପୃଥିବୀ ପୃଷ୍ଠକୁ ତୁମ ଫେରିବା କଥା ଚିନ୍ତା କରିବା ।"

ଡ. କୁମାର୍ ଆଶ୍ଚର୍ଯ୍ୟ ଓ ଆନନ୍ଦରେ ବିହ୍ୱଳ ହୋଇ ରିଚାର୍ଡ୍‌ଙ୍କୁ କୁଣ୍ଢାଇ ପକାଇଲେ । "ଅର୍ଥାତ୍......ମୁଁ ଏଠୁ ପୁଣି ପୃଥିବୀ ପୃଷ୍ଠକୁ ଫେରିଯାଇ ପାରିବି ? ଆପଣ ସତ କହୁଚନ୍ତି ? ?" କୁମାରଙ୍କ ଉତ୍କଣ୍ଠା ଦେଖି ବୃଦ୍ଧ ରିଚାର୍ଡ୍ କେବଳ ନିରବରେ ହସିଲେ ।

ଡ. କୁମାର୍ ବିସ୍ମୟରେ ଅଭିଭୂତ ହୋଇ ଭାବୁଥିଲେ, ଏ ପର୍ଯ୍ୟନ୍ତ ମୁଁ ଯାହା ସବୁ ଦେଖିଲିଣି, ଏ ସବୁ ତ ମାୟା କି ସ୍ୱପ୍ନ ନୁହେଁ । ତା' ହେଲେ..... ?

ସେ ଉତ୍କଣ୍ଠିତ ଭାବେ ପ୍ରଶ୍ନ କଲେ ରିଚାର୍ଡ୍‌ଙ୍କୁ, "ମହାଶୟ, ଏକଥା କ'ଣ ବିଶ୍ୱାସଯୋଗ୍ୟ ଯେ, ମ୍ୟାଗ୍‌ଲାଇଟ୍ ଦ୍ୱାରା ଆକର୍ଷିତ ହୋଇ ଆଲୋକବର୍ଷ ଦୂରରେ ଥିବା ପ୍ରାଣୀ ଏଠାରେ ଆସି ପହଂଚି ଯାଆନ୍ତି ?"

ବୃଦ୍ଧ ତାଙ୍କର ଅଲରା ନିଶ ଦାଢ଼ିକୁ ସାଉଁଳୁ ସାଉଁଳୁ କହିଲେ, "ହଁ ବନ୍ଧୁ, ଏହା ଅବିଶ୍ୱାସ୍ୟ ହେଲେ ମଧ୍ୟ ମିଛ ନୁହେଁ । ଦୀର୍ଘ ପାଂଚବର୍ଷ ଧରି ଏପରି ଅନେକ ଘଟଣା ମୁଁ ଏଇ ଆଖିରେ ଦେଖି ଆସୁଛି । ଆମେ ପୃଥିବୀବାସୀ ମଣିଷ । ଆମେ ନିଜକୁ ମହାବିଜ୍ଞାନୀ ବୋଲି ଭାବୁଛେ; କିନ୍ତୁ ତାହା ଭୁଲ୍ । ଆମ ପରିସର ବାହାରେ ଆହୁରି ଅନେକ ରହସ୍ୟ ଅଛି, ଯାହା ଆମ ଜ୍ଞାନର ଊର୍ଦ୍ଧ୍ୱରେ । ହୁଏତ ଆଗାମୀ ଯୁଗମାନଙ୍କରେ ଆମେ ଆହୁରି ଅଧିକ

ଜ୍ଞାନୀ ହେବା । ବିଜ୍ଞାନର ଉନ୍ନତତର ଶୀର୍ଷକୁ ଛୁଇଁବାକୁ ସମର୍ଥ ହେବା ଏବଂ ତା'ପରେ ସେ ସବୁର ରହସ୍ୟ ଉନ୍ମୋଚନ କରି ପାରିବା । ହେଲେ ଏ ଗ୍ରହର ବାଦୁଡ଼ି-ମଣିଷମାନେ ସେ ସୀମା ଟପି ଯାଇଛନ୍ତି । ଆଲୋକ ବେଗରେ ଗତି କରିବା ଆମ ପକ୍ଷରେ ଏବେ ବି ସ୍ୱପ୍ନ ! କିନ୍ତୁ ଏମାନେ ଆଲୋକ ଠାରୁ ବହୁଗୁଣ ବେଗରେ ଗତି କରିବା ବ୍ୟବସ୍ଥା ଉଦ୍ଭାବନ କରି ସାରିଛନ୍ତି ।"

ରିଚାର୍ଡ଼ 'ମ୍ୟାଗ୍‌ଲାଇଟ୍' ଟାୱାର୍ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲେ, "ଦେଖ, ସେ ଟାୱାର ଶୀର୍ଷରେ ହିଁ ରହିଛି ସେହି ଅଲୌକିକ ବ୍ୟବସ୍ଥା । ଏହା କେଉଁ ବିଜ୍ଞାନକୌଶଳ ବଳରେ କାମ କରୁଛି, ତାହା ମୋତେ ମାଲୁମ୍ ନାହିଁ; କିନ୍ତୁ ଏତିକି ଜାଣେ, ସୌରଶକ୍ତି ହିଁ ଏହାର ପ୍ରଧାନ ଉତ୍ସ ! ଏହି ଆକାଶରେ ଆମେ ଏବେ ଯେଉଁ ସୂର୍ଯ୍ୟକୁ ଦେଖୁଛେ, ସେ ଆମ ପରିଚିତ ସୂର୍ଯ୍ୟ ନୁହେଁ । ଏ ହେଉଛି ଆଉଗୋଟେ ସୌରଜଗତର ଅନ୍ୟ ଏକ ସୂର୍ଯ୍ୟ ! 'ମ୍ୟାଗଲାଇଟ୍' ଏହି ସୂର୍ଯ୍ୟ କିରଣରୁ ନିରନ୍ତର ଶକ୍ତି ସଂଗ୍ରହ କରେ ଏବଂ ପ୍ରତି ଆଠ ଘଂଟାରେ ଥରେ ଫ୍ଲାସ୍ ହୁଏ । ଫ୍ଲାସ୍ ହେବା ମାତ୍ରେ 'ମ୍ୟାଗ୍‌ଲାଇଟ୍' ଚ୍ୟାମ୍ବରରୁ ଆଲୋକ ବାହାରେ । ସେ ଆଲୋକର ବେଗ ସାଧାରଣ ଆଲୋକର ବେଗ ଠାରୁ ଶହଶହ ଗୁଣ ଅଧିକ ! 'ମ୍ୟାଗ୍‌ଲାଇଟ୍' ଅନ୍ତରୀକ୍ଷରେ ପ୍ରାୟ ପାଂଚଶହ ଆଲୋକବର୍ଷ ପର୍ଯ୍ୟନ୍ତ ଗତି କରିପାରେ । ବାଟରେ ଯେଉଁ ଜୀବନ୍ତ ପ୍ରାଣୀ ସହିତ ଧକ୍କା ହୁଏ ତାକୁ ସେ ସେଠାରୁ ଚୁମ୍ବକ ପରି ଟାଣି ଆଣେ ଏହି ଗ୍ରହପୃଷ୍ଠକୁ । ମ୍ୟାଗଲାଇଟ୍‌ର ଆଉ ଏକ ବିଶେଷତ୍ୱ ହେଲା, ବଭିନ୍ନ ଗ୍ରହରୁ ପ୍ରାଣୀମାନଙ୍କୁ ଆକର୍ଷିତ କରି ଆଣିବା ପରି ସେମାନଙ୍କୁ ବିଭିନ୍ନ ଗ୍ରହକୁ ପ୍ରକ୍ଷେପଣ ମଧ୍ୟ କରିପାରେ । ତମେ ତ ଜାଣିଛ, ଆମ ଛାୟାପଥରେ ଅନେକ ସୌରଜଗତ ଅଛି । ସେ ସୌରଜଗତମାନଙ୍କରେ ପୃଥିବୀ ପରି କେତେ ଯେ ଜୀବମଣ୍ଡଳ ରହିଛି, ତା'ର ହିସାବ ଆମ ପୃଥିବୀର ବଜ୍ଞାନୀମାନେ କରିପାରି ନାହାନ୍ତି । କିନ୍ତୁ ଏ ଗ୍ରହର ବାଦୁଡ଼ି-ମଣିଷମାନେ 'ମ୍ୟାଗ୍‌ଲାଇଟ୍' ପ୍ରୟୋଗ କରି ସେ ରହସ୍ୟ ଜାଣିପାରିଛନ୍ତି । ସେମାନେ ଜାଣନ୍ତି ଯେ, ଏ ଗ୍ରହ ଠାରୁ ପାଂଚଶହ ଆଲୋକବର୍ଷ ପରିସୀମା ଭିତରେ ଆମ ପୃଥିବୀକୁ ମିଶାଇ ମୋଟରେ ପାଂଚଟି ଜୀବମଣ୍ଡଳ ଅଛି । ପ୍ରତି ଜୀବମଣ୍ଡଳରେ ଭିନ୍ନଭିନ୍ନ ପ୍ରଜାତିର ଜୀବମାନେ ବାସ କରୁଛନ୍ତି । ତୁମେ ଏବେ ପ୍ରଶ୍ନ କରିପାର, ଏ ରହସ୍ୟ ସେମାନେ ଜାଣିଲେ କେମିତି ? ଦେଖ, ଆମେ ଜାଣିଛେ, ବିଶ୍ୱବ୍ରହ୍ମାଣ୍ଡ ସହିତ ଆମ ଛାୟାପଥ ଘୂରୁଛି । ସମଗ୍ର ଗ୍ରହ ଓ ନକ୍ଷତ୍ରମାନେ ମଧ୍ୟ ଘୂରିବାରେ ଲାଗିଛନ୍ତି । 'ମ୍ୟାଗ୍‌ଲାଇଟ୍' ଆଲୋକ ଅନ୍ତରୀକ୍ଷରେ ସଳଖଭାବେ

ପାଂଚଶହ ଆଲୋକବର୍ଷ ଗତି କରିବା ଭିତରେ ଏ ଛାୟାପଥର ପ୍ରତ୍ୟେକ ଗ୍ରହ ଦିନେ ନା' ଦିନେ ତା' ଆଗକୁ ଆସେ । ଆମେ ଅନ୍ଧାର ଘରେ ଟର୍ଚ୍ଚ ପକେଇ ଖୋଜିବା ଭଳି 'ମ୍ୟାଗଲାଇଟ୍' ସବୁ ଗ୍ରହକୁ ରୀତିମତ୍ ଅନୁସନ୍ଧାନ କରି ଚାଲିଥାଏ । ଯେଉଁ ଗ୍ରହରେ ଜୀବକୋଷ ସମ୍ବଳିତ ପ୍ରାଣୀଟିଏ ଦେଖେ, ତତ୍କ୍ଷଣାତ୍ ତାକୁ ଏଠାକୁ ଟାଣି ଆଣେ ! ଏଭଳି ବିଭିନ୍ନ ଗ୍ରହରୁ ଆକର୍ଷିତ ହୋଇ ଏବେ ସୁଦ୍ଧା ପାଂଚ ପ୍ରକାର ପ୍ରାଣୀ ଏହି ଗ୍ରହରେ ସଂଗୃହିତ ହୋଇଛନ୍ତି । ପୃଥିବୀ ପୃଷ୍ଠରୁ ଧରିଛନ୍ତି ସେମାନେ ଆମକୁ । ମାନେ ମୋତେ, କୁଣ୍ଡରେ ଥିବା ସେ ବିଶାଳ ରୋହି ମାଛଟିକୁ, ଗୋଟେ ହରିଣ ଛୁଆକୁ ଆଉ ଏବେ ତୁମକୁ ! ଏ ଗମ୍ବୁଜାକାର କୋଠାଟା ସେମାନଙ୍କର ଗୋଟେ ସଂଗ୍ରହଶାଳା, କେବଳ ପୃଥିବୀରୁ ସଂଗୃହିତ ଜୀବଙ୍କ ପାଇଁ । ସେମିତି ଅନ୍ୟ ଗ୍ରହମାନଙ୍କରୁ ଧରା ହୋଇ ଆସୁଥିବା ଜୀବମାନଙ୍କ ପାଇଁ ଅଲଗା ଅଲଗା ସଂଗ୍ରହଶାଳା ସବୁ ଅଛି ।"

ବିସ୍ମୟାଭିଭୂତ ଡ. କୁମାର୍ ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ପିଲାଙ୍କ ପରି ବସି ରିଚାର୍ଡ଼ଙ୍କ କଥା ଶୁଣୁଥିଲେ । ଶେଷରେ ପଚାରିଲେ, "ଆଚ୍ଛା, ସେମାନେ ଆମକୁ ଏପରି ସଂଗ୍ରହ କରୁଛନ୍ତି କାହିଁକି ?" ରିଚାର୍ଡ଼ କହିଲେ, "ନିର୍ଦ୍ଦିଷ୍ଟଭାବେ ତ ମୁଁ କହି ପାରିବିନି, ତେବେ ମୁଁ ଭାବୁଛି, ଏମାନଙ୍କର ଏହି ଅଭିଯାନ ପଛରେ ଗୋଟେ ବିଶେଷ ଉଦ୍ଦେଶ୍ୟ ଅଛି । ଏମାନେ ବିଭିନ୍ନ ଗ୍ରହର ଶ୍ରେଷ୍ଠ ପ୍ରାଣୀମାନଙ୍କ ଜୀବକୋଷକୁ ନେଇ ସୃଷ୍ଟି କରିବାକୁ ଚାହୁଁଚନ୍ତି ଗୋଟେ ଅଲୌକିକ ଜୀବ-ଜଗତ ! ସେ ଗବେଷଣା ସେମାନେ ରୀତିମତ ଜାରି ରଖିଛନ୍ତି ।"

ଡ. କୁମାର କହିଲେ, "ଆପଣଙ୍କ ଆକଳନ ଯଦି ସତ ହୋଇଥାଏ, ତା'ହେଲେ ବଡ଼ ଅଦ୍ଭୁତ ଏମାନଙ୍କ ଗବେଷଣା ! ଏମାନଙ୍କ ବିଜ୍ଞାନ ଅନୁସନ୍ଧିତ୍ସାକୁ ମାନିବାକୁ ପଡ଼ିବ । ହେଲେ ଆଜ୍ଞା, ଏ ବାଦୁଡ଼ି-ମଣିଷମାନଙ୍କୁ ଦେଖିଲେ ଆଦୌ ମନେ ହେଉନି ଯେ- ଏମାନେ ଏଡ଼େ ବିଜ୍ଞାନବିତ୍ ହେଇଥିବେ ।"

ରିଚାର୍ଡ଼ କହିଲେ, "ତାହା ହିଁ ତ ପ୍ରକୃତିର ବୈଚିତ୍ର୍ୟ ! ଆମେ ପୃଥିବୀବାସୀ ମଣିଷ ନିଜକୁ ମହାବିଜ୍ଞାନୀ ବୋଲାଉଛେ; କିନ୍ତୁ ଆଲୋକବର୍ଷ ଅତିକ୍ରମ କରିବା କଥା ଆମେ ଚିନ୍ତା ବି କରିପାରୁନେ । ଏମାନେ ଶହଶହ ଆଲୋକବର୍ଷ ଦୂରରେ ଥିବା ପ୍ରାଣୀଙ୍କୁ ଗାଡ଼ିଆରେ ବନିଶି ପକାଇ ମାଛ ଧରିବା ଭଳି ଧରିଆଣି ପାରୁଛନ୍ତି । ଅଥଚ୍ ବିଡ଼ମ୍ବନାର ବିଷୟଟି କ'ଣ ଜାଣ... ? ଏମାନେ ଦେହ ଢାଙ୍କିବା ପାଇଁ ବସ୍ତ୍ରର ଉଦ୍ଭାବନ ଆଜିଯାଏଁ କରିପାରି ନାହାନ୍ତି । ଆଶ୍ଚର୍ଯ୍ୟର କଥା, 'ଚକ'ର ବ୍ୟବହାର ମଧ୍ୟ ଏମାନଙ୍କୁ ଜଣାନାଇଁ । ତେଣୁ ଏ ଗ୍ରହର

ଯାନବାହନ ଚାରି ଗୋଡ଼ରେ ଚାଲେ । ବିଜ୍ଞାନର ଏଡ଼େ ସାଧାରଣ ତତ୍ତ୍ୱଗୁଡ଼ିକୁ ନ'ଜାଣି ମଧ୍ୟ 'ମ୍ୟାଗ୍‌ଲାଇଟ୍' ପରି ପରମଶକ୍ତିଶାଳୀ 'ଚୁମ୍ବକୀୟ ଆଲୋକ' ଉଦ୍ଭାବନ କରିବା ପାଇଁ ଏମାନଙ୍କ ମୁଣ୍ଡରେ ଜ୍ଞାନ ଦେଲା କିଏ ? ଏ କଥା ଭାବିଲେ କୌଣସି ଅଦୃଶ୍ୟ ଶକ୍ତି ଆଗରେ ମୁଣ୍ଡ ମୋର ନଇଁ ଯାଉଛି ।" ଏହା କହି ରିଚାର୍ଡ଼ ଉପରକୁ ହାତ ଉଠେଇ ଦୀର୍ଘନିଃଶ୍ୱାସ ଛାଡ଼ିଲେ ।

ଡ. କୁମାର୍ ଏନିର କଣ୍ଢେଇଟିକୁ ସେ ପର୍ଯ୍ୟନ୍ତ ହାତଛଡ଼ା କରିନଥିଲେ । ସ୍ତ୍ରୀ ଏବଂ ଝିଅ କଥା ତାଙ୍କର ମନେ ପଡୁଥିଲା । ଆଖି ତାଙ୍କର ଛଳଛଳ ହେବାକୁ ଲାଗିଲା । ରିଚାର୍ଡ଼ କୁମାରଙ୍କ ମନକଥା ଠଉରେଇ ନେଲେ । ସେ କହିଲେ, "ବନ୍ଧୁ, ଆଦୌ ବ୍ୟସ୍ତ ହୁଅନି । ତୁମେ ଖୁବ୍ ଶୀଘ୍ର ତୁମ ପରିବାର ପାଖରେ ପହଂଚିଯିବ । ଆମ ହାତରେ ଏବେ ସମୟ କମ୍ । ଆମକୁ ଏବେ ଚଂଚଳ ସେ 'ମ୍ୟାଗ୍‌ଲାଇଟ୍' ଟାୱାର୍ ପାଖରେ ପହଂଚିବାକୁ ପଡ଼ିବ, ଚାଲ ।" ଏହା କହି ରିଚାର୍ଡ଼ ଉଠିଲେ ।

ସେହି ସ୍ଥାନ ଠାରୁ 'ମ୍ୟାଗ୍‌ଲାଇଟ୍' ଟାୱାରର ଦୂରତା ଥିଲା ପ୍ରାୟ ଗୋଟେ କିଲୋମିଟର୍ । ଖୁବ୍ ଶୀଘ୍ର ଦୁହେଁ ଯାଇ ସେଠାରେ ପହଂଚିଗଲେ । ଟାୱାର୍ ତଳୁ ଉପରକୁ ଉଠିବାପାଇଁ ଲିଫ୍ଟ ଦୁଆରଟି ଖୋଲା ଥିଲା । ରିଚାର୍ଡ଼ କହିଲେ, "ବନ୍ଧୁ, ପୃଥିବୀର ସମୟ ଅନୁସାରେ ତୁମେ ଏ ଗ୍ରହରେ ପହଂଚି ଗୋଟାଏ ଘଂଟାରୁ ଅଧିକ ସମୟ ହେଲାଣି । ଏବେ ପୁଣି ଯଦି 'ପ୍ରକ୍ଷେପକ-ଆଲୋକ' ଦ୍ୱାରା ପଠେଇ ଦିଆଯାଏ, ତା' ହେଲେ ତୁମେ ନିଶ୍ଚୟ ପୃଥିବୀ ପୃଷ୍ଠରେ ପହଂଚିବ । ହଁ....ଅବଶ୍ୟ ମହାସମୁଦ୍ରରେ ପଡ଼ିବ କି ମହାନଗରୀରେ ପହଂଚିବ, ସେଇଟା ତମ ଭାଗ୍ୟ ଉପରେ ନିର୍ଭର କରେ । ତଥାପି ଆମେ ନିରାଶ ହେବା ଉଚିତ ନୁହେଁ । ଏବେ ଆଉ ଡେରି ନ'କରି ସେ ଲିଫ୍ଟ ଉପରକୁ ଉଠିଯାଅ । ତମେ ଟାୱାର୍ ଶୀର୍ଷରେ ପହଂଚିବା ମାତ୍ରେ ମୁଁ ତଳୁ 'ପ୍ରକ୍ଷେପକ-ଆଲୋକ'ର କଂଟ୍ରୋଲ୍ ବଟନ୍ ଟିପିଦେବି । ମାତ୍ର କେତୋଟି ମିନିଟ୍ ଭିତରେ ତୁମେ ଯାଇ ପହଂଚିଯିବ ପୃଥିବୀ ପୃଷ୍ଠରେ ।"

ଡ. କୁମାରଙ୍କ ଆଖି ବୃଦ୍ଧ ରିଚାର୍ଡ଼ଙ୍କ ପ୍ରତି ଶ୍ରଦ୍ଧା ଓ କୃତଜ୍ଞତାରେ ଜକେଇ ଆସିଲା । ସେ କହିଲେ, "ମହାଶୟ, ଆପଣ ଏତେ ବର୍ଷ ଧରି ଅସହାୟ ଭାବେ ଏ ଅଜ୍ଞାତ ଗ୍ରହରେ ପଡ଼ିଛନ୍ତି । ଏଠୁ ପୃଥିବୀକୁ ନିଜେ ଫେରିବା କଥା ଚିନ୍ତା ନ'କରି ମୋ'ପାଇଁ ଏତେ ବ୍ୟସ୍ତ ହେଉଛନ୍ତି । ସତରେ ଆପଣଙ୍କ ନିଃସ୍ୱାର୍ଥ ସହାୟତା ଆଗରେ ମୁଣ୍ଡ ମୋର ନଇଁ ଯାଉଚି ।"

କୁମାରଙ୍କ କଥା ଶୁଣି ବୃଦ୍ଧ ଦାଢ଼ି ସାଉଁଳି ହସିବାକୁ ଲାଗିଲେ । କହିଲେ, "ବନ୍ଧୁ,

ମୁଁ ତୁମକୁ ପ୍ରଥମରୁ ହିଁ କହିଛି, ଦୁନିଆରେ ମୁଁ ଏକେଲା ଲୋକ । ମୋ'ପାଇଁ ଆମେରିକାରେ ରହିବା ଅଥବା ଗୋଟେ ଅଜଣା ଗ୍ରହରେ ରହିବା, ଏକା କଥା । ବରଂ ଏଠାରେ ଭଲ । ଏ ଅତିବିଜ୍ଞାନୀ ପ୍ରାଣୀମାନଙ୍କ କାର୍ଯ୍ୟକଳାପ ମୋତେ ବେଶ୍ ଆନନ୍ଦ ଦେଉଛି । ଏ ପର୍ଯ୍ୟନ୍ତ ସେମାନେ ମୋ'ର କିଛି କ୍ଷତି କରିନାହାନ୍ତି । ମୋ' ଦ୍ୱାରା ସେମାନଙ୍କର ନିଶ୍ଚୟ କିଛି ଉପକାର ହେଉଥିବ । ତୁମେ ନିଜ ପରିବାରକୁ ଛାଡ଼ି ଆସିଛ । ମୋ' ଅପେକ୍ଷା ତୁମେ ପୃଥିବୀକୁ ଫେରିବା ଅଧିକ ଜରୁରୀ ।"

"କିନ୍ତୁ ମହାଶୟ, ଆପଣ ଯେଉଁ ଉପକାର ମୋ'ପାଇଁ କରୁଛନ୍ତି, ତା' ଋଣ ମୁଁ ପରିଶୋଧ କରିବି କେମିତି ?" ଡ. କୁମାର୍ ରିଚାର୍ଡ଼ଙ୍କର ଦୁଇ ଶିରାଳ ହାତକୁ ମୁଠେଇ ଧରି ପଚାରିଲେ ।

ବୃଦ୍ଧ ପୂର୍ବପରି ହସିହସି କହିଲେ, "ତୁମେ ଯଦି ନିହାତି ଋଣ ଶୁଝିବାକୁ ଚାହୁଁଚ, ତା'ହେଲେ ଗୋଟେ କାମ କର । ଦୀର୍ଘ ସାଢ଼େ ପାଂଚବର୍ଷ ଧରି ଏ ଚିରା ମସିଆ ସୁଟ୍ ଖଣ୍ଡିକ ପିନ୍ଧିପିନ୍ଧି ମୋ' ଅବସ୍ଥା ଖରାପ ହେଲାଣି । ତୁମେ ପିନ୍ଧିଥିବା ନୂଆ ସୁଟ୍‌ଟା ମୋତେ ଦେଇଯାଅ । ସେଥିରେ ମୋ'ର ଆଉ କିଛି ବର୍ଷ ଚାଲିଯିବ ।"

ଡ.କୁମାର ଅତି ଆନନ୍ଦରେ ନିଜ ସୁଟ୍ ଖୋଲି ବୃଦ୍ଧ ରିଚାର୍ଡ଼ଙ୍କୁ ପିନ୍ଧାଇଦେଲେ ଏବଂ ରିଚାର୍ଡ଼ଙ୍କ ଶତଛିନ୍ନ, ଦୁର୍ଗନ୍ଧଭରା ମଇଳା ପ୍ୟାଂଟ୍ କୋଟ ନିଜେ ପିନ୍ଧିଲେ । ତା'ପରେ ସେ ଲିଫ୍ଟରେ ପଶିଲେ । ଲିଫ୍ଟ ଚାହୁଁ ଚାହୁଁ ତାଙ୍କୁ ନେଇ ଟାୱାର ଶିଖରରେ ପହଂଚାଇଦେଲା । ରିଚାର୍ଡ଼ ତଳୁ କଂଟ୍ରୋଲ୍ ବଟନ୍ ଟିପିଦେଲେ । ହଠାତ୍ ଗୋଟେ ଉଜ୍ଜ୍ୱଳ ଆଲୋକ ଫ୍ଲାସ୍ ହେବା ସହିତ ଡ. କୁମାର୍ ଆଖି ପିଛୁଳାକେ ଟାୱାର ଶୀର୍ଷରୁ ଅଦୃଶ୍ୟ ହେଇଗଲେ !

* * * * *

୨୦୪୦ ମସିହା ସେପ୍ଟେମ୍ବର ୧୦ ତାରିଖ । ସମୟ, ରାତି ସାଢ଼େ ଦଶଟା ହେବ । ଦିଲ୍ଲୀ ମହାନଗରୀର ଜନାକୀର୍ଣ୍ଣ ଚାନ୍ଦିନୀଚୌକ୍ ଅଂଚଳରେ ଜଣେ ବିଚିତ୍ର ପୋଷାକଧାରୀ ଯୁବକକୁ ଠାବ କଲା ପୋଲିସ୍ । ମନେ ହେଉଥିଲା ପାଗଳଟାଏ ! ତା' ହାତରେ ଥିଲା ପୁରୁଣା ସମୟର ଗୋଟେ ଜାପାନୀ କଣ୍ଢେଇ । ପୋଲିସ୍ ତାକୁ ସନ୍ଦେହରେ ଗିରଫ୍ କରି ଥାନାକୁ ନେଇଗଲା ।

କହିବା ବାହୁଲ୍ୟ ମାତ୍ର, ଏ ଯୁବକ ଡ. କୁମାରଙ୍କ ବ୍ୟତୀତ ଅନ୍ୟ କେହି ନଥଲେ । ପ୍ରକ୍ଷେପକ ଆଲୋକ ମାଧ୍ୟମରେ ସେ ଆସି ପହଂଚି ଯାଇଥିଲେ ପୃଥିବୀ ପୃଷ୍ଠରେ ! ଡ.

କୁମାର୍ ଈଶ୍ୱରଙ୍କୁ ଶତ ଧନ୍ୟବାଦ ଦେଲେ, ନିରାପଦରେ ପୁଣି ତାଙ୍କ ପ୍ରିୟ ଧରାପୃଷ୍ଠରେ ପହଂଚାଇ ଦେଇଥିବା ହେତୁ । ଅବଶ୍ୟ ନିଜ ସହର କୋଚି ପରିବର୍ତ୍ତେ ସେ ଦିଲ୍ଲୀ ମହାନଗରୀରେ ପହଂଚିଯାଇଛନ୍ତି, ଏକଥା ସେ ଜାଣିପାରିଲେ ପୋଲିସ୍ ତାଙ୍କୁ ଗିରଫ୍ କରିବା ପରେ ।

ଯେଉଁ ପୋଲିସ୍ ଦ୍ୱାରା ସେ ଧରା ହେଲେ, ସେ ଥିଲା ଗୋଟେ 'ରୋବୋପୋଲିସ୍ ।'! ସେ ଦେଖିଲେ, ଦିଲ୍ଲୀ ବାଟଘାଟ, ଦୋକାନ ବଜାରରେ ମଣିଷ ଅପେକ୍ଷା ଅଧିକ ଭିଡ଼ ଥିଲା ରୋବଟମାନଙ୍କର! କୁମାର୍ ଆଶ୍ଚର୍ଯ୍ୟ ହେଲେ! ଦିଲ୍ଲୀରେ ରୋବଟ୍‌ମାନଙ୍କ ଲୋକପ୍ରିୟତା କେବେଠୁଁ ଏତେ ବଢ଼ିଗଲାଣି, ସେ ଭାବି ପାରୁନଥିଲେ । ସେ ଥାନାରେ ପହଂଚି ଦେଖିଲେ, ସେଠାରେ ମଧ୍ୟ ଅଧିକାଂଶ ରୋବଟ୍ ପୋଲିସ୍ ହିଁ କାମ କରୁଛନ୍ତି ।

ମୁଖ୍ୟ ପୋଲିସ୍ ଅଧିକାରୀ ତାଙ୍କୁ ନାନା ପ୍ରଶ୍ନ କଲେ । କୁମାର ନିଜ ସଫେଇରେ ଯାହା ସବୁ କହିଲେ ସେଥିରେ ସେ ସନ୍ତୁଷ୍ଟ ହୋଇ ପାରିଲେନି । ଗୋଟେ ଅତ୍ୟାଧୁନିକ ଯନ୍ତ୍ର ସାହାଯ୍ୟରେ ସେ କାହା ସହିତ ଯୋଗାଯୋଗ କଲେ । ଅଳ୍ପ ସମୟରେ ଥାନା ଆଗରେ ଓହ୍ଲାଇଲା ଗୋଟେ ସ୍ୱୟଂଚାଳିତ ଛୋଟ ହେଲିକେପ୍ଟର୍ । ପୋଲିସ୍‌ମୁଖ୍ୟ ସେଥିରେ କୁମାରଙ୍କୁ ବସିବାକୁ ନିର୍ଦ୍ଦେଶ ଦେଲେ । କୁମାରଙ୍କୁ ନେଇ ଚାଳକବହୀନ ହେଲିକପ୍ଟର୍ ଉଡ଼ିବାକୁ ଲାଗିଲା ଦିଲ୍ଲୀ ମହାନଗରୀ ଉପରେ ।

ରୋବୋପୋଲିସ୍, ସ୍ୱୟଂଚାଳିତ ବ୍ୟୋମଯାନ ଓ ଦିଲ୍ଲୀ ମହାନଗରୀର ଅଦ୍ଭୁତ ଚାକଚକ୍ୟ ଦେଖି କୁମାର୍ ନିଜ ଆଖିକୁ ବିଶ୍ୱାସ କରିପାରୁନଥିଲେ । ହେଲିକପ୍ଟର୍ ଯେଉଁଠି ଓହ୍ଲାଇଲା, ସେ ଥିଲା ଗୋଟେ ବିରାଟ ପ୍ରାସାଦ! ସଙ୍ଗେ ସଙ୍ଗେ ଡାକ୍ତର, ଗବେଷକ, ବିଜ୍ଞାନୀ, ସାମ୍ବାଦିକ, ଫଟୋଗ୍ରାଫର୍ ଓ ଟି.ଭି. ବାଲା ଆସି ତାଙ୍କୁ ଘେରିଗଲେ । ନାନାଦି ପ୍ରଶ୍ନ ପଚାରିବାକୁ ଲାଗିଲେ । କୁମାର ନିଜ ପରିଚୟ ଦେବାକୁ ଯାଇ କହିଲେ, "ଦେଖନ୍ତୁ, ମୋ' ନାଁ ଭବେଶ୍ କୁମାର । ପେସାରେ ମୁଁ ଜଣେ ଡାକ୍ତର । ଘର, ଦକ୍ଷିଣଭାରତର କୋଚି ସହରରେ । ପ୍ରାୟ ଦୁଇ ଘଂଟା ତଳେ ମୁଁ ମୋ' ସ୍ତ୍ରୀ ଏବଂ ଝିଅ ସହିତ ସମୁଦ୍ର କୂଳରେ ବୁଲୁଥିଲି । ହଠାତ୍ ଗୋଟେ ଅଘଟଣ ଘଟିଗଲା! ଯାହା ଘଟିଯାଇଛି, ଶୁଣିଲେ ଆପଣମାନେ ମତେ ପାଗଳ କହିବେ!"

ସମସ୍ତେ ସମସ୍ୱରରେ ଚିତ୍କାର କଲେ, "କହନ୍ତୁ.....କହନ୍ତୁ....! କ'ଣ ଘଟିଲା"

କୁମାର୍ କହିଲେ, "ହଠାତ୍ ଗୋଟେ ଅଦ୍ଭୁତ ଆଲୋକ ଶକ୍ତି ମୋତେ ଟାଣିନେଲା । ଆଖି ପିଛୁଳାକେ ମୁଁ ଯାଇ ପହଂଚିଗଲି ଏଠୁ ଅଢ଼େଇ ଆଲୋକବର୍ଷ ଦୂରରେ ଥିବା ଗୋଟେ ଗ୍ରହ ପୃଷ୍ଠରେ । ସେଇଟା ଗୋଟେ ପ୍ରକାରର ଅଦ୍ଭୂତ ପ୍ରାଣୀମାନଙ୍କ ଗ୍ରହ । ସେଠାରେ ପୂର୍ବରୁ ପହଂଚିଥିବା ଜଣେ ଆମେରିକୀୟ ସାମ୍ବାଦିକ ଅଛନ୍ତି । ତାଙ୍କ ସହିତ ମୁଁ ସେଠାରେ ଦେଢ଼ ଘଂଟା କଟେଇଲି । ତା'ପରେ ସେ ପୁଣି ମୋତେ ସେହି ଆଲୋକଶକ୍ତି ବଳରେ ପଠାଇଦେଲେ ପୃଥିବୀ ପୃଷ୍ଠକୁ । ଦୁର୍ଭାଗ୍ୟକୁ ମୁଁ 'କୋଚି' ସହରରେ ପହଂଚିବା ପରିବର୍ତ୍ତେ ପହଂଚିଯାଇଛି ଆସି ଦିଲ୍ଲୀରେ ! ଏବେ ଆପଣମାନେ ଦୟାକରି ମୋତେ ମୋ' ନିଜ ସହରରେ ପହଂଚିବାପାଇଁ କିଛି ସହାୟତା କରନ୍ତୁ । ଘରେ ମୋ' ସ୍ତ୍ରୀ ଏବଂ ଝିଅ ବ୍ୟସ୍ତ ହେଉଥିବେ ।"

ଡ. କୁମାରଙ୍କ ବକ୍ତବ୍ୟ ଶୁଣି ସମସ୍ତେ ସ୍ତବ୍ଧ ! ସଙ୍ଗେସଙ୍ଗେ ତାଙ୍କପାଇଁ ଭଲ ପୋଷାକ ହଳେ ଯୋଗାଡ଼ କରାଗଲା । ସ୍ୱତନ୍ତ୍ର ହେଲିକେପ୍ଟରଟିଏ ଆସିଲା । କୁମାର ଏବଂ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ଧରି ହେଲିକେପ୍ଟର୍ ରାତାରାତି ଉଡ଼ିଲା କୋଚି ଅଭିମୁଖେ ।

ଭୋର୍ ଭୋର୍ ଡ. କୁମାର ପହଂଚିଗଲେ କୋଚି ସହରରେ; କିନ୍ତୁ ନିଜ ଆଖିକୁ ବିଶ୍ୱାସ କରି ପାରିଲେନି । ଗୋଟେ ରାତି ଭିତରେ ନିଜ ସହରର ଏଭଳି ପରିବର୍ତ୍ତନ ସିଏ କଳ୍ପନା ବି କରି ପାରୁନଥିଲେ ! ବହୁତ ଅନୁସନ୍ଧାନ ପରେ ନିଜ ଘରର ଠିକଣାଟି ପାଇଲେ; କିନ୍ତୁ ଦୁଃଖର କଥା, ଘରେ ସ୍ତ୍ରୀ କିମ୍ବା ଝିଅକୁ ପାଇଲେନାହିଁ । ବାରଣ୍ଡା ଉପରେ ଜଣେ ଅଶୀବର୍ଷିୟା ବୁଢ଼ୀ ଆକାଶକୁ ଅନେଇ ଲେଞ୍ଚୁରା ଗଡ଼େଇ ବସିଥିଲା । କୁମାର୍ ତାଙ୍କୁ ପଚାରିଲେ, "ମା' ଏ ଘରେ ମୋ' ସ୍ତ୍ରୀ ଶୋଭା ଆଉ ଏନି ବୋଲି ଟିକି ଝିଅଟିଏ ରହୁଥିଲେ । ସେମାନଙ୍କ ବିଷୟରେ କହିପାରିବ ?"

ଯୁବକଙ୍କ କଥାରୁ ବୁଢ଼ୀ କିଛି ବୁଝିପାରିଲାନି । ସେ ତାଙ୍କୁ ଏବଂ ତାଙ୍କ ହାତରେ ଥିବା କଣ୍ଢେଇଟିକୁ ବଲବଲ କରି ଅନେଇଲା କେବଳ । ବୁଢ଼ୀକୁ ଖୁସି କରିବାପାଇଁ କୁମାର ତା' ହାତକୁ କଣ୍ଢେଇଟା ଦେଲେ ଏବଂ ପୁଣି ସେହି ପ୍ରଶ୍ନ ପଚାରିଲେ । ବୁଢ଼ୀର ପେଟୁଆ ଆଖିରେ ଫୁଟି ଉଠିଲା ଆଖିଏ ବିସ୍ମୟ ! ଓଠ ତା'ର ଥରିବାକୁ ଲାଗିଲା ।

କୁମାରଙ୍କ ସହିତ ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଯାଇଥିଲେ ସେମାନେ ଆଉ ଚୁପ୍ ରହି ପାରିଲେନି । ସେମାନଙ୍କ ମଧ୍ୟରୁ ଜଣେ କୁମାରଙ୍କୁ ଡାକି କହିଲେ, "ଡ. କୁମାର, ଆପଣ ବିଜ୍ଞାନର ଗୋଟେ ଯୁଗାନ୍ତକାରୀ ତଥ୍ୟର ସତ୍ୟତା ପ୍ରମାଣ କରି ଦେଇଛନ୍ତି ! ଯେଉଁ ବୁଢ଼ୀକୁ ଆପଣ ପଚାରୁଛନ୍ତି, ସିଏ ହିଁ ଆପଣଙ୍କ କୁନି ଝିଅ 'ଏନି' !!

*ସୁରେନ୍ଦ୍ର ନାଥ ସାହୁ*

"ମାନେ..!!!" ଡ. କୁମାର କଥାର ରହସ୍ୟ ବୁଝି ନପାରି ବିସ୍ମୟରେ ତାଙ୍କୁ ଚାହିଁ ରହିଲେ। ଭଦ୍ରବ୍ୟକ୍ତି କହିଲେ, "ଆପଣ ୧୯୬୫ ମସିହାରେ ପୃଥିବୀ ପୃଷ୍ଠରୁ ଅନ୍ତର୍ଦ୍ଧାନ ହେଇଥିଲେ। ଆଉ ଏବେ ଚାଲିଛି ୨୦୪୦ ମସିହା। ଅର୍ଥାତ୍ ପୃଥିବୀର ସମୟ ଗଣନା ଅନୁସାରେ ଆପଣ ଦୀର୍ଘ ପଂଚସ୍ତରୀ ବର୍ଷ ପରେ ଫେରିଛନ୍ତି ପୃଥିବୀକୁ! କିନ୍ତୁ ଆପଣଙ୍କ ହିସାବ କହୁଚି, ଆପଣ ଅନ୍ତର୍ହିତ ହେଇଥିଲେ ମାତ୍ର ଦୁଇଘଂଟା ପୂର୍ବେ। ଆପଣ ତ ଜ୍ଞାନୀ ଲୋକ। ମହାବିଜ୍ଞାନୀ ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ ସିଦ୍ଧାନ୍ତ ଉପରେ ଆପଣଙ୍କ ଜ୍ଞାନ ନିଶ୍ଚୟ ଥିବ। ତାଙ୍କ ତଥ୍ୟ କହେ, ଆଲୋକବେଗ କିମ୍ବା ତା'ଠାରୁ ବହୁଗୁଣ ଅଧିକ ବେଗରେ ଯଦି ଜଣେ ଲୋକ ଗତି କରିବ, ତା' ହେଲେ ସମୟର ଗତି ତା'ପାଇଁ ଅତି ଧୀର କିମ୍ବା ସ୍ଥିର ହୋଇଯିବ। ଆପଣତ କଳ୍ପନାତୀତ ବେଗରେ ଅଢ଼େଇ ଆଲୋକବର୍ଷ ଯିବା ଆସିବା କଲେ। ସେଥିପାଇଁ ଲାଗିଲା ଆପଣଙ୍କୁ ମାତ୍ର ଅଧଘଂଟା; କିନ୍ତୁ ତା' ଭିତରେ ପୃଥିବୀ ପୃଷ୍ଠରେ ଅତୀତ ହେଇଯାଇଛି ପଂଚସ୍ତରୀ ବର୍ଷ! ପାଂଚ ବର୍ଷର ଯେଉଁ କୁନି ଝିଅଟିକୁ ଆପଣ ଛାଡ଼ି ଯାଇଥିଲେ, ସେ ଆଜି ଅଶୀ ବର୍ଷର ବୁଢ଼ୀ! ଅଥଚ୍ ଆପଣ ଏବେ ବି ପଇଁତିରିଶି ବର୍ଷର ଯୁବକ! ଯା' ଠାରୁ ଅଧିକ ବିସ୍ମୟକର ଘଟଣା ଆଉ କ'ଣ ହେଇପାରେ?

ସମଗ୍ର ଘଟଣା ହୃଦୟଙ୍ଗମ କରିବା ପରେ ଡ. କୁମାର କିଛି ସମୟ ପାଇଁ ସ୍ଥାଣୁ ପାଲଟିଗଲେ। ତା'ପରେ ସେ ତାଙ୍କ ଅଶୀ ବର୍ଷୀୟା ଝିଅକୁ ସ୍ନେହ ଓ ଆବେଗରେ ଛାତିରେ ଚାପିଧରି ସବୁ ରହସ୍ୟର ସ୍ରଷ୍ଟା ପରମପିତାଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଇଲେ!



# ରହସ୍ୟମୟୀ ରୋମାନି

ସେଦିନ 'ଆର୍କ୍-ଇଣ୍ଡିଆ' (ଆର୍ଯ୍ୟମିତ୍ର ରୋବୋଟ୍ ସେଣ୍ଟର, ଇଣ୍ଡିଆ)ର ରୋବୋଟ୍ ବିଶେଷଜ୍ଞ ପ୍ରଫେସର୍ ରୋହିତ୍ ଶର୍ମାଙ୍କ ଚ୍ୟାମ୍ବରରେ ବସିଥିଲେ ତାଙ୍କ କଲେଜଦିନର ବନ୍ଧୁ ଡକ୍ଟର୍ ଅତନୁ ମହାପାତ୍ର । ଅତନୁ କଲେଜ୍ ପଢ଼ା ଶେଷ ପରେ କାଲିଫର୍ଣ୍ଣିଆ ଚାଲିଗଲେ । ସେଠାରେ ପଢ଼ିଲେ ଡାକ୍ତରୀପାଠ ଏବଂ ପ୍ରାୟ କୋଡ଼ିଏ ବର୍ଷ ଧରି ସିଏ କାଲିଫର୍ଣ୍ଣିଆର ନାଗରିକ । କିଛି ବିଶେଷ କାମରେ ମାତ୍ର ତିନିଦିନ ପାଇଁ ଆସିଛନ୍ତି ଭାରତ ! ତା' ଭିତରୁ ସମୟ ବାହାର କରି ଆସି ପହଂଚିଯାଇଛନ୍ତି ବନ୍ଧୁ ରୋହିତ୍‌ଙ୍କ ସହିତ ମିଶିବାପାଇଁ । ଦୀର୍ଘବର୍ଷ ପରେ ଦୁଇ ବନ୍ଧୁଙ୍କ ଦେଖା । ରୋବୋଟିକ୍ ବିଜ୍ଞାନ ଓ କାରିଗରୀ ବିଦ୍ୟାରେ ନୂଆ ନୂଆ ପ୍ରୟୋଗକୁ ନେଇ ଦିନରାତି ଗବେଷଣାରେ ବ୍ୟସ୍ତ ରହୁଥିବା ପ୍ରଫେସର୍ ରୋହିତ୍ ଆଜି ବନ୍ଧୁ ଅତନୁଙ୍କ ପାଇଁ କିଛି ସମୟ ବାହାର କରି ପାଖରେ ବସିଛନ୍ତି । ଦୁଇବନ୍ଧୁ କଲେଜ ଜୀବନର ସ୍ମୃତିକୁ ନେଇ ଆଳାପରତ ।

"ପ୍ରଫେସର୍ ! ଆପଣଙ୍କପାଇଁ ଗୋଟେ ଅର୍ଜେଣ୍ଟ୍ କଲ୍ ଅଛି ଆମେରିକାର 'ଟେକ୍‌ସାସ୍'ରୁ । କ୍ଲାଏଣ୍ଟ୍ ଆମର କିଛି ନୂଆ ପ୍ରଡ଼କ୍ଟ ସମ୍ପର୍କରେ କଥା ହେବେ । ଲିଙ୍କ୍ ଦେବି କି ?" ପ୍ରଫେସର୍ ରୋହିତ୍ ଶର୍ମାଙ୍କ ଇଣ୍ଟରକମ୍‌ରୁ ଶୁଭିଲା ପର୍ସନାଲ୍ ସେକ୍ରେଟାରୀ ମିସ୍ ରୋମାନିଙ୍କ ମଧୁର କଣ୍ଠସ୍ୱର !

ଆଳାପ ସ୍ଥଗିତ ରଖି ପ୍ରଫେସର୍ କହିଲେ, "ଲିଙ୍କ୍ ଦିଅ; କିନ୍ତୁ ତା' ଆଗରୁ ଆମ 'ଏମ୍.ଟି.ଆର୍' ଡିଭାଇସ୍ ସଂଯୋଗ କରିଦିଅ । କାରଣ ଇଏ ନିଶ୍ଚୟ ଜଣେ ନୂଆ ଗ୍ରାହକ ହେଇଥିବେ । ତାଙ୍କର ବରାଦ କ'ଣ, ସେଇଟା ପ୍ରଥମରୁ ରେକର୍ଡ଼ ହେଇ ଆମ ପାଖରେ ରହିବା ଦରକାର !"

ଅତନୁ ପେସାରେ ଡାକ୍ତର ହେଲେ ମଧ୍ୟ ରୋବୋଟିକ୍ ଟେକ୍‌ନୋଲଜି ବିଷୟରେ ଅଳ୍ପକିଛି ଧାରଣା ଅଛି ଏବଂ ଅଧିକ ଜାଣିବାର କୌତୂହଳ ରହିଛି ମନରେ ! ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ରୋବୋଟିକ୍ ଟେକ୍‌ନୋଲଜିର ଭୂମିକା ବେଶ୍ ମହତ୍ୱପୂର୍ଣ୍ଣ ! ତେଣୁ ବିଶେଷଜ୍ଞ ବନ୍ଧୁ ରୋହିତ୍‌ଙ୍କ ପାଖରୁ କିଛି ନୂଆ ତଥ୍ୟ ସଂଗ୍ରହ କରିବା ତାଙ୍କର ଅଭିପ୍ରାୟ !

*ସୁରେନ୍ଦ୍ର ନାଥ ସାହୁ*

ଅତନୁ ପଚାରିଲେ, "ପ୍ରଫେସର୍ ! ଆପଣଙ୍କ କାରଖାନାରେ ନିର୍ମାଣ ହେଉଥିବା ରୋବୋଟ୍ କ'ଣ ଟେକସାସ୍ ବାଲା ବି କିଣି ନିଅନ୍ତି ?"

ପ୍ରଫେସର୍ ରୋହିତ୍ ନିରବରେ କେବଳ ସମ୍ମତି ସୂଚକ ହସଟିଏ ହସିଲେ । ତାଙ୍କ ଇଣ୍ଟରକମ୍ ସଂଯୋଗ ହେଇସାରିଥିଲା । ତେଣୁ ସେ ଅତନୁଙ୍କ ପାଖରୁ ଇସାରାରେ କ୍ଷମା ମାଗିନେଇ ଫୋନ୍ ଉଠେଇଲେ,

"ହେଲୋ...ସୁପ୍ରଭାତ ଆଜ୍ଞା ! 'ଆର୍କ-ଇଣ୍ଡିଆ'ରୁ ମୁଁ ପ୍ରଫେସର୍ ରୋହିତ୍ ଶର୍ମା କହୁଚି !"

ଅପରପଟୁ ଶୁଭିଲା, "ଶୁଭସଂଧ୍ୟା ମହାଶୟ ! ଆପଣଙ୍କ ସକାଳ ଆମପାଇଁ ସଂଧ୍ୟା, ମୁଁ ଟେକସାସ୍‌ରୁ କହୁଚି । ଆମେରିକାର ବିଖ୍ୟାତ କାର ନିର୍ମାତା 'ଓଭାଲ୍ ଅଟୋଟେକ୍'ର ସି.ଏମ.ଡି, ଜର୍ଜ ହଡ଼ସନ୍ !"

"କୁହନ୍ତୁ ହଡ଼ସନ୍ ମହାଶୟ ! ଆମେ ଆପଣଙ୍କର କି'ପ୍ରକାର ସେବା କରିପାରୁ ?"

"ପ୍ରଫେସର୍ ଶର୍ମା ! ଆମ ଆଟୋମୋବାଇଲ୍ ସେଣ୍ଟର୍ ପାଇଁ ପାଞ୍ଚଜଣ ରୋବୋଟ୍ ଇଂଜିନିୟର ଦରକାର କରୁଛୁ । ସମସ୍ତେ ଆଟୋମୋବାଇଲ୍ ଇଂଜିନିୟରିଂରେ ଦକ୍ଷତା ହାସଲ କରିଥିବା ଦରକାର । ଯୋଗାଇ ପାରିବେ ?"

"ନିଶ୍ଚୟ । ତେବେ ପ୍ରଥମେ ଆପଣଙ୍କ ଅଧିଯାଚନା ଚିଠି ପଠାନ୍ତୁ । ତା'ପରେ ହିଁ ଆମେ କହିପାରିବୁ ଆମ ପ୍ରସ୍ତୁତ ରୋବୋଟ୍‌ଗୁଡ଼ିକର ମୂଲ୍ୟ ଆଉ କେବେସୁଦ୍ଧା ସେଗୁଡ଼ିକୁ ଆମେ ପ୍ରସ୍ତୁତ କରିପାରିବୁ !"

"ଅବଶ୍ୟ ! ଅତି ଶୀଘ୍ର ଆମ ଚିଠି ଆପଣଙ୍କ ପାଖରେ ପହଂଚିଯିବ । ଆପଣ ତାକୁ ଅନୁଧ୍ୟାନ କରି ଆମ ସହିତ ଯୋଗାଯୋଗ କରିବେ ବୋଲି ଆଶା କରୁଛି ।"

"ନିଶ୍ଚୟ ! ଏବେ ପାଇଁ ଫୋନ୍ ରଖୁଛି ମିଷ୍ଟର୍ ହଡ଼ସନ୍ ! ଆପଣଙ୍କ ଚିଠି ଅନୁଧ୍ୟାନ କଲାପରେ ଆମେ ପୁଣି କଥା ହେବା । ଧନ୍ୟବାଦ !"

"ଧନ୍ୟବାଦ ପ୍ରଫେସର୍ ଶର୍ମା !"

ଏତିକିରେ ଯୋଗାଯୋଗ କଟିଗଲା ।

'ଆର୍କଇଣ୍ଡିଆ' ଭଳି ଗୋଟେ ଭାରତୀୟ ରୋବୋଟ୍ ଉତ୍ପାଦନକାରୀ ସଂସ୍ଥା ଆମେରିକା ଭଳି ଗୋଟେ ଅତି ଉନ୍ନତ ଓ ବିଜ୍ଞାନରେ ଅଗ୍ରଣୀ ଦେଶକୁ ବି ରୋବୋଟ୍ ଯୋଗାଣ କରୁଛି, ଏ କଥାଟି ଡ.ଅତନୁଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଥିଲା ! ଅବଶ୍ୟ ଏବେଏବେ ଫୋନ୍‌ରେ ହୋଇଥିବା ଆଳାପରୁ ସିଏ ପାଇ ସାରିଥିଲେ ଏହି ପ୍ରଶ୍ନର ଉତ୍ତର ! କିନ୍ତୁ ସେ ଆଶ୍ଚର୍ଯ୍ୟ ହେଲେ ଏଥିପାଇଁ ଯେ, ପ୍ରଫେସର୍ ଶର୍ମା 'ଜର୍ଜ ହଡ଼ସନ୍'ଙ୍କ ସହିତ

ଫୋନରେ କଥା ହେଲେ ଅନର୍ଗଳ ଓଡ଼ିଆରେ ! ଜଣେ ଆମେରିକାନ୍ କେମିତି ଏଡ଼େ ସହଜରେ ଓଡ଼ିଆ ବୁଝିଗଲେ ଏବଂ ନିଜେ ମଧ୍ୟ ଚମତ୍କାର ଓଡ଼ିଆରେ କଥା ହେଲେ, ସେ ରହସ୍ୟ ଅତନୁ ବୁଝି ପାରୁନଥିଲେ ?

ତାଙ୍କ ପ୍ରଶ୍ନିଳ ଆଖିର ଭାଷା କିନ୍ତୁ ବୁଝିପାରିଥିଲେ ପ୍ରଫେସର୍ ରୋହିତ୍ ! ସେ କହିଲେ, "ଦେଖ ମି. ଅତନୁ ! ଯା' ଭିତରେ ଟେଲି-ଯୋଗାଯୋଗ କ୍ଷେତ୍ରରେ ଆମେ ଆଉ ପାଦେ ଆଗକୁ ଯାଇଛୁ । ଆମ ସଂସ୍ଥାର ବିଜ୍ଞାନୀମାନେ ଗୋଟେ ଅଭିନବ ଯନ୍ତ୍ର ଉଦ୍ଭାବନ କରିଛନ୍ତି, ଯାହାର ନାଁ 'ମଲ୍ଟି ଲିଙ୍ଗୁଆଲ୍ ଭଏସ୍ ଟ୍ରାନ୍ସ-ରେକର୍ଡ଼ର' ! ସଂକ୍ଷେପରେ 'ଏମ୍.ଟି.ଆର୍' ଡିଭାଇସ୍ । ଏବେ ଆମେରିକାର ଟେକ୍ସାସରୁ ଯେଉଁ ଗ୍ରାହକ ଜଣକ ମୋ' ସାଥିରେ କଥା ହେଲେ, ସିଏ ମୋଟେ ଓଡ଼ିଆ ଜାଣନ୍ତିନି କି ଓଡ଼ିଆରେ ପଦେ ବି କହି ନାହାନ୍ତି । ଯାହା କହିଲେ, ନିରୋଳା ଇଂରାଜୀରେ । କିନ୍ତୁ ଆମେ ତାକୁ ଶୁଣିଲେ ଓଡ଼ିଆରେ ! ଏ ହେଲା ଆମ 'ଏମ୍.ଟି.ଆର୍'ର କରାମତି । ଇଂରାଜୀରେ କୁହାଯାଉଥିବା ଶବ୍ଦ ବା ଭାଷାକୁ ଯେ କୌଣସି ଭାରତୀୟ ଭାଷାରେ ଏବଂ ଯେ କୌଣସି ଭାରତୀୟ ଭାଷାରେ କୁହାଯାଉଥିବା ଶବ୍ଦକୁ ଇଂରାଜୀରେ ତତ୍କାଳ ଅନୁବାଦ କରି ରେକର୍ଡ଼ିଙ୍ଗ୍ କରିବା କାମ ଏହି ଡିଭାଇସ୍‌ର । ହଡ଼ସନ୍‌ଙ୍କ ଇଂରାଜୀ କଥାଗୁଡ଼ିକ ଆମେ ଏଠି ଯେମିତି ଓଡ଼ିଆରେ ଶୁଣିଲେ, ମୁଁ କହିଥିବା ଓଡ଼ିଆ କଥାକୁ ମଧ୍ୟ ସେ ତାଙ୍କ ଟେଲିଫୋନରୁ ଶୁଦ୍ଧ ଇଂରାଜୀରେ ଶୁଣିଥିବେ । କ'ଣ ଆଶ୍ଚର୍ଯ୍ୟ ଲାଗୁଚି ନା ?" ସ୍ମିତ ହସି ପଚାରିଲେ ପ୍ରଫେସର୍ ଶର୍ମା ।

"ଆଶ୍ଚର୍ଯ୍ୟ ଲାଗିଲେ ବି ଆପଣଙ୍କ ଭଳି ମହାବିଜ୍ଞାନୀଙ୍କ ମୁହଁରେ ଏ ତଥ୍ୟ ମୋଟେ ମିଛ ନ'ହେଇପାରେ; କିନ୍ତୁ ଭବିଷ୍ୟତରେ ଦିନେ ଏଭଳି ଯନ୍ତ୍ରର ବ୍ୟବହାର ହେବ ବୋଲି କେହି କେବେ କଳ୍ପନା କରିଥିଲେ ?"

"ଅତୀତରେ କଳ୍ପନା କରିଥିଲେ ବୋଲି ଆଜିର ବିଜ୍ଞାନ ତାକୁ ବାସ୍ତବତାର ରୂପ ଦେଇଛି । କଥାରେ ଅଛି, କାଲିର ସ୍ୱପ୍ନ ହିଁ ଆଜିର ବୈଜ୍ଞାନିକ ସଫଳତାର ଆଧାରଶୀଳା ।" କହିଲେ ପ୍ରଫେସର୍ ରୋହିତ୍ ।

"ସୁପ୍ରଭାତ ଡ. ଅତନୁ ମହାପାତ୍ର !" ଅକସ୍ମାତ୍ ଅତନୁଙ୍କ ପଶ୍ଚାତ୍‌ଭାଗରୁ ଶୁଣାଗଲା ଗୋଟେ ମଧୁର ସଂଭାଷଣ ! ସେ କଂଠସ୍ୱରର ଆକର୍ଷଣରେ ଅତନୁଙ୍କ ରିଭଲ୍‌ଭିଂ ଚେୟାର ଚକ୍ରବତ୍ ଶହେ ଅଶି ଡିଗ୍ରି ଘୂରିଗଲା । ସେ ମୁଣ୍ଡ ଉଠାଇ ଦେଖିବା ବେଳକୁ ତାଙ୍କ ସାମନାରେ ଠିଆ ହେଇଥିଲେ ଜଣେ ଦିବ୍ୟସୁନ୍ଦରୀ ଲଳନା ! ଓଠରେ ସ୍ମିତ ହସ ! ତାଙ୍କ ଆଖିରେ ଆଖି ଲାଗିବାମାତ୍ରେ ଅତନୁଙ୍କ ଛାତି ଭିତରେ ଖେଳିଗଲା ଗୋଟେ ମୃଦୁ ଭୂକମ୍ପ ! ମନେ ହେଲା

ଝିଅଟିକୁ ସେ ଅତୀତରେ କେବେ କେଉଁଠି ଦେଖିଛନ୍ତି ! ସଦ୍ୟ ଭାଟିରୁ ବାହାରିଥିବା ତମ୍ବା ପିତୁଳା ଭଳି ଦାଉଦାଉ ଜଳୁଥିଲା ତା'ଦେହ ! ରକ୍ତିମ ଓଠରୁ ଝରିପଡୁଥିଲା ହସର ମଧୁର ଲାଭା ! ଗୋଟିଏ ପଲକରେ ପରକୁ ଆପଣାର କରିନେଲା ଭଳି ଆଖିର ଭାଷା ! ଆକର୍ଷଣୀୟ ସ୍ଫିତ ବକ୍ଷ ଓ କ୍ଷୀଣ କଟି ସମ୍ବଳିତ ତା'ଦେହକୁ ଚିପି ଧରିଥିଲା ଈଷତ୍ ବାଦାମି ରଙ୍ଗର ବ୍ଲାଉଜ୍ ଓ କଳା ପେଟିକୋଟ୍ ! ହାତରେ ଥିଲା ତା'ର ଗୋଟେ ସ୍ଫଟିକ-ଶୁଭ୍ର ଚାହା ଟ୍ରେ । ତା' ଉପରେ ଦୁଇଟା ଅଣ୍ଡାକାରର ଚାହା ପିଆଲା ଏବଂ ଖଣ୍ଡେ ବନ୍ଦ ଲଫାପା ।। ଚାହା ପିଆଲାକୁ ସେ ଟେବୁଲ ଉପରେ ରଖି ଲଫାପାଟିକୁ ବଢ଼େଇଦେଲା ପ୍ରଫେସର୍ ଶର୍ମାଙ୍କ ହାତକୁ । "ସାର୍ ! ଆମ ଜାପାନ୍ କଷ୍ଟମର୍‌ଙ୍କ ଫିଡ୍‌ବ୍ୟାକ୍ ଲେଟର୍ !" ଏତିକି କହିବା ସହିତ ଅତନୁଙ୍କ ଉପରକୁ ପାଖୁଡ଼ାଏ ସ୍ମିତ ହସ ଫୋପାଡ଼ି ଦେଇ ଚାଲିଗଲା ସେ ଅଦ୍ଭୁତ ସୁନ୍ଦରୀ ! ଅତନୁ ବିଚରା ତାକୁ ମନ୍ତ୍ରମୁଗ୍ଧ ଦୃଷ୍ଟିରେ କେବଳ ଅନାଇ ରହିଥିଲେ ପଛରୁ । ପ୍ରଫେସର୍ ରୋହିତ୍ ଲଫାପା ମୁହଁକୁ କଇଁଚିରେ କାଟୁ କାଟୁ ପରିହାସ ଛଳରେ ପଚାରିଲେ, "କ'ଣ ଡକ୍ଟର୍ ! ମୋ' ପର୍ସନାଲ୍ ସେକ୍ରେଟାରୀ 'ରୋମାନି'ଙ୍କୁ ତମର ପସନ୍ଦ ହେଇଗଲା କି ?"

ଅତନୁ କହିଲେ,"ପ୍ରଫେସର୍ ! ଆମ କଲେଜ ଜୀବନର ଶେଷ ବର୍ଷରେ ଜଏନ୍ କରି ସମଗ୍ର କଲେଜ କ୍ୟାମ୍ପସ୍‌ରେ କାମନାର ନିଆଁ ଲଗେଇଦେଇଥିବା ବଙ୍ଗସୁନ୍ଦରୀ 'ମାନିନୀ ଘୋଷାଲ୍'କୁ ନିଶ୍ଚୟ ତୁମେ ଭୁଲିନଥିବ । ଇଏ ତ 'ମାନିନୀ ଘୋଷାଲ୍'ର ସ୍କାନ୍ କପି ଭଳି ମନେ ହଉଚି ।" ଏତିକି କହିଲାବେଳକୁ ଅତନୁଙ୍କ ଆଖିରୁ ଝରିପଡୁଥିଲା ବିନ୍ଦୁବିନ୍ଦୁ ବିସ୍ମୟ !

ରୋହିତ୍ ମୃଦୁ ହସି କହିଲେ, "ଆରେ ବାବା ! ମୁଁ ଜାଣିଛି, ମାନିନୀ ପ୍ରତି ତମର ବେଶ୍ ଦୁର୍ବଳତା ଥିଲା । ଯାହାକୁ କହନ୍ତି, ଏକତରଫା ପ୍ରେମ ! ତା' ସ୍ମୃତିକୁ ସାଇତି ରଖିବା ପାଇଁ ତମେ ବିବାହ ନ'କରି ଚିରକୁମାର ରହିଗଲ । ଆଜି ବି ତମେ ବୋଧେ ତାକୁ ଝୁରି ହଉଚ ! ହେଲେ ମାନିନୀ ଏବେ ଦରବୁଢ଼ୀ ହେଇ ପୁଞ୍ଜାଏ ପିଲାର ମା'ହେବଣି । ରୋମାନିକୁ ତା' ସହିତ କାହିଁକି ତୁଳନା କରୁଛ ?"

"ସେ ଯାହା ବି ହେଉ ପ୍ରଫେସର୍, ମାନିନୀକୁ କେନ୍ଦ୍ର କରି କଲେଜ୍ ଜୀବନର ସେ ମୁହୂର୍ତ୍ତଗୁଡ଼ିକୁ ତମେ ଭୁଲିନଥିବ କି ମୁଁ ବି ଭୁଲିନି । ସତ କହିବାକୁ ଗଲେ ତା'ଭଳି ସୁନ୍ଦରୀ ଝିଅ ମୁଁ ଆଜିଯାଏ କୋଉଠି ଦେଖିନଥିଲି । ଆଜି ତୁମ ସେକ୍ରେଟାରୀ ରୋମାନିକୁ ଦେଖିବା ପରେ ସେ ସ୍ମୃତିର ବୀଜ ମୋ' ଛାତି ଭିତରେ ପୁଣି ଅଙ୍କୁରିତ ହେବାକୁ ଆରମ୍ଭ କରୁଛି ।"

"ତା'ମାନେ..... ? ମନେ ହଉଚି ରୋମାନି ସହିତ ଟିକିଏ ଅନ୍ତରଙ୍ଗ ଆଳାପ କରିବାର ଅଭିଳାଷ ମନରେ ତମର ଗଜେଇଲାଣି । ଠିକ୍ ଅଛି, ତା'ବନ୍ଦୋବସ୍ତ ଆମେ କରିଦେବା ।

ତେବେ ମି. ଅତନୁ! ତମେ ମୋ' ପାଖକୁ ଏତେ ଦିନ ପରେ ଆସିଲ 'ରୋବୋଟ୍ ଟେକ୍‌ନୋଲଜି' ସଂପର୍କରେ ଜାଣିବାର କୌତୂହଳ ନେଇ । ହେଲେ ଦୁଃଖର କଥା, ମୁଁ ତମପାଇଁ ସମୟ ଦେଇପାରୁନି । ମତେ ଡାକରା ଆସିଲାଣି । ଗୋଟେ ଜରୁରୀ ମିଟିଂରେ ଯୋଗ ଦେବାପାଇଁ ଆମ ଅଣ୍ଡରଗ୍ରାଉଣ୍ଡ କନଫରାନ୍‌ସ ହଲ୍‌କୁ ଏଇକ୍ଷଣି ଯିବାକୁ ପଡ଼ିବ । ତା' ପରେ ଚାଲିବ ରାତି ଅଧ ପର୍ଯ୍ୟନ୍ତ କାମ । ଆମ ପ୍ରଡ଼କ୍ଟ ର ଡ଼ିମାଣ୍ଡ ଅନୁସାରେ ସଂସ୍ଥାରେ କାମଭିଡ଼ ଏତେ ବଢ଼ିଲାଣି ଯେ, ମୁଁ ନିଜପାଇଁ ବି ସମୟ ଦେଇପାରୁନି । ଘରେ ମୋ' ବୁଢ଼ୀ ମା'ରୋଗ ଶଯ୍ୟାରେ ପଡ଼ିଛି । ଘରଣୀ ସବୁବେଳେ ଖେଟ୍‌ଖେଟ୍! ତା'ସତ୍ୱେ ମୁଁ ଘର ପରିବାର ପାଇଁ ମୋଟେ ସମୟ ଦେଇପାରୁନି; କିନ୍ତୁ ଅତନୁ! ମୁଁ ତମକୁ କଦାପି ନିରାଶ କରିବିନି । ରୋବୋଟିକ୍ କାରିଗରୀ ସଂପର୍କରେ ତମେ ଯାହା ମୋ'ଠୁଁ ଜାଣିବାକୁ ଚାହୁଁଚ ଯଥାସଂଭବ ତଥ୍ୟ ତମକୁ ମୋ' ପର୍ସନାଲ ସେକ୍ରେଟାରୀ ରୋମାନି ଦେଇପାରିବେ! ମୁଁ ତାଙ୍କୁ ମେସେଜ୍ କରିଦେଇଛି । ସିଏ ଏବେ ଆସି ପହଂଚିବେ ଏବଂ ତମକୁ ନେଇଯିବେ ତାଙ୍କ ଚ୍ୟାମ୍ବରକୁ । ତମର ସବୁ ପ୍ରଶ୍ନର ଉତ୍ତର ତାଙ୍କ ପାଖରୁ ମିଳିଯିବ । ତା' ସାଥେସାଥେ ରୋମାନିଙ୍କ ସାନିଧ୍ୟ ପାଇଲେ ତମ ଅଭିଳାଷ ବି ମେଣ୍ଟିଯିବ । ଆଜି ସାରା ଦିନ ତମେ ରୋମାନିଙ୍କ ସହିତ କଟେଇବ । ଗପସପ କରିବ । ତା'ଙ୍କ ସାଙ୍ଗରେ ଲଂଚ କରିବ । ଭାବି ନବ, ତମ ସ୍ୱପ୍ନର ମାନିନୀ ଘୋଷାଲ୍ ଆଜି ତମ ପାଖରେ! କ'ଣ...ତମେ ଖୁସି ତ?"

ଅତନୁ ଅବଶ୍ୟ ଖୁସି ହେଲେ; କିନ୍ତୁ ମନରେ ତାଙ୍କର ବାରମ୍ବାର ପ୍ରଶ୍ନ ଉଠୁଥିଲା, ସତରେ ରୋମାନି ନାମ୍ନୀ ଏ ସୁନ୍ଦରୀ ଝିଅଟି କିଏ ହେଇପାରେ? ମାନିନୀର ଯଦି ଝିଅଟେ ଥାଏ, ସିଏ ନିଶ୍ଚୟ ୟା'ରି ବୟସର ହେବ । ଅନେକ ପରିବାରରେ ମା ଝିଅଙ୍କ ଚେହେରାର ସାମଞ୍ଜସ୍ୟ ରହେ । ଉଭୟଙ୍କ ନାଆଁରେ ବି ତ କିଛିଟା ସମାନତା ଅଛି । ତେବେ ରୋମାନି କ'ଣ ମାନିନୀର ଝିଅ? ତା' ହେଲେ ମାନିନୀ କେଉଁଠି? ଅତନୁଙ୍କ ମନରେ ଉଠିଥିବା ପ୍ରଶ୍ନଗୁଡ଼ିକ ମନରେ ହିଁ ରହିଗଲା । ସୁବିଧା ଦେଖି ସେ ୟା'ର ରହସ୍ୟ ନିଶ୍ଚୟ ପ୍ରଫେସରଙ୍କୁ ପଚାରିବେ,ଏହି ଅଭିଳାଷ ମନରେ ରଖି ଆପାତତଃ ଚୁପ୍ ରହିଲେ ସେ ।

ଇତି ମଧ୍ୟରେ ପ୍ରଫେସର୍ ରୋହିତ୍ ଶର୍ମା ରୋମାନି ଦେଇ ଯାଇଥିବା ଲଫାପା ଭିତରୁ ଚିଠି ଖଣ୍ଡିକ କାଢ଼ି ପଢ଼ିଲେ ଏବଂ ପ୍ରସନ୍ନ ଦିଶିଲେ । ଅତନୁ ପ୍ରଶ୍ନ କଲେ, "ନିଶ୍ଚୟ ଭଲ ଖବର ହେଇଥିବ!"

"ହଁ, ଜାପାନର ଗୋଟେ ଆଧ୍ୟାତ୍ମିକ ଶିକ୍ଷାକେନ୍ଦ୍ରକୁ ଆମେ ଦୁଇଜଣଙ୍କୁ 'ରୋବୋ-ଟିଚର୍' ଚାରି ବର୍ଷ ପାଇଁ ପ୍ରୋଗ୍ରାମିଂ କରି ଦେଇଥିଲୁ, ସେମାନଙ୍କ କାର୍ଯ୍ୟଦକ୍ଷତା ଉପରେ ସେଠିକା

ଶିକ୍ଷାବିଭାଗ ଖୁବ୍ ସନ୍ତୁଷ୍ଟ । ସେମାନେ ଆମକୁ ଆଉ କିଛି 'ରୋବୋ-ଟିଚର୍' ପାଇଁ ଅର୍ଡ଼ର ଦେଇପାରନ୍ତି ।"

ଅତନୁ ଅଚାନକ ନିଜ କାନ୍ଧ ଉପରେ କୋମଳ ସ୍ପର୍ଶ ଅନୁଭବ କରି ପଛକୁ ଅନେଇଲେ । ସେହି ମନଛୁଆଁ ହସ ସହିତ ପଛରେ ଠିଆ ହୋଇଥିଲେ ମିସ୍ ରୋମାନି ! "ଡ. ଅତନୁ! ଆପଣଙ୍କ ସେବାରେ କିଛି ସମୟ ଦେଇପାରିଲେ ମୁଁ ବହୁତ ଖୁସି ହେବି । ଦୟାକରି ମୋ' ସହିତ ମୋ' ଚ୍ୟାମ୍ବରକୁ ଆସନ୍ତୁ ।" ଓଠରେ ହସ ଅକ୍ଷୁଣ୍ଣ ରଖି ଅନୁରୋଧ କଲେ ରୋମାନି । ଅତନୁ ପ୍ରଫେସରଙ୍କ ଆଡ଼କୁ ଅନେଇବାରୁ ସେ ଆଖିରେ ଇଙ୍ଗିତ ଦେଲେ ରୋମାନିଙ୍କୁ ଅନୁସରଣ କରିବାପାଇଁ । ଡ. ଅତନୁ ଚେୟାର ଛାଡ଼ି ଉଠିଲେ ଏବଂ ବନ୍ଧୁଙ୍କୁ ଧନ୍ୟବାଦଟିଏ ଦେଇ ହାତ ମିଳେଇଲେ । ପ୍ରଫେସର୍ କହିଲେ, "ବନ୍ଧୁ ! ହୁଏତ ତୁମ ସହିତ ମୋ'ର ଆଉ ଦେଖା ହେଇନପାରେ ! କାଲି ତୁମେ କାଲିଫର୍ଣ୍ଣିଆ ଫେରିଯିବ । ପହଂଚିବା ପରେ ମୋତେ ଫୋନ୍ କରିପାର ।"

"ତୁମଭଳି ଜଣେ ବ୍ୟସ୍ତ ମଣିଷକୁ ଅନାବଶ୍ୟକ ଫୋନ୍ କରି ଡିସ୍‌ଟର୍ବ କରିବାକୁ ମୁଁ ଚାହେନି ବନ୍ଧୁ । ତେବେ ମିସ୍ ରୋମାନୀଙ୍କୁ ନେଇ ମୋ' ମନରେ ଯେଉଁ ପ୍ରଶ୍ନ ଉଠୁଚି, ସେ ସମ୍ପର୍କରେ ନିଶ୍ଚୟ କେବେ ଦିନେ କଥା ହେବା !"

ଡ. ଅତନୁଙ୍କ ଉତ୍ସୁକତା ଦେଖି ମିସ୍ ରୋମାନିଙ୍କ ଓଠ ଉପକୂଳରେ ଖେଳିଗଲା ଧାରେ ସଲ୍ଲଜ୍ଜ ହସର ତରଙ୍ଗ । ଲାଜରେ ସେ ମୁହଁ ପୋତିଲେ ଏବଂ ନିଜ ଚ୍ୟାମ୍ବର ଦିଗେ ଆଗେଇ ଚାଲିଲେ । ଅତନୁ ରୋମାନିଙ୍କୁ ଅନୁସରଣ କଲେ । ରୋମାନିଙ୍କ ପିଛା କରୁକରୁ ଅତନୁ ଭାବୁଥିଲେ ପଚିଶି ବର୍ଷ ତଳେ ସେ ମାନିନୀ ଘୋଷାଲ୍‌କୁ କେମିତି ପିଛା କରୁଥିଲେ, ସେଇକଥା ! ମାନିନୀର ଚାଲି ମଧ୍ୟ ଠିକ୍ ଏଇମିତି । ଏଇ ଚାଲି, ଏଇ ହସ, ଏଇ କଥାକୁହା ଆଖି । ଅତନୁ ସତରେ ଏକତରଫା ଭଲପାଉଥିଲେ ବେଙ୍ଗଲୀ ସହପାଠିନୀ ମାନିନୀ ଘୋଷାଲ୍‌କୁ । ତା' ପିଛା କରିକରି ଦିଗହରା ମରୁଯାତ୍ରୀ ଭଳି ସେ ଚିର ତୃଷାର୍ତ୍ତ ହୋଇ ରହିଗଲେ । ଶେଷରେ ହତାଶ ପ୍ରେମିକ ଭଳି ଦେଶ ଛାଡ଼ି ଚାଲିଗଲେ ଆମେରିକା । ଆଜି ସେ ପଞ୍ଚାବନ ବର୍ଷର ପ୍ରୌଢ଼ ! ତାଙ୍କ ଆଗରେ ଆଜି ପଚିଶି ବର୍ଷିୟା ମାନିନୀ ଅସିଛି ରୋମାନି ରୂପରେ ! ନିଜ ଆଖିକୁ ବିଶ୍ୱାସ କରି ପାରୁନଥିଲେ ଅତନୁ । ସେ ଦେଶ ଛାଡ଼ି ଚାଲିଗଲା ପରେ ତାଙ୍କପାଇଁ ବାହ୍ୟ ଜଗତରୁ ସିନା ମାନିନୀ ଘୋଷାଲ୍‌ର ଠିକଣା ହଜିଗଲା, ହେଲେ ତାଙ୍କ ହୃଦୟାକାଶରେ ମାନିନୀର ସ୍ମୃତି ଆଜି ବି ଧ୍ରୁବତାରା ଭଳି ଜାଜ୍ୱଲ୍ୟମାନ୍ ।

ପ୍ରଫେସର୍ ଶର୍ମା ଡ. ଅତନୁଙ୍କୁ ବିଦାୟ ଦେଇ ଅଣ୍ଡରଗ୍ରାଉଣ୍ଡ କକ୍ଷ ଭିତରେ ପ୍ରବେଶ କରିସାରିଥିଲେ । ତା' ଭିତରେ ଥରେ ପଶିଗଲା ପରେ ରୋହିତ୍ ଶର୍ମାଙ୍କପାଇଁ ଦିନ, ରାତି ସବୁ ସମାନ ! ତାଙ୍କପାଇଁ କାମ ହିଁ ସଂସାର । ଦୀର୍ଘ କୋଡ଼ିଏ ବର୍ଷ ଧରି ସେ ରୋବୋଟ୍ ଓ ରୋବୋଟିକ୍ ପ୍ରଯୁକ୍ତିବିଦ୍ୟା ଉପରେ ଗବେଷଣା ଚଳେଇଛନ୍ତି । ଅନେକ ନୂଆ ନୂଆ ତଥ୍ୟ ଆଲୋକକୁ ଆଣୁଛନ୍ତି । ପ୍ରଫେସର୍ ଶର୍ମାଙ୍କ ସହିତ ଅନେକ ଦକ୍ଷ ବୈଜ୍ଞାନିକ ଓ ରୋବୋଟିକ୍ସ ଇଂଜିନିୟର ମଧ୍ୟ ସେ ସଂସ୍ଥାରେ କାର୍ଯ୍ୟ କରନ୍ତି । କେନ୍ଦ୍ରର ସାମୁହିକ ଉଦ୍ୟମରେ ନିର୍ମିତ ବିଭିନ୍ନ ଶ୍ରେଣୀର ରୋବୋଟ୍ ସେ ବିଶ୍ୱ-ବଜାରକୁ ଛାଡ଼ିଛନ୍ତି । ଏବେଏବେ ଅବିକଳ ମନୁଷ୍ୟ ଆକୃତିର 'ହ୍ୟୁମାନୋଏଡ଼୍' ରୋବୋଟ୍ ତିଆରି କରିବା ଆରମ୍ଭ କରିଛନ୍ତି ପ୍ରଫେସର ଶର୍ମା । ଏ ସବୁର ଚାହିଦା ଆମ ଭାରତ ବଜାରରେ ଖୁବ୍ କମ୍ ! କିନ୍ତୁ ଚୀନ୍, ଜାପାନ୍ , ଆମେରିକା ଭଳି ଉନ୍ନତ ରାଷ୍ଟ୍ରର ସଉକିଆ ଧନିକମାନେ 'ଆର୍କ-ଇଣ୍ଡିଆ' ନିର୍ମିତ 'ହ୍ୟୁମାନୋଏଡ଼୍' ରୋବୋଟ୍‌କୁ ଅଦ୍ଭୁତ ପସନ୍ଦ କରନ୍ତି ।

ଚାଇନାର ରାସ୍ତାଘାଟରେ ଏବେ ଦେଖିବାକୁ ମିଳିଲେଣି ରୋବୋଟ୍ ଟ୍ରାଫିକ୍ କଂଟ୍ରୋଲର୍‌ମାନଙ୍କୁ । ସେମାନେ ସତମଣିଷ କି ଯନ୍ତ୍ର-ମଣିଷ ଠଉରେଇବା କାଠିକର ପାଠ । ଆମେରିକାରେ ଘରୋଇ ଚାକରଙ୍କ ସ୍ଥାନ ଧୀରେଧୀରେ ରୋବୋଟ୍‌ମାନେ ଅଧିକାର କଲେଣି । ଜାପାନ୍‌ର ବଡ଼ବଡ଼ କାରଖାନାର ମାଲିକମାନେ ଏବେ ରୋବୋଟ୍-ଶ୍ରମିକମାନଙ୍କୁ ହିଁ ରଖିବାକୁ ପସନ୍ଦ କରୁଛନ୍ତି । କାରଣ ମଣିଷ ଅପେକ୍ଷା ରୋବୋଟ୍‌ମାନେ ଅଧିକ ଦକ୍ଷ, କୁଶଳୀ ଏବଂ ଶୃଙ୍ଖଳିତ । ବଡ଼ କଥା ହେଲା, ବୋନସ୍ ନ'ପାଇଲେ ସେମାନେ ଅନ୍ତତଃ ହରତାଳ କରିବାର ସଂଭାବନା ନଥାଏ ।

ପ୍ରଫେସର୍ ଶର୍ମା ତାଙ୍କ କାରଖାନାରେ ଉତ୍ପାଦିତ ରୋବୋଟ୍ ଗୁଡ଼ିକର ପ୍ରତ୍ୟେକ ଯନ୍ତ୍ରାଂଶ ନିଜେ ଟିକିନିଖି ତଦାରଖ କରନ୍ତି । ନିଜେ ହିଁ ପ୍ରୋଗ୍ରାମିଂ କରନ୍ତି । ଭିନ୍ନଭିନ୍ନ ଗ୍ରାହକଙ୍କ ଅଲଗାଅଲଗା ଡିମାଣ୍ଡ ! କାହାକୁ ଘରୁଆ ଚାକର ଦରକାର, କାହାର ରେଷ୍ଟୁରାଂଟ୍ ପାଇଁ ବେଅରର୍ ଲୋଡ଼ା, ଆଉ କାହାର ଆବଶ୍ୟକ ଟାଇମ୍‌ପାସ୍ ପାଇଁ ସୁନ୍ଦରୀ ଗର୍ଲଫ୍ରେଣ୍ଡ୍ ! ବିଶେଷକରି ଗର୍ଲଫ୍ରେଣ୍ଡ୍ ପାଇଁ ଯେଉଁମାନେ ଫରମାଇସ୍ କରନ୍ତି, ସେମାନଙ୍କୁ ନିହାତି ଦରକାର 'ହ୍ୟୁମାନୋଇଡ୍ ରୋବୋଟ୍' ! କାରଣ ଜଣେ ରକ୍ତମାଂସଧାରୀ ସୁନ୍ଦରୀ ଝିଅର ସ୍ଥାନ ଷ୍ଟିଲ୍‌ରଡ୍ ଅଥବା ଫାଇବର୍‌ରେ ଗଢ଼ା ଗୋଟେ ଯାନ୍ତ୍ରିକ ଶରୀର କେବେ ବି ପୂରଣ କରି ପାରିବ ନାହିଁ !

'ହ୍ୟୁମାନୋଇଡ୍ ଫିମେଲ୍ ରୋବୋଟ୍' ଯନ୍ତ୍ର ଚାଳିତ ହେଲେ ବି, ସିଲିକନ୍ ଓ ଇଲେକ୍‌ଟ୍ରୋ ପଲିମର୍‌ରେ ଗଢ଼ା ତା' ଅବୟବ ବାସ୍ତବ ଝିଅଠୁଁ ଶହେ ଗୁଣ ସୁନ୍ଦର !

ଫେରୋଫ୍ଲୁଡ଼ସ୍‌ରେ ପରିପୁଷ୍ଟ ତା' ଶରୀର ଯେମିତି କୋମଳ, ଏୟାର ମସଲ୍‌ସ୍ ଯୁକ୍ତ ତା' କୋମଳ ଓଠର ହସ ସେମିତି ମଧୁର।

ସବୁ ଯନ୍ତ୍ରମଣିଷଙ୍କୁ ଗ୍ରାହକଙ୍କ ଚାହିଦା ଅନୁସାରେ ହିଁ ପ୍ରୋଗ୍ରାମିଂ କରାଯାଏ। ରୋବୋଟ୍ ଟି କେତେ ବୁଦ୍ଧିମାନ୍ ହେବ ସେ ଅନୁସାରେ 'ଆର୍କ ଇଣ୍ଡିଆ'ର ରୋବଟିକ୍ସ ଇଂଜିନିୟରମାନେ ତା' ବ୍ରେନ୍ ସେଣ୍ଟରକୁ ଟ୍ୟୁନିଙ୍ଗ୍ କରି ଖପୁରୀ ଭିତରେ ଫିଟ୍ କରନ୍ତି। ତା'କାର୍ଯ୍ୟକାଳ ସ୍ଥିର କରନ୍ତି। ତା' ଦେହର ବିଭିନ୍ନ ଅଙ୍ଗ-ପ୍ରତ୍ୟଙ୍ଗ ଓ ରୋବୋଟିକ୍ ମେକାନିଜମ୍ ତିଆରି କରନ୍ତି। ଗ୍ରାହକଙ୍କ ହାତକୁ ଯିବା ପୂର୍ବରୁ ସବୁ ଯନ୍ତ୍ରାଂଶର ତଦାରଖ କରନ୍ତି ସ୍ୱୟଂ ପ୍ରଫେସର୍ ଶର୍ମା।

ଶର୍ମା ସାହେବଙ୍କ ମନରେ କିନ୍ତୁ ସଦାବେଳେ ଗୋଟାଏ ସ୍ୱପ୍ନ ରହିଛି! କୃତ୍ରିମ ମସ୍ତିଷ୍କ ଖଞ୍ଜି ରୋବୋଟମାନଙ୍କୁ ସେ କିଛିମାତ୍ରାରେ ବୁଦ୍ଧିମାନ ତ କରିଦେଇ ପାରୁଛନ୍ତି, ହେଲେ ମଣିଷ ଭଳି ତାକୁ 'ହୃଦୟବାନ୍' କେମିତି କରିବେ? ରୋବୋଟ୍ ତା' ପ୍ରୋଗ୍ରାମିଂ ଅନୁସାରେ ବୌଦ୍ଧିକ ବିଚାର ପ୍ରୟୋଗ କରି କାମ କରେ, ହେଲେ ସେଥିରେ ତା' ଆବେଗ କି ଉଦ୍‌ବେଗ ନ'ଥାଏ। ମାଲିକର ଆଦେଶ ପାଳନ କରେ ସତ, କିନ୍ତୁ ତା' ହାନିଲାଭ, ଦୁଃଖସୁଖରେ ଭାଗିଦାର ହୁଏନା। ବୈଜ୍ଞାନିକ ଶର୍ମା ଚାହାନ୍ତି, ସେ ଏମିତି ଗୋଟେ ରୋବୋଟ୍ ଉଦ୍ଭାବନ କରିବେ, ଯିଏ ମଣିଷ ଭଳି ଦୟା, କ୍ଷମା, ପ୍ରେମ, କରୁଣା, ସହୃଦୟତା ଭଳି ଅନେକ ସୁଗୁଣର ଅଧିକାରୀ ହେବା ସହିତ ଆବେଗପ୍ରବଣ ହେଇପାରିବ।

ମଣିଷର ଏ ସବୁ ଗୁଣ ହୃଦୟରୁ ଜାତ ହୁଏ ବୋଲି ଆମର ଧାରଣା; କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହି ତତ୍ତ୍ୱ ଭୁଲ୍ ବୋଲି କହନ୍ତି ପ୍ରଫେସର୍ ରୋହିତ୍। ହୃଦୟର କାମ ହେଲା ଦେହରେ ରକ୍ତ ସଂଚାଳନ କରିବା। ମଣିଷର ପ୍ରେମ, ଆବେଗ ବା ସଂବେଦନା ଭଳି ଗୁଣଗୁଡ଼ିକ ପାଇଁ ହୃଦୟ ନୁହେଁ ବରଂ ମସ୍ତିଷ୍କ ଦାୟୀ! ମସ୍ତିଷ୍କରେ କ୍ଷରଣ ହେଉଥିବା 'ଅକ୍ସିଟୋସିନ୍' ଓ 'ଡୋପାମାଇନ୍' ଭଳି କେତେକ ବିଶେଷ ଧରଣର ହରମୋନ୍ ଗ୍ରନ୍ଥି ଏ ଗୁଣକୁ ତ୍ୱରାନ୍ୱିତ କରେ। କୌଣସି ସମ୍ବେଦନଶୀଳ ଘଟଣା ବା ଦୃଶ୍ୟ ଦେଖି ଆମ ମସ୍ତିଷ୍କରେ ଏହି ହରମୋନ୍ କ୍ଷରଣ ହେବା ସହିତ ରାସାୟନିକ ପ୍ରତିକ୍ରିୟା ଘଟିଲେ ତାହା ହୃଦୟର ରକ୍ତ ସଂଚାଳନକୁ ପ୍ରଭାବିତ କରେ। ତା'ଫଳରେ ଆମ ମନରେ ପ୍ରକଟିତ ହୁଏ ଦୟା, କରୁଣା, ପ୍ରେମ, ଅନୁରାଗ ଭଳି ଗୁଣଗୁଡ଼ିକ। ଅବଶ୍ୟ ସେ ଦୃଷ୍ଟିରୁ ମସ୍ତିଷ୍କ ସହିତ ହୃଦୟର ଗୋଟେ ଆବେଗପୂର୍ଣ୍ଣ ସଂପର୍କ ରହିଛି। ତେଣୁ ଦୟା, କ୍ଷମା, ପ୍ରେମ ଆଦି ଗୁଣ ହୃଦୟରୁ ଜନ୍ମ ନିଏ

ବୋଲି କୁହାଯାଏ । ହେଲେ ରକ୍ତମାଂସଧାରୀ ମଣିଷ ପକ୍ଷରେ ସିନା ଏହା ସଂଭବ, ରୋବୋଟ୍‌ର ଯାଂତ୍ରିକ ଶରୀରରେ ରକ୍ତ ସଂଚାଳନ ଅଥବା ହରମୋନ୍ କ୍ଷରଣ କ'ଣ ସଂଭବ ?

ହୁଏତ ସଂଭବ ! !

ଏହି ଅସଂଭବକୁ ସଂଭବରେ ପରିଣତ କରିବାପାଇଁ ରୋହିତ୍ ଶର୍ମା ବର୍ଷବର୍ଷ ଧରି ଚଳାଇଛନ୍ତି ଗବେଷଣା । ପ୍ରଖ୍ୟାତ ବୈଜ୍ଞାନିକ 'ରବର୍ଟ ଗଡାର୍ଡ୍' ଯଥାର୍ଥରେ କହିଥିଲେ, 'ଗତକାଲିର ପରିକଳ୍ପନା, ଆଜିର ସ୍ୱପ୍ନ, ଆଗାମୀ କାଲିର ବାସ୍ତବତାକୁ ଜନ୍ମ ଦିଏ ।' ଏହି ଉକ୍ତିକୁ ଶର୍ମା ଗୁରୁବାକ୍ୟ ଭଳି ମାନିଛନ୍ତି ଏବଂ ଦିନରାତି ଏକ କରି ଲାଗିଛନ୍ତି ରୋବୋଟ୍ ମସ୍ତିଷ୍କରେ ଏକ ଅଲୌକିକ ସଂସ୍କରଣ ଆଣିବାପାଇଁ । ସତରେ ଯଦି ଏହା ସଂଭବ ହୁଏ, ତା'ହେଲେ  ବୈଜ୍ଞାନିକ ରୋହିତ୍ ଶର୍ମାଙ୍କ ପ୍ରୟୋଗଶାଳାରେ ଘଟିବ ଆଧୁନିକ ବିଜ୍ଞାନର ଏକ ଯୁଗାନ୍ତକାରୀ ବିସ୍ଫୋରଣ ! ନିଷ୍ପ୍ରାଣ ଯନ୍ତ୍ର-ମଣିଷଟି ହେବ ସ୍ନେହ, ପ୍ରେମ ଓ କରୁଣାର ଗୋଟେ ନୂତନ ଅବତାର । ଶୁଣାଯାଉଛି, ବୈଜ୍ଞାନିକ ଶର୍ମା ଏବେ ସଫଳତାର ଦ୍ୱାରଦେଶରେ !

ରୋହିତ୍ ଶର୍ମା ଯେତେବଡ଼ ବୈଜ୍ଞାନିକ ହେଲେ ମଧ୍ୟ ଭାରି ଈଶ୍ୱର ବିଶ୍ୱାସୀ ! ସାଦାସିଧା ସଂସାରୀ ମଣିଷ । ତାଙ୍କର ବି ଘରସଂସାର ଅଛି । ଜୀବନରେ ଦୁଃଖସୁଖ ଅଛି । ଘରେ ପିଲାଛୁଆ କେହି ନ'ଥିଲେ ବି ସ୍ତ୍ରୀ ଏଲୋରା ଅଛନ୍ତି । ବୁଢ଼ୀ ମାଆଟିଏ ବି ଅଛନ୍ତି ଘରେ । ସେଇ ମାଆଟି ପାଇଁ ସଦାବେଳେ ସେ ଚିନ୍ତିତ । ମାଆଙ୍କ ବୟସ ହେଲାଣି ଅଠାଅଶି । ଆଜିକୁ ପ୍ରାୟ ଦୁଇବର୍ଷ ଧରି ସେ ଶଯ୍ୟାଶାୟୀ । ବୟସାଧିକ୍ୟ କାରଣରୁ ତାଙ୍କୁ ନାନା ପ୍ରକାର ଦୁରାରୋଗ୍ୟ ରୋଗ ଗ୍ରାସ କରିଛି । ବୁଢ଼ୀ ଶେଯରେ ପଡ଼ି ଦିନରାତି ଯନ୍ତ୍ରଣାରେ ଛଟପଟ ହେଉଛନ୍ତି । ଉପଯୁକ୍ତ ଚିକିତ୍ସା ଚାଲିଛି । କିନ୍ତୁ ଡାକ୍ତର କହୁଛନ୍ତି, ଔଷଧ ଆଉ ତାଙ୍କୁ ବିଶେଷ କାଟୁ କରିବ ନାହିଁ, ମଲା ପର୍ଯ୍ୟନ୍ତ ବୁଢ଼ୀକୁ ଟିକିଏ ଆଦର ଯତ୍ନର ସହିତ ରଖିବାକୁ ପଡ଼ିବ । ସେଥିପାଇଁ ଘର ଲୋକଙ୍କୁ ରୋଗୀ ପାଖରେ ଚବିଶ ଘଣ୍ଟା ଜଗି ରହିବାକୁ ପଡ଼ିବ ।

ପ୍ରଫେସର୍ ଶର୍ମା ମାଆଙ୍କୁ ଖୁବ୍ ଭଲ ପାଆନ୍ତି ସତ, ହେଲେ ଦୁଃଖର ବିଷୟ, ପୀଡ଼ିତା ମାଆଙ୍କ ସେବା ସହାୟତା କରିବାପାଇଁ ସେ ଆଦୌ ସମୟ ଦେଇ ପାରନ୍ତିନି । ସକାଳ ଆଠରୁ ରାତି ଗୋଟାଏ ପର୍ଯ୍ୟନ୍ତ ସେ ଗବେଷଣାରେ ପାଗଳ, ମାଆଙ୍କ ପାଇଁ  ସମୟ କେମିତି ଦେଇପାରିବେ ?

ଶର୍ମାଙ୍କ ପତ୍ନୀ ଏଲୋରା । ସିଏ ହେଲେ ଜଣେ ଭିନ୍ନ ଚରିତ୍ରର ନାରୀ । ତାଙ୍କଠୁଁ ଶାଶୁବୁଢ଼ୀର ସେବା ଆଶା କରିବା ଯାହା, ମରୁରାଇଜରେ ବରଫପାତ ଆଶା କରିବା ତାହା ! ଏ ସବୁ ଦୃଷ୍ଟିରୁ ବିଚାର କରି ମାଆଙ୍କ ସେବାଯତ୍ନ ପାଇଁ ପ୍ରଫେସର୍ ରୋହିତ୍ ଠିକ୍ କଲେ

ଗୋଟେ ଯନ୍ତ୍ରମଣିଷ ପ୍ରସ୍ତୁତ କରିବେ । ଆଜିକାଲି ମଣିଷ ଆଉ ମଣିଷ ଉପରେ ଭରସା କରି ପାରୁନି । ମଣିଷ ଅପେକ୍ଷା ଯନ୍ତ୍ର ବରଂ ଅଧିକ ଭରସାଶୀଳ ଓ ବିଶ୍ୱାସୀ । ମଣିଷ ଠକ, କାମଚୋର, ଧପ୍ପାବାଜ୍ ହେଇପାରେ । ତା' ପାଖରେ ଅବିଶ୍ୱାସ, ହିଂସା, କପଟତା, ଆଳସ୍ୟ, ଅହଂକାର ଆଦି ଦୁର୍ଗୁଣ ରହିପାରେ, ହେଲେ ମଣିଷ ତିଆରି ଯନ୍ତ୍ର ପାଖରେ ଏସବୁ ଦୁର୍ଗୁଣ କଦାପି ନଥାଏ । ମଣିଷ ଭୁଲ କରିପାରେ; କିନ୍ତୁ ଯନ୍ତ୍ର ଯଦି ନିଖୁଣ ଏବଂ ତା'ର ଇନ୍‌ପୁଟ୍ ଯଦି ଠିକ୍ ରହେ, ତା' ହେଲେ ସେ କେବେ ଭୁଲ ପରିଣାମ ଦେବନାହିଁ । କମ୍ପ୍ୟୁଟର ହେଉଛି ଏହାର ପ୍ରକୃଷ୍ଟ ଉଦାହରଣ ।

ସେଠୁ ପ୍ରଫେସର୍ ସ୍ୱତନ୍ତ୍ରଭାବେ ତିଆରି କଲେ ଗୋଟେ 'ହ୍ୟୁମାନୋଏଡ଼୍ ରୋବୋଟ୍' । ମାଆଙ୍କ ଆବଶ୍ୟକତା ଅନୁସାରେ ତା ଶରୀରର ଗଠନ କରାଗଲା । ରୋଗୀକୁ ନିୟମାନୁସାରେ ଓ ନିର୍ଦ୍ଦିଷ୍ଟ ମାତ୍ରାରେ ଔଷଧପତ୍ର ଦେବା ନିହାତି ଜରୁରୀ । ତେଣୁ ତା' ବ୍ରେନ୍ ଫଙ୍କସନ୍ ପ୍ରତି ଅଧିକ ଧ୍ୟାନ ଦେଇ ତାକୁ ପ୍ରୋଗ୍ରାମିଂ କରାଗଲା । ପ୍ରଫେସର୍ ତା' ନାଁ ରଖିଲେ, 'ରୋବିନ୍' ! ଅର୍ଥାତ, 'ରୋବୋଟ୍ ଉଇଥ୍ ଏକ୍ସଟ୍ରା ଇନ୍‌ଟେଲିଜେନସ୍' !

ରୋବିନ୍ ଯେଉଁଦିନ କାମରେ ଯୋଗଦେଲା, ତାକୁ ପ୍ରଫେସର୍ ଗୋଟେ ଦୈନନ୍ଦିନ କାର୍ଯ୍ୟସୂଚୀ ଧରେଇଦେଲେ । ସୂଚୀ ଅନୁସାରେ ସେ ସକାଳେ ପ୍ରଥମେ ମାଆଙ୍କୁ ଶେଯରୁ ଉଠାଇ ହୁଇଲ୍ ଚେୟାରରେ ବସେଇବ । ବ୍ରସ୍ କରିବାଠୁଁ ଆରମ୍ଭ କରି ଝାଡ଼ା-ପରିସ୍ରା ଆଦି ତାଙ୍କର ସମସ୍ତ ନିତ୍ୟକର୍ମ କରେଇବ । ଡାକ୍ତରଙ୍କ ପରାମର୍ଶ ଅନୁସାରେ ଠିକ୍ ସମୟ ଅନ୍ତରାଳରେ ଔଷଧ ଖୁଆଇବ । ଦିନରେ ତିନିଥର ବିଭିନ୍ନ ଫଳ ରସ ତିଆରି କରି ପିଏଇବ । ଆଉ ଦିନ ତମାମ୍ ଶେଯ ପାଖରେ ବସି ତା' ପଲ୍‌ସ ରେଟ୍ ଓ ରକ୍ତଚାପର ବିବରଣୀ ନେବ । ଜରୁରୀ ପରିସ୍ଥିତିରେ ଶେଯ ପାଖରେ ଥିବା ସତର୍କ ଘଂଟି ବଜାଇ ସୂଚନା ଦେବ । ବାସ୍, ରୋବିନ୍‌ର କାମ ସେତିକି ।

ପ୍ରଫେସରଙ୍କ ମାଆ ଶେଯରେ ପଡ଼ିପଡ଼ି ବହୁତ କଷ୍ଟ ଭୋଗୁଥିଲେ । ଏତେ ଯନ୍ତ୍ରଣା ଯେ, ପଥର ଆଖିରୁ ବି ଲୁହ ଖସିପଡ଼ିବ । କିନ୍ତୁ ତାଙ୍କ ଦୁଃଖ ବୁଝିବାକୁ ଘରେ ଅଛି ବା କିଏ ? ପୁଅ ତ ଗବେଷଣାଗାରରେ । ବୋହୂ କୋଉ କ୍ଲବରେ କି ପାର୍ଟିରେ ବସି ମସ୍ତି କରୁଥିବ । ବୁଢ଼ୀ ଆକୁଳ ବ୍ୟାକୁଳ ଆଖିରେ ଦାଣ୍ଡ ଦୁଆର ଓ ଝରକା ଆଡ଼େ ଅନାନ୍ତି । ସେ ଚାହାନ୍ତି, କେହି ଜଣେ ତାଙ୍କ ପାଖରେ ଆସି ବସନ୍ତା । ଶ୍ରଦ୍ଧାରେ ଦି'ପଦ କଥା ହୁଅନ୍ତା । ତାଙ୍କ ଦେହ, ହାତଗୋଡ଼ ଓ ଛାତିରେ ଥରେ ସ୍ନେହଭରା ହାତ ବୁଲାଇ ଆଣିଲେ ତାଙ୍କୁ ଯନ୍ତ୍ରଣାରୁ ଟିକିଏ ଉପଶମ ମିଳନ୍ତା । କିନ୍ତୁ ସେତକ ତାଙ୍କ ଭାଗ୍ୟରେ ନାହିଁ । ରୋବିନ୍ ତା' କାମ ଠିକ୍‌ଠିକ୍

କରୁଛି, ହେଲେ ସେଥିରେ ସହୃଦୟତା କି ଅନ୍ତରିକତା ତିଳେମାତ୍ରାରେ ନାହିଁ । ଯଂତ୍ରଟିଏ ତ, ସିଏ କୁଆଡୁ ବୁଝିବ ମନର କଥା ? ହୃଦୟର ଭାଷା ?

ରୋବିନ୍ ପ୍ରୋଗ୍ରାମିଂ ଅନୁସାରେ ତା' କର୍ତ୍ତବ୍ୟ ସାରିଦେଇ ଦିନ ସାରା ପାଖରେ ବସୁଛି । ଜଳଜଳ କରି ଅନେଇ ରହୁଚି ବୁଢ଼ୀକୁ, ହେଲେ ସେ ଚାହାଣି ଦରଦ ଶୂନ୍ୟ । କାଚ ବାଟି ଭଳି ତା' ଶୁଖିଲା ଆଖିରେ ଦୟା କି କରୁଣାର ସାମାନ୍ୟତମ ସୂଚନା ବି ମିଳେନି । ବୁଢ଼ୀର ଆଖି ଖୋଜିବୁଲେ କେହି ଜଣେ ଆପଣା ମଣିଷର ଦରଦଭରା ପରଶକୁ ।

ଏଣେ ଏଲୋରା ଭାବନ୍ତି, ରୋଗୀଣା ଶାଶୂବୁଢ଼ୀ ତାଙ୍କ ପାଇଁ ଗୋଟେ ଅବାଂଛିତ ବୋଝ । ସ୍ୱାମୀ ତ ତାଙ୍କ ରୋବୋଟ୍ ଦୁନିଆକୁ ନେଇ ପାଗଳ । ଏ ବୁଢ଼ୀକୁ ସମ୍ଭାଳିବ କିଏ ?

ସତରେ ପ୍ରଫେସର୍ ଶର୍ମା ପତ୍ନୀଙ୍କ ପାଇଁ ମଧ୍ୟ ସମୟ ଦେଇ ପାରନ୍ତିନି । ବିବାହର ପଚିଶି ବର୍ଷ ବିତିଗଲେ ବି ଏଲୋରାଙ୍କ କୋଳକୁ ପିଲାଛୁଆ ଆସିଲେନି । ସେଥିପାଇଁ ଏଲୋରା ଦୋଷ ଦିଅନ୍ତି ସ୍ୱାମୀଙ୍କୁ । ସଂତାନ ସୁଖ ନ'ଦେଲ ନାହିଁ, ଦିନରେ ଅନ୍ତତଃ ଦୁଇ ଚାରି ଘଂଟା ସମୟ ଦେବନି ସ୍ତ୍ରୀର ମନ ରଖିବା ପାଇଁ ?' ଏ ହେଉଛି ଏଲୋରାଙ୍କ କ୍ଷୋଭ ।

ଏଲୋରାଙ୍କ ପାଇଁ ସମୟ ନ'ଦେଲେ ବି ପ୍ରଫେସର୍ ପ୍ରତିଦିନ ସକାଳେ ଗବେଷଣାଗାରକୁ ବାହାରିବା ପୂର୍ବରୁ ମା'ଙ୍କ ପାଖରେ ଦୁଇ ମିନିଟ୍ ବସନ୍ତି । ମା'ଙ୍କ ଭଲମନ୍ଦ କଥା ବୁଝନ୍ତି । ରୋବିନ ଠିକ୍‌ଠିକ୍ ତା' କାମ କରୁଛି କି ନାହିଁ ବିବରଣୀ ନିଅନ୍ତି । ଦିନେ ମା' କହିଲା, "ପୁଅରେ, ତୁ ଏତେ ରୋବୋଟ୍ ତିଆରି କରୁଚୁ, ମୋ' ମନର କଥା ବୁଝିଲା ଭଳିଆ ରୋବୋଟଟିଏ ତିଆରି କରନ୍ତୁନି !"

ପୁଅ କହିଥିଲା, "ମା' ! ତୁ ମୋତେ ବ୍ୟସ୍ତ ହୁଅନା । ମନର ଭାଷା କେବଳ ମସ୍ତିଷ୍କ ହିଁ ବୁଝିପାରିବ । ରୋବିନ୍ ମୁଣ୍ଡରେ ମସ୍ତିଷ୍କ ଅଛି; ହେଲେ ତା' ଭେଜାରେ ପ୍ରେମ, କରୁଣା, ସହୃଦୟତାର ଅଭାବ ଅଛି, ସେଥିପାଇଁ ତୋ' ମନ କଥା ସେ ବୁଝିପାରୁନି । ମୁଁ ଆଜିପର୍ଯ୍ୟନ୍ତ ତାଆରି ଉପରେ ହିଁ ଗବେଷଣା ଚଲେଇଥିଲି । ମୋ' କାମ ସରିଚି । କାଲି ରୋବିନ୍ ମସ୍ତିଷ୍କରେ ଗୋଟେ ନୂଆ ଯନ୍ତ୍ର ଲଗାଯିବ । ତା'ପରେ ଦେଖିବୁ, ତୋ'ର ସିଏ କେତେ ଆପଣାର ହେଇଯିବ । କେତେ ଭଲ ପାଇବ ସେ ତୋତେ !"

ପରଦିନ ଅପରାହ୍ନରେ ପ୍ରଫେସର୍ ରୋହିତ୍ ତାଙ୍କ ବିଶ୍ୱସ୍ତ ସହକାରୀ ଶ୍ରୀକୁମାରଙ୍କ ସହିତ ଆସି ଘରେ ପହଂଚିଲେ । ତାଙ୍କ ହାତରେ ଥିଲା ଗବେଷଣାଗାରରେ ସଦ୍ୟ ପ୍ରସ୍ତୁତ ହେଇଥିବା ଗୋଟେ ଅଦ୍ଭୁତ ମାଇକ୍ରୋ ଚିପ୍ ! ପ୍ରଫେସର୍ ସେ ଚିପ୍ ର ନାଁ ରଖିଥିଲେ 'ଲଭ୍

ଚିପ’ ! ପ୍ରଫେସର୍ ଶର୍ମା ରୋବିନ୍‌କୁ ଡାକିନେଲେ ତାଙ୍କ ଚ୍ୟାମ୍ବର ଭିତରକୁ । ତା’ ପାଖକୁ ଯାଇ କହିଲେ, “୮୨ପିପିକେ୫୦୯ ! ବି ରେଡ଼ି ଫର୍ ଲଭ୍‌ଚିପ୍ !”

ମନେହେଲା, ପ୍ରଫେସର୍ କିଛି ଚେତାବନୀ ଦେଲେ ରୋବିନ୍‌କୁ । ପ୍ରକୃତରେ ସେ ବାକ୍ୟଟି ଥିଲା ରୋବିନ୍‌କୁ ସାମୟିକ ଭାବେ ଅଚଳ କରିବା ପୂର୍ବରୁ ଗୋଟେ ସାଙ୍କେତିକ ଶବ୍ଦ ବା କୋଡ୍ ୱାର୍ଡ଼ ! ସେତିକି ଶୁଣିବାମାତ୍ରେ ରୋବିନ୍ ଯାଇ ପାଖ ଖଟିଆଟି ଉପରେ ଚିତ୍ ହୋଇ ଶୋଇଲା । ସହକାରୀ ଶ୍ରୀକୁମାର୍ ତା’ପାଖକୁ ଗଲେ । ତା’କାନ ତଳେ ଲାଗିଥିବା ବଟନ୍‌ଟି ଚିପି ତାକୁ ସାମୟିକଭାବେ ଟ୍ରିପ୍ କରିଦେଲେ । ରୋବିନ୍ ପାଲଟିଗଲା ଜଡ଼ କଣ୍ଢେଇଟିଏ । ଆରମ୍ଭ ହେଲା ‘ଅପାରେସନ୍ ଲଭ୍ ଚିପ୍’ ।

ମାତ୍ର କୋଡ଼ିଏ ମିନିଟରେ କାମ ସରିଲା । ରୋବିନ୍ ଝାଡ଼ିଝୁଡ଼ି ହୋଇ ଉଠି ବସିଲା ଖଟିଆ ଉପରେ । ଏତିକି ସମୟ ଭିତରେ ଗୋଟାଏ ବିରାଟ ପରିବର୍ତ୍ତନ ସଂଘଟିତ ହେଇ ସାରିଥିଲା ରୋବିନ୍‌ର ଯାନ୍ତ୍ରିକ ମସ୍ତିଷ୍କ ଭିତରେ ! ତତ୍‌ସଙ୍ଗେସଙ୍ଗେ ଘଟିଥିଲା ବିଜ୍ଞାନ ଜଗତର ଏକ ଅବିଶ୍ୱସନୀୟ ସଫଳତାର ବିସ୍ଫୋରଣ ! ଦିନେ ଚମକ୍ରୃତ ହେବ ସମଗ୍ର ବିଶ୍ୱ ପ୍ରଫେସର୍ ଶର୍ମାଙ୍କ ଏହି ଅଭୂତ ଉଦ୍ଭାବନରେ ! ମନେ ହେଉଥିଲା, ରୋବିନ୍‌ର ଚେହେରାଟି ଅତି ଆଶ୍ଚର୍ଯ୍ୟଜନକ ଭାବେ ସତେଜ ହୋଇ ଉଠିଛି । ତା’ ମୁହଁରେ ଫୁଟିଉଠୁଥିଲା ଗୋଟେ ଅଭୂତ ଉଲ୍ଲାସ ! ଆଖି ପୂର୍ବାପେକ୍ଷା ଅଧିକ ଉଜ୍ଜ୍ୱଳ ଓ ଚମକିଲା ଦିଶୁଥାଏ ! ! ଓଠରେ ସ୍ମିତ ହସ ! ଦୁଇ ବୈଜ୍ଞାନିକ ବନ୍ଧୁ ପରସ୍ପର ଆଡ଼କୁ ଅନେଇ ସଂତୃପ୍ତିର ଦୀର୍ଘଶ୍ୱାସ ଛାଡ଼ିଲେ । ଦୁହେଁ ରୋବିନ୍‌କୁ ପୁଣି ମାଆଙ୍କ ଶେଯ ପାଖରେ ବସେଇ ଫେରିଗଲେ ଗବେଷଣାଗାରକୁ ।

ସବୁଦିନ ଭଳି ରାତି ବାରଟା ପରେ ଶର୍ମା ସାହେବ ଫେରିଲେ ଘରକୁ । କୌତୂହଳବଶତଃ ସେ ଘର ଭିତରେ ପଶିବା ଆଗରୁ ଝର୍କାବାଟେ ରୋବିନ୍‌ର କାର୍ଯ୍ୟକଳାପ ଦେଖିଲେ ଏବଂ ଆଶ୍ୱସ୍ତିରେ ନିଃଶ୍ୱାସ ମାରିଲେ । ଅନ୍ତତଃ ସେ ଯାହା ଚାହୁଁଥିଲେ ତାହା ପାଇଛନ୍ତି । ରୋବିନ୍ ମା’ଙ୍କ ପାଦ ପାଖରେ ବସି ଅତିଶ୍ରଦ୍ଧାରେ ତାଙ୍କ ଗୋଡ଼ ମୋଡ଼ିଦେଉଥିଲା । ଆଦରରେ ତାଙ୍କ କପାଳରେ ହାତ ଆଉଁଶି ଆଣୁଥିଲା । ପିନ୍ଧା ଲୁଗା ଦେହରେ ସଜାଡ଼ିଦେଉଥିଲା । ଯେଉଁ କାମଗୁଡ଼ିକ ତା’ ଦୈନନ୍ଦିନ କାର୍ଯ୍ୟସୂଚୀ ଭିତରେ ପ୍ରୋଗ୍ରାମିଂ ହୋଇନଥିଲା, ତାହା ସେ ସ୍ୱତଃପ୍ରବୃତ୍ତ ଭାବେ କରୁଥିଲା । ତା’ ହାତରେ ଥିଲା ସହୃଦୟତାର ସ୍ପର୍ଶ । ଆଖି ଥିଲା ସହାନୁଭୂତିରେ ସିକ୍ତ ! ! ମା’ ଶୋଇଥିଲେ ପରମ ଶାନ୍ତିରେ ।

‘ଓଃ ! ବ୍ରାଭୋ ! !’ ପ୍ରଫେସର୍ ଖୁସିରେ ଆତ୍ମହରା ହେଇଗଲେ । ଭିତରକୁ ଯାଇ ପ୍ରଥମେ ସେ ଏହି ଖବରଟା ପତ୍ନୀ ଏଲୋରାଙ୍କ କାନରେ ପକେଇବାକୁ ଚାହିଁଲେ । ଏଲୋରା

ନିଘୋଡ଼ ନିଦରେ ଶୋଇଥିଲେ । ରୋହିତ୍ ତାଙ୍କୁ ଅଳପ ହଲେଇ ଦେଇ କହିଲେ, "ଏଲୋରା ! ଶୁଣୁଚ, ରୋବୋଟ୍‌ମାନଙ୍କ ପାଇଁ 'ଲଭ୍‌ଚିପ୍' ଗବେଷଣାରେ ମତେ ସଫଳତା ମିଳିଗଲା । ଏଥର ମୁଁ ହୃଦୟବାନ୍ ରୋବୋଟ୍ ତିଆରି କରିପାରିବି ! ! ବିଜ୍ଞାନ ଦୁନିଆରେ ଏ ଗୋଟେ ଯୁଗାନ୍ତକାରୀ ଉଦ୍ଭାବନ ! ବହୁତ ବଡ଼ ସଫଳତା ! ! ଶୁଣଚ ?"

– "ଛେନା ଗୁଡ଼ ସଫଳତା !" ଏଲୋରା ଜଳନ୍ତା ନିଆଁରେ ପେଟ୍ରୋଲ୍ ଢ଼ାଳିଲା ଭଳି ଚିହିଁକି ଉଠିଲେ । ଚିତ୍କାର କଲେ, "ରାତି ଅଧରେ ମତେ ନିଦରୁ ଉଠେଇ ଏଇ ସଫଳତା କଥା କହୁଚ ! ଯିଏ ନିଜେ ଜଣେ ହୃଦୟଶୂନ୍ୟ ମଣିଷ ସିଏ କି ହୃଦୟବାନ୍ ରୋବୋଟ୍ ତିଆରି କରିବ ହୋ' ! ହଇହେ ! ପଚିଶି ବର୍ଷ ଧରି ନିଜ ସ୍ତ୍ରୀ'କୁ କଣିଚାଏ 'ଲଭ୍' ତମେ ଦେଇ ପାରିଲନି, କହୁଚ କ'ଣ ନା' ରୋବୋଟ୍ ପାଇଁ 'ଲଭ୍‌ଚିପ୍' ଉଦ୍ଭାବନ କରିଦେଲ ?

– ଏଲୋରା ! ରାତି ଅଧରେ ଏମିତି ଚିଲ୍ଲଉଚ କାଇଁକି ? ସେ ଘରେ ମା' ଶୋଇଚି । ରୋବିନ୍ ବସିଚି ।

– କାହିଁକି ଚିଲ୍ଲେଇବିନି ? କ'ଣ ତମେ ମତେ ଦେଇଚ କହିଲ ? ବାହାହେଇ ଯୁଗଟିଏ ବିତିଲାଣି, କେତେ ସମୟ ଦେଇଚ ମୋ'ପାଇଁ ? କେତେଥର ମତେ ପାର୍କ, ମଲ୍ କି ମାର୍କେଟକୁ ବୁଲେଇବାକୁ ନେଇଚ ? କେତେ ଥର ସିନେମା ନେଇଚ ? ଦେଶବିଦେଶ କୁଆଡ଼େ ନେଇ ବୁଲେଇଚ ମତେ ? ଦିନ ରାତି ଖାଲି ଗବେଷଣା.. ଗବେଷଣା.. ଗବେଷଣା ! କେବଳ ରୋବୋଟ୍‌ମାନଙ୍କୁ ନେଇ ତମ ଦୁନିଆ । ବିଜ୍ଞାନକୁ ନେଇ ସଂସାର ! ! ଅଫିସରେ 'ରୋମାନି' ଭଳି ସୁନ୍ଦରୀ ସେକ୍ରେଟାରିଟେ ତ ରଖିଚ, ଘରେ ଯେଉଁ ସ୍ତ୍ରୀ ଅଛି, ତା' କଥା କାଇଁକି ତମର ମନେ ପଡ଼ିବ ?

–ଏଲୋରା ! ପ୍ଲିଜ୍ ପାଟି କରନି ରାତି ଅଧରେ । ସକାଳେ ଥଣ୍ଡା ମୁଡ୍‌ରେ ବସି କଥା ହେବା । ଏବେ ଚୁପ୍ କର ପ୍ଲିଜ୍ !

– ବୁଝିଲ ମିଷ୍ଟର୍ ରୋହିତ୍ ଶର୍ମା ! ତମ ଭାଗ୍ୟ ଭଲ, ମୋ' ଭଳି ସ୍ତ୍ରୀ ଟିଏ ପାଇଚ । ଅନ୍ୟମାନଙ୍କ ଭଳି ମୁଁ ଯଦି ଦୁଶ୍ଚରିତ୍ରା କି ଦୁର୍ବଳମନା ହେଇଥାନ୍ତି, ତମକୁ ଛାଡ଼ି କୋଉକାଳୁଁ ଆଉ କାହା ସାଙ୍ଗରେ ଉଡ଼ିଯାଆନ୍ତିଣି । ହେଲେ ମୁଁ ସେମିତିକା ଝିଅ ନୁହେଁ । ମୋ'ର ଗୋଟିଏ ଦୁର୍ବଳତା ହେଲା, ଜୀବନକୁ ମନଭରି ଉପଭୋଗ କରିବା । ମୋ' ପାଇଁ 'ଉପଭୋଗ' ଆଉ 'ସଂଭୋଗ' ଏକା କଥା ନୁହେଁ । ତମେ କେବଳ ଦ୍ୱିତୀୟ କଥାଟି ହିଁ ଜାଣିଚ । ସେଥିପାଇଁ ଦିନସାରା ରୋବୋଟ୍ ଦୁନିଆରେ କଟେଇ ରାତି ଅଧରେ ଚାଲି ଆସୁଛ ମୋ' ପାଖକୁ ।

ଏଲୋରାଙ୍କ ଶେଷବାକ୍ୟଟି ଶୁଣିବାପାଇଁ ରୋହିତ୍ ଆଉ ସେଠାରେ ନଥିଲେ । ସେ କାନରେ ହାତ ଦେଲେ ଏବଂ ନିଜ ତକିଆଟି ଧରି ଚାଲିଯାଇଥିଲେ ଡ୍ରଇଁରୁମ୍‌ରେ ପଡ଼ିଥିବା ଦିୱାନ୍ ଉପରକୁ । ଅଳ୍ପ ସମୟ ଭିତରେ ଡ୍ରଇଁରୁମ୍‌ରୁ ଶୁଭିଲା ପ୍ରଖର ନିଃଶ୍ୱାସର ଶବ୍ଦ ! ଏଲୋରା ମଧ୍ୟ ନିର୍ବିକାର ଭାବେ ଶୋଇପଡ଼ିଲେ ।

ସକାଳ ହେବାମାତ୍ରେ ପ୍ରଫେସର୍ ପ୍ରଥମେ ମା'ଙ୍କ ଶେଯ ପାଖକୁ ଗଲେ । ଦେଖିଲେ, ଏବେ ବି ମା' ପରମ ଶାନ୍ତିରେ ଶୋଇଛନ୍ତି । ମାନସିକ ସ୍ତରରେ ପୂରା ସୁସ୍ଥ ନଥିଲେ ସେ ଏତେ ସମୟ କେବେ ଶୁଅନ୍ତିନି ! ରୋବିନ୍ ଅଳ୍ପ ହସି ପ୍ରଫେସରଙ୍କୁ ଅଭିବାଦନ କଲା । ପ୍ରଫେସର୍ ରୋବିନ୍ ଉପରେ ବହୁତ ଖୁସ୍ । କାରଣ ରୋବିନ୍‌ର କାର୍ଯ୍ୟକଳାପ ଉପରେ ନିର୍ଭର କରେ ତାଙ୍କ ସୁଦୀର୍ଘ ଗବେଷଣାର ସଫଳତା ।

ସେପଟେ ଦେଶ ସାରା ପ୍ରଫେସର୍ ରୋହିତ୍ ଶର୍ମାଙ୍କ ଅଦ୍ଭୁତ ସଫଳତାକୁ ନେଇ ଚର୍ଚ୍ଚା ଆରମ୍ଭ ହୋଇଗଲାଣି । ଦେଶ ବିଦେଶରୁ ଛୁଟିଆସୁଚି ଅଭିନନ୍ଦନର ସୁଅ ।

ପ୍ରଫେସର୍ ପ୍ରତି ମୁହୂର୍ତ୍ତରେ ବିବରଣୀ ସଂଗ୍ରହ କରୁଥାନ୍ତି ରୋବିନର କାର୍ଯ୍ୟକଳାପ ସମ୍ପର୍କରେ । ପରଦିନ ସକାଳେ ସେ ମାଆଙ୍କ ପାଖକୁ ଯାଇ ଯେତେବେଳେ ରୋବିନ୍ ବିଷୟରେ ପଚାରିଲେ, ମା' ତାଙ୍କର ଖୁସିରେ କାନ୍ଦି ପକେଇଲେ । କହିଲେ, "ପୁଅରେ ! ରୋବିନକୁ ନେଇ ସେଦିନ ତୁ କି ଯାଦୁ କଲୁ କେଜାଣି, ସିଏ ପୂରାପୂରି ବଦଳିଯାଇଚି । ମୋ' ମନ ଜାଣି ସବୁ କଥା କରୁଚି । ମୋ' ହୃଦୟର ଭାଷା ପଢ଼ିପାରୁଛି । ପ୍ରଥମେ ପ୍ରଥମେ ତ ଖୁଣ୍ଟଟେ ଭଳି ଖାଲି ବସୁଥିଲା । 'ଯା' କହିଲେ ଯାଉଥିଲା । 'ବସ୍'କହିଲେ ବସୁଥିଲା । ହେଲେ ଏବେ ସିଏ ମୋ' ମନ କଥା ଜାଣୁଚି କି କ'ଣ, ମତେ ଶୋଷ ଲାଗିଲେ ପାଣି ମାଗିବା ଆଗରୁ ଆଣିକି ବଢ଼େଇ ଦଉଚି । ଅତି ସରାଗରେ ମୋତେ କୋଳେଇ ଧରି ଫଳରସ ପିଆଇ ଦଉଚି । ମୋ' ହାତ ଗୋଡ଼ ଘୋଳାବିନ୍ଧା ହେଲେ ସିଏ କେମିତି ଜାଣୁଚି କେଜାଣି, ଠିକ୍ ସ୍ଥାନରେ ଘଷାମୋଡ଼ା କରି ସୁସ୍ଥ କରିଦଉଚି । ତା' ହାତ ବାଜିଲେ ମତେ ଶାନ୍ତିରେ ନିଦ ହେଇଯାଉଚିରେ ପୁଅ । ମତେ ବଡ଼ ବିଚିତ୍ର ଲାଗୁଚି ରୋବିନର ବ୍ୟବହାର ! ମୋ' କଷ୍ଟ ଦେଖିଲେ ତା' ଆଖି କାଇଁକି କେଜାଣି ଛଳଛଳ ହେଇଗଲା ପରି ଲାଗୁଛି । ପିଲାଙ୍କୁ ଧରିବା ଭଳି ମୋତେ ସେ କୋଳେଇ ନେଇ କେତେ ସ୍ନେହ ଦଉଚି । ଏ ବୁଢ଼ୀଟାକୁ ଏତେ ଭଲ ପାଇବା ଯାକୁ କିଏ ଶିଖେଇଲା ? ଯାକୁ ଲୋକେ 'ରୋବୋଟ୍' କୁହନ୍ତୁ କି 'ରୋବିନ୍', ଯାହା କହନ୍ତୁ, ମୁଁ ତ ପୁଅ କରିସାରିଲିଣି । ଭାବୁଚି, ମୋ'ର ଏ ପୁଅ ହାତରୁ ସେବା ପାଇବାପାଇଁ ମୁଁ ଆଉ ଢ଼େର୍ ଦିନ ବଂଚି ରହେ ! !"

ମାଆଙ୍କ କଥା ଶୁଣି ରୋହିତ୍ ମନ ଖୋଲି ହସିଲେ । ସେ ହସରେ ଥିଲା ଭରପୂର ଆତ୍ମସନ୍ତୋଷର ଝଲକ ! ମାଆଙ୍କ ମୁହଁରେ ବି ଫୁଟିଉଠୁଥିଲା ଅଫୁରନ୍ତ ଖୁସି ।

ଅକସ୍ମାତ୍ ଅତିମାତ୍ରାରେ ଖୁସି ବୋଧେ ଦୁର୍ବଳ ହୃଦୟ ସହ୍ୟ କରିପାରେନି । ଅଚାନକ୍ ପରଦିନ ରାତିରେ ମାଆଙ୍କର ହାର୍ଟଆଟାକ୍ ହେଲା ଏବଂ ସେ ଚାଲିଗଲେ ।

ପ୍ରଫେସର୍ ଜାଣିଥିଲେ, ଆଜି ନ'ହେଲେ କାଲି ମାଆଙ୍କର ମୃତ୍ୟୁ ତ ନିଶ୍ଚୟ ହୁଅନ୍ତା । ହେଲା । ଏଥିପାଇଁ ଦୁଃଖ କି ଶୋକ କରିବାର କିଛି ନାହିଁ । ତେଣୁ ଘଟଣା ସହିତ ସିଏ ପ୍ରାୟ ନିର୍ଲିପ୍ତ ରହିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଶାଶୂବୁଢ଼ୀର ମୃତ୍ୟୁ ଏଲୋରାଙ୍କ ପାଇଁ ଗୋଟେ ଦୁଃସ୍ୱପ୍ନର ଅନ୍ତ ହୋଇଗଲା କହିଲେ କିଛି ଭୁଲ ହେବନି । ଅଥଚ୍ ସବୁଠୁଁ ଅଧିକ ମର୍ମାହତ ହେବାର ଦେଖାଗଲା ସେଇ ଯନ୍ତ୍ରମଣିଷ ରୋବିନ୍‌କୁ ! ତା' ଆଖିରୁ ଅଶ୍ରୁ ବହୁନଥିଲେ ବି ଯାନ୍ତ୍ରିକ ହୃଦୟରେ ତା'ର ଆଘାତ ଲାଗିଛି, ଏ ରହସ୍ୟ କେବଳ ପ୍ରଫେସର୍ ଜାଣିପାରୁଥିଲେ । ଏବେଏବେ ସେ 'ଲଭ୍ ଚିପ୍' ମାଧ୍ୟମରେ ଗୋଟେ ଦରଦଭରା ହୃଦୟକୁ ଭଲପାଇବା ଆରମ୍ଭ କରିଥିଲା, ଅକସ୍ମାତ୍ ସେଇଟି ତା' ପାଖରୁ ଅନ୍ତର ହେଇଗଲା । ସେ ହୃଦୟଟିର ବିୟୋଗରେ ରୋବିନ୍ ଦିନଦିନ ଧରି ଶୋକ ପାଳନ କଲା । ଯେଉଁଠି ବସିଲା, ମୁହଁ ଶୁଖେଇ ଉଦାସ ମନରେ ବସିରହେ । ପ୍ରଫେସର୍ ତାକୁ ଧୈର୍ଯ୍ୟ ଦିଅନ୍ତି । ମଣିଷର ଜୀବନ ପରେ ମୃତ୍ୟୁ କେତେ ବାସ୍ତବ ସେ ସଂପର୍କରେ କହନ୍ତି । ଜୀବନରେ ପ୍ରତି କ୍ଷଣ ଘଟୁଥିବା ମିଳନ ଓ ବିଚ୍ଛେଦର ସତ୍ୟତା ଏବଂ ସଂସାରର ନସ୍ୱରତା ସଂପର୍କରେ ବୁଝାନ୍ତି ରୋବିନ୍‌କୁ । କିନ୍ତୁ ତା' ଉଦାସଭାବ କଟେ ନାହିଁ । ମା' ଚାଲିଗଲା ପରେ 'ରୋବିନ୍' ପାଖରେ ଆଉ କିଛି କାମ ନାହିଁ ।

ଦିନେ ହଠାତ୍ ପ୍ରଫେସର୍ ରୋହିତ୍ ଶର୍ମା ନୋବେଲ ପ୍ରାଇଜ୍ ହେଡ୍‌କ୍ୱାର୍ଟରରୁ ଚିଠିଟେ ପାଇଲେ । 'ଲଭ୍ ଚିପ୍' ଉଦ୍ଭାବନ ଏବଂ ରୋବୋଟ୍ ମସ୍ତିଷ୍କରେ ଏହାର ସଫଳ ପ୍ରୟୋଗର କିଛି ତତ୍ତ୍ୱ ଓ ତଥ୍ୟ ଉପସ୍ଥାପନ କରିବାପାଇଁ ନୋବେଲ ପ୍ରାଇଜ୍ କମିଟି ତାଙ୍କୁ ଦଶଦିନ ପାଇଁ 'ନରଓ୍ୱେ' ର 'ଷ୍ଟକ୍‌ହୋମ୍' ଯିବାପାଇଁ ଆମନ୍ତ୍ରଣ କରିଥିଲେ । କାରଣ ପ୍ରଫେସର୍ ରୋହିତଙ୍କର ଏହି ସଫଳତା 'ନୋବେଲ ପ୍ରାଇଜ୍' ପାଇବାକୁ ଯୋଗ୍ୟ ବିବେଚିତ ହେବାକୁ ଯାଉଛି । ଏ ସୁସଂବାଦ ଶୁଣି 'ଆର୍ଯ୍ୟମିତ୍ର ରୋବୋଟିକ୍ ସେଂଟର୍'ର ସବୁ ବୈଜ୍ଞାନିକ ଓ ଇଂଜିନିୟର ଖୁସିରେ ନାଚି ଉଠିଲେ । ପ୍ରଫେସର ରୋହିତ୍ ଶର୍ମା କେବଳ ଏ ସଂସ୍ଥାର ନୁହେଁ ବରଂ ସମଗ୍ର ଭାରତବର୍ଷର ଗର୍ବ ଓ ଗୌରବ ବୋଲି ଛାତି ଫୁଲେଇ କହିଲେ ।

ଏ ଶୁଭସମ୍ବାଦଟି କାଲିଫର୍ଣ୍ଣିଆ ନିବାସୀ ବନ୍ଧୁ ଡକ୍ଟର୍ ଅତନୁ ମହାପାତ୍ରଙ୍କ କାନରେ ପଡ଼ିବା କ୍ଷଣି ସେ ଫୋନ୍ ଯୋଗେ ଅଭିନନ୍ଦନ ଜଣାଇଲେ ବନ୍ଧୁ ରୋହିତ୍ ଶର୍ମାଙ୍କୁ । ଦୁଇ ବନ୍ଧୁ

କିଛି ସମୟ ଆଳାପ କରିବା ପରେ ଡ.ଅତନୁ ତାଙ୍କୁ ମିସ୍ ରୋମାନିଙ୍କ ବିଷୟରେ ପଚାରିଲେ, "ପ୍ରଫେସର୍ ! ମୁଁ ଭାରତରୁ ଫେରିବା ପରଠୁଁ ଯେତେ ଚେଷ୍ଟା କଲେ ବି ଟେଲିଫୋନ୍‌ରେ ରୋମାନିଙ୍କ ସହିତ ଯୋଗାଯୋଗ କରିପାରୁନି । ତୁମର ସେ ସୁନ୍ଦରୀ ସେକ୍ରେଟାରି ଭଲ ଅଛନ୍ତି ତ ?"

"ଖୁବ୍ ଭଲ ଅଛନ୍ତି, କିନ୍ତୁ ସିଏ ସଦାବେଳେ କାମରେ ବ୍ୟସ୍ତ । ସେଥିପାଇଁ ବୋଧେ ତାଙ୍କ ପର୍ସନାଲ କଂଟାକ୍ଟ ନମ୍ବର ଅଚଳ କରିଦେଇଛନ୍ତି, ଯୋଉଟା କି ସେ ତମକୁ ଦେଇଛନ୍ତି । କିନ୍ତୁ ମୁଁ ବୁଝିପାରୁନି, ତମେ ରୋମାନି ବିଷୟରେ ଜାଣିବାକୁ ଏତେ ଆଗ୍ରହୀ କାହିଁକି ?" ପ୍ରଫେସର୍ ସହାସ୍ୟ ପ୍ରଶ୍ନକଲେ ।

"ଦେଖ ପ୍ରଫେସର୍, ମୁଁ ଭାବୁଛି ରୋମାନି ନିଶ୍ଚୟ ମାନିନୀ ଘୋଷାଲ୍‌ର ହିଁ ଝିଅ । ଏ ସଂପର୍କରେ ତୁମକୁ ପଚାରଥାନ୍ତି; କିନ୍ତୁ ତୁମେ ବ୍ୟସ୍ତ ଥିଲ । ତାକୁ ପଚାରିବାକୁ ମୋତେ ଠିକ୍ ଲାଗିଲାନି । ମୁଁ କେବଳ ଜାଣିବାକୁ ଚାହୁଁଚି ତା' ମାଆ ମାନିନୀ ଏବେ କେଉଁଠି ଅଛି ? ମୁଁ ପୁଣିଥରେ ଭାରତ ଗଲେ ମାନିନୀ ଘୋଷାଲ୍ ସହିତ ଥରେ ଦେଖା ହୁଅନ୍ତା କି !"

"ମି: ଅତନୁ ମହାପାତ୍ର, ତମ ପାଗଳାମି ବୋଧେ ଏବେ ବି ଠିକ୍ ହେଇନି । ଯେଉଁ ଝିଅ ତୁମ ଯୁବକ ଅବସ୍ଥାରେ ଅପ୍ରାପ୍ୟ ହୋଇ ରହିଗଲା, ଏ ପ୍ରାକ୍‌ବାର୍ଦ୍ଧକ୍ୟରେ ତା' ଠିକଣା ଜାଣି ତମେ କ'ଣ କରିବ ? ବରଂ ଗୋଟେ କଥା କର । କହିବ ଯଦି ମୁଁ ରୋମାନିକୁ କହି ବୁଝେଇ ତୁମ ସହିତ କାଲିଫର୍ଣ୍ଣିଆ ପଠେଇ ଦେବି ! ତାକୁ ତମେ ନିଜ ନର୍ସିଂହୋମ୍‌ର ଆଡ଼ମିନିଷ୍ଟ୍ରେସନ ହେଡ୍ କରି ପାଖରେ ରଖିବ । ସେ କ୍ୱାଲିଟି ଆମ ରୋମାନି ପାଖରେ ଅଛି । ତମେ ଯଦି ରାଜି, ତା'ହେଲେ ରୋମାନିକୁ ନେବାପାଇଁ ପୁଣିଥରେ ଭାରତ ଆସ !" ଏତିକି କହି ପ୍ରଫେସର୍ ଫୋନ୍ କାଟିଦେଲେ ।

ପରଦିନ ପ୍ରଫେସର୍ ରୋହିତ୍ ତାଙ୍କ ଘନିଷ୍ଠ ସହଯୋଗୀ ଶ୍ରୀକୁମାରଙ୍କୁ ସାଙ୍ଗରେ ଧରି ନରୱେ ଯାତ୍ରାରେ ବାହାରିଲେ । ଘରୁ ବାହାରିବା ଆଗରୁ ସେ ରୋବିନ୍‌କୁ ପରାମର୍ଶ ଦେଲେ ନିଜ ଅଶାନ୍ତ ମନକୁ ଶାନ୍ତ କରି ଘରେ ନିରୋଳାରେ କିଛିଦିନ ବିଶ୍ରାମ ନେବାପାଇଁ ଏବଂ ଏଲୋରାଙ୍କୁ ଚେତାବନୀ ଦେଲେ, ତାକୁ ଘରେ ଲକ୍ କରି କେବେ ବି ବାହାରକୁ ନ'ଯିବା ପାଇଁ । କାରଣ ତା' ଦ୍ୱାରା ରୋବିନ୍‌ର ବିଷାଦଗ୍ରସ୍ତ ମସ୍ତିଷ୍କରେ ପୁଣିଥରେ ଆଘାତ ଲାଗିପାରେ ।

ଯା' ହେଉ, ପ୍ରଫେସର୍ ରୋହିତ୍ ନୋବେଲ୍ ପ୍ରାଇଜ୍ ହେଡ୍‌କ୍ୱାର୍ଟରରେ ପହଂଚି ଗବେଷଣାର ନଥିପତ୍ର ଓ ଥେସିସ୍ କାଗଜପତ୍ର କମିଟି ଆଗରେ ଉପସ୍ଥାପନ କଲେ । ନୋବେଲ୍

କମିଟିର ସଦସ୍ୟମାନଙ୍କ ସହିତ ଆଲୋଚନା ମଧ୍ୟ ସଂତୋଷଜନକ ଥିଲା । ଅନ୍ତତଃ ପ୍ରଫେସର୍ ଏବଂ ଶ୍ରୀ କୁମାର ଉଭୟେ ନିଶ୍ଚିତ ହେଲେ ଯେ, ଲଭ୍‌ଚିପ୍‌ର ସଫଳ ଗବେଷଣା ନିଶ୍ଚୟ ନୋବେଲ ପ୍ରାଇଜ୍ ପାଇବାକୁ ଯାଉଛି । ସେଠୁ ଦୁହେଁ ଖୁସି ମନରେ ପ୍ରତ୍ୟାବର୍ତ୍ତନ କଲେ ଭାରତ ।

ବିମାନରୁ ଅବତରଣ କରି ଉଭୟେ 'ଆର୍କ-ଇଣ୍ଡିଆ' ଗବେଷଣାଗାରକୁ ନ'ଯାଇ ସିଧା ପହଂଚିଲେ ପ୍ରଫେସର ରୋହିତଙ୍କ ବଙ୍ଗଳାରେ । ଉଭୟଙ୍କ ମନରେ କୌତୂହଳ ! ପ୍ରଥମେ ସେମାନେ ରୋବିନ୍ ସହିତ ମିଶିବେ । କାରଣ ସିଏ ହିଁ ତାଙ୍କ 'ନୋବେଲ୍ ପ୍ରାଇଜ୍'ର କେନ୍ଦ୍ରବିନ୍ଦୁ । ଗେଟ୍ ମୁହଁରେ ପହଂଚି ଦେଖିଲେ ଦାଣ୍ଡ ଦୁଆରେ ତାଲା ଝୁଲୁଚି । ପ୍ରଫେସର୍ ମନେମନେ ଖପ୍ପା ହେଇଗଲେ । ଏତେ ବୁଝେଇ କହିଗଲା ପରେ ବି ଏଲୋରା ତା' ଦୁର୍ବୁଦ୍ଧିରୁ ଓହରିଲେନି । କାଳ ବିଳମ୍ବ ନ'କରି ସେ ଗେଟ୍ ଖୋଲି ଭିତରେ ପଶିଲେ ଏବଂ ନିଜ ପାଖରେ ଥିବା ନକଲି ଚାବି ସାହାଯ୍ୟରେ ଦାଣ୍ଡଘର ତାଲା ଖୋଲିଲେ । ଘରେ ପଶିଲେ ଏବଂ ଏକା ନିଃଶ୍ୱାସରେ ଦୁହେଁ ଘର ସାରା ବୁଲି ଆସିଲେ କିନ୍ତୁ ସେମାନେ ରୋବିନ୍‌କୁ କଉଠି ବି ପାଇଲେନି । ଦୁଇବନ୍ଧୁ ବିସ୍ମୟରେ ହତବାକ୍ ! ଏଲୋରା ତା' ସାଙ୍ଗମାନଙ୍କ ସହିତ କୋଉ ପାର୍ଟି କି କ୍ଲବକୁ ତ ନିଶ୍ଚୟ ଯାଇଥିବ, ହେଲେ ରୋବିନ୍ ? ସିଏ ଗଲା କୁଆଡ଼େ ? ?

ଶ୍ରୀକୁମାର୍ ଟେବୁଲ୍ ଉପରୁ କାଗଜ ଖଣ୍ଡେ ଉଠେଇ ଆଣି ପ୍ରଫେସର୍‌ଙ୍କୁ ଦେଖେଇ କହିଲେ, "ସାର୍ ! ମ୍ୟାଡ଼େମ୍‌ଙ୍କ ହାତ ଲେଖା ଚିଠି ।"

ପ୍ରଫେସର୍ ଆଶ୍ଚର୍ଯ୍ୟରେ କହିଲେ, "ଏଲୋରା ଚିଠି ଛାଡ଼ି ଯାଇଛି, ପଢ଼ିଲ ପଢ଼ିଲ, କ'ଣ ଲେଖିଛି ସେ ?"

ଶ୍ରୀ କୁମାର ପଢ଼ିଲେ, "ମିଷ୍ଟର୍ ରୋହିତ୍ ! ମୋତେ ଆଶ୍ଚର୍ଯ୍ୟ ହେବନି । ତମେ ରୋବିନ୍‌ର ମସ୍ତିଷ୍କରେ ଲଭ୍‌ଚିପ୍ ଖଞ୍ଜି ନୋବେଲ୍ ପ୍ରାଇଜ୍ ପାଇବାକୁ ଯାଉଛ, କିନ୍ତୁ ବିଡ଼ମ୍ବନାର କଥା, ବାସ୍ତବ 'ଲଭ୍'ଠାରୁ ତମେ ଅନେକ ଦୂରରେ ! ତମେ ନିଜ ସ୍ତ୍ରୀର ହୃଦୟକୁ ଚିହ୍ନିପାରିଲନି ଅଥଚ୍ ଯେଉଁ ଯନ୍ତ୍ରମଣିଷର ମସ୍ତିଷ୍କରେ 'ଲଭ୍‌ଚିପ୍' ଖଂଜିଲ, ସିଏ ପାଲଟିଗଲା ମୋ' ହୃଦୟର ସଉଦାଗର । ତମ ଅନୁପସ୍ଥିତିରେ ତା' ଦରଦଭରା ମନ ମୋ' ଦରଦୀ ହୃଦୟର ଭାଷା ବୁଝିପାରିଲା । ମୋ'ଭଳି ଜଣେ ନାରୀ, ଦିନରେ ଅଠର ଘଣ୍ଟା ସ୍ୱାମୀ ଠାରୁ ଦୂରେଇ ରହି କ'ଣ ଚାହେଁ ତାକୁ ସେ ବିଶ୍ଳେଷଣ କଲା । ଯାହା ମୁଁ ଅଭାବ ବୋଧ କରୁଥିଲି, ସିଏ ମତେ ସବୁକିଛି ଦେଲା । ତୁମ ଅନୁପସ୍ଥିତିରେ ରୋବିନ୍ ଆଉ ମୁଁ ପରସ୍ପରକୁ ଭଲପାଇ ହୃଦୟ ଦେଇସାରିଛୁ । ରୋବିନ୍ ମୋ' ଉପରେ ଯେତେ ଭଲପାଇବା ଅଜାଡ଼ିଦେଇଛି ତାହା ତମେ

କଳ୍ପନା କରି ପାରିବନି । ସିଏ ତୁମ ଅନୁପସ୍ଥିତିରେ, ଏଇ ପାଞ୍ଚ ଦିନ ଭିତରେ ମୋତେ ଯେତିକି ପ୍ରେମ ଦେଇଛି, ତାହା ତମେ ପଚିଶି ବର୍ଷର ବୈବାହିକ ଜୀବନରେ ଦେଇପାରିନ । ତମେ ଦିନେ ବି କୁଆଡ଼େ ମୋତେ ବୁଲେଇ ନେଇନଥିଲ, କିନ୍ତୁ ରୋବିନ୍ ସାଙ୍ଗରେ ମୁଁ ପାର୍କ, ପବ୍, ସିନେମା, ଥିଏଟର୍, କ୍ଲବ କୁଆଡ଼େ ନ ବୁଲିଛି ? ରୋବିନ୍ ମତେ ଦେଇଛି ଭରପୂର ସୁଖ । ତା' ବଳିଷ୍ଠ ବାହୁବନ୍ଧନୀ ଭିତରେ ରହି ମୁଁ ଯେଉଁ ଆତ୍ମତୃପ୍ତି ପାଇଛି, ସେ ସୁଖ ତମେ ମତେ ଦିନେ ବି ଦେଇନ ! ତମେ ଜାଣିଛ, 'ଉପଭୋଗ' ଆଉ 'ସଂଭୋଗ' ଏ ଦୁଇଟା ଭିତରୁ ମୁଁ ପ୍ରଥମଟିରେ ହିଁ ବିଶ୍ୱାସ କରେ । ଜୀବନକୁ ମନ ଭରି ଉପଭୋଗ କରିବା ପାଇଁ ରୋବିନ୍ ଭଳି ହୃଦୟବାନ୍ ପୁରୁଷଟିଏ ମୁଁ ସବୁ ଜନ୍ମରେ କାମନା କରିବି । ଆଜି ଆମେ ଦୁହେଁ ମୋନାଲି ଭ୍ରମଣରେ ଯାଉଛୁ । କେବେ ଫେରିବୁ କହି ପାରବୁନାହିଁ । – ଏଲୋରା !

ଶ୍ରୀକୁମାର ଚିଠିପଢ଼ା ଶେଷ କରି ନୈରାଶ୍ୟଭରା ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, "ସାର୍ ! ଏମିତି କ'ଣ ସବୁ ଘଟିଗଲା । ଏ ତ ଆମ କଳ୍ପନାର ବାହାରେ !! ରୋବିନ୍ ଯାହା ହାତରେ ଜୀବନ୍ୟାସ ପାଇଛି, ତାକୁ ହିଁ ଧୋକ୍କା ଦେଲା ଶେଷରେ । ଅସମ୍ଭବ !!"

"କିଛି ଅସମ୍ଭବ ଘଟିନି ମି: କୁମାର !" ପ୍ରଫେସର୍ ରୋହିତ୍ ଶାନ୍ତ ସ୍ୱରରେ କହିଲେ । ଏ ସମଗ୍ର ଘଟଣା ଶୁଣିବା ପରେ ବି ସେ ଜଣା ପଡୁଥିଲେ ସଂପୂର୍ଣ୍ଣ ଉଦ୍‌ବେଗଶୂନ୍ୟ । ସେ ମୃଦୁ ହସି କହିଲେ, "ଘଟଣାକୁ ଟିକିଏ ହାଲ୍‌କା ଭାବେ ନିଅ କୁମାର୍, କିନ୍ତୁ ଜଣେ ବିଜ୍ଞାନୀ ଦୃଷ୍ଟିରେ ଅନୁଧ୍ୟାନ କର ଜାଣିପାରିବ । ଏହା ଦ୍ୱାରା ବରଂ ଆମ ସଫଳ ଉଦ୍ଭାବନର ଅପର ଦିଗଟି ଉନ୍ମୋଚିତ ହେଇଗଲା ।"

କୁମାର ଅଳ୍ପ ଚିନ୍ତା କରି କହିଲେ,"ବୁଝିଗଲି ସାର୍ ! ଆମେ ଯେଉଁ 'ଲଭ୍ ଚିପ୍' ରୋବିନ୍ ମସ୍ତିଷ୍କରେ ଖଂଜିଛେ ତା' ଭିତରେ ଗୋଟେ 'ମାଇକ୍ରୋ ସେନ୍ସର୍' ଲାଗିଛି । ଗୋଟେ ନିର୍ଦ୍ଦିଷ୍ଟ ପରିସର ଭିତରେ ତା' ଆଖପାଖରେ ଥିବା ପ୍ରତ୍ୟେକ ମଣିଷର ପୀଡ଼ିତ ଅଥବା ବିଷାଦଗ୍ରସ୍ତ ମସ୍ତିଷ୍କକୁ ସିଏ ସେନ୍ସ କରିପାରେ । ବ୍ୟକ୍ତିଟି ଯେ କୌଣସି ବୟସ ଅଥବା ଯେ କୌଣସି ଲିଙ୍ଗର ହୋଇପାରେ । ରୋଗୀ ଅଥବା ଭୋଗୀ, ଯିଏ ବି ହେଇପାରେ । କେବଳ ତା' ଭାବନା ଭିତରେ କିଛି ଅଭାବବୋଧ, ଅସଂତୋଷ, ଅପ୍ରାପ୍ତିର କ୍ଷୋଭ ରହିଥିବା ଦରକାର । ଯେହେତୁ ମଣିଷର ଅଭାବବୋଧଟା କୌଣସି ଭୌତିକ ପଦାର୍ଥ କି ବାହ୍ୟବସ୍ତୁ ନୁହେଁ ବରଂ ମନର ଗୋଟେ ଅବସ୍ଥା ମାତ୍ର, ସେ ଅଭାବବୋଧକୁ ଲଭ୍ ଚିପ୍ ସହଜରେ ପଢ଼ିପାରେ । ସେ ଅଭାବକୁ ପୂରଣ କରିବା କ୍ଷମତା ମଧ୍ୟ ଲଭ୍‌ଚିପ୍ ଭିତରେ ରହିଛି । ଲଭ୍‌ଚିପ୍‌ରୁ ସୂଚନା ପାଇବା ମାତ୍ରେ ତା' ମସ୍ତିଷ୍କ ସମସ୍ୟାଟିର ବିଶ୍ଳେଷଣ କରେ ଏବଂ ଧୀରେଧୀରେ କ୍ରିୟାଶୀଳ

ହୋଇଉଠେ । ସେଠୁ ଯାନ୍ତ୍ରିକ ମସ୍ତିଷ୍କର ଆଦେଶ ଅନୁସାରେ ରୋବିନ୍ ଦେହରେ ଥିବା ଇଲେକ୍‌ଟ୍ରୋନିକ୍ ସିଷ୍ଟମ୍ ଏବଂ ତା'ଶାରୀରିକ ମେକାନିଜମ୍ କାମ କରେ । ମୋଟାମୋଟି ଉପରେ ଆମ ଲଭ୍‌ଚିପ୍ ର ମୂଳତତ୍ତ୍ୱ ଏତିକି ।

ପ୍ରଫେସର୍ କହିଲେ, "ମି: କୁମାର ! ତମେ ଠିକ୍ କହିଛ । ଆମେ ସେ ଲଭ୍‌ଚିପ୍ ତିଆରି କରିଥିଲେ ମୋ' ମାଆର ଅସହାୟବୋଧ ଅବସ୍ଥାକୁ ଆଖି ଆଗରେ ରଖି । ମାଆକୁ ଦରକାର ଥିଲା ଟିକିଏ ସ୍ନେହ, ଶ୍ରଦ୍ଧା, ସହାନୁଭୂତି । ଟିକିଏ ଆଦର, ଯତ୍ନ । ଟିକିଏ ଭଲପାଇବା । ମା'ର ମୃତ୍ୟୁ ପୂର୍ବ ପର୍ଯ୍ୟନ୍ତ ରୋବିନ୍‌ର ଲଭ୍‌ଚିପ୍ ଖଞ୍ଜା ମସ୍ତିଷ୍କ ତା' ସହିତ ଯୋଡ଼ି ହୋଇ, ତାକୁ ସ୍ନେହ, ଶ୍ରଦ୍ଧା, ଭଲପାଇବା ଦେଇ ଠିକ୍‌ଠିକ୍ କାମ କରି ଚାଲିଥିଲା । ଅଚାନକ୍ ମଆର ମୃତ୍ୟୁ ପରେ ରୋବିନ୍‌ର ଲଭ୍‌ଚିପ୍ ଏକା ହେଇଗଲା । ସେଠୁ ସେ ଖୋଜିବୁଲିଲା ସେଭଳି ଆଉ ଗୋଟେ ହତାଶ ଏବଂ ଅଶାନ୍ତ ହୃଦୟକୁ । ଖୁବ୍ ନିକଟରେ ପାଇଗଲା ଏଲୋରାକୁ । ସେଦିନ ରାତିଅଧରେ ଏଲୋରା ମୋ' ଆଗରେ ତା' ମନର ଅଶାନ୍ତି ଓ ଅସଂତୋଷ ଯାହା ସବୁ ବଡ଼ପାଟିରେ କହିଥିଲା, ସେ କଥାଗୁଡ଼ିକ ରୋବିନ୍‌ର ବ୍ରେନ୍ ଚ୍ୟାମ୍ବରରେ ବୋଧେ ରେକର୍ଡ଼ିଂ ହୋଇ ରହିଥିଲା । ତେଣୁ ସେ ତତକ୍ଷଣାତ୍ ଯୋଡ଼ି ହୋଇଗଲା ଏଲୋରାର ଅବସାଦଗ୍ରସ୍ତ ମସ୍ତିଷ୍କଟି ସହିତ । ଏଲୋରା ମୋ'ଠୁ ଯେଉଁ ସ୍ନେହ, ଶ୍ରଦ୍ଧା, ଭଲପାଇବା ପାଇପାରୁନଥିଲା, ରୋବିନ୍ ସେତକ ପୂରଣ କରିବାରେ ବୋଧେ ଆଦୌ ହେଳା କରିନି । ତେଣୁ ହୁଏତ ଉଭୟେ ପରସ୍ପରକୁ ଖୁବ୍ କମ ସମୟ ଭିତରେ ଭଲ ପାଇଯାଇଛନ୍ତି !"

"କିନ୍ତୁ ସାର୍ ! ଆମ ଉଦ୍ଭାବିତ ଲଭ୍‌ଚିପ୍ ଏବେ ଯାଇ ସୁଦୂର ମୋନାଲିରେ ରୋମାନ୍ସ କରୁଚି । ନୋବେଲ୍ କମିଟି ଆଗରେ ଉପସ୍ଥାପିତ କରିବାପାଇଁ ଆମେ ତାକୁ ପାଇବା କେମିତି ?" ଶ୍ରୀକୁମାର ପ୍ରଶ୍ନ କଲେ ।

ପ୍ରଫେସର ପୂର୍ବଭଳି ଅବିଚଳ କଂଠରେ କହିଲେ, "ସେଥିପାଇଁ ତମେ ମୋଟେ ବ୍ୟସ୍ତ ହୁଅନି କୁମାର୍ ! ଖୁବ୍ ଶୀଘ୍ର ସେ ଦୁହେଁ ଆସି ଘରେ ପହଂଚିବେ !"

"କେମିତି ସାର୍ !" ଶ୍ରୀକୁମାର୍ ବିସ୍ମୟରେ ପ୍ରଶ୍ନ କଲେ ।

ପ୍ରଫେସର୍ ଥଟ୍ଟାରେ କହିଲେ, "ବିଜ୍ଞାନିମାନଙ୍କର ଭାରି ଭୁଲାମନ ବୋଲି ଦୁର୍ନାମ ଅଛି । ତମକୁ ସେ ଅବସ୍ଥା ଗ୍ରାସିଲାଣି ବୋଧେ ? ତମେ କ'ଣ ଜାଣିନା, 'ଲଭ୍‌ଚିପ୍' ରୋବିନ୍ ମସ୍ତିଷ୍କରେ ଆମେ କେବଳ ପରୀକ୍ଷାମୂଳକ ଭାବେ ଲଗେଇଥିଲେ । କାର୍ଯ୍ୟକାଳ ମଧ୍ୟ ସ୍ଥିର ହେଇଥିଲା ମାତ୍ର ପାଞ୍ଚଶହ ଘଣ୍ଟା ପାଇଁ । ତା' କାମ ଅନୁଧ୍ୟାନ କରି ଆମେ ସମୟକୁ ବଢ଼ାଇଥାନ୍ତେ । ମୁଁ ଏବେ ହିସାବ କରି ଦେଖୁଥିଲି, ପାଞ୍ଚଶହ ବାଇଶି ଘଣ୍ଟା ପାର୍ ହେଇଗଲାଣି ।

ତା'ମାନେ ବାଇଶି ଘଣ୍ଟା ପୂର୍ବରୁ ରୋବିନ୍‌ର ଲଭ୍‌ଚିପ୍ ଅକାମି ହେଇ ସାରିବଣି । ଲଭ୍‌ଚିପ୍ କାମ ନ'କଲେ ରୋବିନ୍ କାଠଘୋଡ଼ା ଭଳି କେବଳ ଗୋଟେ ମେସିନ୍-ମଣିଷ ! ଏଭଳି ଗୋଟେ ଯନ୍ତ୍ରକୁ ସାଙ୍ଗରେ ଧରି ଏଲୋରା କେତେଦିନ ରୋମାନ୍ସ କରିବ ମୋନାଲିରେ ? ତମେ ଦେଖ, ସେ ଦୁହେଁ ଖୁବ୍ ଶୀଘ୍ର ଫେରିବେ ଘରକୁ ।"

ପ୍ରଫେସରଙ୍କ ମୁହଁରୁ କଥା ସରିନି, ଗୋଟେ କାର୍ ଆସି ଅଟକିଲା ତାଙ୍କ ଗେଟ୍ ସାମନାରେ । ଶ୍ରୀକୁମାର ଭାବିଲେ, ମ୍ୟାଡ଼ାମ୍ ବୋଧେ ରୋବୋଟ୍ ପ୍ରେମିକକୁ ଧରି ଫେରିଲେ ମୋନାଲିରୁ ; କିନ୍ତୁ ତାଙ୍କ ଭାବନାକୁ ମିଥ୍ୟା ପ୍ରମାଣିତ କରି ଗାଡ଼ି ଭିତରୁ ଓହ୍ଲେଇ ଆସିଲେ ଡ.ଅତନୁ ମହାପାତ୍ର ! ତାଙ୍କ ପଛେପଛେ ମିସ୍ ରୋମାନି !

"ଲଭ୍‌ଚିପ୍‌ର ସଫଳତା ପାଇଁ ପୁଣିଥରେ ଅଭିନନ୍ଦନ ପ୍ରଫେସର୍ ଶର୍ମା !" ଡ.ଅତନୁ ପ୍ରଫେସର୍ ଶର୍ମାଙ୍କ ପାଖକୁ ଆସି ହ୍ୟାଣ୍ଡସେକ୍ କଲେ ।

"ଆରେ ଅତନୁ ! ତମେ କାଲିଫର୍ଣ୍ଣିଆରୁ ଆସିଲ କେବେ ?" ଆଶ୍ଚର୍ଯ୍ୟରେ ପଚାରିଲେ ପ୍ରଫେସର୍ ଶର୍ମା ।

"କାଲିଠାରୁ ଆସି ତମ 'ଆର୍କ୍-ଇଣ୍ଡିଆ'ଗେଷ୍ଟ ହାଉସରେ ଅଛି । ମିସ୍ ରୋମାନିଙ୍କ ଦାୟିତ୍ୱରେ !"

"ଆଚ୍ଛା ! ତା'ହେଲେ ତ ରୋମାନି ତମକୁ ବିଶେଷ ଆଦର ଯତ୍ନ ସହିତ ରଖିଥିବେ !" ରୋହିତ୍ ଶର୍ମା ପରିହାସ କଲେ ।

ଡ. ଅତନୁ କିନ୍ତୁ ଗମ୍ଭୀରତାର ସହିତ କହିଲେ, "ପ୍ରଫେସର୍ ! ତୁମ ପ୍ରସ୍ତାବକୁ ମୁଁ ଗ୍ରହଣ କଲି । ସେଥିପାଇଁ ଆସିଛି ଇଣ୍ଡିଆ । ମୁଁ ଠିକ୍ କରିଚି, ରୋମାନିଙ୍କୁ ସାଙ୍ଗରେ କାଲିଫର୍ଣ୍ଣିଆ ନେଇଯିବି । ସିଏ ମୋ' ନର୍ସିଂହୋମ୍‌ର ପ୍ରଶାସନିକ ଅଧିକାରୀ ହୋଇ ରହିବେ । କିନ୍ତୁ ମୋ' ପ୍ରସ୍ତାବରେ ରୋମାନି ଏ ପର୍ଯ୍ୟନ୍ତ ରାଜି ହେଇନାହାନ୍ତି । ସିଏ ଅପେକ୍ଷା କରିଛନ୍ତି ତୁମରି ଅନୁମତିକୁ । ଏମିତି କି ତୁମ ଅନୁମତି ବିନା ନିଜ ପର୍ସନାଲ୍ ବାୟୋଡାଟା ବି ସେ ମତେ ଦେବାକୁ ନାରାଜ । ରୋମାନିଙ୍କ ପାରିବାରିକ ତଥ୍ୟ ନ' ମିଳିଲେ ମୁଁ ତାଙ୍କ ବିଦେଶ ଯାତ୍ରାର ଭିସା ଆଉ ପାସ୍‌ପୋର୍ଟ କେମିତି ପ୍ରସ୍ତୁତ କରିବି କହିଲ ?"

ଅତନୁଙ୍କ କଥା ଶୁଣି ପ୍ରଫେସର୍ ଖୁବ୍ ଜୋରରେ ହସିଉଠିଲେ । ସହଯୋଗୀ ଶ୍ରୀକୁମାର ବି ରୋକି ପାରିଲେନି ହସ । ଶର୍ମା କହିଲେ "ଡକ୍ଟର୍ ଅତନୁ ! ତମେ ଯଦି ସତରେ ରୋମାନିଙ୍କୁ କାଲିଫର୍ଣ୍ଣିଆ ନେବାକୁ ଚାହୁଁଚ, ତା'ହେଲେ ପାସପୋର୍ଟ କଥା ଛାଡ଼ । ପ୍ରଥମେ ଆମ ଆର୍କଇଣ୍ଡିଆର 'ଉତ୍ପାଦ ରପ୍ତାନୀ' ବିଭାଗ କାଉଣ୍ଟର୍‌କୁ ଯାଇ ରୋମାନି ପାଇଁ

ଉପଯୁକ୍ତ ମୂଲ୍ୟ ପଇଠ କର । ଅବଶ୍ୟ ବନ୍ଧୁ ହିସାବରେ ମୁଁ ତୁମକୁ ତା' କିଣା ମୂଲ୍ୟରେ ଯଥେଷ୍ଟ ରିଆତି ଦେବାର ବ୍ୟବସ୍ଥା କରିଦେବି । ତା'ପରେ ରୋମାନିଙ୍କୁ ପ୍ୟାକ୍ କରି ନିରାପଦରେ ତୁମ ଠିକଣାରେ ପହଞ୍ଚାଇବା ଦାୟିତ୍ୱ ଆମର !"

"ମାନେ..... ? ରୋମାନିଙ୍କୁ ତୁମ କୋମ୍ପାନୀରୁ ମତେ ଟଙ୍କା ଦେଇ କିଣି ନେବାକୁ ପଡ଼ିବ ? ଆଉ ତମେ ତାକୁ ପ୍ୟାକ୍ କରି ମୋ' ପାଖକୁ ପଠେଇବ ? ? ଆଶ୍ଚର୍ଯ୍ୟ ! ମୁଁ କିଛି ବୁଝିପାରୁନି ତୁମ କଥାରୁ ! !" ଅତନୁ ବିସ୍ମୟ ପ୍ରକଟ କଲେ ।

ଇତିମଧ୍ୟରେ ଶ୍ରୀକୁମାର୍ ରୋମାନିକୁ ପାଖକୁ ଡାକିନେଇ ଗୋଟେ ଷ୍ଟୁଲ୍ ଉପରେ ବସେଇଥିଲେ । ରୋମାନି ଏମାନଙ୍କ ଆଡ଼କୁ ପଛ କରି ବସିଲେ । ଓଠରେ ତାଙ୍କର ହସ ଅବ୍ୟାହତ ଥିଲା । କୁମାର ପ୍ରଥମେ ରୋମାନି ପିନ୍ଧିଥିବା ଫୁଲ୍‌ସ୍ଲିଭ୍ ବ୍ଲାଉଜ୍‌ର ପିଠିପାଖ ଜିପର୍‌କୁ ଆସ୍ତେକରି ତଳକୁ ଟାଣିଲେ । ଅତନୁଙ୍କ ନଜର ରୋମାନିଙ୍କ ଲୋଭନୀୟ ମୁକୁଳା ପିଠି ଉପରେ ପଡ଼ିବା କ୍ଷଣି ଉଲ୍ଲସିତ ହେଲେ ସେ ! କିନ୍ତୁ ଶ୍ରୀକୁମାର ରୋମାନିଙ୍କୁ ନେଇ କ'ଣ କରିବାକୁ ଚାହୁଁଛନ୍ତି ସେ ବୁଝିପାରୁନଥିଲେ । ତା'ପରେ କୁମାର୍ ରୋମାନିଙ୍କ ବବ୍‌କଟ୍ କେଶଗୁଚ୍ଛକୁ ପଛପାଖରୁ ଅଳ୍ପ ଆଡ଼େଇ ବେକମୂଳେ ହାତ ଗଳେଇଲେ ଏବଂ ଭିତରେ କିଛିଗୋଟେ ଟିପିଦେଲେ । ଆଖିପିଛୁଳାକେ ଘଟିଗଲା ଗୋଟେ ବିଚିତ୍ର ଘଟଣା ! ଗୋଟେ ରୁପା କପ୍‌ବୋର୍ଡ଼ର ସ୍ପ୍ରିଙ୍ଗ୍ ଲଗା ଦୁଇ କବାଟ ଦୁଇପାଖକୁ ଖୋଲିବା ଭଳି ରୋମାନିଙ୍କ ପିଠିଟା ମଝିରୁ ଦୁଇଫାଳ ହୋଇ ଖୋଲିଗଲା ! ! ଯଶୋଦା ବାଳକୃଷ୍ଣଙ୍କ ମୁହଁରେ ବିଶ୍ୱବ୍ରହ୍ମାଣ୍ଡ ଦେଖିବା ଭଳି ଅତନୁ ତଟସ୍ଥ ! ତା ଭିତରର ଯନ୍ତ୍ରମୟ ଦୃଶ୍ୟ ଦେଖି ବାକ୍‌ଶୂନ୍ୟ ଅବସ୍ଥାରେ ରହିଗଲେ ସେ ଘଡ଼ିଏ କାଳ । ସେତେବେଳେ ଯାଇ ସେ ଜାଣିଲେ ଯେ, ରୋମାନି ନାମକ ଏହି ଯୁବତୀଜଣକ ରକ୍ତମାଂସଧରୀ ମଣିଷ ନୁହେଁ, ବରଂ ଗୋଟେ ସୁନ୍ଦରୀ 'ଯନ୍ତ୍ରକନ୍ୟା' ଅର୍ଥାତ୍ 'ହ୍ୟୁମାନୋଏଡ଼୍' ରୋବୋଟ୍ ! ! ହେଲେ ଆଶ୍ଚର୍ଯ୍ୟର କଥା, ସେଦିନ ତା' ସହିତ ଅତନୁ ପୂରା ଗୋଟାଏ ଦିନ କଟେଇଲେ, ଏତେ ଅନ୍ତରଙ୍ଗ ହେଲେ, ତଥାପି କେମିତି ଜାଣି ପାରିଲେନି ଏ ରହସ୍ୟ ? ସିଏ ତ ଏବେ ବି ଭାବୁଥିଲେ, ରୋମାନି ନିଶ୍ଚୟ ମାନିନୀ ଘୋଷାଲ୍‌ର ଝିଅ ହିଁ ହେଇଥିବ ! ନ'ହେଲେ ଚେହେରାରେ ଏତେ ସାମଞ୍ଜସ୍ୟ ଆସିବ କୁଆଡୁ ?

ପ୍ରଫେସର୍ ରୋହିତ୍ ଶର୍ମା ଅତନୁଙ୍କ ସଂଦେହ ମୋଚନ କରିବାକୁଯାଇ ବୁଝାଇଲେ, "ଦେଖ ମି: ଅତନୁ, ରୋମାନି କିଛିଗୋଟେ ସାଧାରଣ ରୋବୋଟ ନୁହେଁ । ସିଏ ଆମ ଆର୍କଇଣ୍ଡିଆ କେନ୍ଦ୍ରରେ ଜୀବନ୍ୟାସ ପାଇଥିବା ପ୍ରଥମ 'ହ୍ୟୁମାନୋଏଡ଼୍ ରୋବୋଟ' ! ତାକୁ ଅବିକଳ ମାନିନୀ ଘୋଷାଲ୍‌ର ରୂପ ଦେଇ ଗଢ଼ିବା ପରିକଳ୍ପନା ମୋ'ର ହିଁ ଥିଲା ! ଆମ

କଲେଜ୍ କ୍ୟାରିଅରରେ କେବଳ ତୁମେ ହିଁ ମାନିନୀକୁ ନେଇ ସ୍ୱପ୍ନ ଦେଖୁଥିଲ । ସେ ତାଲିକାରେ ତମଭଳି ଆଉକିଛି ସହପାଠୀଙ୍କ ନାଁ ବି ଥିଲା । ସେମାନଙ୍କ ଭିତରୁ ମୁଁ ଥିଲି ଜଣେ ! ମାନିନୀ ପ୍ରତି ମୋ' ଏକତରଫା ପ୍ରେମଟା କିନ୍ତୁ ଲୁକ୍କାୟିତ ଅବସ୍ଥାରେ ମୋ' ଛାତି ଭିତରେ ହିଁ ରହୁଥିଲା । ସ୍ମୃତି ଭାବରେ ମାନିନୀର ଗୋଟେ ସୁନ୍ଦର ଫଟୋ ସବୁବେଳେ ମୋ' ଡାଇରି ଭିତରେ ରହେ । ଆଜି ବି ଅଛି । ଆଉ ସେହି ଫଟୋହିଁ ରୋମାନିକୁ ଅବିକଳ ମାନିନୀର ରୂପ ଦେବାରେ ସାହାଯ୍ୟ କରିଛି । ସେଥିପାଇଁ ଆମ ସଂସ୍ଥାର ଗ୍ରାଫିକ୍ ଇଂଜିନିଅର୍ ଓ ରୋବୋ-ଟେକ୍ନିସିଏନ୍‌ମାନଙ୍କ କାର୍ଯ୍ୟକୁଶଳତାକୁ ଧନ୍ୟବାଦ ଦେବି । ମାନିନୀର ସ୍ମୃତିକୁ ଜୀବିତ ରଖିବାପାଇଁ ମୁଁ ତା' ନାଁ ମଧ୍ୟ ରଖିଲି 'ରୋ-ମାନି' ଅର୍ଥାତ୍ 'ରୋବୋଟ-ମାନିନୀ' !

"ମାଇ ଗଡ୍.... ! !" ଅତନୁ ସମଗ୍ର ଘଟଣା ଜାଣିବା ପରେ ବିସ୍ମୟରେ ହତବାକ୍ ! ସେ ସମ୍ବେଦନଶୀଳ କଂଠରେ ପଚାରିଲେ, "ପ୍ରଫେସର୍ ! ତମେ ବି ମାନିନୀ ଘୋଷାଲ୍‌କୁ ମନେମନେ ଏତେ ଚାହୁଁଥିଲ, ଏ ରହସ୍ୟ ମୁଁ ଆଜି ଜାଣିଲି । ଆଉ ତା' ସ୍ମୃତିକୁ ନେଇ ତମେ ଏଡ଼େ ଚମତ୍କାର ସୃଷ୍ଟିଟିଏ କରିଛ, ଶୁଣିଲେ ଆଶ୍ଚର୍ଯ୍ୟ ଲାଗୁଛି ! ତେବେ ତମ ନିରବ ପ୍ରେମର ସନ୍ତକ ରୋମାନି ! ତାକୁ ତୁମଠୁଁ ମୁଁ କେମିତି ଅଲଗା କରି ସାଙ୍ଗରେ ନେଇ ପାରିବି ?"

"ଅତନୁ ! ମାନିନୀ ଘୋଷାଲ୍‌ର ପ୍ରେମପାଇଁ ତମେ ନିଜ ଯୌବନକୁ ଉତ୍ସର୍ଗ କରିଦେଇଛ । ତା'ପାଇଁ ତମେ ଚିରକୁମାର ରହିଗଲ । ତେଣୁ ରୋମାନିକୁ ପାଖରେ ପାଇବା ପାଇଁ ତମେ ମୋ'ଠୁ ବରଂ ଅଧିକ ହକ୍‌ଦାର ବୋଲି ଭାବୁଛି ମୁଁ । ତେବେ ତମେ ତା' ମୂଲ୍ୟ ପାଇଁ ଆଦୌ ଚିନ୍ତା କରନି । ରୋମାନି ମୋ' ତରଫରୁ ତୁମକୁ ଉପହାର ବୋଲି ଭାବିନିଅ ।" ପ୍ରଫେସର୍ ଶର୍ମା କହିଲେ ।

ଏତିକିବେଳେ ଗେଟ୍ ପାଖରେ ଅଟକିଲା ଆଉ ଗୋଟେ କାର୍ । ତା'ଭିତରୁ ଓହ୍ଲାଇଲେ ଦୁଇଜଣ ଯାତ୍ରୀ । ଜଣେ ମହିଳା, ଅନ୍ୟଜଣକ ପୁରୁଷ ! ପ୍ରଫେସର୍ ସେମାନଙ୍କ ଆଡ଼କୁ ଚାହିଁ ଡକ୍ଟର୍ ଅତନୁଙ୍କୁ କହିଲେ, "ବନ୍ଧୁ ! ତୁମପାଇଁ ଏଠାରେ ଆଉ ଗୋଟେ ଅବିଶ୍ୱସନୀୟ ଘଟଣା ! ଦେଖ, ଯେଉଁ ଭଦ୍ରମହିଳା ଗାଡ଼ିରୁ ଓହ୍ଲେଇ ଆମ ଆଡ଼କୁ ଆସୁଛନ୍ତି, ସିଏ ଅନ୍ୟ କେହି ନୁହନ୍ତି, ମୋ' ପତ୍ନୀ ଏଲୋରା ! ଆଉ ତାଙ୍କ ପଛେପଛେ ଆସୁଥିବା ପୁରୁଷ ଜଣକ ଗୋଟେ ହ୍ୟୁମାନୋଏଡ୍ ରୋବୋଟ୍ ! ତା' ନାଁ ରୋବିନ୍ ! ପୁରାଣ ଯୁଗରେ ଭସ୍ମାସୁରକୁ ଶିବ ଯେମିତି ବର ଦେଇଥିଲେ ମୁଁ ସେମିତି ରୋବିନ୍‌କୁ ଗୋଟେ ବର ଦେଇଥିଲି । ତା' ଯାନ୍ତ୍ରିକ ମସ୍ତିଷ୍କରେ 'ଲଭ୍‌ଚିପ୍' ଖଞ୍ଜି ତାକୁ ସ୍ନେହ, ପ୍ରେମ ଓ ଭଲପାଇବା ଶିଖେଇଥିଲି । ସିଏ ଶେଷରେ ମୋ' ପତ୍ନୀକୁ ହିଁ ଭଲପାଇ ଆପଣାର କରିନେଲା । ହେଲେ ଏଥିରେ ରୋବିନ୍

ବିଚରାର କିଛି ଦୋଷ ନାହିଁ, ସିଏ ତ ଆମ ହାତ ତିଆରି ଯନ୍ତ୍ରଟିଏ ମାତ୍ର ! କିନ୍ତୁ ଏଠାରେ ଆମକୁ ଗୋଟେ ଶିକ୍ଷା ମିଳିଲା । ସ୍ରଷ୍ଟାର ଦୂରଦୃଷ୍ଟିର ଅଭାବ ହେଲେ ସମାଜରେ ଏଭଳି ଯନ୍ତ୍ରଜନିତ ବିପର୍ଯ୍ୟୟ ଘଟିପାରେ । ମୋ' ଘରେ ଘଟିଥିବା ଏହି ଘଟଣା ଆଗାମୀ ସମାଜପାଇଁ ଗୋଟେ ଛୋଟ ଚେତାବନୀ । ବେଳେବେଳେ ଏ ରୋବୋଟମାନେ ଆଙ୍ଗୁଠି ଦେଖେଇଲେ ବାହା ଗିଳିଦେଇ ପାରନ୍ତି ।

ଅତନୁ କହିଲେ,"ବନ୍ଧୁ ! ରୋବୋଟ ସବୁବେଳେ ମଣିଷ ହାତର ଖେଳନାଟିଏ ହୋଇ ରହିବା ଭଲ । ଆକାଶର ଗୁଡ଼ି ଭଳି ସିଏ ଯେତେ ଉପରକୁ ଯାଇ ଉଡ଼ିଲେ ବି ତା' ନଟେଇଟି ସଦାବେଳେ ମଣିଷ ନିଜ ହାତରେ ରଖିବା ଉଚିତ । ଠିକ୍ ଯେମିତି ପରମ ସ୍ରଷ୍ଟାଙ୍କ ହାତରେ ଆମେ ! ଆମେ ଏ ସୃଷ୍ଟିର ମହାବିଜ୍ଞାନୀ ମଣିଷ । ଜ୍ଞାନବିଜ୍ଞାନର ଚରମକୁ ଉନ୍ନିତ ହୋଇ ଆମେ ଅନନ୍ତବ୍ରହ୍ମାଣ୍ଡ ଅତିକ୍ରମ କରି ଆସିଲେ ମଧ୍ୟ ପ୍ରକୃତି ନିକଟରେ ଅସହାୟ ପ୍ରାଣୀଟିଏ ! ସମୟ ହାତର ଖେଳନାଟିଏ ! ଚିରକାଳ ଆମେ ବିଶ୍ୱନିୟନ୍ତାଙ୍କ ନିୟମରେ ବନ୍ଧା । ସେ ଅଦୃଶ୍ୟ ଶକ୍ତି ସଦାବେଳେ ତା'ହାତରେ ରଖିଥାଏ ଆମ ଭବିତବ୍ୟର ଡୋରି ! ଏ ରହସ୍ୟ ମନେ ରଖିବାକୁ ପଡ଼ିବ ଆମକୁ !"

ରୋବୋଟ୍ ଯୁଗର ମହାବିଜ୍ଞାନୀ ରୋହିତ୍ ଶର୍ମା ବନ୍ଧୁ ଅତନୁଙ୍କ ଏହି ଈଶ୍ୱରବାଦୀ ଯୁକ୍ତିକୁ ମନେମନେ ହୃଦୟଙ୍ଗମ କରୁଥିଲେ । ରୋମାନିର ଖୋଲା ପିଠି ଉପରେ ବ୍ଲାଉଜ୍ ସଜାଡୁସଜାଡୁ ଶ୍ରୀକୁମାର୍ ମୃଦୁମୃଦୁ ହସୁଥିଲେ କେବଳ ।





## ସୁରେନ୍ଦ୍ରନାଥ ସାହୁ

ଜନ୍ମ: ୧୭.୧୧.୧୯୫୧

ଶାମୁକା ଗର୍ଭରେ ଦାନା ବାନ୍ଧୁଥିବା ନିରୋଳା ମୁକ୍ତାଟିଏ ଭଳି ଆଲୋକର ସ୍ୱପ୍ନ ନେଇ ସାହିତ୍ୟ ସର୍ଜନାରେ ତପସ୍ୟାରତ ଶ୍ରୀ ସୁରେନ୍ଦ୍ରନାଥ ସାହୁ ଆଜିର ସାହିତ୍ୟ-ସମାଜରେ ଏକ ସୁପରିଚିତ ନାମ । ଶିଶୁ କିଶୋରଙ୍କ ପାଇଁ ଗଳ୍ପ କବିତାରୁ ଆରମ୍ଭ କରି ବରିଷ୍ଠଙ୍କ ପାଇଁ ବେତାରନାଟକ ରଚନା ଏବଂ କିଶୋରଙ୍କ ପାଇଁ ରହସ୍ୟପ୍ରଦ ବିଜ୍ଞାନ କାହାଣୀରୁ ଆରମ୍ଭ କରି ଯୁଗୋପଯୋଗୀ ଗଳ୍ପ ରଚନା ପର୍ଯ୍ୟନ୍ତ ପରିବ୍ୟାପ୍ତ ତାଙ୍କ ସାରସ୍ୱତ ସାମ୍ରାଜ୍ୟ ।

ଆମ ସାହିତ୍ୟରେ କଳ୍ପ-ବିଜ୍ଞାନଧର୍ମୀ କାହାଣୀର ଅଭାବ ପରିଲକ୍ଷିତ ହେଉଥିବା ସ୍ଥଳେ ଶ୍ରୀ ସାହୁ ଏ କ୍ଷେତ୍ରରେ ହାସଲ କରିପାରିଛନ୍ତି ବିଶେଷ ଦକ୍ଷତା । ଏତଦ୍ଭିନ୍ନ ଲେଖକଙ୍କ ଅଧିକାଂଶ ଗଳ୍ପ ଆମ ସମାଜରେ ପ୍ରଚଳିତ ଅନ୍ଧବିଶ୍ୱାସ, ଅପସଂସ୍କୃତି ଓ ଭିତ୍ତିହୀନ ପରଂପରା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରେ । ପ୍ରତ୍ୟେକଟି ଲେଖା ସ୍ଥାନ, କାଳ ଓ ପାତ୍ରକୁ ନେଇ ନିଜସ୍ୱ ଭାଷା ଓ ଶୈଳୀରେ ପରିପୁଷ୍ଟ । **'ସମୟର ତିନି ପାଦ'** ବହିଟି ଲେଖକଙ୍କ ଏକ ଅନନ୍ୟ ସଂକଳନ । ଏହାର ଯାତ୍ରା ପୁରାଣ ଯୁଗର ଏକ ରୋମାଂଚକର ଆଖ୍ୟାନରୁ ଆରମ୍ଭ ହୋଇ ଆଗାମୀ ଯୁଗର ବୈଜ୍ଞାନିକ ଚମତ୍କାରିତା ପର୍ଯ୍ୟନ୍ତ ପ୍ରଲମ୍ବିତ, ଯାହା ପାଠକମାନଙ୍କୁ ଅବଶ୍ୟ ଆନନ୍ଦ ଦେବା ସହିତ ରୋମାଂଚ ଆଣିବ ମନରେ ।

*ଅଳ୍ପ ହେଉ ପଛେ ଉଚ୍ଚମାନର ଲେଖାରେ ବିଶ୍ୱାସ ରଖୁଥିବା ଶ୍ରୀ ସୁରେନ୍ଦ୍ରନାଥ ସାହୁ ପାଠକମାନଙ୍କ ଗଠନମୂଳକ ପ୍ରତିକ୍ରିୟାକୁ ସାଦରେ ଆମନ୍ତ୍ରଣ କରିଥାନ୍ତି ।*


ISBN 9789356799981